# ନୟାଗଡ଼ ପରିକ୍ରମା

ପାଣ୍ଡବ ନାୟକ



# ନୟାଗଡ଼ ପରିକ୍ରମା

ପାଣ୍ଡବ ନାୟକ
ଏମ୍.ଏ. ଓଡ଼ିଆ

ପ୍ରକାଶକ:
ଆଶ୍ରୟ
ଆଶ୍ରୟ ପ୍ରକାଶନ
ଶରଣକୁଳ, ଜିଲ୍ଲା- ନୟାଗଡ, ଓଡ଼ିଶା - ୭୫୨୦୮୦

# ନୟାଗଡ଼ ପରିକ୍ରମା

## ପାଣ୍ଡବ ନାୟକ

*ଠିକଣା:*
'ପାର୍ବତୀ ନିବାସ', ସା/ପୋ- ଗୋତିସାହି
ଜିଲ୍ଲା -ନୟାଗଡ଼, ପିନ୍ - ୭୫୨୦୭୦, ଓଡ଼ିଶା
ମୋ: ୯୪୩୯୩୦୨୫୧୬, ୯୮୬୧୯୮୧୬୫୬

ପ୍ରଥମ ସଂସ୍କରଣ:
କାର୍ତ୍ତିକ ପୂର୍ଣ୍ଣିମା ୨୦୨୨



*ପ୍ରକାଶକ:*
ଆଶ୍ରୟ ପ୍ରକାଶନ
ଶରଣକୁଳ, ଜିଲ୍ଲା- ନୟାଗଡ
ଓଡ଼ିଶା - ୭୫୨୦୮୦
ଫୋନ୍ - (୦୬୭୫୩) ୨୫୭୩୨୧
ମୋ: ୯୩୩୮୦୦୪୩୨୧

*ମୁଦ୍ରଣ:*
ସିଦ୍ଧେଶ୍ୱର ପ୍ରିଣ୍ଟର୍ସ
ସହିଦନଗର, ଭୁବନେଶ୍ୱର-୭୫୧୦୦୭

ମୂଲ୍ୟ: ₹ ୩୫୦/-

**NAYAGADA PARIKRAMA**

By
**PANDAB NAYAK**

**Address :**
'PARBATI NIWAS', At/P.O - Gotisahi
Dist- Nayagarh, PIN - 752070
Odisha
Mob. : 9439302516, 9861981656

**First Edition :**

Kartika Purnima 2022



**Publisher:**
**ASHRAYA PRAKASHAN**
Sarankul, Dist- Nayagarh
Odisha-752080
Phone : 06753-257321
Mob. : 9338004321

**Printed by:**
Siddheswar Printers
Sahidnagar, Bhubaneswar-7

**Price : ₹ 350/-**

# ଲେଖକଙ୍କ କଲମରୁ...

ନୟାଗଡ଼-ରଣପୁର, ନୟାଗଡ଼, ଦଶପଲ୍ଲା, ଖଣ୍ଡପଡ଼ା ଗଡ଼କୁ ନେଇ ଏକ ଆରଣ୍ୟକ ପରିବେଷ୍ଟନୀ ଘେର ମଧ୍ୟରେ ଓଡ଼ିଶାର ମଧ୍ୟବର୍ତ୍ତୀ ଭାଗରେ ଅବସ୍ଥିତ ଏକ ନବଗଠିତ ଜିଲ୍ଲା ସାଂସ୍କୃତିକ ମେଳାମହୋତ୍ସବ, ଲୋକକଳା, ଓଡ଼ିଶାର ଇତିହାସ, ସଂସ୍କୃତି, ସାହିତ୍ୟ କ୍ଷେତ୍ରକୁ ପ୍ରଭାବିତ କରେ କହିବା ନିଃସନ୍ଦେହ ।

ଜିଲ୍ଲା ମହୋତ୍ସବ ପଲ୍ଲୀଶ୍ରୀ ମେଳାରେ ନୟାଗଡ଼ର ଇତିବୃତ୍ତ ପ୍ରକାଶନକରିବାରେ ସ୍ମରଣୀକା 'ଆରଣ୍ୟକ' ପତ୍ରିକା ଏକ ଯଥୋଚିତ ପ୍ରୟାଶ । ନୟାଗଡ଼ ପ୍ରଶାସନ ଦପ୍ତରରୁ ଆରଣ୍ୟକ ପତ୍ରିକାକୁ ପ୍ରବନ୍ଧ ପଠାଇବାକୁ ଯେତୋଟି ପତ୍ରାଙ୍କ ଆସିଛି ପ୍ରବନ୍ଧ ପ୍ରସ୍ତୁତି ପାଇଁ ମୋ ଭିତରେ 'ନୟାଗଡ଼ ପରିକ୍ରମା' କରିବାରେ ଗଭୀର ଆବେଗ ସୃଷ୍ଟି କରିଛି । ମନସ୍ତତ୍ତ୍ୱ ଭିତ୍ତିକ ପ୍ରବନ୍ଧ ନୁହେଁ ଯେ ଘରେ ବସି ଲେଖି ହୋଇଯିବ । ଏ ପ୍ରବନ୍ଧଗୁଡ଼ିକ ନୟାଗଡ଼ ପରିବେଶ ମଧ୍ୟରେ ଲୋକ ଚଳଣୀ କଥା କୁହେ । ପ୍ରବନ୍ଧ ଆରଣ୍ୟକ ପାଇଁ - ନୟାଗଡ଼ ଲୋକକଳା, ପର୍ଯ୍ୟଟନ କ୍ଷେତ୍ର, ନଦନଦୀ, ପାହାଡ଼ ପର୍ବତ, ଧର୍ମଧାରଣା, ବଳିପ୍ରଥା, ମନ୍ଦିର ନିର୍ମାଣ ପରମ୍ପରା, ଅନନ୍ୟ ତନ୍ତ୍ରଶୀକ୍ଷ, 'ନୟାଗଡ଼ ହେରିଟେଜ୍' ପାଇଁ 'କୁଲନାରୀ କଲଚର୍' (ଖାଦ୍ୟ ସଂସ୍କୃତି)- ଏ ପ୍ରବନ୍ଧ ଗୁଡ଼ିକ ନୟାଗଡ଼ର ଆରଣ୍ୟକ ପଥରେ ଚଲାଇ ନେଇ ତଥ୍ୟ ସଂଗ୍ରହରେ ସଫଳତା ଦେଇଛି । ତଥ୍ୟଟିଏ ସଂଗ୍ରହ କରି ପ୍ରବନ୍ଧରେ ଲିପିବଦ୍ଧ କଲାବେଳେ ଅଫୁରନ୍ତ ଆନନ୍ଦ ପାଇଛି । ତଥ୍ୟଗ୍ରହଣ କରିବାକୁ ହୁଏ ଯାହାକି ସଠିକ୍ ମନେହୁଏ । ଜନଶ୍ରୁତି ତ ସେକାଳରୁ ଏକାଳକୁ ମାଡ଼ି ରହିଛି ଯେପରିକି ରତ୍ନମାଳା ପର୍ବତର ଉପରହାଣ୍ଡି ତଳହାଣ୍ଡି ରହସ୍ୟ, ନୟାଗଡ଼ ଭୂସ୍ୱର୍ଗ, ମଣିଭଦ୍ରା ପର୍ବତ ପାଦଦେଶ, ଅପ୍‌ସରା ଭୂଇଁ, ବାନ୍ଧ ଦଉଡ଼ି- ପିଟ ଠେଙ୍ଗା ଏପରି ଅନେକ ଅନେକ ସାମାଜିକ ତଥା ପୌରାଣିକ ତଥ୍ୟ । ଜନଶ୍ରୁତି ସହିତ ଯୋଗାଯୋଗ ନକଲେ ତଥ୍ୟର ଯଥାର୍ଥ ସତ୍ୟତା ନପାଇଲେ ସେ ସ୍ତମ୍ଭ ଲେଖିବା ପାଇଁ କଲମ ଅଟକି ରହେ । ଖୋଜିବା ପାଇବା ଡାଏରୀରେ ସାଇତି ଦବା ସାଇତା ତଥ୍ୟକୁ ପ୍ରବନ୍ଧରେ ପ୍ରକାଶ କରିଦେଲେ ଲେଖକ ହାଲ୍‌କା । ଐତିହାସିକ ଘଟଣାବଳୀ ପ୍ରଜା ଆନ୍ଦୋଳନ ଶହୀଦ ରଘୁ-ଦିବାକର, ଅର୍ଜୁନ ରାଉତ, କଷ୍ଟି ଡାକୁଆ, କସ୍ତୁରୀ ପରିଡ଼ା ଅନେକ ନିର୍ଯ୍ୟାତିତ ଆନ୍ଦୋଳନକାରୀ ଉପରେ କଲମ ଚାଳନା କଲାବେଳେ ଲୋମ ଟାଙ୍କୁରୀଯାଏ । ସେ ଅମର ପୁରୁଷଙ୍କ ପାଇଁ ନୟାଗଡ଼ ଗର୍ବ କରେନା ଏଥିପାଇଁ ଅନ୍ୱେଷଣ ସାଧନା ଜାରି ରଖିବାକୁ ହୁଏ ।

ଟିକରପଡ଼ା ଠାରୁ ମହାନଦୀ କୂଳେ କୂଳେ, ବାଇଶିପଲ୍ଲୀ, ମଣିଭଦ୍ରା, କଣ୍ଡିଲୋ, କରବର, ଉଷ୍ଣପ୍ରସ୍ରବଣ କ୍ଷେତ୍ର, ଶୁକରମଲ, ମଣିନାଗେଶ୍ୱରୀ, ଖିଲାମୁଣ୍ଡ ଠାକୁରାଣୀ

ରାଆଁଳା, ରନ୍ନମାଳା ପାର୍ବତ୍ୟ ଜନବସତି, ଓଡ଼ଗାଁ, କୁରାଳ, ରତାଦେଇ ପର୍ବତ ଗୁପ୍ତକଥା, ରାଜକୁମାରୀ କୁଆଁରୀଆକୁ ସାକ୍ଷାତକାର ପାଇଁ ଉପତ୍ୟକାର ସମତଳରେ ଚାଲିଗଲାବେଳେ ଏହାର ଆଦିବାସୀ ଓ ଅଧିବାସୀଙ୍କ ସହିତ ଯୋଗସୂତ୍ର ବେଳେ ସେଠାକାର ପ୍ରତିଭୂମାନେ ଦିବଂଗତ ହୁଅନ୍ତୁ ବା ଦେହାଧି ହୁଅନ୍ତୁ ପାଖରେ ପାଖରେ ଠିଆ ହୋଇଯାଆନ୍ତି । ଏହି ପ୍ରତିଭୂମାନଙ୍କୁ ଗ୍ରନ୍ଥରେ ସାଇତି ରଖିବାକୁ କ୍ଷୁଦ୍ର ପ୍ରଚେଷ୍ଟା କରିଛି ଗ୍ରନ୍ଥରେ ଯଦି କିଛି ତ୍ରୁଟି ରହିଯାଇଥାଏ, ପରବର୍ତ୍ତୀ ସଂସ୍କରଣରେ ସଂଶୋଧିତ ହୋଇଯିବ ।

ପ୍ରକାଶିତ ପ୍ରବନ୍ଧଗୁଡ଼ିକୁ ଗ୍ରନ୍ଥରେ ସାଇତି ଦେବାକୁ ଅନେକ ପାଠ ଏବଂ ସାହିତ୍ୟିକ ବନ୍ଧୁ ଉତ୍ସାହିତ କରିଛନ୍ତି । ବେଶି ଉତ୍ସାହିତ ହୋଇଛି ନାଟ୍ୟକାର ଅଧକ୍ଷ ରାମଚନ୍ଦ୍ର ମିଶ୍ର ଆରଣ୍ୟକରେ ପ୍ରକାଶ କରିଥିବା Folk Drama, Dance and Songs in Nayagarh District Article ରେ ସହାୟକ Researcher ଭାବେ ଗ୍ରହଣ କରିଥିବାରୁ ସେ ମହାଶୟ ମାନଙ୍କୁ ମୋର କୃତଜ୍ଞତା ।

ସବୁଠାରୁ ବଡ଼ କାମ କରିଛନ୍ତି ଆଶ୍ରୟ ପ୍ରକାଶନର ପ୍ରକାଶକ ଶ୍ରୀଯୁକ୍ତ ଲୋକନାଥ ଦାଶ ମହୋଦୟ ଗ୍ରନ୍ଥର ପ୍ରଚ୍ଛଦପଟ୍ଟ ଆଙ୍କିଦେବା, ସୁନ୍ଦର ଅଙ୍ଗସାଜରେ ସଜାଇଦେବା- ସେ ମହୋଦୟ ମୋର ସଶ୍ରଦ୍ଧ ଧନ୍ୟବାଦାର୍ହ ।

***ପାଣ୍ଡବ ନାୟକ***

***ପାର୍ବତୀ ନିବାସ, ଗୋଟିସାହି, ଜି- ନୟାଗଡ଼***



# ଉତ୍ସର୍ଗ

ବାପା ! ରେଙ୍ଗୁନ୍‌ରୁ ଫେରି ସୁନ୍ଦର ସଂସାରଟିଏ ଗଢ଼ିଥିଲ । ମା ! ସେହି ସଂସାରରେ ମଣିଷଟିଏ କରି ଚଲାଇଲ । କି ଦେଇ ତୁମର ଋଣ ପରିଶୋଧ କରିବି । ଏ ପୁସ୍ତକରେ ଜାତିଜାତି ସୁବାସଯୁକ୍ତ କୁସୁମ ତୁମ ଚରଣ ତଳେ ଅର୍ପଣ କରି ବନ୍ଦନା କରୁଛି- ତୁମର ସେହି ଆଶିଷ ଏ ଅକିଞ୍ଚନ ଉପରେ ରହିଥାଉ...

***ପାଣ୍ଡବ***

*ପାର୍ବତୀ ନିବାସ, ଗୋଟିସାହି*






## କଥାପଦେ

"ନୟାଗଡ଼ ପରିକ୍ରମା" କେବଳ ନୟାଗଡ଼ ଗଦ୍ୟ-ବିବରଣୀ ନୁହେଁ । ଯଥାର୍ଥରେ ଏ ପୁସ୍ତକଟି ସେ ସମସ୍ତ ଜନ-ଭୂମିର ଏକ ଅନ୍ତରଙ୍ଗ ଭାବଚିତ୍ର । ନୟାଗଡ଼ ଜିଲ୍ଲା କହିଲେ ତା' ଭିତରେ ସମ୍ପୁଟିତ ହୋଇ ରହିଛନ୍ତି ଚାରିଗୋଟି ଏକକ-ଲୋକାଞ୍ଚଳ, ଯଥା: ନୟାଗଡ଼, ଖଣ୍ଡପଡ଼ା, ରଣପୁର ଓ ଦଶପଲ୍ଲା । ଚାରିଟିଯାକ ପୂର୍ବତନ ଗଡ଼ଜାତ ମାଟି । ଦୀର୍ଘ ବର୍ଷ ଧରି ଏ ସବୁ ଥିଲେ ରାଜା-ଶାସିତ ଜନପଦ । ବ୍ରିଟିଶ୍ ଅମଳରେ ଥିଲେ କରଦରାଜ୍ୟ ବା ସାମନ୍ତ ରାଜ୍ୟ, "ପ୍ରିନ୍ସ୍‌ଲି ଷ୍ଟେଟ୍" ।

ସ୍ୱାଧୀନତା ଆସିଲା । ଭୂମିର ପରିଚୟ ବଦଳିଲା । ଏବେ ସେ ଚାରିଟିଯାକ ପୂର୍ବତନ ରାଜ୍ୟ ଗୋଟିଏ ଗୋଟିଏ ବିଧାନସଭା କ୍ଷେତ୍ର ଏବଂ ସେମାନଙ୍କର ସମ୍ମିଶ୍ରଣ ପାଲଟିଛି ନୟାଗଡ଼ ଜିଲ୍ଲା ଯାହାକି ମାତ୍ର ତିରିଶି ବତିଶି ବର୍ଷର ଏକ ସ୍ୱତନ୍ତ୍ର ପରିଚୟ ବହନ କରୁଛି । ହେଲେ ଭୂମି ବହୁ ପ୍ରାଚୀନ । ଲୋକ ଜୀବନ, ଚଳଣି,

ପରମ୍ପରା, କଳା, କୃଷି, ଶିକ୍ଷା, ଖାଦ୍ୟ, ବସନ, ବିଶ୍ୱାସ ଆଦି ସବୁ କଥା ଗୋଟାଏ ବିଶାଳ ମନ୍ଦିର ଗର୍ଭଗୃହ ପରି । ସେ ସବୁକୁ ସାଉଁଟି ପାଇବା ବା ସେ ସମସ୍ତ ଉପରେ ଆଲୁଅ ପକେଇ ଲୋକଲୋଚନକୁ ଆଣିବା କ'ଣ ଏତେ ସହଜ କଥା ? ସେଥିପାଇଁ ଗଭୀର ଅଭିନିବେଶ ଦରକାର । ଦୀର୍ଘ ଗବେଷଣା ଆବଶ୍ୟକ । ତା' ସହିତ ଲୋଡ଼ା ନୟାଗଡ଼ ସହ ଗଭୀର ପ୍ରେମ-ସମ୍ପୃକ୍ତି ।

ଉପରୋକ୍ତ କଥାଗୁଡ଼ିକୁ ଏକାଠି କରି ବନ୍ଧୁ ପାଣ୍ଡବ ନାୟକ ପ୍ରସ୍ତୁତ କରିଛନ୍ତି ତାଙ୍କ ଦୀର୍ଘ ସାଧନା ଓ ସିଦ୍ଧିର ଦସ୍ତାବିଜ୍ - "ନୟାଗଡ଼ ପରିକ୍ରମା" । ପ୍ରତିଟି ବିଧାନସଭା କ୍ଷେତ୍ରର ପ୍ରାକୃତିକ ପରିଚୟ ସଙ୍ଗକୁ ସେଠାକାର ଅଧିବାସୀ, ଚଳଣି, ଖାଦ୍ୟପେୟ, କଳା, ସାହିତ୍ୟ, ସଂସ୍କୃତି, ଶିକ୍ଷା ଆଦି ନାନା କଥାକୁ ସେ ଗୁନ୍ଥିଛନ୍ତି ଜଣେ ଅନବଦ୍ୟ ମାଳାକାର ପରି । ଖୁବ୍ ପରିଶ୍ରମ ମଧ୍ୟ କରିଛନ୍ତି । ସେଥିପାଇଁ ସେ ଧନ୍ୟବାଦର ପାତ୍ର ଅଟନ୍ତି । ବୃତ୍ତିରେ ଶିକ୍ଷକ ମାତ୍ର ଅବସର ପରେ ସେ ନିଜର ମନ ଓ କଲମକୁ ବିଶ୍ରାମ ନ ଦେଇ ତୋଳି ଧରିଛନ୍ତି ଏଇ ଅନନ୍ୟ କୃତିଟିକୁ । ନିଜ ଜନ୍ମ-ବାସ-କର୍ମଭୂମିର ସାଉଁଟା ଇତିହାସ । ସାଉଁଟିବା କ୍ରମରେ ହୁଏତ ସବୁ ଟିକିନିଖି ଖବର ପାଇବା ତାଙ୍କ ପକ୍ଷରେ ସମ୍ଭବ ହୋଇନାହିଁ, ମାତ୍ର ଯେତେଯାକ ସଂଗ୍ରହ କରିଛନ୍ତି, ସେ ସବୁ ଅକୃତ୍ରିମ ପ୍ରଶଂସାର ହକ୍‌ଦାର ନିଶ୍ଚୟ ।

ପୁସ୍ତକଟି କେବଳ ଗୋଟାଏ ଅଞ୍ଚଳର ଇତିହାସ ନୁହେଁ । ଗୋଟାଏ ଦୀର୍ଘ ସାଧନା, ଅନ୍ୱେଷା ଓ ଅଭିବ୍ୟକ୍ତିର ବିଶାଳ ଅକ୍ଷର-ରୂପ । ଏକ ଅନାଲୋଚିତ ଅଧ୍ୟାୟର ମୁକୁଳା ସ୍ୱର ଏ ଗ୍ରନ୍ଥ । ମୋର ଆଶା 'ନୟାଗଡ଼ ପରିକ୍ରମା' ସଂକଳନଟି ପାଠକମାନଙ୍କ ପାଇଁ ଅଶେଷ ଉପକାରୀ ସାବ୍ୟସ୍ତ ହେବ ।

ବାଣ ...

# ସୂଚୀପତ୍ର

## ପ୍ରଥମ ଅଧ୍ୟାୟ

# ନୟାଗଡ଼

ନୟାଗଡ଼ର ଭୌଗୋଳିକ ପୃଷ୍ଠ ଉତ୍ତର ଅକ୍ଷାଂଶ ୧୯° ୫୪' ରୁ ୨୦° ୩୨' ଏବଂ ପୂର୍ବ ଦ୍ରାଘିମା ୮୪° ୨୯' ରୁ ୮୫° ୮୭' ମଧ୍ୟରେ ଅବସ୍ଥିତ। ଏହାର ଚତୁଃସୀମା ପୂର୍ବରେ କଟକ ଓ ଖୋର୍ଦ୍ଧା ଜିଲ୍ଲାର ସରହଦ। ଦକ୍ଷିଣରେ ଗଞ୍ଜାମ ଜିଲ୍ଲାର ସରହଦ, ପଶ୍ଚିମରେ କନ୍ଧମାଳ ଓ ବୌଦ୍ଧ ଜିଲ୍ଲାର ସରହଦ ଉତ୍ତରରେ ମହାନଦୀର ଦକ୍ଷିଣ ତଟକୁ ଛୁଇଁଥିବା ଏକ ବିସ୍ତାର ବନାଞ୍ଚଳ ଭୂଖଣ୍ଡ। ଏହାର ଆୟତନ ୩୮୯୦ ବର୍ଗକିଲୋମିଟର। ନୟାଗଡ଼ ସମୁଦ୍ର ପତ୍ତନଠାରୁ ୫୮୪ ଫୁଟ (୧୭୨ମି) ଉଚ୍ଚରେ ପ୍ରତୀୟମାନ।

**ପ୍ରାକୃତିକ ବିଭାଗ:**

ନୟାଗଡ଼ ଆରଣ୍ୟକ ଭୂମି ଉପରେ ଗଢ଼ିଉଠିଛି। ଏହାର ଭୂମି ପଶ୍ଚିମ ଦକ୍ଷିଣରୁ ପୂର୍ବ ଉତ୍ତର ଆଡ଼କୁ ଢାଲୁ। ଏ ଭୂମି ପଶ୍ଚିମକୁ ପଶ୍ଚିମକୁ ଉଚ୍ଚ ଉଚ୍ଚ। ଏ ଅଞ୍ଚଳ ସରହଦ ଉପରୁ ଅଭ୍ୟନ୍ତର ଆବୋରି ଛୋଟବଡ଼ ପର୍ବତ ଥାକ ଥାକ ହୋଇ ଆକାଶ ଛୁଇଁ ଦଣ୍ଡାୟମାନ। ପଶ୍ଚିମ ଓଡ଼ିଶାକୁ ଯାତ୍ରାକରିବାର ପ୍ରବେଶ ଦ୍ୱାର ନୟାଗଡ଼। ଭୀମପଡ଼ା ବସଷ୍ଟାଣ୍ଡରୁ ଚାହିଁଦେଲେ, ଏହାର ନୀଳ ବିଗ୍ରହ ରୂପ ଚକ୍ଷୁ ଚକିତ କରେ। ଏ ଦୃଶ୍ୟର ଗଭୀରକୁ ଗଭୀରକୁ ନେତ୍ର ଭେଦ କରିଯାଏ। ଏ ଭୂମି ରୂପକୁ ଦୁଇଟି ପ୍ରାକୃତିକ ବିଭାଗରେ ବିଭକ୍ତ କରାଯାଏ। ପାର୍ବତ୍ୟ ଅଞ୍ଚଳ ଓ ଆରଣ୍ୟକ ପରିବେଷ୍ଟନୀ ମଧ୍ୟରେ ସମତଳ ଅଞ୍ଚଳ। ଏ ଆରଣ୍ୟକ ଇଲାକା ମୌସୁମୀ ଜଳବାୟୁ ଦ୍ୱାରା ପ୍ରଭାବିତ। ଏହାର ଉଦ୍ଭିଦମାନେ ବର୍ଷରେ ଥରେ ପତ୍ରଝଡ଼ା ଦିଅନ୍ତି। ବୃକ୍ଷଗୁଡ଼ିକ ପ୍ରଚଣ୍ଡ ନିଦାଘ ସହନ୍ତି। ବର୍ଷା ଶୀତରେ ପୁଲକିତ ହୁଅନ୍ତି। ପାର୍ବତ୍ୟ ଅଞ୍ଚଳରୁ ବହି ଆସିଥିବା ନଦୀମାନେ ପାହାଡ଼ଘେର ମଧ୍ୟରେ ସମତଳ ଉପତ୍ୟକା ଭୂମି ସୃଷ୍ଟିକରି ତଳକୁ ବହିଯାଇଥାନ୍ତି। ପାର୍ବତ୍ୟ ଅଞ୍ଚଳର ଆୟତନ ୨୦୮୦.୯୭ ବର୍ଗ କିଲୋମିଟର। ସମତଳ ଭୂମିର ଆୟତନ ୧୮୦୯.୩ ବର୍ଗ କି.ମି। ଉଭୟ ଭାଗର ମାଟି ଉର୍ବର। କଳାମାଟି, ବାଲିଆ ଦୋରସା ମାଟି, ଖଳିମାଟି, କଳାମଟାଳ ମାଟି, ଖଳିମଟାଳ ମାଟି, ରଙ୍ଗମାଟି। ଭିନ୍ନ ଭିନ୍ନ ରଙ୍ଗର ପଥୁରିଆ ମୋରମ ମାଟି। ଏ ମାଟି କୃଷି ଉପଯୋଗୀ ମାଟି।

ନୟାଗଡ଼ ଓଡ଼ିଶା ରାଜ୍ୟର ମଧ୍ୟବର୍ତ୍ତୀ ଅଞ୍ଚଳରେ ଅବସ୍ଥିତ। ଏହି ଅଞ୍ଚଳ ଉପକୂଳାଞ୍ଚଳ ଏବଂ ପଶ୍ଚିମାଞ୍ଚଳକୁ ଛୁଇଁ ରହିଛି। ମଗଧ ସମ୍ରାଟ ଅଶୋକ ଖ୍ରୀ.ପୂ: ୨୬୧ରେ କଳିଙ୍ଗ ବିଜୟ କଲେ। କଳିଙ୍ଗ ଯୁଦ୍ଧର ପୂର୍ଣ୍ଣ ବିବରଣୀ ଅଶୋକଙ୍କର ତ୍ରୟୋଦଶ (XIII Rock Edic) ଶିଳାଲେଖରେ ବର୍ଣ୍ଣନା କରାଯାଇଛି। ଏହି ଯୁଦ୍ଧରେ ଏକ ଲକ୍ଷ ଲୋକ ମୃତ୍ୟୁବରଣ କଲେ, ଏକଲକ୍ଷ ପଚାଶ ହଜାର ଲୋକ ବନ୍ଦୀ

ହୋଇଥିଲେ, ଏକ ଲକ୍ଷ ପଚାଶ ହଜାର ଲୋକ ଆହତ ହୋଇଥିଲେ। ଏହି ଯୁଦ୍ଧରେ ନେତୃତ୍ୱ ନେଇଥିବା କୌଣସି ରାଜାଙ୍କର ନାମ ଉଲ୍ଲେଖ କରାଯାଇ ନାହିଁ। ଏଣୁ କଳିଙ୍ଗ ଏକପ୍ରକାର ଗଣତନ୍ତ୍ର ଶାସନାଧୀନ ରାଜ୍ୟ ଥିବାର ଅନୁମାନ କରାଯାଏ। ଏହା କଳିଙ୍ଗର କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀର ସମ୍ମିଳିତ ଜାତୀୟ ଯୁଦ୍ଧ ଥିଲା।

ଐର ଖାରବେଳ ଖ୍ରୀ.ପୂ ୪୯ରେ କଳିଙ୍ଗ ସମ୍ରାଟ ହେଲେ। ଐତିହାସିକ ବଡ଼ବଡୁଆଙ୍କ ମତରେ ଐର ଶବ୍ଦ ହେଉଛି ସଂସ୍କୃତ ଶବ୍ଦ ଆର୍ଯ୍ୟର ପାଲି ରୂପ। ଖାରବେଳଙ୍କ ପ୍ରଜାମାନେ ମୁଖ୍ୟତଃ ଆଦିବାସୀ ଥିଲେ। ଅଥଚ ସେ ଆର୍ଯ୍ୟ ଥିଲେ। ତେଣୁ ଆର୍ଯ୍ୟ ଭାବରେ ଆପଣାକୁ ପରିଚିତ କରାଇବା ପାଇଁ ସେ ନିଜକୁ ଐରରାଜା ବୋଲି ଅଭିହିତ କରିଥିଲେ। ଏହାକୁ ଲକ୍ଷ୍ୟକଲେ ଜଣାଯାଏ ନୟାଗଡ଼ ଅଞ୍ଚଳ ଏକ ଆଦିବାସୀ ଅଞ୍ଚଳ ଥିଲା। କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀର ଦଳପତିମାନଙ୍କ ଦ୍ୱାରା ଏ ଅଞ୍ଚଳ ଶାସିତ ହେଉଥିଲା। ଖାରବେଳ ଜୈନ ଥିଲେ। ସେ ବୌଦ୍ଧ ଶ୍ରମଣ (ବୌଦ୍ଧଭିକ୍ଷୁ) ଓ ବ୍ରାହ୍ମଣମାନଙ୍କ ପ୍ରତି ସହନଶୀଳ ଥିଲେ।

ଦଶମ ଶତାବ୍ଦୀ ବେଳକୁ ଭୌମକର ରାଜବଂଶର ତୋଷାଳୀ ରାଜ୍ୟ ଏବଂ ସୋମବଂଶୀମାନଙ୍କର କୋଶଳ ରାଜ୍ୟ ମଧ୍ୟରେ କେତକ ସ୍ୱାଧୀନ ରାଜ୍ୟ ମୁଣ୍ଡ ଟେକିଥିଲା। ହିଞ୍ଜିଳି ମଣ୍ଡଳରେ ଭଞ୍ଜ ରାଜବଂଶ, ଜୟପୁରର ନନ୍ଦ ରାଜବଂଶ, କୋଦଳକ ବଂଶର ଶୁଲ୍କୀ, କମଗର୍ଥ ମଣ୍ଡଳର ତୁଙ୍ଗ ରାଜବଂଶ, ବଣାଇ ମଣ୍ଡଳରେ ମୟୂର ରାଜବଂଶ, ଶ୍ୱେତକ ମଣ୍ଡଳର ଗଙ୍ଗବଂଶ।

ଡ. ପୂର୍ଣ୍ଣଚନ୍ଦ୍ର ଦାସଙ୍କ ଲିଖିତ ଓଡ଼ିଶା ଇତିହାସରେ ଓଡ଼ିଶାରେ ଭୌମକରଙ୍କର ଶାସନ ଆରମ୍ଭ କାଳ ୭୩୬ ଖ୍ରୀ.ଅ। ଏ ବଂଶର ୪ର୍ଥ ଶୁଭକରଦେବ କୋଶଳର ସୋମବଂଶୀ ରାଜା ପ୍ରଥମ ଜନ୍ମେଜୟଙ୍କ କନ୍ୟାଙ୍କୁ ବିବାହ କରିଥିଲେ। ପ୍ରଥମ ଜନ୍ମେଜୟଙ୍କ ରାଜତ୍ୱକାଳ ୮୯୨ରୁ ୯୨୨ ଖ୍ରୀ.ଅ। ସେ ଶାସନର ତୃତୀୟ ବର୍ଷରେ ରଣଭଞ୍ଜକୁ ନିହତ କରି ଖିଞ୍ଜିଳି ମଣ୍ଡଳରୁ ଭଞ୍ଜବଂଶକୁ ଗଞ୍ଜାମ ଅଞ୍ଚଳକୁ ତଡ଼ି ଦେଇଥିଲେ। ରଣ ଭଞ୍ଜ ୫୮ ବର୍ଷ ଶାସନ କରିଥିଲେ। ତାଙ୍କ ପୂର୍ବଜ ଭଞ୍ଜ ରାଜା ଶୀଳାଭଞ୍ଜ ଓ ଶତ୍ରୁଭଞ୍ଜ ଥିଲେ। ଏଣୁ ଖିଞ୍ଜିଳି ମଣ୍ଡଳ ଶାସନ କାଳ ସମ୍ଭବତଃ ନବମ ଶତାବ୍ଦୀର ପ୍ରଥମ ହୋଇପାରେ। ରଣ ଭଞ୍ଜ ସିଦ୍ଧେଶ୍ୱର ଶିବ ମନ୍ଦିର ନିର୍ମାଣ କରିଥିଲେ। ସେହି ଶିବ ମନ୍ଦିରଟି ନୀଳମାଧବ ବିଷ୍ଣୁ ମନ୍ଦିର ନିକଟରେ ନିର୍ମାଣ କରାଯାଇଥିବାର ବିଶ୍ୱାସ କରାଯାଏ। ଭଞ୍ଜବଂଶର ନେତଭଞ୍ଜ ତୃତୀୟ ବଞ୍ଜୁଳବାକଠାରେ ଭଞ୍ଜବଂଶର ନୂତନ ରାଜଧାନୀ ନିର୍ମାଣ କରିଥିଲେ। ରାଜଧାନୀ ବଞ୍ଜୁଳବାକକୁ ପଣ୍ଡିତ ବିନାୟକ ମିଶ୍ର ଆଧୁନିକ ଭଞ୍ଜନଗର ବୋଲି ପ୍ରକାଶ କରିଛନ୍ତି। ଭଞ୍ଜ ରାଜାମାନେ ଆଦିବାସୀ ଅଞ୍ଚଳରେ କଳା ସଂସ୍କୃତିର ବିକାଶ ପାଇଁ ବ୍ରାହ୍ମଣମାନଙ୍କୁ ବସତି ପ୍ରଦାନ କରିଥିଲେ।

ଓଡ଼ିଶା ଇତିହାସ କଂଗ୍ରେସ ସଭ୍ୟା ତଥା ନୟାଗଡ଼ ସ୍ୱୟଂଶାସିତ ମହାବିଦ୍ୟାଳୟ ଅର୍ଥନୀତି ବିଭାଗ ପ୍ରାଧ୍ୟାପିକା ଗୀତାଦେବୀଙ୍କ ନିବନ୍ଧ "ନୟାଗଡ଼ରୁ ପ୍ରାପ୍ତ ନେତଭଞ୍ଜଙ୍କ ତାମ୍ରଫଳକ"ରୁ ନୟାଗଡ଼ ଅଞ୍ଚଳରେ ଭଞ୍ଜରାଜାଙ୍କ ପ୍ରଭାବ ଜଣାପଡ଼େ ।

ନୟାଗଡ଼ ବଳରାମ ପାହାଡ଼ର ଉତ୍ତରକୁ ତିନି କିଲୋମିଟର ଦୂରରେ ଖଣ୍ଡୁ ଗାଁ, ମାଳିସାହି ବସତି ରହିଛି । ମାଳିସାହିସ୍ଥିତ ଶ୍ରୀ ଶ୍ରୀ ଗତିକେଶ୍ୱର ମହାଦେବଙ୍କ ନିକଟରେ ଏକ ରାଜକୀୟ ପୁଷ୍କରିଣୀ ରହିଛି । ମହାଦେବଙ୍କ ବେଢ଼ା ମଧ୍ୟରେ ଏକ ବେଦୀ ଉପରେ କ୍ଷୁଦ୍ର ପ୍ରସ୍ତର ସ୍ତମ୍ଭଟିଏ ବିଦ୍ୟମାନ । ସ୍ତମ୍ଭଟିରେ ଖୋଦିତ ଲିପି- 'ରଣଭଞ୍ଜଦେବ ପାନିଘାଟ' ଲିପି ତତ୍ତ୍ୱ ଦୃଷ୍ଟିରୁ ଲେଖାଟିର ସମୟକାଳ ଦଶମ ଶତାବ୍ଦୀ ମଧ୍ୟରେ ମନେହୁଏ । ଲିପିଯୁକ୍ତ ସ୍ତମ୍ଭଟିକୁ କେହି ପୁଷ୍କରିଣୀ ନିକଟରୁ ସଂଗ୍ରହ କରି ମନ୍ଦିର ପ୍ରାଙ୍ଗଣରେ ସଂରକ୍ଷିତ କରିଛନ୍ତି ।

ମାଳିସାହିସ୍ଥିତ ଏହି କ୍ଷୁଦ୍ର ଲେଖାଟି ଆଲୋଚନା କଲାବେଳେ- ନୟାଗଡ଼ ଅଂଚଳର ଜନୈକ ବ୍ୟକ୍ତି ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଏକ ତାମ୍ରଫଳକ ପାଇ ଓଡ଼ିଶା ମ୍ୟୁଜିୟମର ତତ୍କାଳୀନ କ୍ୟୁରେଟର ଶ୍ରୀ କେଦାରନାଥ ମହାପାତ୍ରଙ୍କୁ ପ୍ରଦାନ କରିଥିଲେ । ଦେବନାଗରୀ ଭାଷାରେ ଲିଖିତ ଉକ୍ତ ଫଳକଟି ଏକ ମୁଦ୍ରିକା ଆବୃତ୍ତ ତିନିଗୋଟି ଫଳକ ସଂଯୁକ୍ତ । ଫଳକଗୁଡ଼ିକର ଦୈର୍ଘ୍ୟ ଏବଂ ପ୍ରସ୍ଥ ଯଥାକ୍ରମେ ୬ ୧/୨″ ୩ ୧/୨″ ଓ ୩ ୧/୨″ ବ୍ୟାସ ବିଶିଷ୍ଟ ଏକ ତାମ୍ର ମୁଦ୍ରିକା ଦ୍ୱାରା ସଂଯୁକ୍ତ ଥିଲା । ମୁଦ୍ରିକା ଉପରେ ଥିବା ମୋହରଟି ନଷ୍ଟ ହୋଇଯାଇଥିଲା । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲ (Vol XI No. pp (୯-୧୭)ରେ ଏହାର ପାଠୋଦ୍ଧାର କରି ଏହାର ସମୟସୀମା ୯୩୩ ମସିହା (ଦଶମ ଶତାବ୍ଦୀ) ସମୟର ବୋଲି ନିର୍ଣ୍ଣୟ କରିଛନ୍ତି) ।

ଲେଖାଟିର ବର୍ଣ୍ଣିତ ବିଷୟବସ୍ତୁ- 'ପରମ ବୈଷ୍ଣବ ମହାରାଜା ନେତଭଞ୍ଜଦେବ, ପିତା ବିଦ୍ୟାଧର ଭଞ୍ଜଦେବ, ପିତାମହ ଶୀଳ ଭଞ୍ଜଦେବ, ପ୍ରପିତାମହ - ଦିଗଭଞ୍ଜଦେବ ନିଜର ତଥା ପିତାମାତାଙ୍କର ପୁଣ୍ୟ ବର୍ଦ୍ଧନ ନିମନ୍ତେ ନାନ୍ଦଖଣ୍ଡ ବିଷୟ ଅନ୍ତର୍ଗତ- 'ଗୁଣ୍ଡାପାଟକ' ଗ୍ରାମଟିକୁ 'ବିରେନ୍ଦ୍ରୀ ମଣ୍ଡଳ (ପଶ୍ଚିମବଙ୍ଗ) ଅନ୍ତର୍ଗତ ତ୍ରିଭୂବନପୁରନିବାସୀ ବଣିକ ଗର୍ଗଦତ୍ତଙ୍କ ପ୍ରପୌତ୍ର ଅପଦତ୍ତଙ୍କ ପୌତ୍ର ବପଦତ୍ତଙ୍କର ପୁତ୍ର ବଣିକ (କ) ଇବଦତ୍ତଙ୍କୁ ପ୍ରଦାନ କରିଛନ୍ତି ।

ତାମ୍ରଲେଖରେ ପ୍ରଦତ୍ତ ଗୁଣ୍ଡା ପାଟକ ଗ୍ରାମର ସରହଦ ନିମ୍ନମତେ ଚିହ୍ନଟ କରାଯାଇଛି । "ଶ୍ରୀ ରଣଭଞ୍ଜ ବନ୍ଧସ୍ୟ ପୂର୍ବସ୍ୟୁତ୍ତର (ରୋ) ପଲ୍ଲିକସୈକ ଦେଶ(ଃ) ଦକ୍ଷିଣେନ ମାର୍ଗଶି ସୀମା ପର୍ଯ୍ୟନ୍ତ...

ଏ ପର୍ଯ୍ୟନ୍ତ ମିଳିଥିବା ତଥ୍ୟ ଅନୁସାରେ ନୟାଗଡ଼ କେବେବି ଏକ ମଣ୍ଡଳ

(province)ର ମର୍ଯ୍ୟାଦା ପାଇନାହିଁ । ଏହା ଖିଞ୍ଜିଳି ମଣ୍ଡଳ, ଐରାବତ ମଣ୍ଡଳର ଏକ ବିଷୟ (ଜିଲ୍ଲା) ହିଁ ଥିଲା । ନାନ୍ଦଖଣ୍ଡକ ବିଷୟ ଅନ୍ତର୍ଗତ 'ଗୁଣ୍ଡାପାଟକ' । ନାନ୍ଦଖଣ୍ଡ ପରବର୍ତ୍ତୀ ନାମ ନବଖଣ୍ଡ ବା ନବଦୁର୍ଗ ପରବର୍ତ୍ତୀ ସମୟର ନୟାଗଡ଼ । ଗୁଣ୍ଡାପାଟକ ବର୍ତ୍ତମାନର ଖଣ୍ଡୁ ଗାଁ । ମାଳିସାହିର ପଡ଼ୋଶୀ ଗ୍ରାମ ନୟାଗଡ଼ ଜିଲ୍ଲାର ନିକଟସ୍ଥ । ନୟାଗଡ଼ ଅଞ୍ଚଳରେ ରଣଭଞ୍ଜଙ୍କ ନାମରେ ନାମିତ ପୁଷ୍କରିଣୀର ସନ୍ଧାନ ଅନ୍ୟତ୍ର ମିଳିନଥିବାରୁ ମାଳିସାହିର ରାଜକୀୟ ପୁଷ୍କରିଣୀଟି ଭଞ୍ଜ ରାଜା ସମୟର ଅଟେ ।

ଐରାବତ ମଣ୍ଡଳରେ ନନ୍ଦବଂଶର ରାଜାମାନେ ଶାସନ କରୁଥିଲେ । ଏହି ବଂଶର କାଳ ନବମ ଶତାବ୍ଦୀରୁ ଆରମ୍ଭ । ଏହି ବଂଶର ଶାସକ ଧ୍ରୁବାନନ୍ଦ ୧୦୨୯ ଖ୍ରୀଷ୍ଟାବ୍ଦରେ ଶାସନ କରିଥିଲେ । ଏମାନଙ୍କର ରାଜଧାନୀ ଐରାବତ ଏକ ବିସ୍ତୃତ ଅଞ୍ଚଳ ଥିଲା । ଏହି ଅଞ୍ଚଳ ସାମ୍ପ୍ରତିକ ଢେଙ୍କାନାଳ ଜିଲ୍ଲାର ଦକ୍ଷିଣାଞ୍ଚଳ, କଟକ ଜିଲ୍ଲାର ପଶ୍ଚିମାଞ୍ଚଳ ଓ ନୟାଗଡ଼ ଜିଲ୍ଲାର ସବ୍‌ଡ଼ିଭିଜନକୁ ନେଇ ଗଠିତ ।

ଉପରୋକ୍ତ ତଥ୍ୟକୁ ଅନୁସରଣ କରିବାର ଉଦ୍ଦେଶ୍ୟ ବ୍ରାହ୍ମଣମାନଙ୍କୁ ଏ ସମୟର ରାଜାମାନେ ନୟାଗଡ଼ର ବିକାଶ ପାଇଁ ଗ୍ରାମ ଦାନ କରିଥିଲେ । ସେ ସମୟରେ ନୟାଗଡ଼ରେ ସ୍ୱତନ୍ତ୍ର ରାଜଶାସକ ନଥିଲେ । ୧୨୫୫ ଖ୍ରୀ.ଅ.ରେ ମଧ୍ୟପ୍ରଦେଶ ରେଓ୍ୱା ଅଞ୍ଚଳରୁ ଆଗତ ବଘେଲ ବଂଶଜ ରାଜପୁତ୍ର ସୂର୍ଯ୍ୟମଣି ଚନ୍ଦ୍ରମଣି ନୟାଗଡ଼ରେ ରାଜତନ୍ତ୍ର ପ୍ରତିଷ୍ଠା କଲେ ।

**ଗଡ଼ଜାତ ଶାସନ:**

ବର୍ତ୍ତମାନର ନୟାଗଡ଼ ଜିଲ୍ଲା ଚାରୋଟି ଗଡ଼ଜାତରୁ ଗଠିତ ଯଥା ରଣପୁର, ନୟାଗଡ଼, ଖଣ୍ଡପଡ଼ା ଓ ଦଶପଲ୍ଲା । ଏହି ଗଡ଼ଗୁଡ଼ିକ ସ୍ୱତନ୍ତ୍ରଭାବେ ନିଜ ନିଜ ଇଲାକାକୁ ନେଇ ରାଜତନ୍ତ୍ର ଶାସନାଧୀନ ଥିଲା । ଏହି ଚାରି ଗଡ଼ଜାତ ମଧ୍ୟରେ ସବୁଠାରୁ ପୁରାତନ ରଣପୁର ରାଜଶାସନ । ଏହାର ପୌରାଣିକ ମତାମତ ଜନପ୍ରବାଦ ତଥା ରଣପୁର ରାଜବଂଶାବଳୀରୁ ଜଣାଯାଏ କଣ୍ଟିଲୋ ନୀଳମାଧବଙ୍କ ପରମ ଭକ୍ତ ଶବର ରାଜା ବିଶ୍ୱାବସୁଙ୍କ ଅନୁଜ ବିଶ୍ୱବାସବ ରଣପୁର ରାଜ୍ୟର ପ୍ରଥମ ରାଜା ଖ୍ରୀ.ପୂ ୧୭୨୭ । ନୟାଗଡ଼ରେ ରାଜତନ୍ତ୍ରର ପ୍ରତିଷ୍ଠା ୧୨୫୫ ଖ୍ରୀ.ଅ ସମୟରେ । ଦଶପଲ୍ଲା ରାଜ ଶାସନ କାଳ ୧୪୯୫ ଏବଂ ଖଣ୍ଡପଡ଼ା ରାଜଶାସନକାଳ ୧୫୯୯ ଖ୍ରୀ.ଅ । ଦେଶର ସ୍ୱାଧୀନତା ପର୍ଯ୍ୟନ୍ତ ଏହି ରାଜ୍ୟଗୁଡ଼ିକ ରାଜଶାସନାଧୀନ ଥିଲା । ଏହି ଚାରିଗଡ଼ ପରସ୍ପରର ସରହଦକୁ ଲାଗିରହିଥିଲା । ୧୯୪୮ ମସିହାରେ ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଆହ୍ୱାନକ୍ରମେ ଗଡ଼ଜାତଗୁଡ଼ିକୁ ଓଡ଼ିଶା ସରକାରରେ ମିଶାଇ ଦିଆଗଲା । ୧୯୪୯ରେ ଏହି ଚାରିଗଡ଼ ରଣପୁର, ନୟାଗଡ଼, ଦଶପଲ୍ଲା, ଖଣ୍ଡପଡ଼ା ମିଶାଇ ନୟାଗଡ଼ ଉପଖଣ୍ଡ

(ସବ୍‌ଡ଼ିଭିଜନ) ପୁରୀ ଜିଲ୍ଲା ଅନ୍ତର୍ଭୁକ୍ତ ହେଲା। ଓଡ଼ିଶା ସରକାର ଜିଲ୍ଲା ସଂପ୍ରସାରଣ ୧୯୯୩ ମସିହା ଅପ୍ରେଲ ୨ ତାରିଖରେ ତତ୍କାଳୀନ ନୟାଗଡ଼ ବିଧାୟକ ଶ୍ରୀଯୁକ୍ତ ଭାଗବତ ବେହେରାଙ୍କ ସମୟରେ ନୂତନ ଓଡ଼ିଶାର ନିର୍ମାତା, କଳିଙ୍ଗ ସ୍ୱାଭିମାନର ପ୍ରତୀକ ପ୍ରବାଦପୁରୁଷ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁପଟ୍ଟନାୟକ ହସ୍ତୀ ପୃଷ୍ଠରେ ନୟାଗଡ଼ ପରିକ୍ରମା କରି ପୋଲିସ ପଡ଼ିଆଠାରେ ଆଡ଼ମ୍ବରପୂର୍ଣ୍ଣ ସାଜସଜ୍ଜା ମଞ୍ଚରେ ନୟାଗଡ଼ବାସୀଙ୍କୁ ନୟାଗଡ଼ ଜିଲ୍ଲା ଉପହାର ଦେଇଥିଲେ। ଓଡ଼ିଶା ସରକାରଙ୍କ ଚାରୋଟି ନିର୍ବାଚନମଣ୍ଡଳୀ ରଣପୁର, ନୟାଗଡ଼, ଦଶପଲ୍ଲା, ଖଣ୍ଡପଡ଼ାକୁ ନେଇ ନୟାଗଡ଼ ଜିଲ୍ଲା ଗଠିତ।

ଆରଣ୍ୟକଭୂମି ନୟାଗଡ଼ ଜିଲ୍ଲାର ସର୍ବପୁରୁଣା ମଣିଷ ଆଦିବାସୀ। ଏମାନେ ଦ୍ରାବିଡ଼। ସମତଳ ଅଞ୍ଚଳମାନଙ୍କରେ ସାଧାରଣ ଜାତିର ଅଧିବାସୀ ବାସକରନ୍ତି। ଏମାନେ ଆର୍ଯ୍ୟ। ଆଦିବାସୀଙ୍କଠାରୁ ଅଧିବାସୀ ସଂଖ୍ୟା ବେଶି।

**୨୦୦୧ ଜନଗଣନା:**

| | ପୁରୁଷ | ମହିଳା | ମୋଟ ସଂଖ୍ୟା |
|---|---|---|---|
| ମୋଟ ଜନସଂଖ୍ୟା | ୪,୪୬,୧୬୭ | ୪,୧୮,୩୩୯ | ୮,୬୪,୫୧୬ |
| ଆଦିବାସୀ | ୨୫,୭୭୮ | ୨୫,୦୫୮ | ୫୦,୮୩୬ |

**୨୦୧୧ ଜନଗଣନା:**

| | ପୁରୁଷ | ମହିଳା | ମୋଟ ସଂଖ୍ୟା |
|---|---|---|---|
| ମୋଟ ଜନସଂଖ୍ୟା | ୫,୦୯,୬୩୬ | ୪,୬୦,୧୫୩ | ୯,୬୯,୭୮୯ |
| ଆଦିବାସୀ | ୨୯,୧୭୩ | ୨୫,୫୧୮ | ୫୮,୬୯୧ |





## ଦ୍ୱିତୀୟ ଅଧ୍ୟାୟ

# ନୟାଗଡ଼ର ନଦନଦୀ ଓ ପାହାଡ଼ ପର୍ବତ

ନୟାଗଡ଼ ପୂର୍ବ ପାର୍ଶ୍ୱରେ ଖୋର୍ଦ୍ଧା ଜିଲ୍ଲାର ପଶ୍ଚିମ ସରହଦଠାରୁ ଶୁକରମଲ୍ଲ ମଣିନାଗ ପାର୍ବତ୍ୟାଞ୍ଚଳକୁ ଧରି ପଶ୍ଚିମରେ ଫୁଲବାଣୀ ବୌଦ୍ଧ ଜିଲ୍ଲାର ପୂର୍ବ ସରହଦକୁ ଲାଗି ଚକାପାଦୁ ବାଇଶିପଲ୍ଲୀ ପାର୍ବତ୍ୟାଞ୍ଚଳ, ଉତ୍ତରରେ ମହାନଦୀର ନୀଳଧାରଠାରୁ ଦକ୍ଷିଣରେ ରତ୍ନମାଳା ପର୍ବତମାଳା (ଗୋଛା ପର୍ବତଶ୍ରେଣୀ) ଗୟଳସିଂ ପର୍ବତମାଳା ଅର୍ଥାତ୍ ଗଞ୍ଜାମ ଜିଲ୍ଲାର ଉତ୍ତର ସୀମା ପର୍ଯ୍ୟନ୍ତ ପ୍ରାକୃତିକ ସଂପଦରେ ଭରପୁର ମୌସୁମୀ ଅରଣ୍ୟର ଏକ ଆରଣ୍ୟକ ଭୂମିରୂପ । ଏହାର ଉଚ୍ଚାଙ୍ଗ ପର୍ବତମାନଙ୍କରୁ ଉଗ୍ରନାଳମାନ ବାହାରି କ୍ଷୁଦ୍ର କ୍ଷୁଦ୍ର ନଈର ଧାରରେ ମିଶି ଚାରୋଟି ବୃହତ୍ ନଦୀର ସ୍ରୋତ ପୂର୍ବ ଉତ୍ତରାମୁଖ ହୋଇ ନିମ୍ନଭୂମିରେ ଅପ୍ରଶସ୍ତ ସମତଳଭୂମି ଗଠନ କରି ନୟାଗଡ଼ ସରହଦ ଭିତରେ ମହାନଦୀରେ ମିଶିଛନ୍ତି । ଅବଶ୍ୟ କେତୋଟି ନଈ ନୟାଗଡ଼ର ପୂର୍ବପାର୍ଶ୍ୱରେ ରଣପୁର ଅଞ୍ଚଳରେ ଶୁକରମଲ୍ଲ ପର୍ବତମାଳାରୁ, ମଣିନାଗ ପାର୍ବତ୍ୟ ଖୋଲରୁ, ଜାମୁଗଣ୍ଡ ପର୍ବତ ଖୋଲରୁ ବାହାରି ଖୋର୍ଦ୍ଧା ଜିଲ୍ଲାକୁ ପ୍ରବେଶ କରି ଦୂରକୁ ପ୍ରବାହିତ ହୋଇଥିବାବେଳେ କେତେକ ଚିଲିକା ହ୍ରଦକୁ ପ୍ରବେଶ କରିଛନ୍ତି । ଏହାର ବିଶାଳ ପ୍ରାକୃତିକ ସଂପଦ ଯଥା- ଉଭିଦସଂପଦ, ପ୍ରାଣୀସଂପଦ, ଜଳସଂପଦ ଜନଜୀବନକୁ ବିଶେଷଭାବେ ପ୍ରଭାବିତ କରିଥିବାର ଅନୁଭବ୍ୟ । ରମ୍ୟ ପ୍ରାକୃତିକ ପରିବେଶଘେର ମଧ୍ୟରେ ଓଡ଼ ସଂପ୍ରଦାୟ ଓ ଆଦିବାସୀ ସଂପ୍ରଦାୟର ମହାମିଳନରେ ଆଧାରିତ ନୟାଗଡ଼ କୁସୁମୀ ସଭ୍ୟତା । ଏହାର ପାର୍ବତ୍ୟ ଉପତ୍ୟକାର ଚଉହଦୀ ମଧ୍ୟରେ ନଦୀମାନ ପ୍ରବାହିତ ହୋଇ ଅନେକ ଲୋକକଥା, ଇତିହାସ କଥା ଓ ପୌରାଣିକ ଶ୍ରୁତିକୁ ଆଧାର କରି ଏହାକୁ ଓଡ଼ିଶା ମାନଚିତ୍ରରେ ସ୍ୱତନ୍ତ୍ର ଚିହ୍ନଟ କରାଏ ।

ନୟାଗଡ଼ ପାହାଡ଼ ପର୍ବତ ଦ୍ୱାରା ଆଚ୍ଛାଦିତ ଏକ ପାର୍ବତ୍ୟ ଅଞ୍ଚଳ । ବନବିଭାଗ ତରଫରୁ ଏହାର ପାର୍ବତ୍ୟ ଇଲାକାକୁ ଦୁଇଭାଗରେ ବିଭକ୍ତ କରାଯାଇଛି । ଯଥା- ନୟାଗଡ଼ ଆଞ୍ଚଳିକ ବନବିଭାଗ ଓ ମହାନଦୀ ବନ୍ୟପ୍ରାଣୀ ବନବିଭାଗ । ବନ୍ୟପ୍ରାଣୀ ବିଭାଗକୁ ଦୁଇଭାଗରେ ବିଭାଜନ କରାଯାଇଛି- ମହାନଦୀ ବନ୍ୟପ୍ରାଣୀ ବିଭାଗ ଓ ବାଣୀଗୋଛା ବନ୍ୟପ୍ରାଣୀ ବିଭାଗ । ପୁନଶ୍ଚ ଆଞ୍ଚଳିକ ବନବିଭାଗକୁ ବୟାଳିଶ ଉପବନ ବିଭାଗରେ ବିଭକ୍ତ କରାଯାଇଛି । ଯଥା- ଆମ୍ବଲିମ୍ବା, ବାହାଡ଼ାଝୋଲା, ବଳରାମ, ବାଲିସିଂସା, ବାନ୍ଦର, ବଙ୍କାମୁଣ୍ଡା, ବରଖୋଲା, ସେଣ୍ଟ୍ରାଲ ଜଙ୍ଗଲ, ଚଢ଼େଇବସା, ଚଢ଼େୟାପଲ୍ଲୀ, ଛଦେଶ, ବେଙ୍ଗା ପାହାଡ଼, ଗଣିଆ, ଗୟଳସିଂହ, ଗୋଛା, ଗୁରିଆବାରି, ହନୁମନ୍ତିଆ, ହାତୀମୁଣ୍ଡା, ଖଡିଆ, ଡ଼ମସାହି, ମାଇଛେଳି ସଂପଡ଼ା, ମଇଁଷିବିନ୍ଧା, ମକର ପ୍ରସାଦ, ମଣିଭଦ୍ରା, ମାଟିଆ, ନଶଘର, ନୂଆଗାଁ,

ପାଲବା, ପଞ୍ଚୁପାଣ୍ଡବା, ପଥରା, (ଦର୍ପନାରାୟଣପୁର) ପଥରଗଣ୍ଡ, ପଥରକଟା, ପୋଇବାଡ଼ି, ପିଠାଖାଇ, ପୋଖରୀ ଗୋଛା, ରଗଡ଼ିମଡ଼ା, ରତାଦେଇ, ରକ୍ଷୀ, ସାପୁଆ, ଶିଖରପୁର, ଶିମିଳିବାଙ୍କ, ଶୂଳିଆ, ପତରାବଣୀ, ଜାମୁବଣୀ । ଏହି ବନବିଭାଗମାନଙ୍କରୁ ଉଚ୍ଚନୀଚ ଭୂମି ଅତିକ୍ରମି ସର୍ପିଳ ଗତିରେ ନଦୀମାନେ- ବୃଉଙ୍ଗ, କୁଆଁରିଆ, (କୁମାରିକା) ଡ଼ାହୁକା, କୁସୁମୀ ଓଡ଼ିଶାର ବୃହତ୍ତମ ନଦୀ ମହାନଦୀ ବକ୍ଷରେ ଅମାପ ଜଳରାଶି ଧାରଣ କରି ନୟାଗଡ଼ ଜିଲ୍ଲାର ଉତ୍ତରପାର୍ଶ୍ୱରେ କଣ୍ଟିଲୋ ନୀଳମାଧବ ଜୀଉଙ୍କ ଘାଟ ତୁଠ ଦେଇ ବିଶାଳ କାୟା ବିସ୍ତାର କରି କଟକ ଜିଲ୍ଲାକୁ ପ୍ରବେଶ କରୁଛି । ନୟାଗଡ଼ ଜିଲ୍ଲାର ଆଭ୍ୟନ୍ତରରୁ ଯେତେଗୋଟି ନଦୀ ପ୍ରବାହିତ ହୋଇଛନ୍ତି ସମସ୍ତେ ମହାନଦୀର ଉପନଦୀ ।

ନୟାଗଡ଼ ଜିଲ୍ଲାର ଦଶପଲ୍ଲା ତହସିଲ ଅକଳନ ବନସଂପଦର ଗନ୍ତାଘର । ତହସିଲର ପଶ୍ଚିମ ଇଲାକାର ଦକ୍ଷିଣରୁ ଉତ୍ତରରେ ମହାନଦୀ କୂଳ ପର୍ଯ୍ୟନ୍ତ ଗଞ୍ଜାମ, ଫୁଲବାଣୀ,ବୌଦ୍ଧ ସରହଦକୁ ଛୁଇଁ ଠିଆ ହୋଇଛନ୍ତି । ଟାକରା ରାସ୍ତାର ବାମପାର୍ଶ୍ୱରେ ବାଣିଗୋଛାର ଆମ୍ବଲିମ୍ବା ପର୍ବତ, କୁଲୁରୁ କୁମ୍ଭାର ନଶଘର ପାହାଡ଼ ଓ ବାଣିଗୋଛାର ଉତ୍ତରକୁ ବାଇଶିପଲ୍ଲୀ ଅଞ୍ଚଳର ପର୍ବତମାଳା । ଟାକରାର ଡାହାଣକୁ ଲମ୍ବିଛି ମକରପ୍ରସାଦ ଝାଡ଼ଜଙ୍ଗଲ ଯେ ଜଙ୍ଗଲ । ମହାନଦୀ ପର୍ବତମାଳା ନିମ୍ନଭୂମି ମହାନଦୀ ଶଯ୍ୟାରୁ ତୀକ୍ଷ୍ଣ ଶିର ଟେକି ଆକାଶକୁ ଛୁଇଁଲା ଭଳି ମନେହୁଏ । ସେମାନଙ୍କ ମଧ୍ୟରୁ ଗୋଆଲ ଦେଓ ପର୍ବତ, ମଣିଭଦ୍ରା ପର୍ବତ, ଛତାଦେଇ ପର୍ବତ ଅନ୍ୟତମ । ଶ୍ରୀ ନୀଳମଣି ବିଶୋଇ, ସହକାରୀ ଦେବାନ, ଦଶପଲ୍ଲା ଷ୍ଟେଟ ଦଶପଲ୍ଲା ଭୂଗୋଳରେ ପ୍ରକାଶ କରିଛନ୍ତି ।

**ଗୋଆଲ ଦେଓ :** ଗୋଆଲ ଦେଓ ଦଶପଲ୍ଲାର ସବୁଠାରୁ ଉଚ୍ଚ ପର୍ବତ । ଏହା ମହାନଦୀ ସାତକୋଶିଆ ଗଣ୍ଡ ନିକଟବର୍ତ୍ତୀ ବଡ଼ମୂଳଠାରେ ଅବସ୍ଥିତ । ଏହାର ଉଚ୍ଚତା ପ୍ରାୟ ୨୫୦୦ ଫୁଟ । ଏହିଠାରୁ ପ୍ରଥମେ ପଶ୍ଚିମକୁ ମହାନଦୀ ସାତକୋଶିଆ ଗଣ୍ଡ ରହିଛି । ଏହି ଗଣ୍ଡ କୂଳରେ ବାଇଗଣିଆ ପର୍ବତ ଓ ପଦ୍ମତୋଳା ଘାଟି ଅଛି ।

**ମଣିଭଦ୍ରା :** ମଣିଭଦ୍ରା ଦଶପଲ୍ଲାର ପର୍ବତମାନଙ୍କ ମଧ୍ୟରେ ଉଚ୍ଚତାରେ ଦ୍ୱିତୀୟ । ଏହି ପର୍ବତ ବିଷୟରେ ଗୋଟିଏ କିମ୍ବଦନ୍ତୀ ଅଛି । ଦ୍ୱାପର ଯୁଗରେ ଅର୍ଜୁନ ଏକାଦଶ ବନବାସ କରୁଥିବା ସମୟରେ ଏହି ପର୍ବତରେ ବାସ କରିଥିଲେ । ସେହି ସମୟରେ ଭଗବାନ ଶ୍ରୀକୃଷ୍ଣ ନବଗୁଞ୍ଜର ବେଶ ଧାରଣ କରି ଅର୍ଜୁନଙ୍କୁ ଦେଖା ଦେଇଥିଲେ । ଏହି ପର୍ବତରେ ବିଭିନ୍ନ ପ୍ରକାରର ବିଷଧର ସାପମାନ ଦେଖାଯାଆନ୍ତି । ଯଥା- ବୋଡ଼ା, ଅଜଗର, ମଣିଚୂଳ, ଅହିରାଜ, ଓ ନାଗ ଇତ୍ୟାଦି ।

**ଛତାଦେଇ ପାହାଡ଼:** ଏହା ମହାନଦୀକୂଳରେ ଅବସ୍ଥିତ । ବାଉଁଶଗାଳ ପର୍ଯ୍ୟାପ୍ତ ପରିମାଣରେ ଏହି ଜଙ୍ଗଲରେ ଦେଖାଯାଏ ।

**ଲଙ୍ଗଲଖୋଲ :** ଲଙ୍ଗଲଖୋଲ ଦଶପଲ୍ଲା ଉତ୍ତରାଞ୍ଚଳରେ ବାଇଶିପଲ୍ଲୀ ପ୍ରଗନାରେ ଅବସ୍ଥିତ। ଏଠାରେ ସର୍ପ ଆକାରରେ ଏକ ବିରାଟ ପଥର ଅଛି। ଏହାକୁ ଲୋକେ ସାନପଥର କହନ୍ତି। ଏଠାରେ ମଣିନାଗ ଠାକୁରାଣୀ ଅଛନ୍ତି। ଏ ପାହାଡ଼ର ଲମ୍ବ ୫ ମାଇଲ। ଶାଳ, ପିଆଶାଳ, ଶିଶୁ, ବାନ୍ଧଣ ପ୍ରଭୃତି ମୂଲ୍ୟବାନ କାଠ ଏଠାରୁ ମିଳେ। ଲଙ୍ଗଳ ଖୋଲ ନାଳ ଉପରେ ଏକ କ୍ଷୁଦ୍ର ଜଳପ୍ରପାତ ରହିଛି।

**ବୃତ୍ତଙ୍ଗ:** ଦଶପଲ୍ଲା ପଶ୍ଚିମ ଇଲାକାର ମୁଖ୍ୟନଦୀ ବୃତ୍ତଙ୍ଗ। ବୃତ୍ତଙ୍ଗ ନଦୀ ଗଞ୍ଜାମରୁ ବାହାରି କିଛିବାଟ ଫୁଲବାଣୀ ଜିଲ୍ଲାର ପଶ୍ଚିମକୁ ଗତିକରି ଚକାପାଦୁଠାରୁ ପୁନଶ୍ଚ ପଶ୍ଚିମକୁ ବାଣୀଗୋଛା ପର୍ଯ୍ୟନ୍ତ ବହିଯାଇ ପୂର୍ବ ଉତ୍ତରମୁଖୀ ହୋଇ ଭୋଗବାଡ଼ି, ମକର ପ୍ରସାଦ, ପଞ୍ଚୁପଲ୍ଲୀ ଅଞ୍ଚଳ ଦେଇ ମଣିଭଦ୍ରା ପର୍ବତ ପାଦଦେଶ ଦେଇ କଳାପାଟ ଠାକୁରାଣୀ ନିକଟରେ ବେଣ୍ଟପଡ଼ାଠାରେ ମହାନଦୀରେ ପଡ଼ିଅଛି। ଏହି ନଦୀର ଗଭୀରତା ସବୁ ଯାଗାରେ ସମାନ ନୁହେଁ। ଏହା ଏକ ଖରସ୍ରୋତା ଉଗ୍ର ନଦୀ। ପ୍ରତିବର୍ଷ ଏହିନଦୀ ସ୍ରୋତରେ ମନୁଷ୍ୟଠାରୁ ପଶୁ ପର୍ଯ୍ୟନ୍ତ ମୃତ୍ୟୁବରଣ କରିଥାନ୍ତି। ଏହାର ସ୍ରୋତ ଖୁବ୍ ଶୀଘ୍ର ବଢ଼େ ଓ ଶୀଘ୍ର ଛିଡ଼େ। ଏହି ନଦୀରେ ଏକ ଆନିକଟ କରାଯାଇ ନୟାଗଡ଼ ଅଞ୍ଚଳ ଆଭ୍ୟନ୍ତରକୁ ଜଳସେଚନ ବ୍ୟବସ୍ଥା ପାଇଁ ଦୂର ନିରୀକ୍ଷଣ ଚାଲିଛି। ଏହି ନଦୀ ଉପରେ ମିନି ପାୱାର ପ୍ଲାଣ୍ଟର ଆୟୋଜନ ମଧ୍ୟ ଚାଲୁ ରହିଛି। ବୃତ୍ତଙ୍ଗ ଏକ ବାଣିଜ୍ୟଭିତ୍ତିକ ନଦୀ। ବର୍ଷା ଋତୁରେ ମହାଜନମାନେ ଏହି ନଦୀ ପଥକୁ ବାଣିଜ୍ୟପଥ ରୂପେ ବ୍ୟବହାର କରିଥାନ୍ତି। ନଦୀକୂଳରେ କାଠ ବାଉଁଶ ଜମାକରି ରଖିଥାନ୍ତି, ବର୍ଷା ଋତୁ ଆସିଲେ ଏହି ନଦୀର ସ୍ରୋତରେ କାଠ ବାଉଁଶର ଭେଳା ମହାନଦୀର ସ୍ରୋତକୁ ଛାଡ଼ି ଦେଇ ଦୂରସ୍ଥାନକୁ ପ୍ରେରଣ କରନ୍ତି।

ବାଣୀଗୋଛା ଓ ଟାକରାର ପୂର୍ବକୁ ଲମ୍ବିଛି ନୟାଗଡ଼ ଜିଲ୍ଲାର ସେଣ୍ଟ୍ରାଲ ଫରେଷ୍ଟ। ଏହି ପାର୍ବତ୍ୟାଞ୍ଚଳ ଟାକରା ଘାଟିଠାରୁ ଆରମ୍ଭ ହୋଇ ଘାଟିର ଉଭୟପାର୍ଶ୍ୱକୁ ବିସ୍ତାର କରିଛି। ନୟାଗଡ଼ର ଉଚ୍ଚତମ ଜାଗା ବିରିଗଡ଼ ସେଣ୍ଟ୍ରାଲ ଫରେଷ୍ଟ ଅଞ୍ଚଳରେ ଅବସ୍ଥିତ।

**ନୟାଗଡ଼ ଭୂସ୍ୱର୍ଗ ବିରିଗଡ଼:** ବିରିଗଡ଼ ପର୍ବତ ଦଶପଲ୍ଲାର ପଶ୍ଚିମରେ ଅବସ୍ଥିତ। ଏହା ଦଶପଲ୍ଲା ରାଜାଙ୍କର ଗୁପ୍ତ ଦୁର୍ଗ ଥିଲା। ମରହଟ୍ଟା ଓ ଶତ୍ରୁମାନଙ୍କ ଉତ୍ପାତରୁ ରକ୍ଷା ପାଇବା ପାଇଁ ଦଶପଲ୍ଲା ରାଜା ସୈନ୍ୟସାମନ୍ତ ସହ ଏଠାରେ ଅବସ୍ଥାନ କରୁଥିଲେ। ଏହାର ଉପର ଅଂଶକୁ ପ୍ରବେଶ କରିବା ଶତ୍ରୁମାନଙ୍କ ପକ୍ଷେ କଷ୍ଟକର। ଏହା ସୁଶୀତଳ ମନୋହର ରମଣୀୟ ସ୍ଥାନ। ପାହାଡ଼ ଉପରୁ ଚାହିଁଲେ ପାହାଡ଼ର ପାଦଦେଶ ବହୁତ ଗହୀରା ଦିଶେ। ପ୍ରଚଣ୍ଡ ଝଡ଼ା ଖରାରେ ଯଥା ବୈଶାଖ ଜ୍ୟେଷ୍ଠ

ମାସରେ ଏଠାରେ ପ୍ରଚୁର ଝରଣାଜଳ ମିଳେ। ବିରିଗଡ଼ ଉପରୁ ସୂର୍ଯ୍ୟୋଦୟ ଦର୍ଶନ ଚିତାକର୍ଷକ ଦୃଶ୍ୟ। ସତେ ଯେପରି ସୂର୍ଯ୍ୟ ପାଦତଳ ମାଟିରୁ ଉପରକୁ ଉଠିଆସୁଛନ୍ତି। ପାଦତଳୁ ସୂର୍ଯ୍ୟ ଉଦୟ ହେଲାପରି ଲାଗେ। ଏହି ଶୀତଳ ରମଣୀୟ ସ୍ଥାନରେ ଗୟଳପଲ୍ଲୀ, ହାତୀପଲ୍ଲୀ, ଗୋଠଗୋଠ ବଲ୍କକାପ୍ତା ଦେଖାଯାଆନ୍ତି। ଏହି ସୁରମ୍ୟ ସ୍ଥାନ ହାତୀ, ବ୍ୟାଘ୍ର, ଗୟଳମାନଙ୍କର ଆମୋଦ ପ୍ରମୋଦର ରତିକ୍ରୀଡ଼ାସ୍ଥଳୀ। ଏହି ସ୍ଥାନରେ ସବୁଜାତିର ପଶୁପକ୍ଷୀ ଦେଖାଯାଆନ୍ତି। ଏହା ବନ୍ୟଜୀବଙ୍କର ଏକ ସ୍ୱାସ୍ଥ୍ୟକର ସ୍ଥାନ। ଏଠାରେ ସୁସ୍ୱାଦୁ ଜଙ୍ଗଲି ଫଳ ମିଳେ। ଆଷାଢ଼ ପର୍ଯ୍ୟନ୍ତ ଛୋଟ ଛୋଟ ଆମ୍ବ ମିଳେ। ଏଣୁ ଏହି ସ୍ଥାନକୁ ନୟାଗଡ଼ର ଭୂସ୍ୱର୍ଗ କୁହାଯାଇପାରେ। ବିରିଗଡ଼ ପର୍ବତ ଉପରୁ ମହାନଦୀର ଦୃଶ୍ୟ ଚିତ୍ତବୋଧ କରେ।

ଦଶପଲ୍ଲାର ଏହି ପାର୍ବତ୍ୟାଞ୍ଚଳରେ ବ୍ୟାଘ୍ର, ଭାଲୁ, ଗୟଳ, ହାତୀ, କଲରାପତରିଆ ବାଘ, କିଆବାଘ, ଶମ୍ବର, ନେପାଳୀ ମୂଷା, ମାଙ୍କଡ଼, ଠେକୁଆ, ହରିଣ, ଖୁରାଣ୍ଟି ଆଦି ଜଙ୍ଗଲ ଜନ୍ତୁମାନେ ଦେଖିବାକୁ ମିଳନ୍ତି। ବାଦୁଡ଼ି, ପେଚା, କୁମ୍ଭାଟୁଆ, ନାହାକା ଶୁଆ, ଚାନ୍ଦିନୀ ଶୁଆ, ଶାରୀ, ଛଞ୍ଚାଣ, ଧଳାବଗ, କାଣ୍ଟିଆବଗ ଆଦି ପକ୍ଷୀମାନେ ଏ ଅଞ୍ଚଳରେ କ୍ରୀଡ଼ା କରନ୍ତି। ବର୍ତ୍ତମାନ ଜଙ୍ଗଲର ଘନତା କ୍ରମଶଃ ପତଳା ହୋଇଯାଉଥିବାରୁ ବନ୍ୟଜନ୍ତୁମାନଙ୍କର ସଂଖ୍ୟା କମି କମି ଆସୁଛି।

ଘଞ୍ଚ ଅରଣ୍ୟରେ ବାସକରୁଥିବା ଆଦିବାସୀ ଜଙ୍ଗଲରୁ ଲଘୁ ବନଜାତ ଦ୍ରବ୍ୟ ଫୁଲଝାଡ଼ୁ, ସବାଇ ଘାସ, ମହୁଲ, ଟୋଲ, କରଞ୍ଜ, ଝୁଣା, କେନ୍ଦୁ, ହରିଡ଼ା, ବାହାଡ଼ା, ଅଁଳା, ଶିଆଳି ପତ୍ର, କେନ୍ଦୁପତ୍ର, ଶାଳପତ୍ର ସଂଗ୍ରହ କରି ଜୀବିକା ଅର୍ଜନ କରେ। ବର୍ତ୍ତମାନ ଆଜିର ସଭ୍ୟସମାଜ ଯେଉଁମାନେ ଆର୍ଯ୍ୟ ବୋଲାନ୍ତି ଆଦିବାସୀ ଅଞ୍ଚଳରେ ଶୋଷଣ କରନ୍ତି। ନିଜର ସ୍ୱାର୍ଥ ପାଇଁ ଆଦିବାସୀ ଅଞ୍ଚଳରୁ ଜଙ୍ଗଲ କାଟି ସଫା କରିଦେଉଛନ୍ତି। ଫଳରେ ପ୍ରକୃତି ଜାତ ଜଙ୍ଗଲ ସମ୍ପଦ ହ୍ରାସପାଉଛି। ଆଦିବାସୀ ଜୀବନ ଧାରା ଦିନକୁ ଦିନ ଦାରିଦ୍ର୍ୟ ଆଡ଼କୁ ଗତି କରୁଛି। ଏହାର ଆଶୁ ସମାଧାନ ପାଇଁ ଜଙ୍ଗଲ ଭିତରେ ଆଦିବାସୀମାନେ ସଙ୍ଗଠିତ ହେଉଛନ୍ତି। ତା'ର ଉଦାହରଣ ସ୍ୱରୂପ ବାଣିଗୋଛା ଅଞ୍ଚଳରେ 'ମାଟି ମା ମହିଳା ମୋର୍ଚ୍ଚା' ଏମାନେ ନିଜର ସରଳ ସୁଗମ ଜୀବନ ଯାପନ ପାଇଁ ସରକାରଙ୍କ ନିକଟରେ ପ୍ରତିବାଦର ସ୍ୱର ଉତ୍ତୋଳନ କରୁଛନ୍ତି। ନିକଟ ଅତୀତରେ ବାଣୀଗୋଛାଠାରେ ରାସ୍ତା ଉପରେ ଆଦିବାସୀ ସଂଗଠନ ଜଙ୍ଗଲ ସୁରକ୍ଷା ପାଇଁ ରାସ୍ତାରୋକ ଆନ୍ଦୋଳନ କରିଥିଲା।

କେନ୍ଦ୍ରୀୟ ପର୍ବତର ପୂର୍ବପାର୍ଶ୍ୱକୁ ଲାଗି ପୋଖରୀଗୋଛା ପର୍ବତ। ଦଶପଲ୍ଲାରୁ ଭଞ୍ଜନଗର ରାସ୍ତାରେ ଗଲେ ଏହି ପର୍ବତ ଡାହାଣପଟେ ଚଢ଼େୟା ପଲ୍ଲୀ ପର୍ବତ ଗଞ୍ଜାମ ଫୁଲବାଣୀର ସରହଦକୁ ଲାଗିଛି। ପୋଖରୀଗୋଛାର ଚାନ୍ଦନୀ ପର୍ବତ

ଗଞ୍ଜାମ ସରହଦକୁ ଲାଗିଛି । ପୋଖରୀଗୋଛା ଅଞ୍ଚଳରୁ କୁଆଁରିଆ ବା କୁମାରୀକା ନଦୀ ବାହାରିଛି ।

**କୁଆଁରିଆ/ କୁମାରୀକା ନଦୀ :** କୁଆଁରିଆ ନଦୀ ପୋଖରୀଗୋଛା ଅଞ୍ଚଳରୁ ବାହାରି ବାରନାଳିଆର ସମସ୍ତ ପାଣିନେଇ ଦଶପଲ୍ଲା, ଖଣ୍ଡପଡ଼ା ରାଜ୍ୟ ଦେଇ ଧାଙ୍ଗିଡ଼ି ପାହାଡ଼ତଳେ କୁସୁମୀ ନଦୀରେ ମିଶି ମହାନଦୀରେ କଣ୍ଟିଲୋଠାରେ ପଡ଼ିଛି । କୁଆଁରିଆ ନଦୀ ଉପରେ କୁଆଁରିଆ ନଦୀବନ୍ଧ ନିର୍ମାଣ କରାଯାଇଛି । କୁଆଁରିଆ ବନପଥ ଦେଇ ଅତିକ୍ରମ କଲାବେଳେ ସ୍ଥାନେ ସ୍ଥାନେ କ୍ଷୁଦ୍ର ଆୟତନ ସମତଳଭୂମି ସୃଷ୍ଟିକରିଛି । ଏହି ସମତଳ ଅଂଚଳରେ ସାତପାଟଣା, ଖଣ୍ଡପଡ଼ା, ଡିହଗାଁ, ଦ୍ୱାର ଗାଁ ଦିଣ୍ଡାଭୂଇଁ ମଧଖଣ୍ଡ ଜଗନ୍ନାଥ ପ୍ରସାଦ, ଖଳିସାହି, ମର୍ଦ୍ଦରାଜପୁର, ବେଣାଗାଡ଼ିଆ ପ୍ରଭୃତି କୃଷି ସମୃଦ୍ଧ ଗ୍ରାମମାନ ଠିଆହୋଇଛି । କୁଆଁରିଆଠାରେ ଡ଼ିଅର ପାର୍କ କରାଯାଇଛି । ବହୁସଂଖ୍ୟକ ହରିଣ ଏ ପାର୍କରେ ହେପାଜତରେ ବିଚରଣ କରନ୍ତି ।

**ରତାଦେଇ ପର୍ବତ :** ମହୀପୁର ଜଙ୍ଗଲ ଇଲାକାର ଗୁମିମାଳରେ ଘୁମୁସର ସରହଦରେ ଠିଆ ହୋଇଛି ରତାଦେଇ ପର୍ବତ । ଏହି ପର୍ବତରେ ନାନା ଜାତିର ମୂଲ୍ୟବାନ ଉଦ୍ଭିଦ ଦେଖାଯାଆନ୍ତି । ଏହି ପର୍ବତଶିଖର ଦେଶରେ ଏକ ଶୀତତାପ ନିୟନ୍ତ୍ରିତ ଗୁମ୍ଫା ଅଛି । ଏହି ଗୁମ୍ଫାରେ ସନ୍ୟାସୀମାନେ ରହୁଥିଲେ । ଏ ଗୁମ୍ଫାର ଆୟତନ ପ୍ରଶସ୍ତ ଓ ଦୀର୍ଘତମ । ଏହାକୁ ଗୁମ୍ଫାର ବଡ଼ଦାଣ୍ଡ କୁହାଯାଏ । ଏହାର ଚଟାଣରେ ଦୁଇ ହଜାରରୁ ଉର୍ଦ୍ଧ୍ୱଲୋକ ଆରାମରେ ରହିପାରିବେ । ଗୁମ୍ଫାର ଭିତରକୁ ସରୁପଥ ଦେଇ ଭିତରକୁ ସୁଡ଼ଙ୍ଗ ରହିଛି । ଏହି ସୁଡ଼ଙ୍ଗ ମଧରେ ଜଗନ୍ନାଥଙ୍କର ଆସ୍ଥାନ ବୋଲି କୁହାଯାଏ । ଏହି ଗୁମ୍ଫା ଭିତରେ ଏକ ଶିଳାରୁ ପାଣି ଝରୁଥିବାର ଦେଖାଯାଏ । ଏହି ଝରକୁ ଗୁପ୍ତ ଗଙ୍ଗା କୁହାଯାଏ । ଗୁମ୍ଫାର ତଳପାର୍ଶ୍ୱକୁ ଜାତି ଜାତି ଫୁଲ ଓ ଫଳ ବଗିଚା ରହିଛି । ଏହି ପର୍ବତ କନ୍ଦରରୁ ଡାହୁକା ନଦୀ ବାହାରିଛି ।

**ଡାହୁକା :** ଘୁମୁସର ସରହଦରୁ ରତାଦେଇ ପର୍ବତରୁ ବାହାରି ଉତ୍ତରଦିଗକୁ ଗତିକରି ଭୁବନେଶ୍ୱର ବଲାଙ୍ଗିର ପ୍ରଧାନ ସଡ଼କ ଉପରେ ମହିପୁର ସେତୁକୁ ଭେଦକରି ପୂର୍ବମୁହାଁ ହୋଇ ପୁନଶ୍ଚ ନୟାଗଡ଼ ଖଣ୍ଡପଡ଼ା ରାସ୍ତା ଉପରେ ବୋଦାପଡ଼ା ସେତୁକୁ ଅତିକ୍ରମ କରି ହରିପୁର ଚମ୍ପତିପୁର ଦେଇ ଖେଡ଼ବାରଣାଠାରେ କୁସୁମୀ ନଦୀରେ ମିଶିଅଛି । ଏହି ନଦୀର ଉପକୂଳ ସମତଳ । ଏହି ଅଞ୍ଚଳରେ ସବୁ ଜାତୀୟ କୃଷି ହୋଇଥାଏ । ବିଶେଷକରି ଆଖୁ ଚାଷର ସମତଳଭୂମି ଡ଼ାହୁକାର ଉପକୂଳ । ଏହି ନଦୀର ଉତ୍ତରପାର୍ଶ୍ୱରେ ସମାନ୍ତର ଗତିରେ ପୋତାନଈ ନାମଧରି ନଈ ବହୁଅଛି ।

**ପଞ୍ଚପାଣ୍ଡବ ପାହାଡ଼, ହାତୀ ରାହାସ ପାହାଡ଼, ବିଚାର ପଥର :** ହାତୀମୁଣ୍ଡା ପର୍ବତର ଶାଖା ରଗଡ଼ିମଡ଼ା ପର୍ବତ, ରାଜଗିରି ପର୍ବତ । ଏହା ଖଣ୍ଡପଡ଼ାର ସାପୁଆ

ବନ ବିଭାଗକୁ ଲମ୍ବିଛି । ଏ ଜଙ୍ଗଲର ପଥ ଦୁର୍ଗମ । ପଞ୍ଚୁପାଣ୍ଡବ ପାହାଡ଼, ହାତୀମୁଣ୍ଡା ପାହାଡ଼ ଇଲାକାରେ ଅବସ୍ଥିତ । ଏହି ପାର୍ବତ୍ୟ ଅଞ୍ଚଳରେ ହାତୀଙ୍କର ଆଶ୍ରୟସ୍ଥଳୀ । ହାତୀମୁଣ୍ଡା, ଚେନାମୁଣ୍ଡା ପାହାଡ଼, ଗୟଳସ୍ଥଳୀ ପାହାଡ଼, ହାତୀ ରାହାସ ପାହାଡ଼, ପୋଲରା, ଉଡ଼ାବିକିରି, କିଳାପଦର ଗ୍ରାମର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । ଏ ସ୍ଥାନ ହାତୀମାନଙ୍କର ରାସ କ୍ରୀଡ଼ାସ୍ଥଳୀ । ଏଣୁ ଏ ପର୍ବତର ନାମ ହାତୀରାହାସ ପାହାଡ଼ ।ଏହି ପାହାଡ଼ର ଚକାପଥର ଗ୍ରାମ ଉପରେ ବିରାଟ ଚାଞ୍ଚରା ପଥର ରହିଛି । ଏ ପଥରର ଚାରିପାର୍ଶ୍ୱରେ ବିରାଟ ପଥର ଢ଼ାଲ ପରି ଘେରି ରହିଛି । ଏହାର ଭିତରକୁ ପ୍ରବେଶ କରିବାକୁ କ୍ଷୁଦ୍ର ରାସ୍ତାଟିଏ ଅଛି । ରାଜାଙ୍କ ଅତ୍ୟାଚାରରୁ ରକ୍ଷାପାଇବା ପାଇଁ କନ୍ଧ ପ୍ରଜାମାନେ ଏହି ଗୁପ୍ତପଥର ଉପରେ ବିଚାର କରୁଥିଲେ । ଏହି ପଥର ଉପରେ ନିଷ୍ପତି କରି କନ୍ଧମେଳି ପ୍ରଜାମେଳି ଆରମ୍ଭ ହେଉଥିଲା । ଏଣୁ ଏହାକୁ ବିଚାର ପଥର କୁହାଯାଉଛି ।

<u>ରାଜଗିରି :</u> ରାଜଗିରି ପର୍ବତରେ ମନୋରମ ଜାଗା ରହିଛି । ଏହି ପର୍ବତ ନୟାଗଡ଼ ରାଜା ଖଣ୍ଡପଡ଼ା ରାଜାଙ୍କର ସରହଦ ପର୍ବତ । ରାଜଗିରି ପର୍ବତରଶିଖର ଦେଶରେ ଏକ ପ୍ରଶସ୍ତ ଚାଞ୍ଚରା ପଥର ଅଛି । ଏହି ପଥର ଉପରୁ ଆକାଶକୁ ଛୁଇଁଦେଲା ପରି ଲାଗେ । ଜହ୍ନ ତାରା ପାଖକୁ ପାଖକୁ ଲାଗିଆସନ୍ତି । ଏହି ପାହାଡ଼ ଉପରେ ପଠାଣିସାମନ୍ତ ଚନ୍ଦ୍ରଶେଖର ତିନୋଟି ନଳ ସାହଯ୍ୟରେ ନକ୍ଷତ୍ରମାନଙ୍କ ଗତିବିଧି ଦେଖୁଥିଲେ । ତାରାମାନଙ୍କୁ ଗଣନା କରି ପ୍ରସିଦ୍ଧ ଜ୍ୟୋତିର୍ବିଜ୍ଞାନ ଶାସ୍ତ୍ର 'ସିଦ୍ଧାନ୍ତଦର୍ପଣ' ରଚନା କରିଥିଲେ । ଏହି ପର୍ବତରେ ମୂଲ୍ୟବାନ ଦରକାରୀ ଉଦ୍ଭିଦମାନ ଦେଖାଯାଆନ୍ତି ଏବଂ ଏଠାରେ ଏକ କ୍ଷୁଦ୍ର ଜଳପ୍ରପାତ ଦେଖିବାକୁ ମିଳେ ।

ଖଣ୍ଡପଡ଼ା ସାପୁଆ ପର୍ବତମାଳାର ଖଳଖଳାନଈ ଖଣ୍ଡପଡ଼ା ଗଡ଼ ଦେଇଗତି କରିଅଛି । ଏହି ନଈ ଉପରେ ସୁନାମୁହିଁ ବନ୍ଧ ନିର୍ମାଣ କରାଯାଇଛି । ଖଣ୍ଡପଡ଼ାର ବାରବାଙ୍କ ପର୍ବତ, ସାପୁଆ ପର୍ବତମାଳାରୁ ମୂଲ୍ୟବାନ କାଠମାନ ମିଳେ ।

ନୟାଗଡ଼ ତହସିଲର କେନ୍ଦ୍ରରେ ରକ୍ଷୀ, ବଳରାମ ଉତ୍ତରକୁ ମାଳିସାହି, କୋସକା ଅଞ୍ଚଳରେ କାଞ୍ଜିଆ ପାହାଡ଼, ଦକ୍ଷିଣ ପଶ୍ଚିମକୁ ଶୁଳିଆ ପର୍ବତ 'ତା'ର ପାହାଡ଼ମାଳା, ପୂର୍ବପାର୍ଶ୍ୱରେ ଶୁକରମଲ୍ଲର ପଶ୍ଚିମ ପାର୍ଶ୍ୱ, ପୂର୍ବପାର୍ଶ୍ୱରେ ଖତିଆଠାରୁ ଡ଼ମସାହି ପର୍ଯ୍ୟନ୍ତ ଟଣକା ପାହାଡ଼, ଚିରାମାଳ ଗହିର ଚାରିପାଖରେ ଗମେଇ କେଶରପୁର ପୁଆଣିଆ, ଗମ୍ଭାରିଡ଼ିହର ମଧ୍ୟରେ ତାଳସାହି ପାହାଡ଼, ଭଣ୍ଡାର ପାହାଡ଼, ଗୋଡିସାହି କଲ୍ୟାଣପୁରଠାରୁ କାଣିପଡ଼ା ନାଳ ପର୍ଯ୍ୟନ୍ତ ଧାଡ଼ି ମୁଣ୍ଡିଆ । ଏହାର ଦକ୍ଷିଣ ସୀମାରେ ପୂର୍ବରୁ ଦକ୍ଷିଣ ପଶ୍ଚିମ ଦିଗକୁ ଲମ୍ବି ଯାଇଥିବା ରତ୍ନମାଳା ଭଙ୍ଗିଳ ପର୍ବତ ଯାହାକୁ ଗୋଛା ପର୍ବତମାଳା କୁହାଯାଉଛି । ଗୋଛା ପର୍ବତ ଶ୍ରେଣୀରେ ବାଣୀଝରି, ନାଣ୍ଡିଗିରି,

ଜୟରାମ, ନେପାଳ, ଜାମୁଦଣ୍ଡା ପାହାଡ଼, କୁଟିବାରି ପାହାଡ଼ ଓ ଝଣ ଦମକା ପାହାଡ଼ମାନ ଅବସ୍ଥାନ କରିଛନ୍ତି । ଗୋଛାର ପଶ୍ଚିମକୁ ଓଡଗାଁ ପାର୍ଶ୍ୱରେ ଗୟଳସିଂହ ପାହାଡ଼ ଠିଆ ହୋଇଛି । ଗୋଛା ପର୍ବତମାଳାର ଉତ୍ତର ପୂର୍ବ ଦିଗରେ ରଣପୁର ଗଡ଼ ଉପରେ ମଣିନାଗ ପର୍ବତମାଳା ଆକାଶକୁ ଛୁଇଁ ଅବସ୍ଥାନ କରିଅଛି ।

ନୟାଗଡ଼ ରାଜାଙ୍କର ପ୍ରଥମ ରାଜବାଟୀ ଶୁଳିଆ ପର୍ବତରେ ଅବସ୍ଥିତ ରଳବଗଡ଼ । ବର୍ତ୍ତମାନ ରକ୍ଷୀ ବଳରାମର ଗୋହିରା ସୁଡ଼ଙ୍ଗ ପଥ ମଧ୍ୟଦେଶରେ ନୟାଗଡ଼ ଗଡ଼ର ଅବସ୍ଥିତି । ରଖୀବଳରାମର ମିଳିତ ପାଦଦେଶରେ ଚାରିଛକ ସୃଷ୍ଟି କରି ଚାରିଦିଗକୁ ପକ୍କା ସଡ଼କପଥ ପଡ଼ିଅଛି । ଏହି ଛକରୁ ପଶ୍ଚିମକୁ ପଶ୍ଚିମ ଓଡ଼ିଶାକୁ ସଂଯୋଗ କରାଯାଇଛି । ଦକ୍ଷିଣକୁ ଶରଣକୂଳ ଓଡ଼ଗାଁ ଦେଇ ଦକ୍ଷିଣ ଅଞ୍ଚଳକୁ ସଂଯୋଗ ହୋଇଛି । ଉତ୍ତରକୁ ଖଣ୍ଡପଡ଼ା ଗଡ଼କୁ ସଂଯୋଗ ହୋଇଛି ଏବଂ ପୂର୍ବରୁ ରାଜଧାନୀ ସଡ଼କପଥ ଏହି ଛକକୁ ଅତିକ୍ରମ କରି ପଶ୍ଚିମ ଓଡ଼ିଶାକୁ ସଂଯୋଗ କରିଛି ।

ଶୁଳିଆ ପର୍ବତରୁ ଶୁଳିଆ ନଈ ବାହାରି ପ୍ରବଳ ବେଗରେ ପୂର୍ବଆଡ଼କୁ ଗତିକରି ଲାଠିପଡ଼ା ଠାରେ କୁସୁମୀ ନଦୀରେ ପଡ଼ିଛି । ଏହି ପର୍ବତ ନୟାଗଡ଼ର ଉଚ୍ଚ ପର୍ବତ । ଏହାର ଦକ୍ଷିଣ ପଶ୍ଚିମ ପାର୍ଶ୍ୱରେ ରଳବ ଗଡ଼ । ନିକଟସ୍ଥ ଜାମୁପାଟଣା ସରହଦରେ ଦୂତିକେଶ୍ୱର ଶୈବପୀଠ । ଦୂତୀ ନାମକ କନ୍ଧୁଣୀ ଟୁଙ୍ଗା ମାସିଆ ଖୋଳୁଖୋଳୁ ଶିବ ଶକ୍ତି ଉପରେ ଖଣତା ବାଜି ରୁଧିର ଝରିଲା । ସୂର୍ଯ୍ୟମଣି ରାଜାଙ୍କୁ କହିଲାରୁ ରାଜା ଏହି ପୀଠକୁ ସଂସ୍କାର କରି ଶକ୍ତିପୀଠର ପୂଜା ପାର୍ବଣ ବଢ଼ାଇଛନ୍ତି । ଦୂତୀକେଶ୍ୱରଙ୍କ ଦକ୍ଷିଣ ପାର୍ଶ୍ୱରୁ କୁସୁମୀ ନଦୀ ପ୍ରବାହିତ ହେଉଛି ।

<u>କୁସୁମୀ :</u> ପଞ୍ଚଭୂତି ବେଡ଼ାର ପ୍ରଶସ୍ତ ଚାଞ୍ଚରା ପଥର ଉପରୁ କୁସୁମୀର ଉତ୍ପତ୍ତି ସ୍ଥଳ । ଗୟଳସିଂହ ନାଳ, ଶୁଳିଆନାଳ ଓ ବଲାଙ୍ଗି ନାଳ ଏହି ନଦୀର ପ୍ରଥମ ଭାଗରେ ଯୋଡ଼ିହୋଇ ଏହାର ଧାରାକୁ ମୋଟା କରିଛନ୍ତି । ଏହି ନଦୀର ଉପତଟରେ ଫୁଲର ବଣ ଢ଼ାଙ୍କି ରହିଥିବାରୁ ଏହାକୁ ପୁଷ୍ପବତୀ ନଦୀ କୁହାଯାଉଥିଲା । କ୍ରମେ ଏହାର ନାମ କୁସୁମୀ ନଦୀ ହେଲା । ଏହି ନଦୀ ପଶ୍ଚିମରୁ ରତ୍ନମାଳା ପର୍ବତର ଉପତ୍ୟକା ଦେଇ ପୂର୍ବାଭିମୁଖୀ ହୋଇଛି । ଡିମିସର ଗ୍ରାମ ବାରିତଳୁ ଉତ୍ତରାମୁଖୀ ହୋଇ ଉପତଟରେ ଅପ୍ରଶସ୍ତ ସମତଳ ଭୂମି ଗଠନ କରି ଉତ୍ତରକୁ ଉତ୍ତରକୁ ବହି କମେଇ ମୁହାଣରେ ମହାନଦୀରେ ପ୍ରବେଶ କରିଛି । ଏହାର ଦକ୍ଷିଣତଟରେ ପ୍ରବେଶ କରିଥିବା ନଦୀମାନେ ଅର୍ଥାତ୍ ରତ୍ନମାଳା ପର୍ବତରୁ ବାହାରିଥିବା ଦୁଆଣ୍ଟ ନଦୀ ଓ ନାଗଝର ନଦୀ ଉଗ୍ର ଖରସ୍ରୋତା ହୋଇଥିଲେ ହେଁ କୁସୁମୀର ସାନ୍ନିଧ ପାଇ ଶାନ୍ତ ଶୀତଳ ହୁଅନ୍ତି । ଏହି ନଦୀରେ ଅନେକ ବାଙ୍କ ସୃଷ୍ଟି ହୋଇଛି । ଏହା ଶାନ୍ତ, ଶୀତଳ, ନମ୍ର ପ୍ରବାହିତ ନଦୀ । ଏଣୁ ଲୋକେ ଏହି ନଦୀକୁ କୁସୁମୀ ନାମ ଦେଇଛନ୍ତି । ଶୁଳିଆ ନଈ ଶୁଳିଆ ପର୍ବତ ଖୋଲରୁ ବାହାରି ପୂର୍ବମୁଖୀ ହୋଇ ନୟାଗଡ଼ ଓଡ଼ଗାଁର

ସଡ଼କପଥ ଉପରେ ମାଛିପଡ଼ା ସେତୁ ଭେଦକରି ପୂର୍ବକୁ ଗତିକରି ଲାଠିପଡ଼ା ଠାରେ କୁସୁମୀ ନଦୀରେ ମିଶିଅଛି। ଦୁଆଣ୍ଟ, ନାଗଝର, ଡାହୁକା, କୁସୁମୀର ଉପନଦୀ।

ଦୁଆଣ୍ଟ : ଗୋଛା ପର୍ବତମାଳାର ବାଣୀଝରୀ ପାହାଡ଼ରୁ ବାଣୀଝରୀ ନାଳ ଜୟରାମ ନେପାଳ ପର୍ବତ ଅଞ୍ଚଳରୁ ମୁଣ୍ଡାଖାଲ ନାଳ, ପୁଟିବରି ନାଳ, ହାତୀଆନାଳ, ଅଙ୍ଗାରପଡ଼ା ନାଳ, ଖରିଆ ନାଳ, ଠାକୋଇ ନଈରେ ମିଶିଛନ୍ତି। ଏହି ନଈ କଲରାଝର ନାଳ ସୁନୁସୁନିଆ ନାଳରେ ମିଶି ଦୁଆଣ୍ଟ ନଦୀ ନାମ ଧାରଣ କରିଅଛି। ଦୁଆଣ୍ଟ ନଦୀ ଉପରେ ବୁଢ଼ାବୁଢ଼ୀଆଣୀ ବନ୍ଧ ନିର୍ମାଣ କରାଯାଇ ଏକ ଜଳଭଣ୍ଡାର କରାଯାଇଛି। ଏହି ଜଳଭଣ୍ଡାରରୁ ତଳମାଳରେ ଗୌଡପୁଟ, ଅରଡ଼ା, ପଞ୍ଚୁଡ଼ାମାନପୁର, ଗୋଡ଼ିପଲ୍ଲୀ, ଚଢ଼େୟାପଲ୍ଲୀ, ନନ୍ଦୀଘୋର, ପେଟା ପଲ୍ଲୀ, କେନ୍ଦୁ ପଲ୍ଲୀ, ଶିଖରପୁର, ଅଞ୍ଚଳ ପର୍ଯ୍ୟନ୍ତ ଜଳସେଚନ କରାଯାଇ କୃଷି ସଂପଦର ବିକାଶ କରାଯାଇଛି। ଦୁଆଣ୍ଟ ଉଗ୍ର ଖରସ୍ରୋତା ନଦୀ। ଏହା ପୂର୍ବଦିଗକୁ ଗତି କରିଅଛି। ଏହାର ଗତିପଥରେ ଡ଼ିମିସର ଠାରେ ନାଗଝର ନଦୀ ମିଶିଅଛି। ଏହାର ଉତ୍ପତିସ୍ଥଳ ବୁଢ଼ାବୁଢ଼ୀଆଣୀଙ୍କ ପୀଠରେ ଅକ୍ଷୟତୃତୀୟା ତିଥିରେ ବିରାଟ ଯାତ୍ରା ଅନୁଷ୍ଠିତ ହେଉଅଛି।

ନାଗଝର : ଗୋଛାର ଖୁମ୍ବପୋତା ନଈ, ଟାମେଣ ଘାଟି ନାଳ, ଶିମିଳି ଖଣ୍ଡ ନାଳ, ସାରୁ ଖଡିଆ ନାଳ, ଅସୁରଖୋଲ ନଈ, ଆମ୍ବିଳି ଗଣ୍ଡ ନଈ ଏକାଠି ହୋଇ ନାଗଝର ନଦୀ ହୋଇଛନ୍ତି। ଏ ନଦୀ ସର୍ପଭଳି ହିଂସ୍ର ଉଗ୍ର ଖରସ୍ରୋତା। ଏଠାକାର ଅଧିବାସୀ କୁହନ୍ତି ନାଗଝର ନାଗମୁଣ୍ଡ ଛିଣ୍ଡାଇ ଦେଇଛି। ଖୁବ୍ ପ୍ରତାପୀ କୋପୀ ନଈ। ସାନହାଣ୍ଡି,ବଡ଼ହାଣ୍ଡି ନାଗଝରର ଦୁଇଟି କ୍ଷୁଦ୍ର ଜଳପ୍ରପାତ। ପ୍ରବାଦ ଅଛି ଗରିବ ଲୋକ ଝିଅ ବିବାହ କାଳରେ ସୁନା ଅଳଙ୍କାର ଯୋଗାଡ଼ କରି ନପାରିଲେ ସେ ଢ଼ୋଲ ହୁଳହୁଳି ସହ ସାନ ହାଣ୍ଡିଠାରେ ବନ୍ଦାପନା କଲେ ଏକ ଫରୁଆ ଉପରକୁ ଉଠିଆସେ। ଯାହା ଭିତରେ ସୁନାଅଳଙ୍କାର ଗୁପ୍ତରେ ଥାଏ। ଗରିବ ଲୋକଟିର କାର୍ଯ୍ୟନିମିତ ସରିଗଲେ ସେହି ଫରୁଆଟିକୁ ଅଳଙ୍କାର ସହ ମୁଦକରି ସାନହାଣ୍ଡିକୁ ବନ୍ଦାପନା କରି ସାଷ୍ଟାଙ୍ଗ ପ୍ରଣାମ କରି ମୁଦ ଫରୁଆକୁ ଫେରାଇ ଦିଏ। ନାଗଝର ଗୋଛା ପର୍ବତରୁ ବାହାରି ଉତ୍ତରାମୁଖା ହୋଇ ଦୁଆଣ୍ଟ ସାଥିରେ ଡ଼ିମିସର ଠାରେ ମିଶି କୁସୁମୀରେ ମିଶିଛି।

କଇଁଫୁଲିଆ ନାଳ ଗୋଛା ପର୍ବତରୁ ବାହାରି ସୁନାନଟୀ ନୂଆଗାଁ ଠାରେ କୁସୁମୀ ଦୁଆଣ୍ଟ ଏକତ୍ର ହୋଇଛନ୍ତି। ସୁନାନଟୀ ତଳକୁ ରାଜଧାନୀ ଠାରୁ ପଶ୍ଚିମ ଓଡ଼ିଶାକୁ ବଲାଙ୍ଗୀର ସଡ଼କ ପଥରେ ନୟାଗଡ଼କୁ ପ୍ରବେଶ ପୂର୍ବରୁ ବଡ଼ପଣ୍ଡୁସର ଠାରେ ବିରାଟ ସେତୁ ନିର୍ମାଣ କରାଯାଇଛି କୁସୁମୀ ନଦୀ ଉପରେ।

ଯେତେଗୁଡ଼ିଏ ନଦୀପଥ ପ୍ରବନ୍ଧଟିରେ ଲେଖାଯାଇ ଉପରେ ଆଲୋଚନା କରାଯାଇଛି ସମସ୍ତ ନଦୀ ନୟାଗଡ଼ର ଜଳଧାରାକୁ ବୋହିନେଇ ମହାନଦୀ ଗର୍ଭରେ ମିଶିଯାଇଛନ୍ତି । ମାତ୍ର କେତୋଟି ନଈ ମଣିନାଗ ପର୍ବତରୁ, ଶୁକରମଲ୍ଲ ପର୍ବତରୁ, ଜାମୁଗଣ୍ଡ ଖୋଲରୁ ବାହାରି ହଡ଼ାନଈରେ ପ୍ରବେଶ କରି ଖୋର୍ଦ୍ଧା ଜିଲ୍ଲା ଆଡ଼କୁ ଗତି କଲାବେଳେ କେତୋଟି ଚିଲିକା ହ୍ରଦକୁ ପ୍ରବେଶ କରୁଛନ୍ତି । ମଲାଶୁଣି, ବଦାଗ୍ନି ନଈ ଶୁକରମଲ୍ଲରୁ ବାହାରି ହଡ଼ାନଈରେ ମିଶି ଖୋର୍ଦ୍ଧା ଜିଲ୍ଲାରେ ପ୍ରବାହିତ ହୋଇ ପୁନଶ୍ଚ କମେଇ ମୁହାଣ ପୂର୍ବରୁ ନୟାଗଡ଼ ଜିଲ୍ଲାରେ ପ୍ରବେଶ କରିଛି । ପଥରଖଣ୍ଡ ନାଳ ପଥରଖଣ୍ଡ ପାହାଡ଼ରୁ ବାହାରି ବଦାଗ୍ନିରେ ମିଶିଛି । ପଟିଆ ନାଳ ଖିଲାମୁଣ୍ଡାରୁ ବାହାରି ଚିଲିକାରେ ପଡ଼ିଛି । ନାକଠଣା ନଈ ଭେଟବର ବନ୍ଧତଳୁ ବାହାରିଛି । ଭାଲୁଝର, ଶୁଳିଆଝର ବାଣପୁର ଶାଳିଆ ଡ୍ୟାମରେ ପଡ଼ିଛନ୍ତି । ଏହି ନଈ ନାଳ ଗୁଡ଼ିକ ରଣପୁର ଅଞ୍ଚଳର କୃଷିବିକାଶର କାରଣ । ରଣପୁର ଗଡଉପରେ ମଣିନାଗ ପର୍ବତ । ମଣିନାଗର ଶିଖର ଦେଶରେ ରଣପୁର ରାଜାଙ୍କର ଆରଧ ଦେବୀ ମଣିନାଗ ଠାକୁରାଣୀଙ୍କର ପୀଠ ।

<u>ଲଡୁବାବା, ଭଣ୍ଡାର ପାହାଡ଼ :</u> ଶରଣକୂଳ ଉପରେ ଭଣ୍ଡାର ପାହାଡ଼ ଦଣ୍ଡାୟମାନ । ଏହି ପାହାଡରେ ମୂଲ୍ୟବାନ ଅରଣ୍ୟ ସଂପଦ ଯଥା- ମୂଲ୍ୟବାନ ବୃକ୍ଷ, ଆରଣ୍ୟକ ଜୀବମାନେ ବହୁଳ ପରିମାଣରେ ଥିଲେ । ଏହି ପାହାଡ଼ର ପୂର୍ବପାଦ ଦେଶରେ ଶକ୍ତିପୀଠ ଲଡୁବାବାଙ୍କର ଆସ୍ଥାନ । ନୟାଗଡ଼ଠାରୁ ଓଡ଼ଗାଁ ଦିଗରେ ଦକ୍ଷିଣ ପଥ ଭଣ୍ଡାର ପାହାଡ଼କୁ ଓଡ଼ିଆର ଦୀର୍ଘଉକାର ଆକୃତି କାଟି ଆଗକୁ ଯାଇଛି ।

<u>ରଘୁନାଥ ପୀଠ :</u> ଗୟଳସିଂ ପର୍ବତର ପାଦଦେଶରେ ଓଡଗାଁ ରଘୁନାଥ ଜୀଉଙ୍କର ଆରାଧସ୍ଥଳୀ । ତ୍ରେତୟା ଯୁଗରେ ଏହିଠାରେ ଅତ୍ରୀମୁନି ଆଶ୍ରମ ସ୍ଥାପନ କରିଥିଲେ । ଗୟଳସିଂ ପାହାଡ଼ରେ ଏକ ଶାମୁକା ଅଛି । ଏହି ଶାମୁକାରେ ସର୍ବଦା ଜଳଥାଏ । ତୀର୍ଥଯାତ୍ରୀ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲାପରେ ଓଡ଼ଗାଁ ରଘୁନାଥ ଜୀଉଙ୍କୁ ଦର୍ଶନ କଲେ ତୀର୍ଥଯାତ୍ରା ସଫଳ ହୁଏ । ଏଣୁ ଏହା ଦ୍ୱିତୀୟ ଶ୍ରୀକ୍ଷେତ୍ର ନାମରେ ନାମିତ ।

<u>ମହାନଦୀ:</u> ମହାନଦୀ ଓଡ଼ିଶାର ବୃହତ୍ତମ ନଦୀ । ଏହା ପଶ୍ଚିମ ଓଡ଼ିଶାରୁ ଅମାପ ଜଳରାଶି ଧରି ନୟାଗଡ଼ର ଉତ୍ତର ପାର୍ଶ୍ୱରେ ପ୍ରବାହିତ ହୋଇଛି । ଏହି ନଦୀ ନୟାଗଡ଼ର ତଟଦେଶ ମାନଙ୍କରେ କ୍ଷୁଦ୍ର ସମତଳ ପାଟମାନ ସୃଷ୍ଟି କରିଛି । ଏହାର ଉପକୂଳ ଉର୍ବର । ଏହି ଅଞ୍ଚଳମାନଙ୍କରେ ପ୍ରଚୁର ଅର୍ଥକାରୀ ଫସଲର କୃଷି ହୁଏ । ଏହା ନୟାଗଡ଼ର ଉତ୍ତର ପାର୍ଶ୍ୱରେ ବାଣିଜ୍ୟ ନିୟନ୍ତ୍ରଣ କରୁଥିବା ନଦୀ । ଏହାର ଜଳ ସ୍ରୋତରେ କାଠ ବାଉଁଶ ଭେଳା କମ୍ ଖର୍ଚ୍ଚରେ ଦୂରକୁ ପଠାଯାଏ । ଏହି ନଦୀରେ ଆର କୂଳ ସହିତ ବାଣିଜ୍ୟ ହୁଏ । ମହାନଦୀ ନୟାଗଡ଼ର ଉତ୍ତର

ପାର୍ଶ୍ୱରେ ଏକ ଚିରସ୍ରୋତା ନଦୀ। ଏହି ନଦୀ କୂଳର ଅରଣ୍ୟ ଘଞ୍ଚ। ଏହି ଅରଣ୍ୟମାନଙ୍କରେ ଜାତି ଜାତି ପଶୁପକ୍ଷୀ ବାସ କରନ୍ତି। ବର୍ଷାକାଳରେ ମହାନଦୀ ବକ୍ଷ ଫୁଲି ଉଠିଲେ ଏହାର ଉପନଦୀ ବୃତ୍ତଙ୍ଗ, କୁଆଁରିଆ, ଡାହୁକା, କୁସୁମୀର ଉପତଟ ଗ୍ରାମ ଗୁଡିକ ଭୟଙ୍କର ବନ୍ୟାଦ୍ୱାରା ଆକ୍ରାନ୍ତ ହୁଅନ୍ତି। ବର୍ତ୍ତମାନ ସିଧାମୂଳା ଠାରେ ଏହି ନଦୀ ଉପରେ ଏକ ସେତୁ ନିର୍ମାଣ କରାଯାଇ ଉତ୍ତର ଓଡ଼ିଶାକୁ ସଂଯୋଗ ହୋଇଛି।

**ବ୍ରହ୍ମାଦ୍ରୀ ପାହାଡ଼ :** ବ୍ରହ୍ମାଦ୍ରୀ ପାହାଡ଼ ନୀଳମାଧବ ଜୀଉଙ୍କ ଆସ୍ଥାନ। ବ୍ରହ୍ମାଦ୍ରୀ ପାହାଡ଼କୁ ମହାନଦୀ ଅର୍ଦ୍ଧ ବୃତ୍ତାକାରରେ ଆବୃତ୍ତ କରି ବହୁଅଛି। କଣ୍ଟିଲୋ ନୀଳମାଧବ ସଂସ୍କୃତି- ବିଶ୍ୱାବସୁ ଶବର, ଲଳିତା, ବିଦ୍ୟାପତି ଉପାଖ୍ୟାନ ଯୋଡ଼ି ଜଗନ୍ନାଥ ସଂସ୍କୃତି ସହ ଯୋଡ଼ି ହୋଇଯାଏ। ଏହି କ୍ଷେତ୍ରରେ ପ୍ରତିବର୍ଷ ମାଘସପ୍ତମୀରେ ମାଘମେଳା ହୁଏ। ଏହି ମେଳାରେ ବିଶାଳ ଜନସମାବେଶ ହୁଏ। ଏହି ମେଳା ନୟାଗଡ଼ର ଉତ୍ତରାଞ୍ଚଳରେ ଏକ ବାଣିଜ୍ୟ ମେଳା କହିଲେ ଭୁଲ୍ ହେବ ନାହିଁ।

**କମେଇ ମୁହାଣ :** କମେଇ ମୁହାଣ କୁସୁମୀ, ଡାହୁକା, କୁଆଁରିଆ (କୁମାରୀକା) ନଦୀର ସଙ୍ଗମ ସ୍ଥଳ। କୁଆଁରିଆ ନଦୀ ଏହି ସ୍ଥାନରେ କୁସୁମୀ ଡାହୁକାର ମିଳିତ ସ୍ରୋତକୁ ଠେଲିନେଇ ଏକ ତ୍ରିକୋଣଭୂମି ସୃଷ୍ଟି କରିଛି। ଜନ ପ୍ରବାଦ୍ ଯେ ଏ କ୍ଷେତ୍ର ଗଙ୍ଗା, ଯମୁନା, ସରସ୍ୱତୀର ସଙ୍ଗମ ସ୍ଥଳ। ଏ କ୍ଷେତ୍ରରେ ବାରବର୍ଷରେ ଥରେ ସୂର୍ଯ୍ୟପରାଗ ଦିନ ବୁଡ଼ ପଡ଼େ। ଏହି ତିଥି ଯଦି ଶନିବାର ହୋଇଥାଏ, ଏହାକୁ ମହାବାରୁଣୀ ଯୋଗ ବୋଲି କୁହାଯାଏ। ଏ ଦିନରେ ହଜାର ହଜାର ଭକ୍ତ ଏହି କ୍ଷେତ୍ରରେ ବୁଡ଼ ଦେବାକୁ ଆସନ୍ତି।

ନୟାଗଡ଼ ଏକ ପାର୍ବତ୍ୟ ଅଞ୍ଚଳ। ମୌସୁମୀ ଜଳବାୟୁ ଦ୍ୱାରା ଏ ରାଜ୍ୟରେ ପ୍ରଚୁର ବୃଷ୍ଟିପାତ ହୁଏ। ନଦୀମାନେ ବର୍ଷାଦିନରୁ ଜଳଧାରଣ କରି ଶୀତଦିନ ପର୍ଯ୍ୟନ୍ତ ଜଳସଂଚୟ କରିଥାନ୍ତି। ଏଣୁ ନଦୀକୂଳରେ କୃଷି ସଂପଦର ବିକାଶ ହୋଇଥାଏ। ଏତେଗୁଡ଼ିଏ ନଦୀ ନୟାଗଡ଼କୁ ଜଳଦାନ କଲାବେଳେ ଗ୍ରୀଷ୍ମମାସରେ ଶୁଷ୍କ ହୋଇଯାଆନ୍ତି। ବୃତ୍ତଙ୍ଗ ଯୋଜନା ଶୀଘ୍ର କାର୍ଯ୍ୟକାରୀ ହେଲେ ଚିରସ୍ରୋତା ମହାନଦୀର ଜଳସଂପଦ ନୟାଗଡ଼ ଜିଲ୍ଲାରେ ସଂଚିତ ହୋଇ ରୁହନ୍ତା। ନୟାଗଡ଼ ଅଞ୍ଚଳରେ ଜଳାଭାବ ଦୂର ହୁଅନ୍ତା। ଏହି ଯୋଜନା କାର୍ଯ୍ୟକାରୀ ହେଲେ ନିସନ୍ଦେହରେ ନୟାଗଡ଼ ଏକ ସମୃଦ୍ଧିଶାଳୀ ବିକାଶଶୀଳ ଜିଲ୍ଲାରେ ପରିଣତ ହେବ।



## ତୃତୀୟ ଅଧ୍ୟାୟ

# ନୟାଗଡ଼ ଆଦିବାସୀ

**ଆଦିବାସୀ:** ନୟାଗଡ଼ ଜିଲ୍ଲା ପାହାଡ଼ ପର୍ବତ ଘେରା ବଣଜଙ୍ଗଲର ଏକ ଆରଣ୍ୟକ ଭୂମି। ଏ ଭୂମିର ମୂଳ ବାସିନ୍ଦା ହେଲେ ଆଦିବାସୀ। ଆଦିବାସୀ ପ୍ରକୃତିର ସନ୍ତାନ। ଆଦିବାସୀ ପାଇଁ ପ୍ରକୃତି କ'ଣ ନ ସାଇତିଛି ? ଝରଣାର ଜଳ, ବୃକ୍ଷର ଛାୟା, ମଧୁର ପବନ, ମୂଳ, ଡ଼ାଳ, ଫଳ, ପତ୍ର, ଫୁଲ ଜୀବନ ଧାରଣ କରିବାର ସମସ୍ତ ଆବଶ୍ୟକତା। ଆଦିବାସୀ ପ୍ରକୃତିକୁ ମା ଓ ଆକାଶକୁ ବାପା କହି ପୂଜା କରେ। ନୟାଗଡ଼ ଆଦିବାସୀ ତିନି ସଂପ୍ରଦାୟର କନ୍ଧ, କୋହ୍ଲ ଓ ଶବର।

ନୟାଗଡ଼ ଅଞ୍ଚଳରେ ଦୁଇ ଶ୍ରେଣୀୟ କନ୍ଧ ଦେଖାଯାଆନ୍ତି ଯଥା- ଦେଶୁଆ କନ୍ଧ, ମାଲୁଆ କନ୍ଧ।

**ଦେଶୁଆ କନ୍ଧ :** ଦେଶୁଆ କନ୍ଧଙ୍କୁ ଓଡ଼ିଆ କନ୍ଧ ବି କୁହନ୍ତି। ଏମାନଙ୍କ ମଧ୍ୟରେ ବି ଶ୍ରେଣୀବିଭାଗ ରହିଛି। କନ୍ଧ, କନ୍ଧ ଗୌଡ଼, ଯେନା କନ୍ଧ, ଖଇରା । କନ୍ଧମାନଙ୍କ ମଧ୍ୟରେ ସେବାକାରୀ ଜାତି ଅଛନ୍ତି ଯେପରି କନ୍ଧ ଗୌଡ଼ କନ୍ଧଙ୍କର ଗାଈଗୋରୁଙ୍କର ହେପାଜତ ନିଅନ୍ତି। ଦେଶୁଆ କନ୍ଧ ଜଙ୍ଗଲ ଭୂମିରେ ସମତଳ ଅଞ୍ଚଳମାନଙ୍କରେ ବାସଗୃହ ତ୍ତେରି, କୃଷିକରି, ପଶୁପାଳନ କରି ସମୂହ ଭାବରେ ଗ୍ରାମ ବସତିରେ ବାସ କରନ୍ତି। ଏହାକୁ କନ୍ଧ ପଲ୍ଲୀ କୁହାଯାଏ। କନ୍ଧମାନଙ୍କର ଜନ୍ମଗତ ଭାଷା ହେଲା କୁଇ, କିନ୍ତୁ ଦେଶୁଆ କନ୍ଧ ଓଡ଼ିଆ ଭାଷା ସହିତ ଅଭ୍ୟସ୍ତ ହୋଇଗଲେଣି। ଏମାନେ ନିଜକୁ ଓଡ଼ିଆ କନ୍ଧ ବୋଲି କହିଲେଣି। ଯେନା କନ୍ଧ, କନ୍ଧଗୌଡ଼ ଏମାନେ ଓଡ଼ିଆ କନ୍ଧ। ଦେଶୁଆ କନ୍ଧ ବା ଓଡ଼ିଆ କନ୍ଧ ନୟାଗଡ଼ ଜିଲ୍ଲାର ଓଡ଼ଗାଁ, ନୂଆଗାଁ, ଦଶପଲ୍ଲା, ଗଣିଆ, ଖଣ୍ଡପଡ଼ା, ରଣପୁର ଅଞ୍ଚଳମାନଙ୍କରେ ବାସ କରନ୍ତି।

**ମାଲୁଆ କନ୍ଧ :** ମାଲୁଆ କନ୍ଧ ଘନ ଜଙ୍ଗଲ ମଧ୍ୟରେ ବସବାସ କରନ୍ତି। ସେମାନଙ୍କର ସ୍ୱତନ୍ତ୍ର କନ୍ଧ ଗାଁ ନାହିଁ। ବାସଗୃହ ଅଛି ଅରଣ୍ୟର ଏଠି ସେଠି ହୋଇ। ଏମାନେ ନିଜର ମାତୃଭାଷା କୁଇ ଭାଷାରେ କଥାବାର୍ତ୍ତା ହୁଅନ୍ତି। ଓଡ଼ିଆ କୁହନ୍ତି ନାହିଁ। ଏମାନଙ୍କର ଜୀବନ ଜୀବିକା ସଂପୂର୍ଣ୍ଣ ଅରଣ୍ୟ ଉପରେ ନିର୍ଭରଶୀଳ। ଅରଣ୍ୟର ଫଳ ମୂଳ ଏବଂ ପଶୁ ଶିକାର କରି ନିଜର ଖାଦ୍ୟ ସଂଗ୍ରହ କରିଥାନ୍ତି। ଏମାନେ ନୟାଗଡ଼ ଜିଲ୍ଲାର ଦଶପଲ୍ଲା, ନୂଆଗାଁ ଓ ଗଣିଆ ପାର୍ବତ୍ୟାଞ୍ଚଳରେ ବସବାସ କରନ୍ତି।

**ଖଇରାକନ୍ଧ :** ଦଶପଲ୍ଲା ଓ ଗଣିଆ ଅଞ୍ଚଳରେ ଖଇରା ସମ୍ପ୍ରଦାୟର କନ୍ଧ ଦେଖାଯାଆନ୍ତି। ଏମାନଙ୍କର କୌଳିକ ବୃତ୍ତି କାରିଗରୀ। ଖଇରା କନ୍ଧ ଉଭୟ କୁଇ

ଓ ଓଡ଼ିଆ ଭାଷାରେ କଥାବାର୍ତ୍ତା ହୁଅନ୍ତି। ଏମାନେ ଟିଣ, ତମ୍ବା ଓ ପିତଳରେ ଡ଼ିବି, କାଞ୍ଚି, କୁମ୍ପା, ସୁନ୍ଦର ସୁନ୍ଦର ଉପକରଣ ତିଆରି କରନ୍ତି। କମାରଶାଳ ପରି ଏମାନଙ୍କର ଶାଳ ଅଛି। ଏହି ଶାଳରେ ଧାତୁକୁ ତରଳାଇ ନରମ କରି ଉପରୋକ୍ତ ଉପକରଣମାନ ଗଢ଼ନ୍ତି ଏବଂ ଗାଁ ଗାଁ ବୁଲି ବିକନ୍ତି।

ସଅର : ସଅରଶ୍ରେଣୀୟ କନ୍ଧ ନୟାଗଡ଼ର ଖଣ୍ଡପଡ଼ା, ଭାପୁର ଅଞ୍ଚଳରେ ଦେଖାଯାଆନ୍ତି। ସଅର ଶବର ଏକଜାତିର ଲୋକ। ଏମାନେ ଓଡ଼ିଆ ଭାଷା ବ୍ୟବହାର କରନ୍ତି।

ଭାଷା : କନ୍ଧମାନେ ତାଙ୍କର ମାତୃଭାଷା କୁଇ ଭାଷା ଓ ପ୍ରଭାବିତ ଓଡ଼ିଆ ଭାଷାରେ କଥା କୁହନ୍ତି। କନ୍ଧମାନଙ୍କର ଭାଷା ଉପରେ ଟିପଣୀ ଦେଲାବେଳେ ପ୍ରଧାପକ ଡ. ଭାଷାବିତ୍ ପ୍ରେମାନନ୍ଦ ମହାପାତ୍ରଙ୍କର ଗ୍ରନ୍ଥ 'ନୟାଗଡ଼ ଜିଲ୍ଲାର କଥିତ ଭାଷା ସର୍ବେକ୍ଷଣ'ରୁ ଉଦ୍ଧାର କରି କୁଇଭାଷା ଏବଂ ତା'ର ରୂପାନ୍ତର ଓଡ଼ିଆ ଭାଷା ଶବ୍ଦକୁ ଉପସ୍ଥାପନ କରୁଅଛି...

| କୁଇ ଶବ୍ଦ | ଓଡ଼ିଆ ଶବ୍ଦ | କୁଇ ଶବ୍ଦ | ଓଡ଼ିଆ ଶବ୍ଦ | କୁଇ ଶବ୍ଦ | ଓଡ଼ିଆ ଶବ୍ଦ |
|---|---|---|---|---|---|
| ଅଡ଼ା | ଛେଳି | ଖାର୍‌ରା | ଖରା | ବଡ଼ା | ହାଣ୍ଡି |
| ଅଡ଼ି | ଭାଲୁ | ଗବେରି | ଗୋବର | ବେସ୍କା | କାଠ |
| ଅଡ଼ିର | ମୂଷା | ଗୁଇନା | ଧାଇଁବା | ବାଟା | ଅଣ୍ଡା |
| ଆମୁଁ | ଆମେ | ଘୁଞ୍ଚି | ପେଚା | ଭାୟନି | ଶୁଖିଲା |
| ଆନୁ | ମୁଁ | ଗୁଗୁରି | କପୋତ | ମାକୁ | ସମ୍ବର |
| ଅପି | ଝିଅ | ଗାବା | ଜଡ଼ା | ମେରଣା | ହରିଣ |
| ଆକୁ | ପତ୍ର | ଚୁଟିନା | ପିନ୍ଧିବା | ମାହାରୁ | ଗଛ |
| ଆବା | ବାପା | ଜାଉ | ତରକାରୀ | ମୁଙ୍ଗୁଡ଼ି | ନାକ |
| ଆଡୁ | ପୁଅ | ଟୁଟୁ | ପେଟ | ମିଣିକା | ମାଛ |
| ଆଂଘ୍ରି | ଅଙ୍ଗାର | ଡ଼ାଉନି | ନିଶୁଣି | ମସ୍କା | ଆମ୍ବ |
| ଇର୍‌ପି | ମହୁଲ | ନିନା | କାନ୍ଦିବା | ମେଡ଼ | ମୟୁର |
| ଇଆ | ମା | ଡ଼େଡ଼ି | ମାଣ୍ଡିଆ | ମିଡ଼େ | ନାହିଁ |
| ଇଡୁ | ଘର | ଡ଼େଲା | ଡ଼ାଳ | ମାଣି | ବାଉଁଶ |
| ଇନୁ | ତୁମେ | ତାରୁ | ପିମ୍ପୁଡ଼ି | ଯାନା | କଙ୍କଡ଼ା |
| ଏଟିନା | ଗାଇବା | ତୁମ୍ବି | ମେଳ | ରାକା | ରକ୍ତ |
| ଏ ମୁଣ | କୁଆଡେ | ତିର୍ଗାଁ | ତୋରାଣୀ | ସଡ୍ରେକା | ଜହ୍ନା |
| ଏ ଜା | ସେ | ଦୁଲି | ପାଉଁଶ | ସାରୁ | ଲୁଣ |

| | | | | | |
|---|---|---|---|---|---|
| ଏ ଜୁନା | ଖାଇବା | ଦାଣ୍ଡା | ବାଟ | ସହକ | ସାରୁ |
| ଏଜୁ | ଭାତ | ନାଉଣି | କୁକୁର | ସିଣ୍ଡା | ଲୁଗା |
| ଉଁ ଗା | ମାଂସ | ନାଜୁ | ଗାଁ | ସିଡ଼େ | ନାହିଁ |
| କାବା | କାଉ | ନିଜୁ | ତେଲ | ସେଜେ | ବାଇଗଣ |
| କଡ଼ି | ଗାଇ | ନାଆଁଶି | ନିଆଁ | ସର୍ବାସର୍ଚ୍ଚ | ସୋରିଷ |
| କେଡ଼ା | ଜମି | ପୁଛି | ହୁଙ୍କା | ସାପୁ | କଣ୍ଟା |
| କାକିରି | ପାଣି | ପାଡ଼ଶ | କ୍ଷୀର | ସଡୁ | ଚୁଲି |
| କୁଡ଼ିଙ୍ଗା | ଧାନ | ପାରଙ୍ଗା | ଚାଉଳ | ସଫେରି | ଝାଡୁ |
| କ୍ଲାଇ | ଖଳାବାରି | ପିରି | ପାଳ | ନିସିଣା | ହଳଦୀ |
| କାଣ୍ଡି | ଦାନ୍ତକାଠି | ପୁକି | ମହୁ | ସିଡ଼ି | କଞ୍ଚା |
| କାକାରା | କଖାରୁ | ପ୍ଲିଆ | କଞ୍ଚାଆମ୍ବ | ସାଲେରି | ବିଛା |
| କାକିନା | ହସିବା | ପଡ଼କା | ଦାନ୍ତ | ସାର୍କି | ବଗ |
| କଡ଼ିଆ | ଠେକୁଆ | ପେନେଇଁ | ପାନିଆଁ | ସକିଆନା | କାମୁଡ଼ିବା |
| କଜୁ | କୁକୁଡ଼ା | ପୁଜୁ | ଫୁଲ | ହାଜିନେ | ଯାଉଛ |
| କାଡୁ | ଗୋଡ଼ | ବିଟା | ମାଛି | ଲକା | ଲାଉ |
| କାନୁ | ଆଖି | ବାଦୁ | ଆସ | କୁଁୟୁ | କାନ |
| କାଜୁ | ହାତ | ବଡ଼ଲ | ବଢ଼ିଆଳ | କାଲୁ | ମଦ |
| ଚ୍ଲିନ୍ନା | ଶୋଇବା | ବାରିଆ | ବାରହା | | |

**କୁଇ ଭାଷାର କେତୋଟି ବାକ୍ୟ:-**

| ଓଡ଼ିଆ | କୁଇ |
|---|---|
| ମୁଁ ଗାଧୋଇ ଯାଉଛି | ଆନୁ ବାକିର ପୋଇ ହାଜିମାଇଁ । |
| ମୁଁ ଭାତ ଖାଉଛି | ଆନୁ ଏଜୁନ୍ ଉନ୍ ବିମାଇ । |
| ତୁମେ ଆସ କଥା ହେବା | ଇନେ ଜାମୁ କତାନା । |
| ସେ କାନ୍ଦୁଛି | ଏ ଜି ଇଡ଼୍କିନେ । |
| ସେ ନାଟ କରୁଛି | ଏ ଜି ନାଟକିନେ । |
| ସେ କାଠ ହାଣୁଛି | ଏଜି ବେସ୍କା ପାସ୍ କିମାଇଁ । |
| ନିଦ ଆସିଲାଣି ଶୋଇବା | ଚୁଟ୍ନକା ବାତୁନେ ସୁଂଜିନା |
| କୁକୁର ତୋରାଣି ପିଉଛି | ନାଉଣି ତିରାଁ ଉନ୍‌ବିନେ |
| ଘର ଭାଙ୍ଗିଗଲା | ଇଡୁ ବ୍ରିଙ୍ଗିତେ |
| ଗାଇ ପାଳ ଖାଉଛି | କଡ଼ି ପିରି ତିଞ୍ଜନେ |

| | |
|---|---|
| ଘର ପୋଡ଼ିଗଲା | ଇଡୁ ଚ୍ଲଡ଼ିତେ |
| ରାମ ମରିଗଲା | ରାମ ସାତିଁ |
| ମେଘ କରିଛି ବର୍ଷା ହେବକି ? | ମେଘ ଇଆନେ, ପିଜୁରିନେ କି ? |
| ସେ ଲୁଗା ଶୁଖାଉଛି | ଏଜି ସିଣ୍ଡା ଅଲ୍‌ବିନେ |
| ଶଶି ଭାତ ରାନ୍ଧୁଛି | ଶଶି ଏଜୁ ବାଜିମେନ |
| ପବନରେ ଆମ୍ବ ଗଛରୁ ପଡ଼ିଲା | ପବନଗିତେ ମାସ୍କା ଦିକିନେ |
| କୁକୁର ଭୁକୁଛି | ନାଉଁଣି ମୁସ୍କିବିନେ |
| ରାମ ବାଇଗଣ କାଟୁଛି | ରାମ ଶେଯେ କାଣ୍ଡାଇକିନେ |
| ମୂଷା ପଳେଇଲା | ଅଡ଼ିର ଗୁଇତେ |
| ଧାନ ସବୁ ମରିଗଲା | କୁଡ଼ି ସାତୁଁ ଗଜାଗୁଲେ |
| ହେ ଭଗବାନ ! ଭଲରେ ରଖ | ହେ ଭଗବାନ ! ନଁଗେଟିଁ ଭଲରେ ଇଟିଆଉଁ |
| ଛେଳି ବୋବାଉଛି | ଅଡ଼ା କ୍ଲାଙ୍ଗାଇନେ |
| ଗାଈର ଶିଙ୍ଗ ଭାଙ୍ଗିଗଲା | କଡ଼ି ଆଦି ଶିଙ୍ଗ ଲେଙ୍ଗିତେ । |

<u>ବସତି / ବାସଗୃହ :</u> ପାହାଡ଼ତଳି ଝରଣାକୂଳ ଉପତ୍ୟକାରେ କନ୍ଧପଲ୍ଲୀ ବସତି । ବସତିର ମଝିରେ ଓସାର ଦାଣ୍ଡ । ଦାଣ୍ଡର ଦୁଇ ଧାରରେ ସାହି । ମଝି ଦାଣ୍ଡରେ ଠାକୁରାଣୀ ଘର । ଘରଗୁଡ଼ିକ ମଜ୍‌ଭୁତ୍ କାଠ ଖମ୍ବ ଏବଂ ବାଉଁଶ ଚାଳରେ ତିଆରି । ଓରା ଶେଣୀ ପକାଇ ଉପର ମହଲା ପରିକା ଉଁଚା ଆଟୁ କରିଥାନ୍ତି । ଘରର ଉପର ମହଲାମାନେ ଓରାଶେଣୀ ଉପରେ ନିଜ ସୁନ୍ଦରରେ ବାଉଁଶ ପାରି ତା ଉପରେ ମାଟି ପକାଇ ରହିଲା ପରିକା ଚିକ୍‌ଣ ଆଟୁ କରିଥାନ୍ତି । ଏ ମଞ୍ଚାରେ ଶୋଇବା ନିରାପଦ । ଜଙ୍ଗଲି ହିଂସ୍ର ଜନ୍ତୁଙ୍କଠାରୁ ନିରାପଦ ଏ ଜାଗା । ଘର ଚାଳ ବାଉଁଶ ରୁଅରେ ଗଡ଼ା ଛଣ, ଘାସ, ସବାଇ ଘାସ, ଖଜୁରୀ ଡ଼ାଳରେ ଚାଳ ଛପର ହୋଇଥାଏ । ପ୍ରତି ଘର ଦାଣ୍ଡ ମୁହଁକୁ ଉଁଚା ପିଣ୍ଡା । ରଙ୍ଗୀନ୍ ଜଙ୍ଗଲି ମାଟି ଓ ଗାଇ ଗୋବର ମିଶାଇ ଘରର କାନ୍ଥ ଓ ଚଟାଣକୁ ଚିକ୍କଣ ସୁନ୍ଦର କରି ଲିପିଥାନ୍ତି । ତା' ଆଗରେ ସିମେଣ୍ଟ ଚଟାଣ ପସନ୍ଦ ନୁହେଁ । ଏ ଶୀତଳ ଚଟାଣରେ ଖାଲିଟାରେ ଶୋଇପଡ଼ିବାକୁ ଇଛା ହୁଏ ।

ଦେଶୁଆ କନ୍ଧ ପଲ୍ଲୀଗ୍ରାମମାନଙ୍କରେ ବାସକରନ୍ତି । ମାଲୁଆ କନ୍ଧ ଘଞ୍ଚ ଜଙ୍ଗଲ ମଧ୍ୟରେ ବଡ଼ ବଡ଼ ଗଛ ଉପରେ ମଂଚା ବାନ୍ଧି ରୁହନ୍ତି । ତଳେ ବି କାଠ ବାଉଁଶର ଘର କରି ରହନ୍ତି । ଏମାନେ ଗୋଟିକିଆ ଜାଗାରେ ରହିବାକୁ ପସନ୍ଦ କରନ୍ତି । ଓଡ଼ିଆ କନ୍ଧ ଏକାଠି ହୋଇ ପଲ୍ଲୀରେ ବାସ କରନ୍ତି । ମାଲୁଆ କନ୍ଧ ଏଠି ସେଠି ରହୁଥିଲେ ହେଁ ପର୍ବପର୍ବାଣି ଓ ଘରର ବିବାହ ପର୍ବମାନଙ୍କରେ ଏକାଠି ହୋଇଯାଆନ୍ତି ।

ଘନ ଅରଣ୍ୟର ଦୂରଦୂରାନ୍ତରରେ ବସବାସ କରୁଥିଲେ ହେଁ କୌଣସି ସମ୍ବାଦ ମୂହୂର୍ତ୍ତକରେ ସମସ୍ତଙ୍କ କାନରେ ପଡ଼ିଯାଏ । ସେମାନଙ୍କ ମଧ୍ୟରେ ସଂପର୍କ ନିବିଡ଼ ।

**ପୋଷାକ :** ଆଦିବାସୀ ଝିଅ ମୋଟା କପଡ଼ା ବ୍ୟବହାର କରନ୍ତି । ପତଳା ଲୁଗା ପିନ୍ଧନ୍ତି ନାହିଁ । ଘାଗରା ମାଳରେ ବକ୍ଷ ଲୁଚାଇଥା'ନ୍ତି । ଦେହ ଦିଶୁଥାଏ । ଦେହକୁ ଘୋଡ଼ାଇ ଥା'ନ୍ତି । ଗଭାରେ ଫୁଲ, ଝିଙ୍କ କାଠି, ବଗ ଶାମଳ ଲଗାଇଥା'ନ୍ତି । ପୁରୁଷମାନେ ଲେଙ୍ଗୁଟି ଓ କାନ୍ଧରେ ମୋଟା ଗାମୁଛା ପକାନ୍ତି । ସଭ୍ୟତାର କ୍ରମ ବିକାଶରେ ସେମାନଙ୍କର ପୋଷାକର ରୁଚି ବଦଳି ଗଲାଣି ।

**ଜୀବିକା :** ପ୍ରକୃତି ବେଢ଼ ମଧ୍ୟରେ ଆଦିବାସୀର ସରଳ ସୁନ୍ଦର ଜୀବନ ଯାତ୍ରା । ଆଦିବାସୀ ନିଜ ଉପରେ ନିଜର ନିର୍ଭର କରେ । ଚଳଣୀର ସବୁ କାର୍ଯ୍ୟରେ ତାର ଦକ୍ଷତା ଥାଏ । ସେ କୃଷି କର୍ମକର୍ମାଣୀରେ ପଟୁ । କୃଷି ଉପକରଣ ବିଭିନ୍ନ ହତିଆର ନିଜେ ତିଆରି କରେ । ତଇଲା, ଡ଼ଙ୍ଗର, ପଦରରେ କୃଷି କରେ । କୋରାପୁଟ ଆଦିବାସୀଙ୍କଠାରୁ ପ୍ରଥମେ ଧାନ ଚାଷ ରାଜ୍ୟରେ ବିକଶିତ ହୋଇଥିଲା । ନୟାଗଡ଼ର ଆଦିବାସୀ ଧାନ, ମାଣ୍ଡିଆ, କୁହୁଡ଼ି, କୋଦୁଅ,କାଙ୍ଗୁଲ, ସୁଆଁ, କୋଳଥ, ସୋରିଷ, ଡିଳ, ଅଳସି, ରାଶି, ବାଜରା, ଜହ୍ନା, ଅଦା, ହଳଦୀ, ଚଣା, ମସୁର ଚାଷ କରନ୍ତି । ଅଦା, ହଳଦୀ, ତିଳା, ଅଳସି, ରାଶି ଆଦିବାସୀମାନଙ୍କର ପ୍ରଧାନ ଅର୍ଥକାରୀ ଫସଲ ।

ପ୍ରକୃତି ଭିତରେ ଆଦିବାସୀର ଜୀବନ ଜୀବିକା ଚଳଣୀ । ପ୍ରକୃତି କ'ଣ ନ ରଖିଛି ସେମାନଙ୍କ ପାଇଁ । ତାଙ୍କ ପାଖରେ ନିଆଁ ଖାଦ୍ୟଶସ୍ୟ ସାଇତା । ହାଟରୁ ଲୁଣ, କିରୋସିନି, ଲୁଗା  କିଣି ଆଣିଲେ ଆଉ ସବୁଟା ତାଙ୍କ ପାଖରେ । ପୁରୁଷଙ୍କ ଅପେକ୍ଷା ସ୍ତ୍ରୀ'ମାନେ ଅଧିକ ପରିଶ୍ରମୀ । ଆଦିବାସୀ ଝିଅମାନେ ଡ଼ଙ୍ଗର ପଦରରେ କୃଷିକାମ- ମାଣ୍ଡିଆ ତଳି ପୋତିବା, ଫସଲ ପଦାରୁ ଘାସ ବାଛିବା, ଜଙ୍ଗଲରୁ ଖାଦ୍ୟ ଜାତୀୟ ମୂଳ ଫୁଲ ଫଳ ସଂଗ୍ରହ କରନ୍ତି । ଶାଳ ମଂଜି, ମହୁଲ ସଂଗ୍ରହ କରନ୍ତି । ଶାଳ ମଂଜି ଓ ମହୁଲ ବିକ୍ରିରେ ସବୁଠାରୁ ଅଧିକ ଅର୍ଥ ଉପାର୍ଜନ କରନ୍ତି । ଆଦିବାସୀ ଜୀବନରେ ନାରୀ ମାନଙ୍କର ଭୂମିକା ପୁରୁଷମାନଙ୍କ ଠାରୁ ଅଧିକ । ଝିଅମାନେ ଶାଳପତ୍ର ଶିଆଳୀ ପତ୍ରରେ ଖଲି ଠୁଙ୍ଗା ତିଆରି କରନ୍ତି । ଖଜୁରୀ ପତ୍ରରେ ପଟି ବୁଣନ୍ତି । ଝିଅମାନେ ହାଟକୁ ଅଦା, ହଳଦୀ, ପଦରରୁ ଉତ୍ପନ୍ନ କରୁଥିବା ବିଭିନ୍ନ ପନିପରିବା ପଟି, ସୋରିଷ, ମହୁଲ ବିକ୍ରୟ କରି ନିଅନ୍ତି । ଦଶପଲ୍ଲା ବଜାର, ଦଶପଲ୍ଲା ପାଟଣା ହାଟ, ବାହାଡ଼ାଝୋଲା ମାଣିକ ପାଟଣା ହାଟରେ ବ୍ୟବସାୟ କରି ଆସିଥିବା କନ୍ଧୁଣୀ ମାନଙ୍କୁ ଦେଖିବାକୁ ମିଳେ ।

**ଗୃହପାଳିତ ପଶୁ :** ଆଦିବାସୀ ଗାଈଗୋରୁ, ଛେଳି, ବାର୍‌ହା, କୁକୁଡ଼ା ପାଳନ କରନ୍ତି । ବଳଦ ସାହାଯ୍ୟରେ ହଳ କରନ୍ତି ।

**ବ୍ୟବହୃତ ହତିଆର ଓ କୃଷି ଉପକରଣ :** କନ୍ଧମାନଙ୍କର ବ୍ୟବହାର ହତିଆର ଧନୁତୀର, ଭାଲି, ବର୍ଚ୍ଛା, ଟାଙ୍ଗି। କୃଷି ଉପକରଣରେ ଲଙ୍ଗଳ, ଲୁହା, କୁଆଳି, ଶଗଡ଼। ଏ ସବୁ ଉପକରଣକୁ ଏମାନେ ନିଜେ ତିଆରି କରନ୍ତି। କନ୍ଧମାନଙ୍କୁ କ'ଣ ଜଣା ନଥାଏ। ପାହାଡ଼ ପଦର ହେଲା ତାଙ୍କର ଚରା ଭୂଇଁ।

**ଦ୍ରବ୍ୟ ଦେଣନେଣରେ ମାପ ଓ ମୁଦ୍ରା :** କଉଡି, ତମ୍ବା, ପିତଳ, ରୁପାର ଟଙ୍କା ମାଧ୍ୟମରେ ଦ୍ରବ୍ୟର କିଣାବିକା ହୁଏ। ଶସ୍ୟ ମାପରେ ନଉତି, ଗୌଣୀ,ତୁମ୍ବ, ମାଣ, ଡ଼ିବା, ଅଡ଼ା, ବୋଡ଼ା, ପାଇକା ବ୍ୟବହାର କରୁଥିଲେ। ଏ ମାପ ଗୁଡ଼ିକ କାଠ ଓ ବେତରେ ନିର୍ମିତ। ଓଜନ ମାପରେ ମହଣ, ସେର, ଛଟାଙ୍କି, ବିଶା, ପଳର ବ୍ୟବହାର ଥିଲା।

**ଧର୍ମ ଓ ପରବ :** ଆଦିବାସୀ ଦ୍ରାବିଡ଼ ସଂପ୍ରଦାୟର। ଏମାନେ ଦେବୀ ପୂଜା କରନ୍ତି। ବୃକ୍ଷ, ସର୍ପ, ଷଣ୍ଢ ପୂଜା ମାଟି ମା' ଓ ଆକାଶକୁ ପୂଜା କରନ୍ତି। ପଥର ଓ ଖୁଣ୍ଟକୁ ଠାକୁରାଣୀ ବେଶରେ ସଜାଇ ପୂଜା କରିଥାନ୍ତି। ଆଦିବାସୀମାନଙ୍କ ମତରେ ଧରଣୀ ପେନୁ ସୃଷ୍ଟିକାରିଣୀ। ଧରଣୀ ପେନୁ ନିକଟରେ ଆଦିବାସୀ ନିଜକୁ ସମର୍ପି ଦିଏ। ଧରଣୀ ପେନୁ ନାନା ଦେବୀ ରୂପରେ ପୂଜା ପାଏ। ବାଉତୀ, ବାନ୍ଦେରୀ, ବାଉରୀ, ପିତାବଳୀ, ମାଟେଣୀ, ଅନ୍ଧାର ବାଉତୀ, ଖୁଣ୍ଟ ଠାକୁରାଣୀ, ବୁଢ଼ୀ ଠାକୁରାଣୀ, ଭୂଇଁଆଣୀ, ପଥର ଆବିର୍ଭୂତା ଠାକୁରାଣୀ କେତେ ରୂପରେ। ମା' ସନ୍ତୁଷ୍ଟିରେ ବଣ ମୂଲକରେ ପଶୁପକ୍ଷୀ ଫୁଲଫୁଲରୀ ଭରିଦେବ। ଏ ବିଶ୍ୱାସରେ ଆଦିବାସୀ ପଶୁପକ୍ଷୀ, ମଣିଷ ବଳୀ ରକ୍ତ ଠାକୁରାଣୀଙ୍କୁ ସମର୍ପିଥାଏ।

**ମେରିଆ ବଳି :** ଧରଣୀ ପେନୁକୁ ମେରିଆବଳି ମାନେ ମଣିଷ ବଳି ସମର୍ପିବା। ମେରିଆ ବଳି ପ୍ରଥା ହେଉଛି ଆଦିବାସୀର ଆଦିମ ପ୍ରଥା। ଠାକୁରାଣୀ ମେରିଆ ରକ୍ତ ପିଇଲେ ପ୍ରକୃତି ଶାନ୍ତ ହେବ। ମୂଲକରେ ଭଲ ବର୍ଷା ହେବ। କ୍ଷେତରେ ଅଦା, ହଳଦୀ, ଧାନ, ମାଣ୍ଡିଆ, ସୋରିଷ ଅଜାଡ଼ି ଦେବ। ମେରିଆ ପର୍ବ କନ୍ଧମାନଙ୍କର ପ୍ରଧାନ ପର୍ବ। ମାଟି ମା'କୁ ମାଘ ମାସରେ ମେରିଆ ପ୍ରଦାନ କରାଯାଏ। ବହୁ ଆଗରୁ ମେରିଆ ଉଦ୍ଦେଶ୍ୟରେ କନ୍ଧମାନେ କେଉଁଠୁ ନା କେଉଁଠୁ ମଣିଷଟାଏ ଧରିଆଣି ବଡ଼ ହେପାଜତ ଆଦରରେ ଗାଁରେ ପୋଷିଥାନ୍ତି।



ମାଘମାସ ମେରିଆ ପୂଜାଦିନ ଆସିଲେ କନ୍ଧ ମେରିଆକୁ ହଳଦୀ, ଚନ୍ଦନ, ତୈଳରେ ମାଜଣା କରି ସ୍ନାନ କରାଇ ନୂତନ ଶୁଭ୍ରବସ୍ତ୍ର ପରିଧାନ କରାଇ ମଦ୍ୟପାନ କରାନ୍ତି । ମାଦଳ, ଚାଙ୍ଗୁ, ଶିଙ୍ଗା, ତୁରୀ ବଜାଇ ମେରିଆକୁ ଗ୍ରାମ୍ୟ ପରିକ୍ରମା କରାଇ ଠାକୁରାଣୀର ପୂଜା ସ୍ଥାନକୁ ନିଅନ୍ତି । ଚାରିହାତ ଉଚ୍ଚ ଶକ୍ତ ଖୁଣ୍ଟରେ ମେରିଆକୁ ଚିତ୍ କରାଇ ଶକ୍ତଭାବରେ ବାନ୍ଧି ଦିଅନ୍ତି । ଚାରିଜଣ ମେରିଆର ହାତଗୋଡ଼ ପଛକୁ ଛନ୍ଦି ଧରିଥାଆନ୍ତି । ମେରିଆର ଚତୁଃପାର୍ଶ୍ୱରେ କନ୍ଧମାନେ ଠୁଳହୋଇ ଜମାହୋଇ ଥାଆନ୍ତି । ବାଦ୍ୟନାଦରେ ବଣ ମୂଲକ ଦୋହଲି ପଡୁଥାଏ । ଦିଶାରୀ ନର ବଳି ମନ୍ତ୍ର ଉଚ୍ଚାରଣରେ ପ୍ରମତ୍ତ ଯାନୀ ପୂଜକ ମେରିଆ ଉପରକୁ ଝାମ୍ପିଯାଇ ଛାତିରୁ ପୁଳାଏ ମାଂସ ଓଟାରି ଆଣି ଠାକୁରାଣୀଙ୍କ ମସ୍ତକରେ ଚିପୁଡ଼ିଦିଏ । ଯାନୀ ପ୍ରାର୍ଥନା କରେ "ମା ଆମର ଦୋଷ ନାଇଁ, ତୋର ସନ୍ତୁଷ୍ଟି ପାଇଁ ମେରିଆ ରକ୍ତ ଦେଲୁ, ଜଗତ ମଙ୍ଗଳ କର ମା, ଆମ ମୂଲକରେ ଭଲ ବର୍ଷା ଦେ, ଆମର ଅମାର ଭରିଦେ" । କନ୍ଧମାନେ ମହୁଲି ମଦରେ ମାତାଲ । ମେରିଆକୁ ଖୁଣ୍ଟରୁ ଖୋଲିଦେଲେ ମେରିଆ ଛଟପଟରେ ଏଣେତେଣେ ଦୌଡ଼େ । ତା ପଛରେ କନ୍ଧମାନେ ଦୌଡ଼ି ଗୋଜରେ ମେରିଆ ଶରୀରକୁ ଖେଞ୍ଚନ୍ତି । ମେରିଆର ରକ୍ତ ମାଟିରେ ଭିଜେ । ମେରିଆର ରକ୍ତ ଯେଉଁଠି ଯେଉଁଠି ପଡ଼େ ସେ ମାଟି ପବିତ୍ର ହୋଇଯାଏ । ସେ ଭୂଇଁ ଅମାପ ଶସ୍ୟର ଅମଳ ଦେବ ଏ ଅନ୍ଧବିଶ୍ୱାସ ଆଦିବାସୀର । ସେଦିନ ଘରେ ଘରେ ପିଠା ପଣା, ସାରା ରାତି ନାଚକୁଦ ମଉଜରେ ଆଦିବାସୀ ବିତାଏ । ଗୁମିମାଳ, ଦଶପଲ୍ଲା ଆଭ୍ୟନ୍ତରିଣ ଅରଣ୍ୟ ମଧ୍ୟରେ ମେରିଆବଳି ଦେବାର ପ୍ରସଙ୍ଗ ଜନଶ୍ରୁତିରୁ ମିଳେ ।

<u>କାଠି ଠାକୁରାଣୀ ପର୍ବ :</u> ମେରିଆ ପର୍ବ ବାଦ ଆଦିବାସୀମାନେ ପୌଷପର୍ବ, ମାଘପୂର୍ଣ୍ଣମୀ ଅଗ୍ନି ଉତ୍ସବ, ମକର ପର୍ବ, ଚଇତି ପର୍ବ, ଦୋଳ ପର୍ବ, ଠାକୁରାଣୀଙ୍କଠାରେ ଯନ୍ତାଳ ପର୍ବ ବି ପ୍ରଧାନ । ପୁଷ ପୂର୍ଣ୍ଣମୀରେ ସାକିରି ଦିଅଁଗଣ୍ଡ ଠାକୁରାଣୀଙ୍କର କାଠି ଠାକୁରାଣୀ ଯାତ୍ରା, ଦଶହରା ପର୍ବରେ ଜାମୁଗଣ୍ଡ ରାଅଁଳା ଖିଲାମୁଣ୍ଡା ଠାକୁରାଣୀଙ୍କର କାଠି ଠାକୁରାଣୀ ଯାତ୍ରା । ୨୦ ଫୁଟ ଲମ୍ବର ବାଉଁଶର ଅଗ୍ରଭାଗରେ ଫୁଲ ଟାହିଆର ଝିଙ୍କା ତଳକୁ ତଳକୁ ନାନା ରଙ୍ଗର ଶାଢ଼ୀର ଘେର ବାଉଁଶକୁ ଯାନୀ ବା ଦିହୁରୀ ଘୁରାଇ ଘୁରାଇ ନାଚି ନାଚି ଗ୍ରାମ ପରିକ୍ରମା କଲାବେଳେ ସତେ ବା ଠାକୁରାଣୀ ଉଭାହୋଇ ନାଚୁଥାନ୍ତି । ବଡ଼ ଚିତାକର୍ଷକ ଏ ଦୃଶ୍ୟ । ଏ ପର୍ବ ଦିନ ମାନଙ୍କରେ ଆଦିବାସୀ ପୁରୁଷ ମହିଳା ମଉଜ ମଜ୍‌ଲିସ ଆନନ୍ଦରେ ବିଭୋର ହୁଅନ୍ତି । ଘରେ ଘରେ ପିଠାପଣା ଭୋଜିଭାତର ଆନନ୍ଦ ଉତ୍ସବ ଲାଗିରହିଥାଏ । ମଦ ନିଶାରେ ସମସ୍ତେ ବିଭୋର ।

<u>କୋହ୍ଲ :</u> କୋହ୍ଲ ସଂପ୍ରଦାୟର ଆଦିବାସୀ ନୟାଗଡ଼ର କୁଲୁରୁକୁମ୍ପା ଅଞ୍ଚଳରେ ଦେଖାଯାଆନ୍ତି । ଏମାନେ କୃଷି କରନ୍ତି । ଶିକାର କରନ୍ତି । ମାଙ୍କଡ଼ ମାଂସ ଖାଆନ୍ତି । ଜଙ୍ଗଲରୁ ମହୁ, ଝୁଣା, ଲାଖ ସଂଗ୍ରହ କରି ଜୀବିକା ଭରଣା କରନ୍ତି ।

ଧାଙ୍ଗଡ଼ୀ ଘର : ଜଙ୍ଗଲ ମଝିରେ ଆଦିବାସୀ ଯୁବତୀଙ୍କ ପାଇଁ ଧାଙ୍ଗଡ଼ୀଘର ଥାଏ। ଏହା ଏକ ସୀମିତ ଜଙ୍ଗଲ ଇଲାକାରେ ଥାଏ। ଜଙ୍ଗଲୀ ଯୁବତୀଏ ଧାଙ୍ଗଡ଼ୀଘରେ ଏକାଠି ହୁଅନ୍ତି, କାହିଁ ଦୂରଦୂରାନ୍ତରରୁ ଆସି। ଜଙ୍ଗଲର କାହିଁ ଦୂରପଥ ଅତିକ୍ରମ କରି ଧାଙ୍ଗଡ଼ା ଅବିବାହିତ ଯୁବକମାନେ ଧାଙ୍ଗଡ଼ୀ ଘରେ ଏକାଠି ହୁଅନ୍ତି। ଧାଙ୍ଗଡ଼ୀ ସ୍ୱାଦିଷ୍ଟ ମିଠା ପକ୍ୱଫଳ ସେମାନଙ୍କୁ ଉପହାର ଦିଅନ୍ତି। ଜହ୍ନ ରାତି, ତାରା ବିଛାଡ଼ି ହୋଇ ପଡ଼ିଥିବା ଅନ୍ଧାରରେ କାଠ ନିଆଁ ମଶାଲ ଜାଳି ନାଚକୁଦରେ ରାତି ବିତାନ୍ତି। ପୂରୁବ ଆକାଶ ତାରା ପଶ୍ଚିମରେ ବୁଡ଼େ, ବାସି ଜହ୍ନ ସକାଳରେ ଦିଶେ ଯୁବକ ଯୁବତୀଙ୍କର ନାଚକୁଦ ସରେ। ଧାଙ୍ଗଡ଼ୀ ଧାଙ୍ଗଡ଼ାର ମନଦିଆନିଆ ରାତିରେ ଯାହାର ଯାହାଠାରେ ମନଲାଖିଗଲା ସେ ରାତିରେ ସେ ଦୁହେଁ ଉଦୁଲିଆ ହେଲେ। ଜଙ୍ଗଲ ମଧ୍ୟରେ ସେମାନେ ଏକାଠି ହୋଇଗଲେ। ଦାମ୍ପତ୍ୟ ଜୀବନ ଡ଼ୋରିରେ ବାନ୍ଧି ହୋଇଗଲେ। ଏହାର ନିଦର୍ଶନ ସ୍ୱରୂପ ଧାନ ଚାଙ୍ଗଡ଼ା ପଞ୍ଚାୟତରେ କୁସୁମୀ ନଦୀର ପୂର୍ବ ଦାଢ଼ରେ ଠିଆ ହୋଇଥିବା ଧାଙ୍ଗଡ଼ୀ ପାହାଡ଼। ଧାଙ୍ଗଡ଼ୀ ଧାଙ୍ଗଡ଼ାର ଜୀବନ ମିଳନର ରୂପ ପ୍ରକୃତିର ଆବେଗମୟ ସମୋହନ।

ଧାଙ୍ଗଡ଼ୀ ଗୀତ:

"ମାସକା ମାରା ଟୁମ୍ବତେ
ପିଓ ଖୁଲ ଡୁମ୍ବର ହେ
ମାମା ମାଗ ଗୁଣତେ"।

ଭୂତପ୍ରେତ ଉପରେ ଆଦିବାସୀର ବିଶ୍ୱାସ : ଆଦିବାସୀର ଡ଼ାହାଣୀ, ପିଶାଚୁଣୀ ଉପରେ ବିଶ୍ୱାସ ଥାଏ। ଘୁଷୁରୀ ଚଣ୍ଡୀ ନିଶାର୍ଦ୍ଧରେ ନାକରେ ସଳିତା ଜାଳି ପଡ଼ିଆରେ ବିଷ୍ଠା ଖୋଜି ଚରେ ଉଲଗ୍ନ ଅବସ୍ଥାରେ। ପାଲଟା ବାଘ ଭିଆଣ, ମାଦଳ ଭୂତ, ଡ଼ାହାଣୀ ତୋଟାରେ ପିଲା ଖେଳାଇବା, ଶ୍ମଶାନରେ ଚିରୁଗୁଣି ଡ଼ାକିବା, ମାହାର ଡ଼ାକିବା, ରାତିରେ ଭୂତ କବାଟ ଠକ୍ ଠକ୍ କରିବା, ହାଡ଼ବାଇ, ଫୁଲ ସୁନ୍ଦରୀ। ଏସବୁ ଡ଼ାହାଣୀ ସ୍ତ୍ରୀଲୋକଙ୍କ ଦେହରେ ଆସନ୍ତି। କନ୍ଧ ଗୁଣିଆ ଡ଼ାହାଣୀ ଝଡ଼ାଏ।

କନ୍ଧ ଗୁଣିଆର ବେଶ : କନ୍ଧ ଗୁଣିଆର ମୁଣ୍ଡରେ ଲମ୍ବା ଅଳରା କେଶ, ମଥାରେ ସିନ୍ଦୁର ଶିରୀ, ମୁହଁରେ ବାଘୁଆ ନିଶ, ବେକରେ ବାଘନଖିଆ ମାଳି, ହାତରେ କଂକଣ ବଳା, ତେଲ ଜରଜର ଦେହରେ କଳାବସ୍ତ୍ର ପରିଧାନ, ହାତରେ ବେତ ବାଡ଼ି ଓ ମୟୂର ପକ୍ଷୀର ଚାମର । ଡ଼ାହାଣୀ ଛଡ଼ାଗଲା ବେଳେ ଗୁଣିଆର ରୂପ ଭୟଙ୍କର।

ଡାହାଣୀ ଛଡ଼ାଇବାର ଉପଚାର : ଅରୁଆ ଚାଉଳ, ଗଜମୁଆଁ, ଛୁରୀ, କୁକୁଡ଼ା ଡ଼ିମ୍ବ, ବଳି ପାଇଁ କୁକୁଡ଼ା, ପାଚିଲା କଦଳୀ, କୋଠି କାଟିବା ପାଇଁ ମୁରୁଜ, ବଳିତା, ନାଲି ମନ୍ଦାର ଫୁଲ, ଚୁଆ, ଜଡ଼ାତେଲ, ଝୁଣା, ନବାତ ପଣା ସାତଗଣ୍ଠି ବେତ ଓ ତୁଳସୀ ଛାଟ ଦରକାର।

<u>ଶବ ସଂସ୍କାର :</u> ଆଦିବାସୀମାନେ ଶବ ଦାହ କରନ୍ତି। ଦକ୍ଷିଣରୁ ଉତ୍ତରକୁ ମୁହଁକରି ଆୟତାକାରରେ ଚାରୋଟି ଖୁଣ୍ଟ ପୋତନ୍ତି। ତଳେ ତିନିଖଣ୍ଡ ମୋଟା ଶୁଖିଲା କାଠ ପାରିଦିଅନ୍ତି। ଉତ୍ତରକୁ ମୁଣ୍ଡକରି ଶବକୁ ଏହା ଉପରେ ଶୁଆଇ ଦିଅନ୍ତି। ଶବ ଉପରେ ତିନିଖଣ୍ଡ କାଠ ଲଦାଯାଏ। ତା'ପରେ ମୁଣ୍ଡପଟେ ଗୋଡ଼ପଟେ ଉଭୟପାର୍ଶ୍ୱରୁ ନିଆଁ ଲଗାନ୍ତି। ଜୁଇ ଜଳେ ଶବ ପୋଡ଼ି ପାଉଁଶ ହୁଏ।

## ଆଦିବାସୀ ଖାଦ୍ୟ ପାନୀୟ

ମହାସାଗର, ବରଫ ଆବୃତ ଓ ଆରଣ୍ୟକ ପରିବେଷ୍ଟନୀ ମଧ୍ୟରେ ପୃଥିବୀ ଏକ ବୃହତ୍ ଜୀବଶାଳା। ଜୀବମାନଙ୍କର ଶାରୀରିକ ଗଠନ ଓ ଶାରୀରିକ ସୁରକ୍ଷା ପାଇଁ ଖାଦ୍ୟ ଆବଶ୍ୟକୀୟ ଉପାଦାନ। ପ୍ରାକୃତିକ ପରିବେଶ ମଧ୍ୟରେ ଭିନ୍ନ ଭିନ୍ନ ପ୍ରକାର ଖାଦ୍ୟ ଭରପୁର ହୋଇ ରହିଛି ଜୀବମାନଙ୍କ ପାଇଁ। ପ୍ରାଣୀମାନେ ପ୍ରକୃତିରୁ ସିଧାସଳଖ ଖାଦ୍ୟ ଛିଣ୍ଡାଇ ଖାଇଥାଆନ୍ତି। ପ୍ରାଣୀ ଜଗତ ମଧ୍ୟରେ ମନୁଷ୍ୟ କେବଳ ଫଳ, ଫୁଲ, ପତ୍ର, ମୂଳ, ଛତୁ, ମାଛ, ମାଂସ ସଂଗ୍ରହ କରି ରନ୍ଧନ ପ୍ରକରଣରେ ସ୍ୱାଦିଷ୍ଟ ଖାଦ୍ୟ ଖାଏ। ଏହିକ୍ରମରେ ନୟାଗଡ଼ ଜିଲ୍ଲା ଏକ ଆଞ୍ଚଳିକ ପରିବେଶରେ ଜନସାଧାରଣଙ୍କର ଖାଦ୍ୟ ଚୟନ ବିଚାର କରାଯାଏ।

<u>ଆଦିବାସୀଙ୍କ ଖାଦ୍ୟ ପାନୀୟ :</u> ଆଦିବାସୀର ବାସସ୍ଥାନ ଅରଣ୍ୟ। ସେମାନେ ଅରଣ୍ୟରୁ ଫଳମୂଳ, ପତ୍ର ସଂଗ୍ରହ, ବନ୍ୟ ଜନ୍ତୁ ଶିକାରରେ ମାଂସ, କୁକୁଡ଼ା ପୋଷି ତା'ର ମାଂସ ଖାଦ୍ୟ କରି ଖାଆନ୍ତି। ପାନୀୟ ଆକାରରେ ଖଜୁରୀ ତାଡ଼ି, ମହୁଲି ରସ, ସଲପ ରସ ପାନ କରନ୍ତି। ଏହି ରସ ପାନୀୟ ଆଦିବାସୀର ମୁଖ୍ୟ ଖାଦ୍ୟ।

<u>ଖଜୁରୀ ତାଡ଼ି :</u> ଖଜୁରୀ ଗଛର କଣ୍ଢା ତଳକୁ କାଟି ଖୋଲପ କରାଯାଏ। ଖୋଲପ ତଳକୁ ମାଠିଆ ବନ୍ଧା ଯାଇଥାଏ। ଖଜୁରୀ ରସ ଝରି ମାଠିଆରେ ଭର୍ତ୍ତି ହୁଏ। ସୂର୍ଯ୍ୟୋଦୟ ପୂର୍ବରୁ ମାଠିଆକୁ ଅଣାଯାଏ। ପ୍ରଥମ ୪/୫ ଦିନରେ ରସକୁ ତଳେ ଫୋପଡ଼ା ଯାଏ। ତା ପରଦିନଠାରୁ ଖଜୁରୀ ରସକୁ ସଂଗ୍ରହ କରି ପାନୀୟ ରୂପେ ବ୍ୟବହାର କରାଯାଏ। ଖଜୁରୀ ରସରେ ଖାଦ୍ୟ ପାନୀୟ ଉଭୟ ଦ୍ରବ୍ୟଗୁଣ ଥାଏ। ଯିଏ ରସ ସଂଗ୍ରହ କରେ ତାକୁ ରସିଆ କହନ୍ତି। ରସିଆର ଖଟି ଜାଗାକୁ ଆଦିବାସୀ ଯାଏ; ପତ୍ର ଠୋଲାରେ ତାଡ଼ି ମନଖୁସିରେ ପିଏ। ନିଶାରେ ଟୁଳଟୁଳ ହୁଏ।

<u>ସଲପ ରସ :</u> ସେପରି ସଲପ ଗଛର କଣ୍ଢା ତଳକୁ ହାଣି ଖୋଲପ କରାଯାଏ। ଖୋଲପ ତଳକୁ ମାଠିଆ ବନ୍ଧା ଯାଏ। ଖୋଲପରୁ ରସ ଝରି ମାଠିଆକୁ ନିଗିଡ଼ି ଆସେ। ରସିଆ ପତ୍ର ଠୋଲାରେ ସଲପ ରସ ଦିଏ। ଆଦିବାସୀ ସ୍ତ୍ରୀ ପୁରୁଷ ସଲପ ରସ ପିଇ ଉଭୟ କ୍ଷୁଧା ତୃଷା ନିବାରଣ କରେ।

<u>ମହୁଲ ରସ :</u> ମହୁଲରୁ ପ୍ରସ୍ତୁତ ମଦ ଆଦିବାସୀର ପ୍ରିୟ ପାନୀୟ। ମହୁଲ ଫୁଲକୁ ହାଣ୍ଡିରେ ପୋଚ କରାଯାଇ ତାକୁ ରନ୍ଧାଯାଏ। ମହୁଲ ଭାଟିରେ ସ୍ୱ ପ୍ରଣାଳୀରେ ମଦ ସଂଗ୍ରହ କରାଯାଏ। ମହୁଲୀ ମଦର ଭାରି ଟାଣ ନିଶା। ଆଦିବାସୀ ମହୁଲି ପିଇ ଆନନ୍ଦରେ ପ୍ରକୃତି କୋଳରେ ଜୀବନ ବିତାଏ। ପୁନିଅ ପରବରେ ଉଭୟ ସ୍ତ୍ରୀ ପୁରୁଷ ମହୁଲି ପିଇ ତମାମ ରାତି ଜୀବନକୁ ଉପଭୋଗ କରନ୍ତି। ମହୁଲି ଆଦିବାସୀର ଜୀବନ ସାଥୀ। ବଣ ମୂଳକରେ ଆଦିବାସୀର ଖଜୁରୀ, ସଲପ, ମହୁଲ, ଆମ୍ବ, ତେନ୍ତୁଳି, ଡ଼ିମିରି, କେନ୍ଦୁ, ପଣସ ବୃକ୍ଷ  କାଟିବା ଭାରି କଟକଣା। କାହିଁକିନା ଏ ବୃକ୍ଷମାନେ ଖାଦ୍ୟ ପାନୀୟ ଯୋଗାଇଥାନ୍ତି। ଡ଼ଙ୍ଗର ତଇଲା ପଦର ମାନଙ୍କରେ ଏ ବୃକ୍ଷ ଗୁଡ଼ିକ ମହଜୁଦ ହୋଇ ବଢ଼ିଥାନ୍ତି। ଏ ଗଛ କାଟିଲେ ଆଦିବାସୀ ସମାଜ ତାକୁ ଅପରାଧୀ କରାଇ ତା ଉପରେ କଠୋର ଦଣ୍ଡ ବିଧାନ କରନ୍ତି। (ଏହାର ସହାୟକ ବ୍ୟକ୍ତି ଚୈତନ୍ୟ ସ୍ୱାଇଁ, ଜଙ୍ଗଲ ବିଭାଗୀୟ କର୍ମଚାରୀ)

<u>ମୂଳ, କନ୍ଦ, ଜାତୀୟ ଖାଦ୍ୟ :</u> ଟୁଙ୍ଗା, କଡ଼ବା, ମାସିଆ, ତେରେଙ୍ଗା, ପାଣିଆଳୁ, ଓଲୁଅ, ଶକରକନ୍ଦା, ପାଳୁଅ, ହଳଦୀ, ଅଦା ଆଦି ଗଛର ମୂଳ ନରମ ଖାଦ୍ୟ ରସରେ ଫୁଲି ରହିଥାଏ। ପାହାଡ଼ି ଲୋକ ଏହାର ଖାଦ୍ୟଗୁଣ ଅନୁଭବ କରି ଏହାକୁ ଖାଦ୍ୟ ରୂପେ ଗ୍ରହଣ କରେ।

<u>ଲେଥା :</u> ଟୁଙ୍ଗା, କଡ଼ବା, ପାଣିଆଳୁ ଆଦି ମୂଳରୁ ଚୋପା ଛଡ଼ାଇ ଏକାଠି ମାଟି ହାଣ୍ଡିରେ ସିଝାଯାଏ। ଭଲ ଭାବରେ ସିଝି ଆସିଲେ ଲୁଣ ପକାଇ ପାକ ପ୍ରସ୍ତୁତ ହୁଏ। ଏହାକୁ ଆଦିବାସୀ ସିଆଁ ପତରରେ ବାଢ଼ି ଆନନ୍ଦରେ ଖାଏ।

<u>ମାସିଆ:</u> ମାସିଆ ମୂଳ ଜାତୀୟ ଖାଦ୍ୟ। ମାସିଆକୁ ହାଣ୍ଡିରେ ସିଝା ଯାଏ। ସିଝାଗଲାପରେ ତାର ଚୋପା ଛଡ଼ାଇ ତାକୁ ଚେକା ଚେକା କରି କଟାଯାଏ। ଏହି କଟା ମାସିଆକୁ ଜାଲି ପାଛିଆରେ ରଖି ବହି ଯାଉଥିବା ଝରଣା ଧାରରେ ଥୁଆଯାଏ। ଝରଣା ସ୍ରୋତରେ ମାସିଆର ପିତା ଅଂଶ କଟିଯାଏ। ତାପରେ ଲୁଣ ପକାଇ ତାକୁ ରନ୍ଧନ କରି ଖାଦ୍ୟ ପ୍ରସ୍ତୁତ ହୁଏ।

<u>ଓଲୁଅ ଚକୁଳି :</u> ଓଲୁଅ ଜଙ୍ଗଲୀ ଲୋକଙ୍କର ଏକ ଉପାଦେୟ ଖାଦ୍ୟ। ଓଲୁଅ ମୂଳକୁ ଚେକି ଚେକି କଟାଯାଏ। ଏହି ଓଲୁଅ ଖଣ୍ଡକୁ ଖଳି ବୋଝରେ ତିନି ଚାରିଦିନ ବହିଯାଉଥିବା ଝରଣା ଜଳରେ ବସାଯାଏ। ଫଳତଃ ଓଲୁଅର ଗଲୁ ଅଂଶ ବାହାରିଯାଏ। ବସାଯାଇଥିବା ଓଲୁଅକୁ ବଟାଯାଇ ସୋଦୁଅ ପ୍ରସ୍ତୁତି ହୁଏ। ଓଲୁଅ ସୋଦୁଅରେ ଆବଶ୍ୟକ ଲୁଣ ପକାଇ ମାଟି ପଲମରେ ଚକୁଳି ପିଠା ସେକାଯାଏ। ଏହା ଏକ ସ୍ୱାଦିଷ୍ଟ ପିଠା। ଏହାର ଔଷଧୀୟ ଦ୍ରବ୍ୟଗୁଣ ରହିଛି। ଖାଇବା ଦ୍ୱାରା ମଳକଣ୍ଟକ, କାଛୁ କୁଣ୍ଡିଆ ପ୍ରତିରୋଧକ ଶକ୍ତି ବଢ଼ାଏ।

<u>ଓଲୁଅ ଚଟଣୀ, ଭରତା :</u> ଓଲୁଅ ମୂଳକୁ ଭଲ ଭାବରେ ସିଝାଯାଇ ତାର

ଗଲୁ ମରାଯାଏ। ସେଥିରୁ ଚୋପା ଛଡ଼ାଇ ସେଥିରେ ଲୁଣ, ଲଙ୍କା, କଇଁଆ ରସ କିମ୍ବା ଆମ୍ବୁଲ ରସ ମିଶାଇ ଚକଟା ଯାଏ। ତାକୁ ଚେକି ଚେକି ସେକା ପିଠା ଆକୃତିର ମାଟି ପଲମରେ ସୋରିଷ ଫୁଟଣ ଦେଇ ସେକାଯାଏ। ଏହା ଏକ ସୁସ୍ୱାଦୁ ଚଟଣୀ।

ଓଲୁଅ କାଞ୍ଜି : ଓଲୁଅର ଗଜା କଅଁଳ ଡ଼ାଙ୍ଗକୁ ଚାଞ୍ଛି ତାର ଚୋପା ଛଡ଼ାଯାଏ। ତାପରେ ତାକୁ ହାଣ୍ଡିରେ ସିଝାଇ ତା'ର ଗଲୁ ମରାଯାଏ। ଆମ୍ବିଳି ତୋରାଣିରେ ଖୁଦ ସିଝାଇ ସେଥିରେ ସିଝା ହୋଇଥିବା ଓଲୁଅ ଡ଼ାଙ୍ଗକୁ ପକାଇ ସିଝାଯାଏ। ଭଲଭାବରେ ଫୁଟି ଆସିଲେ ତାକୁ ଭୃସୁଙ୍ଗା ପତ୍ର, ଲଙ୍କା, ରସୁଣ, ସୋରିଷ ଫୁଟଣରେ ବଘରା ଯାଏ। ଖାଇବାକୁ ସ୍ୱାଦ ଲାଗେ।

ଓଲୁଅ ଆମ୍ବିଳ: ଓଲୁଅର ଗଲୁ ମାରିବା ପାଇଁ ତାର ଗଜା କଅଁଳ ଡ଼ାଙ୍ଗକୁ ଭଲ ରକମରେ ହାଣ୍ଡିରେ ସିଝାଯାଏ। କଇଁଆ ରସ ଅଥବା ଆମ୍ବୁଲ ରସ ପକାଇ ବେସର ଦେଇ ପାକ କରାଯାଏ। ଭୃସୁଙ୍ଗା ପତ୍ର, କଞ୍ଚାଲଙ୍କା ସୋରିଷ, ରସୁଣ ଫୁଟଣାରେ ବଘରା ଯାଏ। ସ୍ୱାଦିଷ୍ଟ ଆମ୍ବିଳ ଖଟା ପ୍ରସ୍ତୁତ ହୁଏ। (ଏହାର ସହାୟକ ବ୍ୟକ୍ତି ଆଦିବାସୀ ଲୋକଙ୍କ ସହିତ ସମ୍ପର୍କିତ ଅନୁଭବୀ କବି ସୁଧାକର ଜେନା, ଦିଲମାନ ପୁର, ଓଡ଼ଗାଁ)

ଶସ୍ୟ ଜାତୀୟ ଖାଦ୍ୟ : ଆଦିବାସୀ ଖଣ୍ଡେ ଖଣ୍ଡେ ଜଙ୍ଗଲ କାଟି ସେ ଡ଼ାଳ କଣ୍ଟା ପୋଡ଼ି ଚାଷ କ୍ଷେତ୍ର ପ୍ରସ୍ତୁତ କରନ୍ତି। ବର୍ଷା ଆରମ୍ଭରେ ଏ ପାହାଡ଼ିଆ ଭୂମିରେ ମକା, ମାଣ୍ଡିଆ, କୋଦୁଅ, କୁହୁଡ଼ି, ସୁଆଁ, ଧାନ, ଜହ୍ନା ଫସଲ କରନ୍ତି । ଏ ଫସଲ ଉଠିଲେ ସେ ଭୂମିରେ କୋଳଥ, ମସୁର, ବିରି, ସୋରିଷ, ଅଳସି, ରାଶି ଚାଷ କରନ୍ତି। ଏହାକୁ ପୋଡୁଚାଷ କୁହାଯାଏ। ପଦର ଓ ଡ଼ଙ୍ଗର ମାନଙ୍କରେ ଧାନ ଚାଷ ହୁଏ। ଓଡ଼ିଶାରୁ ଧାନ ଚାଷର ଆରମ୍ଭ। କୋରାପୁଟର ଆଦିବାସୀ ପଦରରେ ପଦାଧାନ ଚାଷ କରୁଥିଲେ। ଆଦିବାସୀ ଖାଦ୍ୟ ଜଙ୍ଗଲ ପାହାଡ଼ରେ ଭରପୁର ହୋଇ ରହିଛି। ଆଦିବାସୀ ପାଖରେ ଡ଼ିଆସିଲ ଆଉ ଲୁଣ ପୁଡ଼ିଆଟେ ଥିଲେ ତାର କୌଣସିଟା ଅଭାବ ନଥାଏ। ଅରଣ୍ୟରୁ ସବୁମିଳେ। କେବଳ ହାଟକୁ ଆସି ଡ଼ିଆସିଲ ଓ ଲୁଣ ନେବେ।

ଧାନ/ଭାତ : ଆଦିବାସୀ ପଦା ଆଉ ଝୋଲାରୁ ଧାନ ଅମଳ କରେ। ଧାନରୁ ଉସୁନା ଚାଉଳ ଅରୁଆ ଚାଉଳ ପ୍ରସ୍ତୁତ କରେ। ଉସୁନା ଭାତ କରି ଖାଏ। ଚାଉଳ କ୍ଷୀରି ବା ଯାଉ କରି ଖାଏ।

ମକା ଭାତ : ଭଣ୍ଡାରୁ ମକାଦାନା ବାହାର କରି ଶୁଖାଯାଏ। ଶୁଖିଲା ମକାଦାନାକୁ ଢ଼ିଙ୍କିରେ କୁଟି ଖଣ୍ଡ ଖଣ୍ଡ କରାଯାଏ। ଏହି ଖଣ୍ଡ ଖଣ୍ଡ ମକାଦାନାକୁ ହାଣ୍ଡିରେ ବହୁତ ପାଣି ଦେଇ ସିଝାଯାଏ। ଦାନା ଗୁଡ଼ିକ ଫୁଟି ଆସିଲେ ହାଣ୍ଡିରୁ ସିଝା ପାଣିକୁ

ବାହାର କରି ଦିଆଯାଏ। ହାଣ୍ଡିରେ ମକା ଭାତ ଗୋଟା ଗୋଟା ହୋଇ ରହେ। ଏହି ଖଣ୍ଡ ଖଣ୍ଡ ମକାଦାନାକୁ ବେଶି ପାଣି ଦେଇ ସିଝାଯାଏ। ଦାନା ଗୁଡ଼ିକ ସିଝି ପାଣିରେ ଫିଟିଯାଇ ବହଳା ହୋଇଯାଏ। ଏଥିରେ ଲୁଣ ଦେଇ ଘାଣ୍ଟିଦେଲେ ଜାଉ ହୁଏ। ଏଥିରେ ମହୁଲ ଖଜୁରୀ ଗୁଡ଼ ପକାଇଲେ କ୍ଷୀରୀ ହୋଇଯାଏ।

<u>ସୁଆଁ ଭାତ / ଜାଉ :</u> ସୁଆଁକୁ ହାଣ୍ଡିରେ ସିଝାଇ ଅଳ୍ପ ଖରାରେ ଶୁଖାଇ ଦେଲାପରେ ତାକୁ ଢ଼ିଙ୍କିରେ କୁଟିଦେଲେ ସହଜରେ ସୁଆଁରୁ ଚାଉଳ ବାହାରି ଆସେ। ଭାତ ରନ୍ଧା ପରି ତାକୁ ରାନ୍ଧିଲେ ଛୋଟ ଛୋଟ ଭାତ ହୁଏ। ସୁଆଁକୁ ଢ଼ିଙ୍କିରେ କୁଟିଦେଲେ ଅରୁଆ ସୁଆଁ ଚାଉଳ ବାହାରି ଯାଏ। ଅରୁଆ ସୁଆଁ ଚାଉଳରୁ ଜାଉ ପ୍ରସ୍ତୁତ ହୁଏ। ସୁଆଁ ଜାଉକୁ ନିଜର କୌଶଳରେ ଯେତେ ସ୍ୱାଦିଷ୍ଟ କରିପାରିବ।

<u>କୋଦୁଅ ଭାତ / ଜାଉ :</u> କୋଦୁଅ ଶସ୍ୟକୁ ଢ଼ିଙ୍କିରେ କୁଟି ସେଥିରୁ ଅରୁଆ ଚାଉଳ ବାହାର କରାଯାଏ। ଭାତ ଜାଉ ଯେପରି ରନ୍ଧା ଯାଏ କୋଦୁଅ ଭାତ କୋଦୁଅ ଜାଉ ସେହି ପ୍ରଣାଳୀରେ ପ୍ରସ୍ତୁତ ହୁଏ। କୋଦୁଅ ଜାଉ କୁହ ବା କ୍ଷୀରୀ କୁହ ତୁମେ ଯେପରି ପ୍ରସ୍ତୁତ କରିବ ସେପରି ସ୍ୱାଦ ଆସିବ।

<u>କୁହୁଡ଼ି ଭାତ /ଜାଉ :</u> କୁହୁଡ଼ିକୁ ସିଝା ଯାଇ ଢ଼ିଙ୍କିରେ କୁଟି କୁହୁଡ଼ି ଚାଉଳ ବାହାର କରାଯାଏ। ଯେଉଁ ପ୍ରଣାଳୀରେ ଭାତ ରନ୍ଧା ଯାଏ କୁହୁଡ଼ି ଚାଉଳରୁ ସେପରି ଭାତ ହୁଏ।

<u>ବାଉଁଶ ଧାନ/ଭାତ :</u> ବାଉଁଶ ଫୁଲ ଧରିଲେ ଫୁଲରୁ ଧାନ ହୁଏ। ବାଉଁଶ ଧାନରୁ ଚାଉଳ କରି ଭାତ ରନ୍ଧା ହୁଏ। (ସହାୟକ ବ୍ୟକ୍ତି ପ୍ରଭାତ କୁମାର ସାହୁ, ଜନସେବା ସଂଗଠନ ସଞ୍ଚାର, ପଞ୍ଚାନନ ପ୍ରଧାନ, ପଳାସ ପଦର ବଡ଼ ସିଲିଙ୍ଗା ପଞ୍ଚାୟତ)

<u>ଶାଗୁ:</u> ଶାଗୁ ପାହାଡ଼ ଅଞ୍ଚଳର ଉତ୍ପାଦିତ ଶସ୍ୟ। ଶାଗୁ ଦାନାକୁ ରାନ୍ଧିଲେ ଏହା ସିଝି ଫିଟିଯାଏ। ନରମ ହୋଇ ଥଲ ଥଲ ହୋଇଯାଏ। ଏଥିରେ ଲୁଣ ପକାଇ ଖିଆଯାଏ। ଏହା ଏକ ପ୍ରଧାନ ଶିଶୁ ଖାଦ୍ୟ।

<u>ଅଦା, ହଳଦୀ, ପାଳୁଅ :</u> ଅଦା, ହଳଦୀ, ପାଳୁଅ ଜଙ୍ଗଲୀ ଜାଗାର ଏକ ସମଜାତୀୟ ଚାଷ। ଅଦା, ହଳଦୀ ମସଲା ଜାତୀୟ ଖାଦ୍ୟ। ପାଳୁଅ ମଧ୍ୟ ମୂଳଜାତୀୟ ଖାଦ୍ୟ। ଏହା ଉତ୍ତମ ଗୁଣର ଶିଶୁ ଖାଦ୍ୟ। ପାଳୁଅ ମୂଳକୁ ଭଲଭାବରେ କୁଟି କାଦୁଅ ପ୍ରାୟ କରି କନାରେ ଚିପୁଡ଼ି ତା'ର ଦୋରୁଅକୁ ପ୍ରଶସ୍ତ କନା ଉପରେ ଢ଼ାଳି ଶୁଖାଯାଏ। ଶୁଖିଗଲେ ତାକୁ ଖଣ୍ଡ ଖଣ୍ଡ ଗୁଣ୍ଡ କରି ପାଳୁଅ ଉତ୍ପାଦନ କରାଯାଏ। ପାଳୁଅକୁ ସିଝାଇଦେଲେ ପାଣିରେ ଫିଟିଯାଇ ବହଳା ବହଳା ଜାଉ ପ୍ରାୟକ ହୋଇଯାଏ। ସେଥିରେ ଲୁଣ କି ଚିନି ପକାଇ ଖାଇହୁଏ।

<u>ମାଣ୍ଡିଆ ସୁରୋ :</u> ମାଣ୍ଡିଆ ଏକ ଉତ୍ତମ ଗୁଣର ଶସ୍ୟ ଖାଦ୍ୟ। ପାହାଡ଼ି

ଲୋକଙ୍କର ପ୍ରୀୟ ଖାଦ୍ୟ ମାଣ୍ଡିଆସୁରୋ। ହାଣ୍ଡିରେ ଅଳ୍ପ ଚାଉଳରେ ଭାତ କରାଯାଏ। ତହିଁରେ ମାଣ୍ଡିଆ ଚୁନା ପତଳା କରି ପକାଇ ଘାଣ୍ଟି ସିଝା ଯାଏ। ତାକୁ ବାସି କରି ରଖାଯାଏ। ତାପର ଦିନ ପତ୍ର ଠୁଙ୍ଗାରେ ଆଦରରେ ପିଅନ୍ତି। ଆଦିବାସୀ ମାନଙ୍କର ଘରେ ଘରେ ଏହି ଖାଦ୍ୟ ପ୍ରସ୍ତୁତି ହୋଇଥାଏ।

<u>ମକା, ଜହ୍ନା ଲିଆ :</u> ମକା ଜହ୍ନା ସମଜାତୀୟ ପାହାଡ଼ି ଶସ୍ୟ। ପାକଳ ମକା ଆଉ ଜହ୍ନା ମଞ୍ଜିକୁ ଖରାରେ ଭଲରେ ଶୁଖାଯାଏ। ତା ପରେ ମାଟି ହାଣ୍ଡିରେ ବାଲି ଦେଇ ମକା ହେଉ ବା ଜହ୍ନା ପକାଇ ଭଜା ଯାଏ। ମକା ତତଲା ହାଣ୍ଡିରେ ଫୁଟି ବଡ଼ ବଡ଼ ହୋଇ କୋମଳ ହାଲକା ହୋଇ ଲିଆ ହୁଏ। ଲିଆ କରି ଖିଆଯାଏ ଅବା ଗୁଡ଼ ପାଗରେ ଉଖୁଡ଼ା ମୁଆଁ କରି ଖାଇହୁଏ।

<u>ଓଲୁଅ ମୁଢ଼ି :</u> ଓଲୁଅ କନ୍ଦକୁ ପତଳା ପତଳା କରି ହାଣ୍ଡିରେ ସିଝା ହୁଏ। ସେଥିରେ ଲୁଣ ଲଙ୍କା ଭିଜାଇ ଦିଆଯାଏ। ସିଝା ଓଲୁଅ ଖଣ୍ଡକୁ କାଟି ଛୋଟ ଛୋଟ କରାଯାଇ ଖରାରେ ଶୁଖାଯାଏ। ଓଲୁଅ ଖଣ୍ଡ ଭଲରେ ଶୁଖିଗଲେ ତାକୁ ତତଲା ବାଲି ହାଣ୍ଡିରେ ଭାଜିଲେ ଫୁଲକା ଫୁଲକା ଫୁଟେ। ଏ ହେଉଛି ଓଲୁଅ ମୁଢ଼ି ଆଦିବାସୀର ଖାଦ୍ୟ।

<u>ଖଜୁରୀ ମୁଢ଼ି :</u> ଖଜୁରୀ ଦିନେ ଆଦିବାସୀମାନେ ପାଚିଲା ଖଜୁରୀ କୋଳି ସଂଗ୍ରହ କରି ବର୍ଷକ ପାଇଁ ସାଇତି ରଖନ୍ତି। ପାଚିଲା ଶୁଖିଲା ଖଜୁରୀକୁ ପାଣିରେ ବତୁରାଇ ଦେଲେ ପୂର୍ବ ସ୍ୱାଦ ଫେରିଆସେ। ତାକୁ ଜଳଖିଆ କରାଯାଏ।

<u>ଖଜୁରୀ ପିଠା :</u> ପାହାଡ଼ି ଲୋକ ପାଚିଲା ଖଜୁରୀକୁ ଶୁଖାଇ ଘୁମରେ ସାଇତି ରଖନ୍ତି। ଆବଶ୍ୟକ ହେଲେ ଶୁଖିଲା ପାଚିଲା ଖଜୁରୀର ରସଯୁକ୍ତ ଚୋପାକୁ ଅଲଗା କରନ୍ତି। ଖଜୁରୀର ମିଠା ପାଚିଲା ଶୁଖିଲା ଚୋପାକୁ ଚାଉଳରେ ମିଶାଇ ଢ଼ିଙ୍କିରେ କୁଟି ଚୁନା ପ୍ରସ୍ତୁତ କରନ୍ତି। ଚୁନାକୁ କାଠୁଆ ସୋଦୁଅ ପରିକା ଚକଟା ହୁଏ। ତାପରେ ଶାଳପତ୍ର ପୁଡ଼ାରେ ରଖାଯାଇ ନିଆଁରେ ପୋଡ଼ା ହୁଏ। ପୁଡ଼ାର ପୋଡ଼ାପତ୍ର ଝାଡ଼ିଦେଇ ପିଠା ଖାଇବାକୁ ହୁଏ।

<u>ଖଜୁରୀ ଛତୁଆ :</u> ଆଦିବାସୀମାନେ ପାଚିଲା ଖଜୁରୀକୁ ଶୁଖାଇ ସାଇତି ରଖନ୍ତି। ପାଚିଲା ଶୁଖିଲା ଖକୁରୀର ମଞ୍ଜିର ମିଠା ଚୋପା ଛଡ଼ାଇ ଦିଅନ୍ତି। ଭଜାଯାଇଥିବା ଚାଉଳରେ ଖଜୁରୀର ମିଠା ଶଶ ମିଶାଇ ଢ଼ିଙ୍କିରେ କୁଟି ଚୁନା କଲେ ଛତୁଆ ହୋଇଯାଏ। ଖାଇବାକୁ ଭାରି ସ୍ୱାଦିଷ୍ଟ।

<u>କେନ୍ଦୁ ମହୁଲ ଛତୁଆ :</u> ଖୁଖିଲା ପାଚିଲା କେନ୍ଦୁ ଶଶ ଓ ଶୁଖିଲା ମହୁଲକୁ ଚାଉଳ ଭଜାରେ ମିଶାଇ ଢ଼ିଙ୍କିରେ କୁଟି ଗୁଣ୍ଡ କରି ଛତୁଆ ପାଗ ହୁଏ। ଏହାକୁ ମାଟି ହାଣ୍ଡି ମାଟି ଠେକିରେ ସରା ଘୋଡ଼ଣୀ ଘୋଡ଼ାଇ ସାଇତି ରଖାଯାଇଥାଏ। ଛତୁଆକୁ ଖିଆଯାଏ।

<u>ମହୁଲ ଲେଠା :</u> ଶୁଖିଲା ଭଜା ମହୁଲ ସହିତ ଭଜା ଚାଉଳ, ରାଶି, କୋଳଥ, ଲିଆ, ଏକାଠି ମିଶାଇ ଢ଼ିଙ୍କିରେ କୁଟି ଅଠା କରାଯାଏ। ଏହା ହେଉଛି ମହୁଲ ଲେଠା। ତାକୁ ଚୋବାଇ ଚୋବାଇ ଖାଇବାକୁ ଭଲ ଲାଗେ।

<u>ମହୁଲ ଚକୁଳି :</u> ମହୁଲରୁ କୁଅଁ କେଶର ବାହାର କରିଦିଆଯାଏ। ଏହି ମହୁଲକୁ ଅରୁଆ ଚାଉଳରେ ମିଶାଇ ବଟାଯାଇ ସୋଦୁଅ ପ୍ରସ୍ତୁତ ହୁଏ। ଏହାକୁ ମାଟି ପଲମରେ ଚକୁଳି କରି ସେକା ଯାଏ। ମହୁଲ ଚକୁଳି ଖାଇବାକୁ ମିଠା ଲାଗେ।

<u>ମହୁଲ ଫୁଟୁକି :</u> ଲୁଣ ଦେଇ ମହୁଲ,ମୁଗ, ବିରି, ଚଣା, କୋଳଥ ସିଝାଇ ଫୁଲକା କରାଯାଏ। ଏହାକୁ ଶାଳପତ୍ର ଠୋଲାରେ ଖିଆଯାଏ।

<u>ଚକଟା ପିଠା :</u> ଚାଉଳ, ସୁଆଁ, କୋଦୁଅ, କୁହୁଡ଼ି ଚୁନାକୁ ମାଟି ହାଣ୍ଡିରେ ସିଝାଇ ତା ସହିତ ଲୁଣ ଗୁଡ଼ ମିଶାଇ କାଠୁଆ ପାଗ କରାଯାଏ। ଏହି କାଠୁଆ ଖଳି ପାଗକୁ ଚକଟି ଟୋଲ ତେଲରେ ଛଣାଯାଏ। ଏହାକୁ ଚକଟା ପିଠା କହନ୍ତି।

<u>ତାଳ ପିଠା :</u> ପାଚିଲା ତାଳରୁ ରସ ବାହାର କରାଯାଇ ଅରୁଆ ଚାଉଳ ଚୁନାରେ ମିଶାଯାଇ ଆବଶ୍ୟକ ଲୁଣ ପକାଇ ମାଟି ପଲମରେ ଚକୁଳି ପିଠା ସେକନ୍ତି। ପୁନଶ୍ଚ ଭୋଗେଇ ମାନଙ୍କରେ ସୋଦୁଅ ରଖି ମାଟି ହାଣ୍ଡିରେ ତେଲୁଣୀ ଘୋଡ଼ାଇ ସିଝାଯାଇ ଏଣ୍ଡୁରୀ ପିଠା ବନାନ୍ତି।

<u>ସଲପ ପିଠା :</u> ସଲପ ଗଛର ଗଣ୍ଡିର ମଧ୍ୟଭାଗରେ ସଲପ ଶଶ ଥାଏ। ଏହାକୁ ଚିରି ଶଶକୁ ଅମଳ କରି ଶୁଖାଯାଇ ଢ଼ିଙ୍କିରେ କୁଟି ଚୁନା କରାଯାଏ। ଆବଶ୍ୟକ ଲୁଣ ପକାଇ ଜାଉ କରାଯାଏ। ଏହାର ସୋଦୁଅରେ ମହୁଲ ପକାଇ ଚକୁଳି ପିଠା କରାଯାଏ। (ସହାୟକ ବ୍ୟକ୍ତି ତ୍ରିଲୋଚନ ଦାଶ, କୁଞ୍ଜବନ ଗଡ଼, ଦଶପଲ୍ଲା।)

<u>ଶିମିଳି ପିଠା :</u> ଶିମିଳି କଞ୍ଚା ଫଳକୁ ଗୋଟିଏ ମୁଣ୍ଡରୁ କାଟି ତା ଭିତରର ଶଶ ବାହାର କରାଯାଏ। ମାଣ୍ଡିଆ ଚୂନା ଓ ଗୁଡ଼ର ପିଠଉ ତା ଭିତରେ ଭର୍ତ୍ତିକରି ମାଟି ହାଣ୍ଡିରେ ସିଝାଯାଏ। ସିଝିଗଲେ ଶିମିଳି ଖୋଳପାକୁ ଛଡ଼ାଇ ପିଠା ଖିଆଯାଏ।

<u>ପଣସ ଜାତୀୟ ଖାଦ୍ୟ :</u> ବସନ୍ତ ପରେ ପରେ ପଣସ ଗଛରେ ପଣସ ଫଳ ଧରେ। କଷି ପଣସ ତରକାରୀ ହୁଏ। ପାଚିଲା ପଣସର ମଞ୍ଜି ତରକାରୀ ହୁଏ। ସାବିତ୍ରୀ ବ୍ରତରେ ପାଚିଲା ପଣସ ଉପାଦେୟ ପୂଜା ଫଳ। ପାଚିଲା ପଣସ ଖୋସା ଏକ ସୁସ୍ୱାଦୁ ଖାଦ୍ୟ। ପାଚିଲା ପଣସ ରସରେ ଅରୁଆ ଚାଉଳ ଚୁନା ମିଶାଇ ଚକୁଳି ପିଠା ହୁଏ। ପଣସ ସୋଦୁଅକୁ ପକୁଡ଼ି ବରା ଆକାରରେ ଟୋଲ ତେଲରେ ଛାଣି ଛଣା ପିଠା ପ୍ରସ୍ତୁତ କରାଯାଏ।

<u>ପଣସ ଜାଉ :</u> ପାକଳ ହୋଇ ଆସିଥିବା ପଣସରୁ ଚୋପା ବାହାର କରାଯାଏ। ଏଥିରେ ଅରୁଆ ଚାଉଳ ମିଶାଇ ମାଟି ହାଣ୍ଡିରେ ସିଝାଇ ଆବଶ୍ୟକ ଲୁଣ ପକାଇ ଜାଉ କରନ୍ତି। ପଣସ ଋତୁରେ ପଣସ ଜାଉ ଆଦିବାସୀର ଏକ ମୁଖ୍ୟ ଖାଦ୍ୟ।

**ଅମୃତ ଭଣ୍ଡା:** କଞ୍ଚା ଅମୃତ ଭଣ୍ଡାକୁ ତରକାରୀ କରାଯାଏ। ପାଚିଲା ଅମୃତଭଣ୍ଡାକୁ ଫଳକରି ଖିଆଯାଏ। ପାଚିଲା ଅମୃତଭଣ୍ଡା ଅରୁଆ ଚାଉଳ ଚୂନାରେ ଗୋଳି ସୋଦୁଅ କରି ଚକୁଳି ପିଠା ବନାଯାଏ। ସୋଦୁଅକୁ ଟୋଲ ତେଲରେ ପକଡ଼ି ଛାଣନ୍ତି।

**କଖାରୁ ପୋଡ଼ପିଠା :** କଖାରୁ ତରକାରୀ କରି ଖିଆଯାଏ। ଆଦିବାସୀ ପାକଳ କଖାରୁକୁ ସିଝାଇ ତାକୁ ଅରୁଆ ଚାଉଳ ଚୁନାରେ ମିଶାଇ ସୋଦୁଅ ଗୋଳନ୍ତି। ଏଥିରେ ଚକୁଳି ପିଠା ହୁଏ। ଟୋଲ ତେଲରେ ଛଣା ପିଠା ଛାଣନ୍ତି। ପାକଳ କଖାରୁର ଚୋପା ଛଡ଼ାଇ ମାଟି ହାଣ୍ଡିରେ ସିଝାନ୍ତି। କଖାରୁ ସିଝିଗଲେ ତାକୁ ଚକଟି କାଦୁଆ ପାଗ କରନ୍ତି। ପୁନଶ୍ଚ ମାଟି ହାଣ୍ଡିରେ ଗୁଡ଼ ଆଉଟାଇ ସେଥିରେ ଚକଟା କଖାରୁକୁ ଘାଣ୍ଟନ୍ତି, ତା ପରେ ଏଥିରେ ଅରୁଆ ଚାଉଳ ଚୂନା ଆବଶ୍ୟକ ପରିମାଣ ଲୁଣ ପକାଇ ଯନ୍ତନ୍ତି। ଯନ୍ତଣି କାଠୁଆ ହୋଇ ଆସିଲେ ଖାଲୁଆ ପଲମରେ ଶାଳପତ୍ର ପାରି ତାକୁ ଢାଳନ୍ତି । ତାକୁ ହାତରେ ଥାପି ଥାପି ଦେଇ ତା ଉପରେ ଶାଳପତ୍ର ଘୋଡ଼ାଇ ଉପରେ ନିଆଁ ଜମାନ୍ତି। ବହୁ ସମୟ ଏହା ପୋଡ଼ିବା ପରେ ପୋଡ଼ପିଠା ହୁଏ। ଆଦିବାସୀଙ୍କର ପୋଡ଼ପିଠା ଭାରି ପ୍ରିୟ।

**ଆମ୍ବ :** ଆମ୍ବ ଦିନେ ଆଦିବାସୀ ଅଞ୍ଚଳରେ ପ୍ରଚୁର ଆମ୍ବ ମିଳେ। କଞ୍ଚା ପାଚିଲା ଆମ୍ବ ଖିଆ ଯାଏ। ଆମ୍ବ ଉତ୍ତମ ଖଟା ଜାତୀୟ ଫଳ। ଆମ୍ବରୁ ଆମ୍ବସଢ଼ା, ଚମ୍ପଇତ, ଆମ୍ବୁଲ, ଆମ୍ବ ଜାଉ କରାଯାଏ।

**ଆମ୍ବସଢ଼ା :** ପାଚିଲା ଆମ୍ବକୁ କାଠକୁଣ୍ଡରେ ଚକଟି ତାର ଦୋରୁଅ ବାହାର କରାଯାଏ। ଆମ୍ବ ଦୋରୁଅକୁ ଖଜୁରୀ ପଟିରେ ଢ଼ାଳି ଖେଳେଇ ଦିଆଯାଏ। ଖରାରେ ଦୋରୁଅ ଶୁଖି ଗଲେ ଆମ୍ବସଢ଼ା ହୁଏ। ଏହା ଏକ ସ୍ୱାଦିଷ୍ଟ ଆଚାର। ଏହା ଆଦିବାସୀମାନଙ୍କର ସାଇତା ଖାଦ୍ୟ।

**ଚମ୍ପଉତ :** ମିଠା ରସାଳ ଆମ୍ବର ଚୋପା ଚାଞ୍ଛି ତାର ଶଶକୁ ପତଳା ପତଳା କରି କାଟି ଫାଳଫାଳ କରି ଖଜୁରୀ ପଟିରେ ଶୁଖାଯାଏ। ଶୁଖିଗଲେ ତାକୁ ଅନ୍ୟମାସ ପାଇଁ ସାଇତା ହୁଏ। ଏହାକୁ ଚମ୍ପଉତ କହନ୍ତି।

**ଆମ୍ବୁଲ:** କଞ୍ଚା ଆମ୍ବରୁ ଚୋପା ଚାଞ୍ଛି ଫାଳ ଫାଳ କରି ପଟିରେ ଶୁଖାନ୍ତି। ଏହା ଭଲ ଭାବରେ ଶୁଖିଗଲେ ଆମ୍ବୁଲ ହୁଏ। ଆଦିବାସୀଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଖଟାଟିଏ। ଏମାନେ ଆମ୍ବୁଲ ବର୍ଷଯାକ ପାଇଁ ସାଇତି ରଖନ୍ତି।

**ମହୁ:** ମହୁମାଛି ଫୁଲରୁ ରସ ସଂଗ୍ରହ କରି ଫେଣାରେ ସାଇତି ରଖିଥାଏ। ଆଦିବାସୀ ଜଙ୍ଗଲରୁ ମହୁ ସଂଗ୍ରହ କରେ। ପିଠା ମହୁରେ ଭିଜାଇ ଖାଆନ୍ତି। ମହୁରେ ଔଷଧୀୟ ଦ୍ରବ୍ୟଗୁଣ ପୁରି ରହିଥାଏ।

<u>କରଡ଼ି ତରକାରି:</u> ଆଷାଢ଼ ମାସରେ ପ୍ରଥମ ବାଉଁଶ ଗଜାକୁ କରଡ଼ି କୁହାଯାଏ। ଏହାକୁ ବାଉଁଶ ବୁଦାରୁ କାଟିଆଣି ତାକୁ ଚୂନା ଚୂନା କରି କଟାଯାଏ। ଚୂନା ଚୂନା କରଡ଼ିକୁ ପାଣିରେ ଭିଜାଇ ରଖି କଷା ପାଣିକୁ ଫୋପଡ଼ା ଯାଏ। ତା'ପରେ ଲଙ୍କା, ହଳଦୀ, ବେଶର ଦେଇ ରନ୍ଧାଯାଏ। ଭାରି ସୁଆଦ ତରକାରୀ। ଦଶପଲ୍ଲା ବଜାରରେ କରଡ଼ି ପ୍ରଚୁର ପରିମାଣରେ ବିକ୍ରୟ ହୁଏ।

<u>ଜଙ୍ଗଲ ଜାତ ଫଳ ପରିବା :</u> ପାହାଡ଼ି ଲୋକେ ବଣ ପାହାଡ଼ରୁ କାଙ୍କଡ଼, କଡ଼କିଆ, ଅଷାଢୁଆ, ସଂଗ୍ରହ କରି ତରକାରି କରି ଖାଆନ୍ତି। କାଙ୍କଡ଼ ଏକ ମୂଲ୍ୟବାନ ପରିବା।





<u>ଛତୁ :</u> ଆଦିବାସୀ ବର୍ଷା ଦିନେ ନାନା କିସମର ଛତୁ ଜଙ୍ଗଲରୁ ପାଇଯାଏ। ଯଥା- ବସା ଛତୁ, ଖୁଦଛତୁ, ବାଉଁଶ ଛତୁ, ପୁଟୁକୁଳି ଛତୁ, ଡ଼ିମିଆ ଛତୁ। ଛତୁକୁ ଲଙ୍କା ହଳଦୀ ବେଶର ଦେଇ ତରକାରି ରନ୍ଧାଯାଏ। ବର୍ତ୍ତମାନ ଛତୁକୁ ମାଂସ ତରକାରି ସମକ୍ଷକ କରାଗଲାଣି।

<u>ଆଦିବାସୀର ଶାଗ ଜାତୀୟ ଖାଦ୍ୟ :</u> ସୋରିଷ ଶାଗ, ଅରଘା ଶାଗ,ଭଦଳିଆ ଶାଗ, ବୁଦୁଡ଼ି ଶାଗ, ଗୁରୁଡ଼ି ଶାଗ, ପିପଲ ଶାଗ, କାନସିର୍ ଶାଗ, ଆଟିକା ପୋଡ଼ି, ମୁଠି ଶାଗ, ଲେଉଟିଆ ଶାଗ, ପାଣି ଶାଗ, ଗୁଦାରୀ ଶାଗ, ବା ବଟୁଆ ମୁଣ୍ଡି ଶାଗକୁ ଆଦିବାସୀ ଜଙ୍ଗଲ ପଦର ଓ ସନ୍ତସନ୍ତିଆ ପାଣି ଜାଗାରୁ ପାଇଯାଏ। କୋଉ ଶାଗକୁ ଭାଜେ କାହାକୁ ଖରଡ଼େ କେଉଁଟାକୁ ବେଶର ଦେଇ ରାଇତା କରି ଶାଗ ତରକାରି ପ୍ରସ୍ତୁତ କରେ। ବଟୁଆ ମୁଣ୍ଡି ଶାଗରେ ଅରୁଆ ଚାଉଳ ଦେଇ କ୍ଷୀରୀ ପରିକା ଚକାପାଦୁ, କଙ୍କଣ ମେଣ୍ଟି ଅଂଚଳର ଆଦିବାସୀମାନେ ହାଣ୍ଡି ହାଣ୍ଡି କରି ଖାଆନ୍ତି।

<u>ଲୋଟର ଲଇ ଆମ୍ବିଳ :</u> ଲୋଟର ଲଇ ଖଟା ସ୍ୱାଦର ଲଇ। ଏହି ଲଇର କଅଁଳ ଅଗ୍ରଭାଗକୁ ତାର ଉପର ଚୋପା ଛଡ଼ାଇ ଲଙ୍କା, ହଳଦୀ, ବେଶର ଦେଇ ଜୁକୁଜୁକା କରି ରନ୍ଧା ଯାଏ। ନତୁବା ଲୋଟର ଲଇକୁ ଚୁନ୍‌ଚୁନ୍ କାଟି ସେଥିରେ ଲଙ୍କା, ବେଶର ଦେଇ ପତ୍ର ପୁଡ଼ିଆରେ ପୋଡ଼ାଯାଏ। ଏ ଆମ୍ବିଳ ଚଟଣୀ ଖାଇବାକୁ ମଜା ଲାଗେ।

<u>ଡାଲି ଜାତୀୟ ଖାଦ୍ୟ :</u> ଆଦିବାସୀମାନେ କାଙ୍ଗୁଲ, ଚଣା, ବିରି, କୋଳଥ, ଶିମ୍ଭ, ମସୁରକୁ ତତଲା ହାଣ୍ଡିରେ ଭାଜି ଡ଼ାଲିକରି ଖାଆନ୍ତି।

<u>ତୈଳ ଜାତୀୟ ଖାଦ୍ୟ :</u> ଡିଳା, ରାଶି, ସୋରିଷ, ଟୋଲ, ଚିନାବାଦାମରୁ

ଆଦିବାସୀ ତେଲ ବାହାର କରି ତରକାରିରେ ବ୍ୟବହାର କରେ, ପିଠା ଛାଣେ, ଦେହକୁ ମାଜଣା କରେ ।

ମାଂସ ଜାତୀୟ ଖାଦ୍ୟ : ଆଦିବାସୀ ମାଂସପ୍ରିୟ । ସେମାନେ ବଣ ଜଙ୍ଗଲରେ ବୁଲି ପଶୁ ଶିକାର କରନ୍ତି । ଯଥା- ହରିଣ, କୁଟୁରା, ବାରହା, ସମ୍ବର, ଝିଙ୍କ, ବଜ୍ରକାପ୍ଟା ପ୍ରଭୃତି ପ୍ରାଣୀମାନଙ୍କୁ ତୀରରେ ମାରି ଶିକାର ମାଂସକୁ ବାଣ୍ଟି ନିଅନ୍ତି । ଲଙ୍କା, ହଳଦୀ, ତେଲ, ଲୁଣରେ ସିଝାଇ ମାଂସ ତରକାରି ପ୍ରସ୍ତୁତ କରନ୍ତି । ବଳକା ମାଂସକୁ ଶୁଖାଇ ରଖନ୍ତି । ଏହାକୁ ମାଂସ ଶୁଣ୍ଠା କହନ୍ତି । ମାଂସ ଶୁଣ୍ଠାକୁ ଅନ୍ୟ ଦିନରେ ବତୁରାଇ କଅଁଳ କରି ମାଂସ ତରକାରି କରି ଖାଆନ୍ତି । ଆଦିବାସୀ ମାନେ ଘରେ ଘରେ କୁକୁଡ଼ା ପୋଷି ଥାଆନ୍ତି । ସେମାନେ ତାଙ୍କ ଠାକୁରାଣୀଙ୍କଠାରେ ବାରାହା, କୁକୁଡ଼ା ବଳି ପକାନ୍ତି । ଠାକୁରାଣୀ ଉଚ୍ଛିଷ୍ଟ ବଳିମାଂସ ରାନ୍ଧି ଖାଆନ୍ତି ।

ନୟାଗଡ଼ ଜିଲ୍ଲାର ଭୌଗୋଳିକ ସ୍ଥିତି ମଧ୍ୟରେ ଅଧିକାଂଶ ଅଞ୍ଚଳ ପାହାଡ଼ ପର୍ବତ ଘେରରେ । ଏହି ପାର୍ବତ୍ୟ ଅଞ୍ଚଳର ଗିରିଜନମାନେ ସଂପୂର୍ଣ୍ଣ ପ୍ରକୃତି ଉପରେ ନିର୍ଭର କରି ଜୀବନ କାଟି ଥାଆନ୍ତି । ପ୍ରକୃତି ଘେର ଜଙ୍ଗଲ ମଧ୍ୟରେ ତାଙ୍କ ପାଇଁ ଖାଦ୍ୟ ପାନୀୟ ମହଜୁଦ ଥାଏ । ପ୍ରକୃତିର ସନ୍ତାନ ସେମାନେ । ସେମାନଙ୍କର ଜୀବନଧାରା ମୁକ୍ତ ଆନନ୍ଦମୟ ।





## ଚତୁର୍ଥ ଅଧ୍ୟାୟ

# ନୟାଗଡ଼ ଅଧିବାସୀ

ଦେଶରେ ଦ୍ରାବିଡ଼ ଆର୍ଯ୍ୟ ମହାମିଳନରେ କ୍ରମଶଃ ଦ୍ରାବିଡ଼ମାନଙ୍କର ସଂଖ୍ୟା ହ୍ରାସ ପାଇଆସୁଛି । ଆର୍ଯ୍ୟମାନଙ୍କର ବସତି ହେଉଛି ଅଧିବାସୀ ବସତି । ନୟାଗଡ଼ ଅଞ୍ଚଳର କେନ୍ଦ୍ରସ୍ଥାନ କଣ୍ଟିଲୋ, ରଣପୁର, ନୟାଗଡ଼, ଶରଣକୂଳ, ଓଡ଼ଗାଁ, ବାହାଡ଼ାଝୋଲା, ନୂଆଗାଁ, ଦଶପଲ୍ଲା, ବାଣିଗୋଛା, ଗଣିଆ ମୁଖ୍ୟତଃ ଆଦିବାସୀ ବହୁଳ ଅଞ୍ଚଳ ଥିଲା । କଣ୍ଟିଲୋ ନୀଳମାଧବ ଦ୍ରାବିଡ଼ ସଂସ୍କୃତିର ଆରାଧ୍ୟ ଦେବତା ଶବର ରାଜା ବିଶ୍ୱାବସୁ ଦ୍ୱାରା ପୂଜାପାଉଥିଲେ । ଆମେ ଶୁଣିବାରେ ଦେଖିବାରେ ଆମ୍ଭ ଅଞ୍ଚଳରେ ବହୁତ ଆଦିବାସୀ ବସତି ଥିଲା । ଅଧୁନା ସେ ଆଦିବାସୀ ବସତି ଆଉ ଦେଖିବାକୁ ମିଳୁନାହିଁ । ଆର୍ଯ୍ୟମାନେ ବୃତ୍ତିଗତ କୁଶଳୀ କର୍ମୀ ଥିଲେ ଯିଏ ଯା ବୃତ୍ତିରେ । ଫଳତଃ ଅଧିବାସୀ ବସତି ନୟାଗଡ଼ରେ ସର୍ବତ୍ର ବ୍ୟାପି ଯାଇଛି । ସେ ଯେଉଁ ସମ୍ପ୍ରଦାୟର ହେଉ ଆର୍ଯ୍ୟ ହେଉ ବା ଦ୍ରାବିଡ଼ ହେଉ କୃଷକ ହେଉଛି ନଦୀକୂଳସ୍ଥ ସଭ୍ୟତାର ପ୍ରଥମ ମଣିଷ । ଏ ଜାତିର ମଣିଷ ଯିଏ ଯେଉଁ ବୃତ୍ତିକୁ ଆବୋରି ନେଲା ସେ ଜାତିର ଉଦ୍‌ଭବ ହେଲା । ଯେପରି ଆଦିବାସୀ ଦିଅଁ ପୂଜକ ଯାନୀ, ଦିଶାରୀ, ସେପରି ଅଧିବାସୀମାନଙ୍କର ପୂଜକ ବ୍ରାହ୍ମଣ । କିନ୍ତୁ ସଭ୍ୟତାର ମୂଳ ମଣିଷଟି ହେଲା କୃଷକ । କୃଷକର ସେବାରେ ହିତାକାଂକ୍ଷୀ ଜାତିର ସୃଷ୍ଟି କ୍ଷତ୍ରିୟ, କରଣ, ବ୍ରାହ୍ମଣ ଇତ୍ୟାଦି ଲଘୁସଂପ୍ରଦାୟର ଛୋଟ ଛୋଟ ଜାତି । ଏମାନେ ଜନ୍ମରୁ କୌଣସି ଜାତିର ସ୍ଥିତିକୁ ନେଇ ଜନ୍ମ ହୋଇନଥାନ୍ତି । ପ୍ରଥମ ଜାତି ହେଉଛି ମହାନ କୃଷକ ଜାତି । କୃଷକ ହେଉଛି ସଭ୍ୟତାର ପ୍ରାଣ ।

<u>କୃଷକ :</u> କୃଷକ ମାଟିର ମଣିଷ । ଅନ୍ନଦାତା । ମାଟି କାଦୁଆରେ ଖଟି ଖଟି ପଡ଼ିଆ ଭୂମିରେ ସବୁଜ ଶସ୍ୟ କ୍ଷେତ ଡ଼େରି ସଭ୍ୟତା ପାଇଁ ପ୍ରଚୁର ଖାଦ୍ୟ ଶସ୍ୟ ଅମଳ କରେ । ପଶୁପାଳନ କରେ । ଭାତ, ଡ଼ାଲି, ପନିପରିବା, ଖାଦ୍ୟ, ତୈଳ ଜାତୀୟ ଖାଦ୍ୟ, ସମଲା ଜାତୀୟ ଖାଦ୍ୟ, ବସ୍ତ୍ର ଦାନ ଯାବତୀୟ ଆବଶ୍ୟକ କୃଷକର ହାଡ଼ଭଙ୍ଗା ପରିଶ୍ରମରୁ ଉପାର୍ଜିତ । ଖରା, ବର୍ଷା, ଶୀତର ମଣିଷ କୃଷକ । ତାରି ପାଇଁ ତ ନୂଆଖାଇ ପର୍ବ । କୃଷକ ସଭ୍ୟତାର ମହାନ ସେବାକାରୀ ଜାତି । ଏଣୁ ଶାସ୍ତ୍ର କହେ ସେବା ହିଁ ଧର୍ମର ମୂଳତତ୍ତ୍ୱ । ଶୁଦ୍ର ବର୍ଣ୍ଣର ସ୍ୱାଭାବିକ ଧର୍ମ ସେବା । ସେ ସମସ୍ତ ଧର୍ମ ମଧ୍ୟରେ ମହାନ । ବ୍ରାହ୍ମଣର ଧର୍ମ ମୋକ୍ଷ ପାଇଁ । କ୍ଷତ୍ରିୟର ଧର୍ମ ଭୋଗ ବିଳାସରେ ଲିପ୍ତ । ବୈଶର ଧର୍ମ ଅର୍ଥ ନିମନ୍ତେ । ପ୍ରଥମ ତିନିବର୍ଣ୍ଣର ଧର୍ମର ଲକ୍ଷ ଅନ୍ୟ ପୁରୁଷାର୍ଥ ହୋଇଥିବାସ୍ଥଳେ ଶୂଦ୍ରର ଧର୍ମ ସ୍ୱପୁରୁଷାର୍ଥ ଅଟେ ।

**କ୍ଷତ୍ରିୟ:** କ୍ଷତ୍ରିୟମାନେ ସମାଜରେ ବାହୁବଳୀ ଜାତି । ଏମାନେ ଆଞ୍ଚଳିକ, ମୁଖିଆ, ଗ୍ରାମଣୀ ସର୍ଦ୍ଦାର, ଜମିଦାର, ଗଡ଼ତିଆ, ରାଜା, ମହାରାଜା ହୋଇଥାଇ ପାରନ୍ତି । ଏମାନଙ୍କର ଅଞ୍ଚଳରେ ଆଧିପତ୍ୟ ଥାଏ । ଏମାନେ ଖଣ୍ଡାଧାରୀ ଜାତି । ଗ୍ରାମ ମାନଙ୍କରେ ଏମାନଙ୍କର ଆଧିପତ୍ୟ ରହିଥାଏ । ଏମାନେ ଶାସକ ଶ୍ରେଣୀୟ ଭୋଗ ବିଳାସର ଜାତି ।

**କରଣ:** ଲେଖା ବ୍ୟବସାୟୀ ଜାତି ହେଲେ କରଣ । ଗଡ଼ତିଆ ମାଲିକାନା ସମୟରୁ କରଣମାନେ ହିସାବ ଲେଖିବା କର୍ମଚାରୀ । ରାଜଶାସନ କାଳରେ ଏମାନଙ୍କର ପ୍ରାଧାନ୍ୟ ବହୁତ ବଢ଼ିଗଲା । କରଣ ଜାତିର ସଂଖ୍ୟା କମ୍ ହେଲେ ହେଁ ନୟାଗଡ଼ର ଚାରିଗଡ଼ରେ ଏମାନଙ୍କର ବସତି ଦେଖାଯାଏ । ଏମାନେ ମଧ୍ୟ ଭୋଗବିଳାସର ଜାତି । ଏମାନଙ୍କର ଗାଁରେ ଜମିଦାରୀ ଥିଲା ସାହୁ ଖାତିକ ଥିଲା । ଗ୍ରାମରେ ଏମାନଙ୍କୁ କରଣ ସାଆଁନ୍ତ କୁହନ୍ତି । ରାଜ୍ୟରେ ଗଣତନ୍ତ୍ର ଶାସନରେ ଏମାନଙ୍କର ପ୍ରତିପତି ବଢ଼ିଲା । ଏମାନେ ଏକ ଚତୁର ଜାତି । ରାଜ୍ୟରେ ଏମାନେ ମୁଖ୍ୟ ଶାସନ ଭାର ନେଉଛନ୍ତି ।

**ବ୍ରାହ୍ମଣ:** ହିନ୍ଦୁ ସମାଜରେ ବ୍ରାହ୍ମଣ ହେଉଛି ଉଚ୍ଚ ଜାତି । ଦେବାଦେବୀଙ୍କର ପୂଜକ ଜାତି । କେଶରୀ ବଂଶର ରାଜା ଯଯାତି କେଶରୀ କାନ୍ୟକୁବ୍‌ଜରୁ ଦଶହଜାର ବ୍ରାହ୍ମଣ ଆମନ୍ତ୍ରଣ କରି ଯାଜପୁର, କଟକ ଅଞ୍ଚଳରେ ବ୍ରାହ୍ମଣ ଶାସନ ଦାନ କରିଥିଲେ । ନୟାଗଡ଼ର ସବୁ ଗ୍ରାମରେ ବ୍ରାହ୍ମଣ ଦେଖାଯାଆନ୍ତି ନାହିଁ । ଅଞ୍ଚଳର ମଝିରେ ମଝିରେ ବ୍ରାହ୍ମଣ ଶାସନ ଦେଖାଯାଏ । ଯେପରିକି ନୟାଗଡ଼ର ପଲ୍ଲୀଶାସନ, ପଦ୍ମାଦେଇପୁର ବ୍ରାହ୍ମଣ ଶାସନ, ଜଗନ୍ନାଥପ୍ରସାଦ, ମୂଷାପଲ୍ଲୀ ଶାସନ, ଭିକ୍ଷାରୀ ପଡ଼ା, କରଡ଼ା, ନନ୍ଦୀଘର, ରାବେରା, କୈବଲ୍ୟପୁର, ପନ୍ତିଖାଡ଼ି, ଚାହାଳୀ, କ୍ଷୁଦିଦାସପୁର, ଗୋବିନ୍ଦପୁର, ବାଉଁଶିଆପଡ଼ା, ବିନାୟକ ପୁର, ସାବିଦେଇପୁର, ରଣପୁରରେ ମଧ୍ୟଖଣ୍ଡ, ରାଜସୁନାଖେଳା, ରମ୍ଭାବେଲି, ଖଣ୍ଡପଡ଼ାରେ ଶିଖରପୁର, ଖଣ୍ଡପଡ଼ା, କୁମ୍ଭାରପଡ଼ା,ଢ଼ୋଲମରା, କଣ୍ଟିଲୋ, ମାଧପୁର, ବାଇଗୁଣିଆ, ପଦ୍ମାବତୀ, ଦଶପଲ୍ଲାରେ ମଧ୍ୟଖଣ୍ଡ, ଉଦୟପୁର, ଦଶପଲ୍ଲା । ବ୍ରାହ୍ମଣମାନେ ବିବାହ, ବ୍ରତରେ, ଦଶାହ ସୁଧିକାର୍ଯ୍ୟ, ଶ୍ରାଦ୍ଧ ଉତ୍ସବରେ, ଯଜ୍ଞପୀଠରେ ଦେବାଦେବୀଙ୍କୁ ଆମନ୍ତ୍ରଣ କରି ପୂଜାପାଠ ସଂପୂର୍ଣ୍ଣ କରନ୍ତି । ବ୍ରାହ୍ମଣ ମାନଙ୍କୁ ଅନ୍ୟ ଜାତିର ମୋକ୍ଷକର୍ତ୍ତା ଭାବେ ସମାଜରେ ପ୍ରାଧାନ୍ୟ ଦିଆଯାଏ । ବ୍ରାହ୍ମଣମାନେ ଜମିଦାର ସଂପ୍ରଦାୟର । ସେମାନେ ରାଜାଙ୍କର ରାଜଗୁରୁ ପଣ୍ଡିତ ଶାସ୍ତ୍ରଜ୍ଞ ।

**ଶଂଖୀକଟା ଜାତି:** ନୟାଗଡ଼ ରାଜଶାସନ କାଳରେ ଶଂଖୀକଟାର ଉଦ୍ଭବ । ରଣପୁର ରାଜାଙ୍କର ଇଷ୍ଟଦେବୀ ମଣିନାଗେଶ୍ୱରୀ, ନୟାଗଡ଼ ଓ ଖଣ୍ଡପଡ଼ା ରାଜାଙ୍କର କୁଳଦେବୀ ବାଉରୀ ଠାକୁରାଣୀ ଏବଂ ଦଶପଲ୍ଲା ରାଜାଙ୍କର ଆରାଧ୍ୟଦେବୀ

ନାୟିକାଗୁଣିଙ୍କ ସନ୍ତୁଷ୍ଟି ପାଇଁ ରାଜାମାନେ ଠାକୁରାଣୀଙ୍କୁ ନରରକ୍ତ ପ୍ରଦାନ କରିଥାନ୍ତି। ନରରକ୍ତ ଆଣୁଥିବା ଲୋକଙ୍କୁ ଶଂଖୀକଟା କୁହନ୍ତି। ଶଂଖୀକଟା ଗୋଟେ ଜାତି ନୁହେଁ। ଏମାନେ କ୍ଷତ୍ରିୟ ବଂଶଜ ହୋଇପାରନ୍ତି। କାରଣ ଏମାନେ ବାହୁବଳରେ ଏ ନରଘାତକ କାର୍ଯ୍ୟ କରିଥାଆନ୍ତି। ରାଜା ଏମାନଙ୍କ ପାଇଁ ନିଷ୍କର ରକ୍ତପଟା ଜମି ଦାନକରିଥାଆନ୍ତି। ନିର୍ଜନ ଦ୍ୱିପହରରେ ଅବା ଅନ୍ଧକାରରେ ଏକଲା ପୁରୁଷଟାଏ ଦେଖିଲେ ତାକୁ ଜବରଦସ୍ତ ଧରିନେଇ ତା'ର ଶଂଖୀକାଟି ରକ୍ତ ବାଉଁଶନଳୀରେ ରଖି ତଟକା ରକ୍ତ ଠାକୁରାଣୀଙ୍କୁ ଦିଅନ୍ତି। ପୂଜକ ରକ୍ତ ସଳିତାରେ ଠାକୁରାଣୀଙ୍କର ଆଳତି କରେ ରକ୍ତ ଦାନ କରେ। ଠାକୁରାଣୀଙ୍କୁ ନରରକ୍ତ ଦେବାରୁ ଏମାନେ ନରଘାତକ। ନୟାଗଡ଼ ଅଂଚଳରେ ରକ୍ତପଟା ଜମିଭୋଗୀ ଅନେକ ପରିବାର ଅଛନ୍ତି। ରାଜରାଜୁଡ଼ା ଶାସନ ପରେ ଏ କୁତ୍ସିତ ପ୍ରଥାର ଉଚ୍ଛେଦ ହୋଇଛି।

<u>କୁମୁଟି :</u> କୁମୁଟି ଏକ ବ୍ୟବସାୟୀ ଜାତି। ଏମାନଙ୍କ ଉପରେ ଗଞ୍ଜାମୀ ପ୍ରଭାବ ଥାଏ। ନୟାଗଡ଼ ଜିଲ୍ଲାର ସବୁ ଗାଁରେ ଏମାନେ ଦେଖାଯାଆନ୍ତି ନାହିଁ। କୁମୁଟି ଗାଁରେ ଧନୀ। ଏମାନଙ୍କୁ ପଇସାଟା ଦି' ପଇସା କରିବାର ବ୍ୟବସାୟୀକ ସୂତ୍ର ଜଣା। କୁମୁଟିଙ୍କ ଜାତିଆଣ ଭାବ ଜୋର। ଜାତି ଲୋକଟାକୁ ଗରିବ ହେବାକୁ ଦେବେନି। ମିଳିମିଶି ଅର୍ଥ ସହଯୋଗରେ ତାକୁ ଉପରକୁ ଉଠାଇନେବେ।

<u>ତେଲି:</u> ତେଲି ଏକ ବ୍ୟବସାୟିକ ଜାତି। ସବୁଗାଁରେ ଏମାନଙ୍କର ବସବାସ ନଥାଏ। ଏମାନେ ରାଶି, ଜଡ଼ା, ପେଶ୍ତା, ନଡ଼ିଆ, ସୋରିଷ, ସୂର୍ଯ୍ୟମୁଖୀ, ତୈଳ ଜାତୀୟ ମଂଜିକୁ ତେଲ ଘଣାରେ ପେଶି ତା'ର ଦୋଗୁଅ ପାତ୍ରରେ ସଂଗ୍ରହ କରନ୍ତି। ଏହି କଞ୍ଚା ଦୋଗୁଅକୁ ହାଣ୍ଡିରେ ଗରମ କରି ତା'ର ଜଳୀୟ ଅଂଶ ମାରନ୍ତି। କଂଚା ତେଲରୁ ଜଳୀୟ ଅଂଶ ମରିଗଲେ ଶୁଦ୍ଧ ତେଲ ବାହାରେ। ତେଲିମାନେ ଗାଁ ଗାଁ ବୁଲି ତେଲ ବିକନ୍ତି। ତେଲ ବଦଳରେ ତୈଳ ଜାତୀୟ ଶସ୍ୟ ଆଣନ୍ତି। କାଠଘଣାରେ ତୈଳବୀଜକୁ ପେଡ଼ନ୍ତି। ବର୍ତ୍ତମାନ ତେଲପେଡ଼ା ଯନ୍ତ୍ର ବାହାରିବାରୁ ତେଲଘଣା ଅଚଳ ଅବସ୍ଥାରେ।

<u>ତେଲଘଣା:</u> ତେଲ ଘଣା କାଠରେ ନିର୍ମିତ। ସାତ ଫୁଟ ଗୋଲେଇ ଦଶଫୁଟ ଉଚ୍ଚତାର ସ୍ୱତନ୍ତ୍ର ଫଣସ କାଠ କିମ୍ବା ଧଉରା କାଠଗଣ୍ଡି ଘଣାଖଳାର ମଧ୍ୟଭାଗରେ ପୋତା ଯାଇଥାଏ। ଗଣ୍ଡିର ଉପରମୁହଁ ମଧ୍ୟଭାଗରେ ଦେଢ଼ଫୁଟ ଗୋଲେଇ ଏକଫୁଟ ଗଭୀରର ଖୋଲ କରାଯାଇଥାଏ। ଏହା ତେଲପେଡ଼ା ଖୋଲ ଯେଉଁଠି ତୈଳଜାତୀୟ ମଂଜିକୁ ପେଷାଯାଏ। ରାଶି, ପେଶ୍ତା, ଜଡ଼ା, ଯେକୌଣସି ତୈଳଜାତୀୟ ବୀଜ ପେଷି ହେବାପାଇଁ ଏହି ଖୋଲରୁ ଦେଢ଼ଫୁଟ ଗୋଲେଇର ଲାଠି କାଠ ଦଣ୍ଡ ଦଶଫୁଟ ଉଚ୍ଚର କ୍ରମଶଃ ଊର୍ଦ୍ଧ୍ୱଭାଗକୁ ସରୁ ଗୋଜା ହୋଇଥାଏ। ଲାଠି ଦଣ୍ଡଟି ଗଣ୍ଡି ଉପରେ ସମ୍ଭବତଃ ୭୫° ଢ଼ଳି ରହିଥାଏ। ଲାଠିର ଅଗ୍ରଭାଗରୁ ଏକ ଢେଙ୍କା

କଣ୍ଟା ବାଉଁଶର ଦଣ୍ଡ ପୋତାହୋଇଥିବା ଘଣା ଗଣ୍ଡିର ଭୂମି ଉପରୁ ୧ ଫୁଟ ଉଚ୍ଚରେ ଘୁରୁଥିବା କତୁରୀ ପଟା ଉପରେ ଖଂଜା ଯାଇଥିବା ମଣିଖୁମ୍ବ ସହିତ ସ୍ଥାୟୀ ସଂଯୋଗ ହୋଇଥାଏ। କତୁରୀ ପଟାର ଘଣାଗଣ୍ଡିକୁ ଲାଗିଥିବା ପାର୍ଶ୍ୱ ସହଜରେ ଘୂରିବା ପାଇଁ ଏକ କାଠର ଚାପ ସଂଯୋଗ ଥାଏ। କତୁରୀ ପଟାର ଅପରପାର୍ଶ୍ୱରେ ଡ଼ାଙ୍ଗିଆ ବନ୍ଧା ଯାଇଥାଏ। ଡ଼ାଙ୍ଗିଆର ଅପର ପାର୍ଶ୍ୱରେ ଜୁଆଳୀ ବାନ୍ଧି ବଳଦ ଅଥବା ପୋଢ଼ ଦ୍ୱାରା ଟଣା ଯାଏ। କତୁରୀ ପଟା ବୁଲିଲେ ଢ଼େଂକା ବୁଲେ, ଲାଠି ବୁଲେ ଲାଠିର ମୂଳ ମୁଣ୍ଡ ଗଣ୍ଡି ଖୋଲପରେ ଘୂରି ତୈଳଜାତୀୟ ବୀଜକୁ ପେଷେ। ମଂଜି ପେଷି ହୋଇ ତେଲ ଦୋରୁଅ ହୁଏ। ଖୋଲପର ତଳଭାଗରେ ବାହାରକୁ ଏକ ନିର୍ଗତ ନଳୀ ବସିଥାଏ। ନଳୀରୁ ତେଲ ନିଗିଡ଼ି ବାହାରି ନଳୀତଳେ ଥିବା ପାତ୍ରରେ ସଂଗୃହୀତ ହୁଏ। ତାପରେ ପାତ୍ରରୁ କଂଚା ତେଲକୁ ନେଇ ଚୁଲିରେ ବସାଇ ତା'ର ଜଳୀୟ ଅଂଶକୁ ମରାଯାଇ ତେଲ ଶୁଦ୍ଧ କରାଯାଏ।

<u>ଗୁଡ଼ିଆ:</u> ଗୁଡ଼ିଆ ପୁରୁଣା ବସତି ସବୁ ଗାଁ ମାନଙ୍କରେ ଦୁଇ ତିନି ପରିବାର ଥିବାର ଦେଖାଯାଏ। ଗାଁରେ ଏମାନେ ଜଳଖିଆ ବରା, ପକୁଡ଼ି, ବୁଟ ସିଝା, ଆରିସା, କାକରା, ମାଖନପୁରୀ, ଲବଙ୍ଗଲତା, ବାଇଗଣି, ଆଳୁଚପ୍, ଝିଲାପି, ଲଡୁ, ସେଉ, ପାମ୍ପଡ଼, ମୋହନ ଭୋଗ, ଏଣ୍ଡୁରି, ଚାଉଳଚୁନା ପୋଡ଼ ପିଠା, ମାଲପୁଆ, ଲଡୁ, ମୁଢ଼ି ମୁଆଁ, ଉଖୁଡ଼ା, ଛେନାପୋଡ଼, ରସଗୋଲା, ଗଜା, ଗୋଲାପଜାମୁ କିସମ କିସମର ଆଖିରୁଚିକର ବାସ୍ନାଯୁକ୍ତ ଖାଦ୍ୟ ଦ୍ରବ୍ୟର ଦୋକାନ ଦେଇଥାନ୍ତି। ଗୁଡ଼ିଆମାନଙ୍କ ବୃତ୍ତିଗତ ବେଉସା ଜଳଖିଆ ଦୋକାନରେ ଜଳଖିଆ ବିକିବା। ଆଗ ସମୟରେ ଗୁଡ଼ିଆମାନେ ବଡ଼ ଡ଼ାଲାରେ ଖଜାପିଠା ଘୋଡ଼ାଇ ଡ଼ାଲା ମୁଣ୍ଡାଇ ହାତରେ ଲୁହା ଗୋଲେଇରେ ଝୁମୁକା ହଲାଇ ଅନ୍ୟ ଗାଁ ବୁଲି ବୁଲି ଜଳଖିଆ ବିକୁଥିଲେ। ଝୁମୁକା ଶବ୍ଦ ହେଲେ ଗୁଡ଼ିଆ ଆସିଲା କହି କିଏ ଚାଉଳ, ତମ୍ବା ପଇସା, ଫୋଡ଼ ପଇସା, ପିତଳ ଅଣି, ଦୋଅଣି ଦେଇ ଗୁଡ଼ ଢ଼ଳେଇ କାନ୍ତିବରା, ଝିଲାପି, ସେଓ, ପକୁଡ଼ି କିଣନ୍ତି। ଏବେତ ଗୁଡ଼ିଆ ସମେତ ଅନ୍ୟଜାତିର ଲୋକେ ଗାଁରେ ସହର ବଜାରରେ କାଚ ଜାର୍ ଭିତରେ ଖାଦ୍ୟ ପଦାର୍ଥ ରଖି ଆକର୍ଷଣୀୟ ଜଳଖିଆ ଦୋକାନ କଲେଣି। ଜଳଖିଆ ଦୋକାନ ଗୁଡ଼ିକ ଲୋକଙ୍କ ଖଟି ଯାଗା ହୋଇଗଲାଣି। ଏବେ ଜଳଖିଆ ଦୋକାନମାନଙ୍କରେ ଆଧୁନିକ ଧରଣର ଖାଦ୍ୟ ଭେଜିଟେବୁଲ ଚପ୍, ସିଙ୍ଗଡ଼ା, ଦୋସା, ଚଟଣି, ସମ୍ବର, ଦହିବରା, ଚାଓମିନ୍, ମାଂସ ପକୋଡ଼ା, ଚିଙ୍ଗୁଡ଼ି ପକୋଡ଼ା ସୁସ୍ୱାଦୁ ଆମିଷ ଖାଦ୍ୟ ଲୋକଙ୍କ ମନ ମୋହିଲାଣି।

<u>ଗଉଡ଼:</u> କୃଷକ ଜାତି ତଳକୁ ଗଉଡ଼ ଜାତିର ସଂଖ୍ୟା ହୋଇପାରେ। ନୟାଗଡ଼ ଅଂଚଳରେ ପ୍ରାୟ ସବୁ ଗାଁରେ ଗଉଡ଼ ବସତି ଦେଖାଯାଏ। ଏପରିକି ସ୍ଥାନେ

ସ୍ଥାନେ ଗଉଡ଼ ଗାଁ ରହିଛି । ଏମାନେ ଗାଇଗୋରୁ ମଇଁଷି, ଛେଳି ମେଣ୍ଢା ପଶୁପାଳକ ଜାତି । ଏମାନଙ୍କର ପ୍ରଧାନ ଜୀବିକା ଜଙ୍ଗଲ ଚାରଣଭୂମିରେ ପଶୁ ଚାରଣ କରିବା । ଏପରିକି ସବୁ କୃଷକ ପରିବାରରେ ଗାଈଗୋରୁ, ପୋଢ଼ ପୋଷନ୍ତି । ଗାଁ ମାନଙ୍କରେ ଗୋଠ ଗୋଠ ଗାଈଗୋରୁ । ଏମାନଙ୍କୁ ଗଉଡ଼ ମାନେ ଚରାଇ ନିଅନ୍ତି । ବଳଦ ଓ ପୋଢ଼ ଦ୍ୱାରା କୃଷକ ଚାଷ କାମ କରେ । ଗାଇ ଛେଳିର ଦୁଧ ଶିଶୁମାନଙ୍କର ଉପାଦେୟ ଖାଦ୍ୟ । ଗଉଡ଼ ଜାତି ସମାଜକୁ ପ୍ରଚୁର ଦୁଧ,ଛେନା, ଦହି ଯୋଗାଏ ।

**ଛଣିଆ ଗୋଲା:** ଛଣିଆ ଗୋଲା କୃଷକ ସଂପ୍ରଦାୟର ଲଘୁଶ୍ରେଣୀୟ ଜାତି । ସବୁ ଗାଁରେ ଏ ଜାତି ଦେଖାଯାଆନ୍ତି ନାହିଁ । ନୟାଗଡ଼ର ସ୍ଥାନେ ସ୍ଥାନେ ଗୋଲା ଗାଁ ରହିଛି । ଏମାନଙ୍କର ସ୍ତ୍ରୀ ପୁରୁଷ ଉଭୟେ ଜମିରେ କାମ କରନ୍ତି । ଏମାନେ କ୍ଷୁଦ୍ର ବ୍ୟବସାୟୀ ଜାତିର ଲୋକ । ଦଉଡ଼ା, ପଘା, ଶିକା, ବଳି ବିକନ୍ତି । ପରିବା ଚାଷ କରନ୍ତି ।

**ବଢ଼େଇ/ ମହାରଣା:** ନୟାଗଡ଼ ଅଞ୍ଚଳରେ ତିନି ଶ୍ରେଣୀୟ ମହାରଣା ଦେଖାଯାଆନ୍ତି । ଏମାନେ ହେଲେ ଶୀଳ୍ପି ଜାତି । କାଠ, ପଥର, ଲୁହାରେ ବ୍ୟବହାରିକ ଉପକରଣ ତିଆରି କରନ୍ତି । ବଢ଼େଇ ମହାରଣା କାଠକାମ କରନ୍ତି । ସବୁଗାଁରେ ବଢ଼େଇ ଜାତି ନଥାନ୍ତି । ଗ୍ରାମରେ ଏମାନଙ୍କ ପରିବାର ସଂଖ୍ୟା କମ୍ । କୃଷି ଉପକରଣ ଲଙ୍ଗଳ, ଜୁଆଳି, ଶଗଡ଼, ଘରର ଶେଣୀ, ଖଟ ପଲଙ୍କ, ସିନ୍ଧୁକ, ବାକ୍ସ, ସୋଫା, ଡ଼ାଇନିଂ, ଚୌକି, ଝରକା, କବାଟ ସୁନ୍ଦର ସୁନ୍ଦର ଡ଼ାଳିରେ ତିଆରି କରନ୍ତି । ଇଟାମାଟି ଉତ୍କଳ ଘଣ୍ଟ କବି ଯଦୁମଣି ମହାପାତ୍ର କାଠମୂର୍ତ୍ତୀ ନିର୍ମାଣରେ ଧୂରୀଣ ଶୀଳ୍ପି ଥିଲେ । ଯଦୁମଣି ମହାପାତ୍ରଙ୍କ ଶ୍ୱଶୁର ଦଶପଲ୍ଲା ଗଡ଼ର ରଘୁନାଥ ସୂତାର ଜଣେ ସୁନାମଧନ୍ୟ କାଠ କାରିଗର । ଓଡ଼ଗାଁ ମଶାବାରୀ କାଠ କାରିଗରି ଓଡ଼ିଶା ପ୍ରସିଦ୍ଧ । ମଶାବାରୀ କବିରାଜ ମହାରଣା, ଆର୍ତ୍ତବନ୍ଧୁ ମହାରଣା କାଠରେ ସୂକ୍ଷ୍ମ ଚାରୁଚିତ୍ର କଳାର ଖୋଦେଇ କାମରେ ନାମକରା ବିନ୍ଧାଣୀ । ଚଢ଼େୟାପଲ୍ଲୀର ରାଜକିଶୋର ମହାରଣା ସୁଦକ୍ଷ କାଠ କାରିଗର । ତାଙ୍କର ବଂଶଜ ସହଦେବ ମହାରଣା ବର୍ତ୍ତମାନର ଜଣେ ଜଣାଶୁଣା କାଠଶୀଳ୍ପି ସେ ଅଞ୍ଚଳର । ପୁରୁଣା ସମୟରେ ରାମଲୀଳାରେ ଥିବା ଚରିତ୍ର ଅସୁର, ହରିଣ, ଭାଲୁ, ବାନର, ପକ୍ଷୀଙ୍କର ଅବିକଳ ମୁଣ୍ଡ କାଠରେ ତିଆରି କରୁଥିଲେ ।

**ପଥର ଶୀଳ୍ପି ମହାରଣା:** ଓଡ଼ଗାଁରେ ପଥର ମୂର୍ତ୍ତି ମହାରଣାମାନେ ବାସ କରନ୍ତି । ବଉଳମାଳା ପଥର, ମୁଗୁନି ପଥର ଖୋଦେଇ କରି ବିଭିନ୍ନ ପ୍ରକାର ମୂର୍ତ୍ତୀ ନିର୍ମାଣ କରନ୍ତି । ଓଡ଼ିଶାରେ ମୂର୍ତ୍ତୀ ନିର୍ମାଣ ଶୀଳ୍ପି ଭାବରେ ଅଧୁନା ଓଡ଼ଗାଁର ଖ୍ୟାତି ରହିଛି ।

**କମାର:** କମାର ଜାତିର ମହାରଣା ଲୁହା କାରିଗରିରେ ଧୂରନ୍ଧର । ନୟାଗଡ଼ର

ଚାରିଗଡ଼ରେ କମାରଶ୍ରେଣୀୟ ମହାରଣାମାନେ ଦେଖାଯାଆନ୍ତି। ଏମାନେ ସବୁ ଗ୍ରାମରେ ଦେଖାଯାଆନ୍ତି ନାହିଁ। ମଝିରେ ମଝିରେ ଏମାନଙ୍କର ସ୍ୱତନ୍ତ୍ର ବସ୍ତି ରହିଛି। ନୟାଗଡ଼ ଅଂଚଳରେ ଯେପରିକି ହିଙ୍ଗୋଳ ଗାଡ଼ିଆ, ବିଞ୍ଚଗିରି, ପୁଆଣିଆ, ଡ଼ିମିସରରେ ବହୁ ସଂଖ୍ୟକ କମାର ପରିବାର ଦେଖାଯାଏ। ଏମାନେ ଲୁହାରେ କୃଷି ଉପକରଣ, ଲୁହା ଜୋକିଆ, ଦା, ହାତୁଡ଼ି, କୋଡ଼ି, କୁରାଢ଼ି, କଟୁରୀ, ଫାର୍ଶା, ଭାଲି, ଶାବଳ, ପନିକି, ଚଟୁ, ତିଆରି କରନ୍ତି। ଏମାନଙ୍କର ଲୁହା ଆଉଟା ଶାଳ ରହିଛି। ଏମାନେ ରଣକ୍ଷେତ୍ରରେ ବ୍ୟବହାର ହେଉଥିବା ଖଣ୍ଡା, ବର୍ଛା, ଢ଼ାଲ ନିର୍ମାଣ କରୁଥିଲେ।

**କୁମ୍ଭାର:** କୁମ୍ଭାର ସମାଜର ଏକ ବିଶିଷ୍ଟ ସହାୟକ। ମାଟିପାତ୍ର ନିର୍ମାଣର ଜାତି। ସଭ୍ୟତା ବିକାଶର ଜାତି। କୁମ୍ଭାରର କୌଳିକ ବୃତ୍ତି ମାଟିରେ ହାଣ୍ଡି, ମାଠିଆ, ସରା ବିଭିନ୍ନ ପ୍ରକାରର ପାତ୍ର ତିଆରି କରିବା। କୁମ୍ଭାରମାନେ ସବୁ ଗ୍ରାମରେ ବାସିନ୍ଦା ନୁହଁନ୍ତି। ନୟାଗଡ଼ ଅଞ୍ଚଳରେ ମଝିରେ ମଝିରେ କୁମ୍ଭାର ବସତିମାନ ରହିଛି। ପ୍ରତି କୁମ୍ଭାର ପରିବାରର କୁମ୍ଭାର ଶାଳ ରହିଛି। ଏହି ଶାଳରେ କଞ୍ଚା ମାଟିରେ ତିଆରି ହୋଇଥିବା ହାଣ୍ଡି ମାଠିଆ ନାନା ମାଟିପାତ୍ର ଟିକେ ଶୁଖି ଆସିଲେ କୁମ୍ଭାର ଶାଳରେ ପୋଡ଼ାଯାଇ ପାତ୍ରକୁ ଟାଣ କରାଯାଏ। କୁମ୍ଭାର ଚକରେ ପାଗ ହୋଇଥିବା କଞ୍ଚା କାଦୁଅ ଟେଲାକୁ ରଖି ଘୂରାଇ ଘୂରାଇ ପାତ୍ର ତିଆରି କରାଯାଏ। ମାଟିପାତ୍ର ନିର୍ମାଣ କୌଶଳ ବଡ଼ ବିଚିତ୍ର। ସଭ୍ୟତାର ପ୍ରଥମ ବ୍ୟବହାର ହେଉଛି ମାଟିପାତ୍ର। ଲୋକେ ମାଟି ପାତ୍ରରେ ରୋଷେଇ କରୁଥିଲେ। ମାଟି ପାତ୍ରରେ ଖାଉଥିଲେ । ମାଠିଆ, ଘୁମ, ସୁନ୍ଦର ଶୈଳୀର ସୁରେଇ, ସରା, ବଢ଼ା, ଠେକି, ପିଠାକରା ପଲମ, ମାଟି ପିତୁଳା, ଘୋଡ଼ା, ହାତୀ କୁମ୍ଭାରମାନେ ତିଆରି କରୁଥିଲେ। ସଭ୍ୟତାର ପ୍ରଥମ ବିକାଶ ଧାରାରେ କୁମ୍ଭାରର ଭୂମିକା ମହତ୍ୱପୂର୍ଣ୍ଣ। କୁମ୍ଭାର ଜାତି ସଭ୍ୟତାରେ ମାଟିପାତ୍ରର ଯୁଗ ଆଣିଥିଲା। ଅଧୁନା ଧାତୁ ପାତ୍ର ଯୁଗରେ ମଣିଷ। କୁମ୍ଭାରର କୌଳିକ ଏବେ ବୃତ୍ତି ବୁଡ଼ି ବୁଡ଼ି ଯାଏ। ପଞ୍ଚୁଡ଼ା ମାନପୁର ସୁନ୍ଦର ମାଟିପାତ୍ର ନିର୍ମାଣରେ ପ୍ରସିଦ୍ଧ। ନୟାଗଡ଼ ଅଞ୍ଚଳରେ ବାଉଁଶିଆପଡ଼ା, ବିରୁଡ଼ା, ଗବନଳ, ମାଛିପଡ଼ା, ଶିଖରପୁର, ପଞ୍ଚୁଡ଼ାମାନପୁର, ଏପରି କି ସମ୍ପୂର୍ଣ୍ଣ ଜିଲ୍ଲାରେ କୁମ୍ଭାର ପଡ଼ାମାନ ରହିଛି।

**ପଥୁରିଆ:** ପଥୁରିଆ ଜାତିର ଜୀବିକା ହେଲା କଳା ମୁଗୁନି ପଥରରେ ଶିଳ, ଘୋରଣା, ପେଷଣା, ତିଆରି କରିବା। ଘରେ ଘରେ ଏହାର ବ୍ୟବହାର। ଶିଳରେ ମସଲା ବଟାଯାଏ। ଘୋରଣାରେ ବିରି, ମୁଗ, ହରଡ଼କୁ ଫାଳ କରାଯାଏ। ମାଣ୍ଡିଆ ଚୁନା କରାଯାଏ। ପେଷଣାରେ ବିରି, ମୁଗ, ଚଣା, ସୋଦୁଅ ପିଠାପାଇଁ ବଡ଼ିପାଇଁ ପ୍ରସ୍ତୁତ ହୁଏ। ପଥୁରିଆମାନେ ସବୁ ଗ୍ରାମରେ ନଥାନ୍ତି। ଏମାନଙ୍କ ସଂଖ୍ୟା ବହୁତ କମ୍।

**ତନ୍ତୀ:** ତନ୍ତୀ ଜାତି ସମାଜକୁ ବସ୍ତ୍ର ଯୋଗାଏ। ନୟାଗଡ଼ର ସବୁ ଗ୍ରାମରେ ତନ୍ତି ଜାତି ନଥିଲେ ହେଁ ଏତେବଡ଼ ଅଞ୍ଚଳକୁ ବସ୍ତ୍ର ଯୋଗାଇବା ପାଇଁ ତନ୍ତୀ ଥିଲେ। ତନ୍ତୀମାନେ ହସ୍ତତନ୍ତରେ ଧୋତି, ଗାମୁଛା, ଚଦର, ଶାଢ଼ୀ, ଲୁଙ୍ଗୀ ବୁଣୁଥିଲେ। ନୟାଗଡ଼ ଅଞ୍ଚଳରେ ତନ୍ତୀ ଜାତିର ଉନ୍ନତି ପାଇଁ ସରକାରଙ୍କ ସହଯୋଗରେ ତନ୍ତ ଶୀଳ୍ପର ଉନ୍ନତି କରଣ କରାଗଲାଣି। ନୟାଗଡ଼ ଜିଲ୍ଲା ତନ୍ତ ଶୀଳ୍ପରେ ଏକ ଅଗ୍ରଣୀ ଜିଲ୍ଲା ଭାବେ ପରିଚିତ ଲାଭ କରିଛି।

**ରଙ୍ଗଣୀ:** ରଙ୍ଗଣୀ ଜାତି ବିଶେଷ କରି କୃଷିକାମ କରନ୍ତି। ଏମାନଙ୍କ ସଂଖ୍ୟା ବେଶି ନ ହେଲେହେଁ କମ୍ ନୁହେଁ।

**କାଳନ୍ଦୀ :** କାଳନ୍ଦୀ ଜାତିର ଲୋକେ କୃଷିକାମ କରନ୍ତି।

**ବାରିକ /ଭଣ୍ଡାରୀ:** ପୁରୁଣା ସାବୁକ ଗ୍ରାମମାନଙ୍କରେ ଭଣ୍ଡାରୀ ଜାତିର ଗୋଟାଏ ଦୁଇଟା ପରିବାର ଥାଏ। ଭଣ୍ଡାରୀ ଏକ ସେବାସୀ ଜାତି। ଗ୍ରାମରେ ଏମାନଙ୍କର ବେଶୀ ଜମି ନଥାଏ। ଗାଁରେ ଚୁଟି କାଟିବା, ବିବାହ ବ୍ରତରେ ଶ୍ରାଦ୍ଧ ଉତ୍ସବରେ ସାମଗ୍ରୀ ଯୋଗାଇବା, ବନ୍ଧୁ ଘରକୁ ଖବର ପଠାଇବା, ଭାର ବୋହି ନେଇଯିବା, ମୃତବ୍ୟକ୍ତିର ଦଶାହ କାର୍ଯ୍ୟରେ ଶୁଦ୍ଧି ଉପକରଣ ଯୋଗାଇବା, ଦଶାହ ତୁଠକୁ ଲୋଡ଼ାଯାଇଥିବା ବନ୍ଧୁମାନଙ୍କର ବାଳ ନଖ କାଟିବା ଭଣ୍ଡାରୀର ପ୍ରଧାନ ଜୀବିକା। ଯେଉଁ ପରିବାରର ଭଣ୍ଡାରୀ ସେବାକରେ ତାକୁ ସାଆଁନ୍ତ ଘର କହେ। ସାଆଁନ୍ତ ଘରୁ ଦୋଳପୂର୍ଣ୍ଣମୀକୁ ଦୋଳପୂର୍ଣ୍ଣମୀ ବର୍ତ୍ତନ ଆକାରରେ ଧାନ ପାଏ। ସାଆଁନ୍ତ ଘରର ବୋହୂଘରକୁ, ଝିଅ ଘରକୁ ମୁଆଁ ଉଖୁଡ଼ା ଭାର, ପିଠାଭାର, ପନିପରିବା ଭାର ପକାଇ ବନ୍ଧୁଘରୁ ତାର ପାଉଣା ଆଣେ। ପର୍ବ ଦିନମାନଙ୍କରେ ଭଣ୍ଡାରୀ ପିଠାପଣା, ପନିପରିବା, ଭାତଡ଼ାଲି, ତରକାରୀ ସାଆଁନ୍ତ ଘରୁ ଆଣେ। ଭଣ୍ଡାରୀ ସେବାସୀ ଜାତି ହେଲେହେଁ ଅଛୁଁଆ ଜାତି ନୁହେଁ। ଛୋଟ ଛୋଟ ଗାଁ ମାନଙ୍କରେ ଏମାନଙ୍କର ବସତି ନଥାଏ।

**ଧୋବା:** ପୁରୁଣା ବସତି ଗାଁ'ମାନଙ୍କରେ ଗୋଟାଏ ଦୁଇଟା ଧୋବା ପରିବାର ବାସ କରନ୍ତି। ଗ୍ରାମର ଶେଷ ମୁଣ୍ଡରେ ସେମାନଙ୍କର ବସତି। ଏମାନେ ଅଛୁଁଆ ଜାତି ହେଲେ ହେଁ ଗାଁର ସେବାସୀ। ଏମାନେ ସେବା କରୁଥିବା ଘରକୁ ସାଆଁନ୍ତ ଘର କୁହନ୍ତି। ସାଆଁନ୍ତ ଘରର ମଇଳା ଲୁଗାପଟା ସଫା କରନ୍ତି। ଏ ସେବା ପାଇଁ ଏମାନେ ସାଆଁନ୍ତ ଘରୁ ବାର୍ଷିକ ବର୍ତ୍ତନ ଆକାରରେ ଧାନ ଦୋଳପୂର୍ଣ୍ଣମୀରେ ପାଆନ୍ତି। ସାଆଁନ୍ତ ଘରୁ ଭାତ ଡ଼ାଲି ତରକାରୀ ପର୍ବଦିନରେ ଭୁଜା ଉଖୁଡ଼ା ପିଠା ମାଗି ଆଣେ ଗାଁକୁ ନୂଆ କରି ବୋହୂଟିଏ ଆସିଲେ ଧୋବଣୀ ପାଇଁ ଶାଢ଼ୀଖଣ୍ଡେ ଉଖୁଡ଼ା ମୁଆଁ ପିଠା ଆଟିକାଟିଏ ଦିଏ। ଝିଅ ବୋହୂଙ୍କର ମାସିକିଆ ରକ୍ତସ୍ରାବ ଲୁଗା ଧୋବଣୀ ସଫାକରି ଶୁଦ୍ଧିକରେ। କଥାରେ ଅଛି ଧୋବା ଗାଁରେ ଉପାସ ଯାଏନି। ସାଆଁନ୍ତ ଘରମାନଙ୍କରୁ ଖାଦ୍ୟ ସଂଗ୍ରହ କରିନିଏ।

<u>କେଉଟ:</u> ଦୁଇ ଶ୍ରେଣୀୟ କେଉଟ ନୟାଗଡ଼ ଅଞ୍ଚଳରେ ଦେଖାଯାଆନ୍ତି । ସବୁ ଗାଁରେ ଏମାନଙ୍କ ବସବାସ ନଥାଏ । ଗୋଟିଏ ଶ୍ରେଣୀର କେଉଟ ମାଛଧରି, ମାଛ ଶୁଖୁଆ ବିକି ଜୀବିକା ନିର୍ବାହ କରନ୍ତି । ଅନ୍ୟ ଶ୍ରେଣୀର କେଉଟ ଚୂଡ଼ା, ମୁଢ଼ି, ହୁଡୁମ୍ବ, ଲିଆ, ଚଣା ଭାଜି ବିକନ୍ତି । ମାଛଧରା କେଉଟ ନଦୀକୂଳିଆ ସ୍ଥାନରେ ବସତି ଡ଼େରି ଥାଆନ୍ତି । ମାଛ ମାରିବା ଏମାନଙ୍କର ପ୍ରଧାନ ଜୀବିକା । ଗାଁ ପୋଖରୀ ମାନଙ୍କରେ ମାଛ ଚାଷ କରନ୍ତି । ଚିଲିକା ମାଛ ଶୁଖୁଆ ଆଣି ଗାଁ ଗାଁ ବୁଲି ବିକନ୍ତି । ଏହି ଶ୍ରେଣୀ କେଉଟ ମାନଙ୍କୁ ସ୍ଥାନେ ସ୍ଥାନେ ଗୋଖା ଜାତି କୁହନ୍ତି । ମାଛ ଶୁଖୁଆ ବିକା କେଉଟ ଏବଂ ଚୂଡ଼ା, ମୁଢ଼ି ଭାଜୁଥିବା କେଉଟଙ୍କ ମଧ୍ୟରେ ଜାତିଆଣ ଭିନ୍ନତା ଥାଏ । ଏମାନଙ୍କ ମଧ୍ୟରେ ବନ୍ଧୁବାନ୍ଧିବା ସଂପର୍କ ନଥାଏ ।

<u>ପନ୍ଦାରିଆ:</u> ପନ୍ଦାରିଆ ପନିପରିବା ଚାଷ କରିବା ଜାତି । ସବୁ ଗାଁରେ ଏ ଜାତି ଦେଖାଯାଆନ୍ତି ନାହିଁ । ଏମାନଙ୍କର ବେଶୀ ଜମି ନଥାଏ । ଯାହାଟା ଥାଏ ସେଥିରେ ସେମାନେ ପିଆଜ, ରସୁଣ, ଲଙ୍କା,ମୂଳା, ଶାଗ ଜାତୀୟ ଫସଲ କରି ଗାଁରେ ବିକି ଚଳନ୍ତି ।

<u>ଭିଣା:</u> ଭିଣା ଜାତିର ଲୋକମାନେ କପା ତୁଳାକୁ ଭିଣା ଯନ୍ତ୍ରରେ ଭିଣି ତୁଳାକୁ ସଫା କରନ୍ତି । ସଫା ତୁଳାକୁ ଶୋଇବା ଶେଯ ତକିଆରେ ବ୍ୟବହାର କରନ୍ତି । ସଫା ତୁଳାକୁ ତନ୍ତି ଘରେ ବିକନ୍ତି । ତନ୍ତୀ ତୁଳାରୁ ବଳଣା କରି ସେଥିରୁ ସୂତା ପ୍ରସ୍ତୁତ କରି ଲୁଗା, ଚଦର, ଗାମୁଛା ବୁଣେ । ଭିଣାଜାତି ସବୁ ଗାଁରେ ଦେଖାଯାଆନ୍ତି ନାହିଁ ।

<u>ଶଙ୍ଖାରୀ/କାଚରା:</u> ଶଙ୍ଖାରୀ ଶଙ୍ଖା ବ୍ୟବସାୟୀ ଜାତି । ଏମାନେ ଦକ୍ଷିଣୀ ତେଲେଙ୍ଗା ଜାତିର ଲୋକ । ଝିଅ, ବୋହୂ ହାତରେ ଶଙ୍ଖା ପିନ୍ଧାନ୍ତି । ନୟାଗଡ଼ ଅଂଚଳରେ ସ୍ଥାନେ ସ୍ଥାନେ ଶଂଖାରୀ ମାନଙ୍କର ବସବାସ ଦେଖାଯାଏ ।

<u>ବଣିଆ:</u> ବଣିଆ ଏକ ସୁନା ବ୍ୟବସାୟୀ ଜାତି । ଏହି ଜାତି ନୟାଗଡ଼ ଜିଲ୍ଲାର କୁରାଳ, ଓଡ଼ଗାଁ, ଇଟାମାଟି, ରାଜ ସୁନାଖଳା, ଖଳିସାହି, ସାତପାଟଣାରେ ଦେଖାଯାନ୍ତି । ମଝିରେ ମଝିରେ ଗାଁ ମାନଙ୍କରେ ଏମାନଙ୍କର ଗୋଟେ ଦୁଇଟା ପରିବାର ଦେଖାଯାଏ ।

<u>ମୂର୍ତ୍ତି ନିର୍ମାଣ ଜାତି:</u> ଖଣ୍ଡପଡ଼ା ଖଳିସାହିରେ ପିତଳ, ରୂପା, ତମ୍ବା ଧାତୁରେ ମୂର୍ତ୍ତିକାରମାନେ ନାଗ, ହରପାର୍ବତୀ, ରାଧାକୃଷ୍ଣ, ନୃତ୍ୟଶିଳା ନାରୀ ମୂର୍ତ୍ତି, ଗଣେଶ ମୂର୍ତ୍ତି, ନଟରାଜମୂର୍ତ୍ତି ନିର୍ମାଣ କରନ୍ତି । ସୁନ୍ଦର ସୁନ୍ଦର ଧାତୁ ମୂର୍ତ୍ତି ପାଇଁ ଖଳିସାହି ପ୍ରସିଦ୍ଧ ।

<u>କଂସାରୀ ଜାତି:</u> କଂସାରୀ ଶ୍ରେଣୀର ଜାତି ନୟାଗଡ଼ ହରିହରପୁର, ଇଟାମାଟି, ଖଳିସାହି, କଣ୍ଟିଲୋରେ ବାସକରନ୍ତି । ଏମାନଙ୍କର କଂସାରୀ ଶାଳ ରହିଛି । କଂସାରୀ

ଶାଳରେ କଂସା, ପିତ୍ତଳ, ତମ୍ବା ଧାତୁ ଆଉଟାଇ କଂସା ପିତ୍ତଳ ବାସନକୁସନ, କଂସା, ଥାଳି, ବେଲା, ଗିନା, ତାଟିଆ, ଚଟକି, ଢ଼ାଳ, ଗରା, ହଣ୍ଡା, ଗଞ୍ଜ, ପଲମ, ଚଟୁ,ଡ଼ଙ୍କି, ପିଠାପାତିଆ, ପିଲିସଜ, ବଇଠା, ଦୀପ, ଡ଼ିବି, ପ୍ରଭୃତି ଘରକରଣା ପାତ୍ର ତିଆରି କରନ୍ତି। କଣ୍ଟିଲୋ କଂସାପିତ୍ତଳର ଘରକରଣା ଉପକରଣ ପାଇଁ ରାଜ୍ୟରେ ପ୍ରସିଦ୍ଧ।

<u>ଖରୁଡ଼ା ଜାତି:</u> ଖୁରୁଡ଼ା ଜାତିର ଲୋକ କଂସା, ପିତ୍ତଳ, ସିଲଭର ପାତ୍ରର କଣାଫଟା ଜାଗାରେ ଧାତୁ ପାତି ପକାଇ କଣ୍ଟା ଛତି ପକାଇ ମରାମତି କରନ୍ତି। ଖୁରୁଡ଼ା ଜାତିର ବ୍ୟବସାୟୀମାନେ ଗାଁ ଗାଁ ବୁଲି ଭଙ୍ଗାଫଟା ବାସନପତ୍ର ମରାମତି କରି ଭଲ ରୋଜଗାର କରିଥାନ୍ତି। ଏମାନଙ୍କ ସଂଖ୍ୟା ବହୁତ କମ୍। ନୟାଗଡ଼ର ଇଟାମାଟି, ଲାଠିପଡ଼ା, କଣ୍ଟିଲୋରେ ଖରୁଡ଼ା ଜାତିର ଲୋକେ ବାସ କରନ୍ତି।

<u>ପାଟରା:</u> ପାଟରା ଜାତିର ଲୋକ ଲାଠିପଡ଼ା, ଇଟାମାଟି, କୁରାଳ, ମାଛିପଡ଼ା ଗ୍ରାମରେ ଦେଖାଯାଆନ୍ତି। ପାଟରା ଶ୍ରେଣୀର ଲୋକେ ସିନ୍ଦୁର, ଅଳତା, କାଚ, ପାଟଫୁଲି, ବ୍ରତସୁତା, ରିବନ୍, କାଚମାଳି ଗାଁ ଗାଁ ବୁଲି ବିକ୍ରିକରି ଭଲ ଅର୍ଥ ଉପାର୍ଜନ କରିଥାନ୍ତି।

<u>ବୈଷ୍ଣବ ଜାତି:</u> ବୈଷ୍ଣବ ଜାତି ପଇତାଧାରୀ ବ୍ରାହ୍ମଣ ଜାତିର ଏକ ଉପଜାତି। ଏମାନଙ୍କର ଜଜମାନ ସେବାଘର ନାହିଁ। ଏମାନେ କର୍ଣ୍ଣଗୁରୁ ଜାତିର ଲୋକ। ବିବାହ ପୂର୍ବରୁ ସବର୍ଣ୍ଣ ପୁଅ ଝିଅଙ୍କର ମନ୍ତ୍ରଗୁରୁ। ଏମାନେ ଭିକ୍ଷାବୃତ୍ତି କରି ଚଳନ୍ତି। ବୈଷ୍ଣବ ଜାତିର ଲୋକ ଜାନୁଘଣ୍ଟ, ରାମ ପର୍ଶୁରାମ ବେଶଧରି ଗାଁ ଦାଣ୍ଡରେ ବୀର ନୃତ୍ୟ କରି ଭିକ୍ଷା କରନ୍ତି। ଏ ସଂପ୍ରଦାୟର ଲୋକ ନୟାଗଡ଼ ରଘୁନାଥପୁର ବିଟଳ ଗାଡ଼ିଆ, ଖଣ୍ଡପଡ଼ା, ନିମାଣି, ଗଣିଆ, ସିଧାମୂଳା, ଦଶପଲ୍ଲାରେ ଦେଖାଯାଆନ୍ତି।

<u>ଯୋଗୀ:</u> ଯୋଗୀ ସଂପ୍ରଦାୟ ଉପବିତଧାରୀ ବ୍ରାହ୍ମଣ ଜାତିର ଏକ ଉପଜାତି। ଏମାନେ ବୀଣା, କେନ୍ଦରା ବଜାଇ ଗୀତ ଗାଇ ଗାଇ ଦ୍ୱାରେ ଦ୍ୱାରେ ଭିକ୍ଷାବୃତ୍ତି କରନ୍ତି। ଟୀକା ଗୋବିନ୍ଦ ଚନ୍ଦ୍ର, ଧରମା ଗୀତ ଦ୍ୱାରେ ଦ୍ୱାରେ ଗାଆନ୍ତି। ମାନସିକ ଥିବା ବାଳୁତ ପୁଅର ଯୋଗୀ ବେଶ କରାଇ ଗାଁର ଦ୍ୱାରେ ଦ୍ୱାରେ ଭିକ୍ଷା କରନ୍ତି। ଯୋଗୀ ଜାତି ନୟାଗଡ଼ ଚାହାଳୀ, ଭାପୁର, ଚକ୍ରଧର ପ୍ରସାଦରେ ଦେଖାଯାଆନ୍ତି।

<u>ଚକୁଳିଆ ପଣ୍ଡା:-</u> ଚକୁଳିଆ ପଣ୍ଡା ବ୍ରାହ୍ମଣଙ୍କର ଏକ ଉପଜାତି। ଗ୍ରାମ ଦାଣ୍ଡରେ ବୁଲି ଭିକ୍ଷାବୃତ୍ତି ଏମାନଙ୍କର ଜାତି ବେଉସା। ଦୁଇଜଣ ବ୍ରାହ୍ମଣ ଚିତା ତିଳକ କାଟି ମୁଣ୍ଡରେ ମଜଭୁତ ଠେକା, ଦୁଇ କାନ୍ଧରେ ଲମ୍ବା ଗାମୁଛା, ବାମ ହସ୍ତରେ ତାଳପତ୍ର ଛତା, ଡାହାଣ ହସ୍ତରେ ଭିକ୍ଷାଥାଳ ଧରି ଚକୁଳିଆ ପଣ୍ଡା ଗୀତ ଗାଇ ଗାଁ ଦାଣ୍ଡରେ ସାହି ସାହିରେ ବୁଲି ଭିକ୍ଷା କରନ୍ତି। ଭିକ୍ଷାପାତ୍ର ପୂର୍ଣ୍ଣ ହେବାଯାଏ ଗାଁ ଦାଣ୍ଡରେ ବୁଲନ୍ତି। ଏ ଶ୍ରେଣୀୟ ବ୍ରାହ୍ମଣ ନୟାଗଡ଼ର ବାଉଁଶିଆପଡ଼ା, ଭାପୁର ଚକ୍ରଧର ପ୍ରସାଦରେ ଦେଖା ଯାଆନ୍ତି।

<u>ମାଳି:</u> ମାଳି ଠାକୁରାଣୀଙ୍କର ସେବକ ଜାତି। ସବୁ ଗାଁରେ ମାଳି ବସତି ଥାଏ। ମାଳିମାନେ ବାହାର ଗାଁର ଦେବାଦେବୀଙ୍କର ମଧ୍ୟ ସେବା କରନ୍ତି। ବାହାଘର ମାନଙ୍କରେ ପୁଅ ଝିଅଙ୍କର ଦିଅଁ ଗଣଶୀ ସମୟରେ ମାଳି ଗ୍ରାମ ଠାକୁରାଣୀଙ୍କଠାରେ ଦିଅଁ ଗଣଶା ପୂଜାବିଧି କରିଥାଏ। ଏଣୁ ଦେବାଦେବୀଙ୍କର ଜମିଖଞ୍ଜା ମାଳି ପାଇଥାଏ। ମୃତବ୍ୟକ୍ତିର ନଅ, ଦଶ କ୍ରିୟା ସମୟରେ କର୍ତ୍ତାଙ୍କ ଦୁଆରେ ମାଳି ଭୋଜନ କରି ଦକ୍ଷିଣା ପାଇଥାଏ। ଦୁଆରେ ସଂକୀର୍ତ୍ତନ ହେଲେ ମାଳି ଫୁଲ ଚନ୍ଦନ ଦେଇ ସଂକୀର୍ତ୍ତନୀୟାଙ୍କୁ ନିମନ୍ତ୍ରଣ କରେ। ଘର ଶ୍ରାଦ୍ଧ ଉତ୍ସବରେ ମାଳିଫୁଲ ଚନ୍ଦନ ଦିଏ।

<u>କେଳା:</u> ନୟାଗଡ଼ ଜିଲ୍ଲାରେ କେଳା ଦୁଇ ସଂପ୍ରଦାୟର। ପାଇକ କେଳା ଓ ସାପୁଆ କେଳା। ପାଇକ କେଳା ଗାଁ ଗାଁ ବୁଲି ପାଇକ ଖେଳ ବାଉଁଶରାଣୀ ଖେଳ ପ୍ରଦର୍ଶନ କରନ୍ତି। ଏମାନଙ୍କ ଖେଳ ସର୍କସ ସଦୃଶ ଚମତ୍କାର। ଛୋଟ ବୟସର ପୁଅଝିଅ, ଜୁଆନ ତରୁଣ ତରୁଣୀ ସୁନ୍ଦର ବେଶରେ ସଜେଇ ହୋଇ ସେମାନଙ୍କର କ୍ରୀଡ଼ା କୌଶଳ ଦେଖାଇଥାନ୍ତି। ଝିଅମାନଙ୍କର ବାଉଁଶ ଦୋଳିରେ ଚିତ୍ତାକର୍ଷକ ଦୋଳି ଖେଳ ବାଉଁଶରାଣୀର କୋକିଳ କଣ୍ଠ ସୁମଧୁର ଗୀତ ଶେଷରେ ବାଉଁଶ ଶୀର୍ଷରେ ହାତଗୋଡ଼ ପ୍ରସାରୀ ଘୂରିବା ବେଶ୍ ଆଶ୍ଚର୍ଯ୍ୟଜନକ। ଏହି ଶ୍ରେଣୀୟ କେଳା କୁରାଳ, ଖଣ୍ଡପଡ଼ା, ଗୁଣ୍ଠୁଣୀ, ନୂଆଗାଁ, ଲାଠିଆ ପଲ୍ଲୀ ଗ୍ରାମରେ ଦେଖାଯାଆନ୍ତି।

<u>ସାପୁଆ କେଳା:</u> ସାପୁଆ କେଳା ଗାଁ ଗାଁ ବୁଲି ବିଷଧର ସାପମାନଙ୍କୁ ନାଗେଶ୍ୱର ବଜାଇ ବଶ କରାଇ ଖେଳ କରାଏ। ଦଶପଲ୍ଲା ମଣିଭଦ୍ରା ପାର୍ବତ୍ୟାଞ୍ଚଳରୁ ବଡ଼ ବଡ଼ ସାପଧରି ସେମାନଙ୍କର ବିଷଦାନ୍ତ ଭାଙ୍ଗି ପେଡ଼ାରେ ପୋଷା ମନାନ୍ତି। ସାପୁଆ କେଳା ଗଣିଆ ଅଞ୍ଚଳରେ ଦେଖାଯାଆନ୍ତି।

<u>ଶୁଣ୍ଢି:</u> ଶୁଣ୍ଢି ମଦ ବିକା ଜାତି। ଏମାନେ ଚାଉଳ, ମହୁଲ, ଗୁଡ଼, କଦଳୀ, ପୋଚକରି ମଦ ରାନ୍ଧନ୍ତି। ମଦ ନିଶା ପାନୀୟ। ମଦ ବ୍ୟବସାୟରେ ପ୍ରଚୁର ଅର୍ଥ ଉପାର୍ଜନ କରନ୍ତି। ଶୁଣ୍ଢିମାନଙ୍କର ମଦରନ୍ଧା ଭାଟି ଥାଏ। ଶୁଣ୍ଢିଜାତିରେ ବଡ଼ ବଡ଼ ଧନପତି ଅଛନ୍ତି। ସବୁଗ୍ରାମରେ ଏ ଜାତିର ଲୋକ ଦେଖାଯାଆନ୍ତି ନାହିଁ। ନୟାଗଡ଼ର ଚାରିଗଡ଼ରେ ଏହି ଜାତିର ଲୋକ ବାସ କରନ୍ତି।

<u>ମୁଣ୍ଡପୋତା ଜାତି:</u> ମୁଣ୍ଡ ପୋତା ଜାତି ମାଟିରେ ମୁଣ୍ଡ ପୋତି ପେଟ ଦେଖାଇ ଭାତ ମଗା ଜାତି। ଏମାନେ ହେଲେ ବାରବୁଲା ଜାତି। ଏମାନଙ୍କର ଜମିବାଡ଼ି ନଥାଏ। ଏମାନେ ନୟାଗଡ଼ ଅଞ୍ଚଳରେ ବୁଲୁଥିବାର ଦେଖାଯାଏ।

<u>ଶିତୁଳିଆ:</u> ଶିତୁଳିଆ ଜାତିର ଲୋକ ପିତ୍ତଳ ଡ଼ବି, ସୁନ୍ଦର ସୁନ୍ଦର କୁମ୍ଭା ତିଆରି କରି ବିକନ୍ତି। ଏମାନଙ୍କର ଝଳେଇ ଶାଳ ଥାଏ। ନୟାଗଡ଼ ଅଂଚଳରେ ଏ ବ୍ୟବସାୟ କରି ବୁଲୁଥିବାର ଦେଖା ମିଳେ।

**ଘୁଷୁରିଆ:** ଘୁଷୁରିଆ ଜାତିର ଲୋକେ ଘୁଷୁରି ଓ ଗଧ ପାଳନ କରନ୍ତି। ଏମାନଙ୍କର ଯାଯାବର ଜୀବନ। ଏମାନଙ୍କର ସ୍ତ୍ରୀ ଲୋକମାନେ ତାଳପତ୍ରରେ ରଙ୍ଗଦେଇ ଝୁମୁକା କରି ବିକନ୍ତି। ଘୁଷୁରିଆ ଜାତିର ଲୋକ ରଣପୁର ଅଂଚଳରେ ଥିବାର ଶୁଣାଯାଏ।

**ଚମାର/ମୋଚି:** ମୋଚି ଜାତିର ଲୋକ ଚମଡ଼ାରେ ଚପଲ, ଜୋତା, ବ୍ୟାଗ, ବାକ୍ସ ତିଆରି କରନ୍ତି। ବୁଲି ବୁଲି ଛିଣ୍ଡା ଚପଲ ମରାମତି କରନ୍ତି। ଏହି କାମରେ ମୋଚିମାନେ ଭଲ ଧରଣର ଅର୍ଥ ଉପାର୍ଜନ କରନ୍ତି। ନୟାଗଡ଼ ଲାଠିପଡ଼ା, ଦଶପଲ୍ଲା ପାଟନା ଛକରେ ମୋଚି ବସ୍ତି ରହିଛି। ଦଶପଲ୍ଲା ମୋଚିମାନେ ଚମଡ଼ା ଶୀଳ୍ପରେ ବେଶ୍ ଧୁରନ୍ଧର। ସେମାନଙ୍କ ତିଆରି ଜୋତା ଚପଲ ଆଦରଣୀୟ। ଚମଡ଼ା ଶୀଳ୍ପ ପାଇଁ ଦଶପଲ୍ଲା ପ୍ରସିଦ୍ଧ। ଦଶପଲ୍ଲା ମୋଚିମାନେ ଚମଡ଼ା ଟ୍ୟାନିଂ କରି ଚମଡ଼ା ଜାତୀୟ ଉପକରଣ ତିଆରି କରି ଅର୍ଥ ଉପାର୍ଜନ କରନ୍ତି।

**ହାତକଟା:** ହାତକଟା ଜାତି ମାଗିଖିଆ ଜାତି। ଏମାନେ ବାରବୁଲା ଜାତି। ହାତକଟା ଡାହାଣ ହାତରେ ଏକ ଲୁହାର ବଳା ଲଗାଇ ହାତରେ ଲମ୍ବା ଲୁହାଛୁରୀ ଧରି ଦୁଆର ଦୁଆର ବୁଲି ଛୁରୀ ବଳା ଖାଡୁ ଖାଡୁ କରି ଭିକ୍ଷା କରନ୍ତି।

**ଭୋଇ:** ଭୋଇ ଏକ ସେବାକାରୀ ଜାତି। ବିବାହ ପୁଆଣୀ ଘରେ ବରକନ୍ୟାଙ୍କୁ ସବାରୀ, ପାଲଙ୍କିରେ ବୁହନ୍ତି। ସାଉକାର ଲୋକଙ୍କୁ ସବାରୀ ପାଲଙ୍କିରେ ନେବା ଆଣିବା କରନ୍ତି। ନୟାଗଡ଼ ଅଂଚଳରେ ଏ ଜାତି ବସବାସ ଦେଖାଯାଏ। ଏମାନେ ପରଜମିରେ କାମ କରନ୍ତି। ଏମାନଙ୍କର ବିଶେଷ ଜମି ନଥାଏ।

**ତଅଁଳା:** ତଅଁଳା ଏକ ସେବାକାରୀ ଜାତି। ଏମାନେ ମଜୁରିଆ ଶ୍ରେଣୀର। ଏମାନଙ୍କର ବିଶେଷ ଜମି ନଥାଏ।

**ସଅର:** ସଅର ମାନେ ମୂଲିଆ ମଜୁରିଆ କାମ କରି ପେଟ ପୋଷନ୍ତି। ଏମାନଙ୍କର ବିଶେଷ ଜମି ନଥାଏ। ଏମାନଙ୍କ ସ୍ତ୍ରୀ ଲୋକମାନେ ଜଙ୍ଗଲରୁ ଶାଳପତ୍ର, ଶିଆଳି ପତ୍ର, ସଂଗ୍ରହ କରି ଖଲି, ଠୁଙ୍ଗା ସିଲାଇ କରନ୍ତି। ଖଜୁରୀ ପଟି ବୁଣି ଚଳନ୍ତି। ନୟାଗଡ଼ ଅଞ୍ଚଳରେ ଏମାନଙ୍କର ବସବାସ ଅଛି।

**କଣ୍ଡରା:** କଣ୍ଡରା ଏକ ହରିଜନ ଜାତି। ଏ ଗାଁର ଚୌକିଆ କାମ କରେ। ଚୌକିଦାରମାନଙ୍କର ଚୌକିଦାର ଜାଗିର ଜମିଥାଏ। ମୁଖ୍ୟତଃ ଏ ଜାତିର ଲୋକ ପୋଖରୀ, ଗାଡ଼ିଆରେ ଖାଡ଼ି ପକାଇ ମାଛମାରି ଜୀବିକା ନିର୍ବାହ କରନ୍ତି।

**ଡମ:** ଡ଼ମ ହରିଜନ ଜାତିର। ଏମାନଙ୍କର ପ୍ରଧାନ ଜୀବିକା ବାଉଁଶ ପାତିରେ ବୋଝ, କୁଲା, ଡ଼ାଲା, ପାଛିଆ, ବାଉଁଶିଆ, ଭୋଗେଇ, ଚାଙ୍ଗୁଡ଼ି, ଝାମ୍ପି ଇତ୍ୟାଦି ତିଆରି କରି ଭଲ ରୋଜଗାର କରନ୍ତି।

**ପାଣ:** ପାଣ ହରିଜନ ଜାତିର। ପ୍ରାୟ ସବୁ ଗାଁରେ ପାଣ ଦେଖା ଯାଆନ୍ତି। ଏମାନଙ୍କ ସଂଖ୍ୟା କମ୍। ଏମାନଙ୍କ ପ୍ରଧାନ ଜୀବିକା ଖାଡ଼ିରେ ମାଛ ମାରିବା। ଜଙ୍ଗଲରୁ କାଠ ଆଣି ବିକିବା। ଝିଅମାନେ ଖଜୁରୀ ପଟି ବୁଣନ୍ତି। ଏମାନଙ୍କର ଚାଷଜମି ନଥାଏ। ଏକ ଅଳସୁଆ ଜାତି। ରୋଜଗାର କରିଥିବା ଅର୍ଥକୁ ଶେଷ ହେଲାଯାଏ ବସି ଖାଆନ୍ତି। ପୁରୁଷମାନଙ୍କ ଅପେକ୍ଷା ମହିଳାମାନେ ଅଧିକ ପରିଶ୍ରମୀ। ଏକ କିଣିଖିଆ ଜାତି। ରୋଜଗାର ସରିଲେରୋଜଗାରରେ ଯାଆନ୍ତି। ଏ ଜାତିର କେତକ ବସ୍ତିର ଲୋକ ବାଉଁଶ ପାତିରେ ଝୁଡ଼ି, ବୋଝ, ଖଡ଼ିଆ, ଓଦର ତିଆରି କରି ଚଷା ଗାଁରେ ବିକ୍ରୟ କରନ୍ତି।

**ହାଡ଼ି:** ହାଡ଼ି ହରିଜନ ଜାତିର ସେବାକାରୀ ଜାତି। ଗାଁ ଦାଣ୍ଡ ସଫାକରି ଗାଁ ମାନଙ୍କରୁ ବର୍ତ୍ତନ ଆକାରରେ ମଜୁରା ପାଆନ୍ତି। ଏମାନେ ବାଉଁଶରେ ସୁନ୍ଦର ସୁନ୍ଦର ବୋଝ, କୁଲା, ଡ଼ାଲା, ବାଉଁଶିଆ, ଭୋଗେଇ, ଝାମ୍ପି, ତାଳପତ୍ର ଛତା ତିଆରି କରି ବିକନ୍ତି। ଏମାନେ ଏକ ନିର୍ମାଣକାରୀ ଜାତି। ଗୋରୁ ଚମଡ଼ାରେ ଢ଼ୋଲ, ଚାଙ୍ଗୁ, ରମ୍ପାବାଦ୍ୟ, ଖୋଳ, ଟମକ ବାଦ୍ୟ ତିଆରି କରନ୍ତି। ଏ ଜାତିର ମହିଳାମାନେ ଅଧିକ ପରିଶ୍ରମୀ। ଗାଁରେ ଠାକୁରଙ୍କ ପର୍ବରେ ହାଡ଼ି ଢ଼ୋଲ ମହୁରୀ ବଜାଏ। ବିବାହ, ବ୍ରତ ପଟୁଆରରେ ହାଡ଼ିମାନେ ଢ଼ୋଲ , ଚାଙ୍ଗୁ, ବିଭିନ୍ନ ପ୍ରକାର ହାଡ଼ିବାଦ୍ୟ ବଜାଇ ପଟୁଆରକୁ ସରଗରମ କରାନ୍ତି। ଏ ଜାତିର ପୁରୁଷମାନେ ପ୍ରଚୁର ମଦ ପିଅନ୍ତି। ସବୁ ଗାଁରେ ଏମାନଙ୍କର ବସତି ଦେଖାଯାଏ ନାହିଁ। ନୟାଗଡ଼ ଅଂଚଳରେ ସ୍ଥାନେ ସ୍ଥାନେ ଏମାନଙ୍କର ସ୍ୱତନ୍ତ୍ର ବସ୍ତି ରହିଛି। ଉପରୋକ୍ତ ଯେଉଁ ଜାତିମାନଙ୍କୁ ଆଲୋଚନା କରାଗଲା ଏ ଜାତିମାନେ ହିନ୍ଦୁ ସମ୍ପ୍ରଦାୟର।

**ମୁସଲମାନ/ପଠାଣ ଜାତି:** ମୁସଲମାନ ସଂପ୍ରଦାୟ ଏକ ସ୍ୱତନ୍ତ୍ର ଜାତିର। ରାଜଶାସନ ଅମଳରୁ ଏମାନଙ୍କର ଆବିର୍ଭାବ ନୟାଗଡ଼ ଅଞ୍ଚଳରେ। ନୟାଗଡ଼ ଅଞ୍ଚଳର ବିଜିପୁର, ବାଉଁଶିଆ ପଡ଼ା, ଇଟାମାଟି, ସିନ୍ଦୁରିଆ, ମାଛିପଡ଼ା, ରାଜସୁନାଖେଳା, ଖଣ୍ଡପଡ଼ା ଗଡ଼ରେ ମୁସଲମାନ ବସ୍ତି ଦେଖାଯାଏ। ଏମାନେ ରାଜାଙ୍କର ଖାନ୍‌ସାମା। ମାଂସ ଜାତୀୟ ସ୍ୱାଦିଷ୍ଟ ଖାଦ୍ୟ ରନ୍ଧନ କରନ୍ତି। ଏମାନେ ମଜୁରା ଖଟିବାକୁ ପସନ୍ଦ କରନ୍ତି ନାହିଁ। ଏମାନେ ବୁଲି ବୁଲି ପ୍ଲାଷ୍ଟିକ୍ ଜିନିଷ ବିକନ୍ତି। ମାଂସ, ଅଣ୍ଡା, ମାଛ, ଶୁଖୁଆ ବ୍ୟବସାୟ କରନ୍ତି। ଏମାନେ ମାଛଚାଷ, କୁକୁଡ଼ା ଚାଷ, ବନିଶ୍ ପକାଇ ମାଛ ମାରନ୍ତି। ମୁସଲମାନ ମାନେ ମାଛ, ମାଂସ ବ୍ୟବସାୟ କରି ପ୍ରଚୁର ଅର୍ଥ ଉପାର୍ଜନ କରନ୍ତି।



## ପଞ୍ଚମ ଅଧ୍ୟାୟ

# ଧାର୍ମିକ ଚେତନା
# (ଶାକ୍ତ, ଶୈବ, ବୈଷ୍ଣବ ଓ ଅଲେଖ, ବୌଦ୍ଧ)

ନୟାଗଡ଼ ଅବିଭକ୍ତ ପୁରୀ ଜିଲ୍ଲାର ପଶ୍ଚିମ ପାର୍ଶ୍ୱସ୍ଥ ଏକ ଆରଣ୍ୟକ ପୃଷ୍ଠଭୂମି ଉପରେ ଚାରୋଟି ଗଡ଼ଜାତ ଯଥା:- ରଣପୁର, ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲାକୁ ଯୋଡ଼ି ଦିଆଯାଇ ବର୍ତ୍ତମାନର ନବଗଠିତ ନୟାଗଡ଼ ଜିଲ୍ଲା। ଓଡ଼ିଶା ଭୌମକର, କେଶରୀ, ଗଙ୍ଗ ରାଜବଂଶର ଶାସନାଧୀନ ଥିବାରୁ ସମଗ୍ର ନୟାଗଡ଼ ଏହି ରାଜବଂଶର ସଂସ୍କୃତି ଓ ଧର୍ମଧାରା ଦ୍ୱାରା ପ୍ରାୟତଃ ପ୍ରଭାବିତ। କେଶରୀ ବଂଶର ଇଷ୍ଟଦେବୀ ମା ବୀରଜାୟୀ ଠାକୁରାଣୀ, ଆରାଧ ଦେବତା ଲିଙ୍ଗରାଜ ମହାଦେବ ଜୀଉ, ଗଙ୍ଗବଂଶର ଇଷ୍ଟ ଦେବୀ ମା ମଙ୍ଗଳା-ଆରାଧ ଦେବତା ଜଗନ୍ନାଥ ଜୀଉ ମହାପ୍ରଭୁ। ଏହି ସମୟ ଠାରୁ ଉତ୍କଳ ଦେଶ ଶାକ୍ତ, ଶୈବ, ବୈଷ୍ଣବ ଧର୍ମର ମହାମିଳନର ଏକ ସାରସ୍ୱତ କ୍ଷେତ୍ର। ଏହାର ବହୁବର୍ଷ ପୂର୍ବରୁ ଓଡ଼ିଶା ଯେତେବେଳେ କଳିଙ୍ଗ ଦେଶ ନାମରେ ନାମିତ ଥିଲା- ମଗଧ ସମ୍ରାଟ ଅଶୋକ ଓ କଳିଙ୍ଗବାସୀଙ୍କ ମଧ୍ୟରେ ଏକ ଭୟାଭୟ ଦୁଃଖଦ ଯୁଦ୍ଧ ଖ୍ରୀ:ପୂ ୨୬୧ ରେ ଘଟିଥିଲା। ଖ୍ରୀ:ପୂ ପ୍ରଥମ ଶତକ କଳିଙ୍ଗ ସମ୍ରାଟ ଚେଡି ବଂଶର ଐର ଖାରବେଳଙ୍କ ଶାସନ କାଳରେ ଓଡ଼ିଶା ଜୈନ ଧର୍ମ ବୌଦ୍ଧ ଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲା। ଏହି ପ୍ରାଚୀନ ଧର୍ମର ସ୍ମୃତି ଓ ସ୍ଥିତି ସ୍ୱରୂପ ଖଣ୍ଡଗିରି ଜୈନ ମନ୍ଦିର ଓ ବୌଦ୍ଧସ୍ତୁପ ଧଉଳୀଗିରି ବୌଦ୍ଧ ବିହାର ଅଧୁନା ରାଜ୍ୟର ଏକ ଏକ ମୁଖ୍ୟ ପର୍ଯ୍ୟଟନସ୍ଥଳୀ।

ନୟାଗଡ଼ ଅଞ୍ଚଳରେ ବୌଦ୍ଧଧର୍ମର ପ୍ରଭାବ ଥିଲା। ଏତଦ୍‌ବ୍ୟତୀତ ଅବଧୂତ ସନ୍ୟାସୀଙ୍କ ଦ୍ୱାରା ଶୂନ୍ୟବାଦ ମହିମା ଧର୍ମର ଉଦ୍‌ଭବ ଓଡ଼ିଶାର ବହୁ ଅଞ୍ଚଳକୁ ପ୍ରଭାବିତ କରିଥିବା ସମୟରେ ଏହାର ବହୁଳ ପ୍ରଚାର ପ୍ରସାର ନୟାଗଡ଼ରେ ପରିଲକ୍ଷିତ ହୁଏ। ପୂର୍ଣ୍ଣତଃ ନୟାଗଡ଼ର ସଂସ୍କୃତି ଆଦିବାସୀ ଓ ଓଡ଼ ସଂପ୍ରଦାୟ ମିଶ୍ରଣର ସମନ୍ୱୟ। ଏହାର ଦେବାଦେବୀ ପୀଠମାନଙ୍କରେ ଓଷା, ବ୍ରତ, ଯାନିଯାତ୍ରା ଉତ୍ସବ ମାନଙ୍କରେ ଭକ୍ତମାନଙ୍କର ଉପାସନାରୁ ଜାଣିହୁଏ ନୟାଗଡ଼ ଜିଲ୍ଲା ଜନ ଜୀବନଧାରା, ଶାକ୍ତ, ଶୈବ, ବୈଷ୍ଣବ ଓ ଶୂନ୍ୟବାଦ ଅଲେଖ ଧର୍ମ ଦର୍ଶନ ଚେତନା ଦ୍ୱାରା ପ୍ରଭାବିତ।

**ଶାକ୍ତ:** ମାଟି ପ୍ରକୃତି ସ୍ୱରୂପିଣୀ, ସୃଷ୍ଟିକାରିଣୀ ମହାଶକ୍ତି ଆଦିମାତା। ମାତୃ ପୂଜା ବା ଶକ୍ତି ଉପାସନା ଅର୍ଥାତ୍ ଶାକ୍ତ ଧର୍ମ ପରମ୍ପରା ନୟାଗଡ଼ରେ ସବୁଠୁ ପ୍ରାଚୀନ। ନୟାଗଡ଼ର ଗଡ଼େ ଗଡ଼େ, ଗ୍ରାମେ ଗ୍ରାମେ, ପ୍ରାନ୍ତେ ପ୍ରାନ୍ତେ

ଦେବୀପୀଠମାନ ବିଦ୍ୟମାନ। କୋଠି ମଧ୍ୟରେ, ମନ୍ଦିର ଗମ୍ଭୀରାରେ, ମୁକ୍ତ ଆକାଶତଳେ, ଜାମୁଗଛ, ଶାଳଗଛ, ସାହାଡ଼ା ଗଛ, କେନ୍ଦୁଗଛ ମୂଳରେ – ମଙ୍ଗଳା, ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡା, ସ୍କନ୍ଦମାତା, କାଳୀ, କାତ୍ୟାୟନୀ, କାଳରାତ୍ରୀ, ମହାଗୌରୀ, ସିଦ୍ଧିଦାତ୍ରୀ, ନାରାୟଣୀ, ତାରା, ଷୋଡ଼ଷୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ଚଣ୍ଡୀ, ବିମଳା, ଚାମଣ୍ଡା, ଇନ୍ଦ୍ରାଣୀ, ଦୁର୍ଗା, ରୁଦ୍ରାଣୀ, ତାରିଣୀ, ଷଷ୍ଠୀମା, ସାବିତ୍ରୀ, ବୁଢ଼ୀମା, ଶୂଳିଆ ଠାକୁରାଣୀ, ଢୁଇଁଆଣୀ, ପେଟେଇ ଠାକୁରାଣୀ, ମାଟେଣୀ ଦେବୀ, ମଣିନାଗେଶ୍ୱରୀ, ଖିଲମୁଣ୍ଡା ଠାକୁରାଣୀ, ବାଉରୀ ଠାକୁରାଣୀ, ନାଇକାଶୁଣୀଠାକୁରାଣୀ, ପିତାବଳୀ, ବାଗ୍‌ଦେବୀ, କଳାପାଟ ଠାକୁରାଣୀ, ବଡ଼ରାଉଳ ଓ ପନ୍ଥେଇ ଦେବୀଙ୍କର ପର୍ବ ଦିନମାନଙ୍କରେ ବିପୁଳ ଜନସମାବେଶ ଘଟେ।

ରଣପୁର ଗଡ଼ ରାଜାଙ୍କର ଆରାଧ୍ୟଦେବୀ ମଣିନାଗେଶ୍ୱରୀ ମଣିନାଗ ପର୍ବତର ଚକାଶିଳା ବେଦୀ ଉପରେ ଦେବୀ ପୂଜା ପାଉଛନ୍ତି।ଆଉମଧ୍ୟ ଦଶପଲ୍ଲା ନିକଟସ୍ଥ ବୁଗୁଡ଼ା କଲୋନୀରେ ମଣିନାଗ ଠାକୁରାଣୀଙ୍କର ବିରାଜମାନ। ନୟାଗଡ଼ ରାଜବଂଶର ଇଷ୍ଟଦେବୀ ବାଉରୀ ଠାକୁରାଣୀ ପ୍ରଥମେ ରଳବ ଗଡ଼ରେ ଅବସ୍ଥାନ କରୁଥିଲେ। ଖଣ୍ଡପଡ଼ା ଗଡ଼ ରାଜବଂଶର ଇଷ୍ଟଦେବୀ ମଧ୍ୟ ବାଉରୀ ଠାକୁରାଣୀ। ଦଶପଲ୍ଲା ରାଜବଂଶର ଇଷ୍ଟଦେବୀ ନାଇକାଶୁଣି। ଗଡ଼ରେ ଏହି ଦେବୀମାନଙ୍କୁ କନ୍ଧଜାନୀ ପୂଜା କରୁଥିଲେ। ଠାକୁରାଣୀମାନଙ୍କ ପୂଜାରେ ମଣିଷ ରକ୍ତବଳି ପ୍ରଦାନ କରାଯାଉଥିଲା। ଏଇଥିପାଇଁ ରାଜା ରାଜ୍ୟରେ ଶଙ୍ଖିଆକଟା ଜାଗିରି, ରକ୍ତପଟା ଖଞ୍ଜା ରଖିଥିଲେ। ଏଯାବତ୍ ମା'ମାନେ ଆଳ କରୁଥିବା ପିଲାମାନଙ୍କୁ ଶଙ୍ଖିଆ କଟା ଭୟ ଦେଖାଇ ତୁନି କରାଇ ଶୁଆଇବାର ପହଲି ଶୁଣାଯାଏ।

ଗାଁ ଗାଁରେ ଗାଁର ରକ୍ଷାକାରିଣୀ ଗ୍ରାମଦେବୀ ବ୍ରାହ୍ମଣୀ ଦେବୀ ପୂଜା ପାଉଛି। ଗ୍ରାମ ତରଫରୁ ଠାକୁରାଣୀଙ୍କ ପାଇଁ ଜମି ଖଞ୍ଜାର ବ୍ୟବସ୍ଥା ରହିଛି। ଠାକୁରାଣୀ ପୀଠରେ ସଂକ୍ରାନ୍ତିକୁ ସଂକ୍ରାନ୍ତି ଛେନାପଣା ଲାଗି କରାଯାଏ। ଚୈତ୍ର ମାସରେ ଗ୍ରାମବାସୀ ତରଫରୁ ଆଇଁଷ ଜନ୍ତାଳ ପୂଜା ହୁଏ। ଠାକୁରାଣୀ ପ୍ରାଙ୍ଗଣରେ ଗ୍ରାମବାସୀ ହରିବୋଲ ପକାଇ ଆଇଁଷ ଜନ୍ତାଳ ଖାଆନ୍ତି। ଗ୍ରାମର ଯେ କୌଣସି ଲୋକର ପୁଅ ଝିଅଙ୍କର ମଙ୍ଗନ ତିଥିରେ ଗାଁ ଠାକୁରାଣୀ ଠାରେ ଦିଅଁ ଗଣେଶ ଶୁଭଫଳ ମନାସନ୍ତି। ମହାମାରୀ, ବସନ୍ତ, ହାଡ଼ଫୁଟି, ମିଳିମିଳାରୁ ରକ୍ଷା ପାଇବା ପାଇଁ ଚୈତ୍ରମାସର ପ୍ରତି ମଙ୍ଗଳବାର ଫୁଲସଞ୍ଜ ବେଳରେ ଢ଼ୋଲ, ଘଣ୍ଟ ବଜାଇ ବୁଢ଼ୀମାଙ୍କୁ ମେଲାଣି ଦିଆଯାଏ। ଚୈତ୍ରମାସ ମଙ୍ଗଳବାର ଉଦୁଉଦିଆ ଢ଼ହଢ଼ହ ଖରାବେଳରେ ମା'ମାନେ ପୁଅ ଅବା ଝିଅଙ୍କୁ କାଖେଇ ହରିଜନ ସାହିରୁ ମୁଠି ଭିକ୍ଷା କରି ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ପୋଖରୀରେ ଉଝେଇ ଥାନ୍ତି। ଏହିଦିନ ଗୋଟିଏ ବକ୍ତ ଚୂଡ଼ା ହେଉ ବା ଅରୁଆ

ଚାଉଳ ଗୁଣ୍ଡ ଚକଟା ହେଉ ବା ଲିଆ ଚକଟା ମା' ମାନେ ଭକ୍ଷଣ କରିଥାନ୍ତି। ଆଶ୍ୱିନ ମାସ, ଚୈତ୍ର ମାସରେ ମଙ୍ଗଳାପୀଠରେ ପୁଅଝିଅ ପାଇଁ ମାନସିକ କରିଥିବା ସ୍ତ୍ରୀ ଲୋକ ତପରେ ବସନ୍ତି। ରାଗ ରାଗିଣୀର ଢେଣ୍ଡୁ କୋଇଲା ବାଜିଲେ ମା' ମଙ୍ଗଳା କାଳେସି ଦେହରେ ଉଭାହୋଇ ମାନସିକ ଫଳ କଥା ଭକ୍ତ ମାନଙ୍କୁ କହିଥାନ୍ତି। ମାନସିକ ଫଳପ୍ରାପ୍ତି ହେବାର ଭକ୍ତମାନେ ଅଙ୍ଗେ ଅଙ୍ଗେ ନିଭାଇଥାନ୍ତି।

ଆଶ୍ୱିନ ମାସ ଦଶହରାରେ ମା' ଦୁର୍ଗାଙ୍କର ପୂଜାପାଠ କରି ଲୋକମାନେ ପୂଜା ଉତ୍ସବରେ ମାତିଥାନ୍ତି। ନୟାଗଡ଼, କଣ୍ଟିଲୋ, ଖଳିସାହି, ଦଶପଲ୍ଲା, ସାତପାଟଣା, ଇଟାମାଟି, ଶରଣକୂଳ, ଓଡ଼ଗାଁ, ଗୋଡ଼ିପଡ଼ା, ରଣପୁର, କୁରାଳ, ବାହାଡ଼ାଝୋଲା, ଗଣିଆ, ନୂଆଗାଁ ଏପରିକି ଜିଲ୍ଲାର ବହୁ ସ୍ଥାନରେ ମା' ଦୁର୍ଗାଙ୍କର ମୃଣ୍ମୟ ମୂର୍ତ୍ତି ନିର୍ମାଣ କରି ପଞ୍ଚମୀଠାରୁ ଦଶମୀ ପର୍ଯ୍ୟନ୍ତ ନିୟମ ଭିତ୍ତିକ ପୂଜା କରାଯାଏ। ଦେବୀ ଯାତ୍ରାକୁ ଜନ ସମାଗମ କରାଇବା ପାଇଁ ସୁନ୍ଦର ମନୋଜ୍ଞ ମନୋରଜଂନ କାର୍ଯ୍ୟକ୍ରମ ଯୋଡ଼ା ଯାଇଥାଏ। ଦୁର୍ଗାପୂଜା ଜାଗା ମାନଙ୍କରେ ବେଶ ଭକ୍ତମାନଙ୍କର ଭିଡ଼ ଜମେ। ଦଶହରା ପୂଜାରେ ନୂଆ ଚୂଡ଼ା, ନବାନ୍ନ ଭକ୍ଷଣ କରାଯାଏ। ଫଳରେ ଘରକୁ ବିଦେଶରେ ରହୁଥିବା ଲୋକମାନେ ଆସନ୍ତି। ଦଶହରାରେ ପରସ୍ପରକୁ ଦଶହରା ଭେଟି ଦେଇ ମହାମିଳନର ଆନନ୍ଦ ପାଇଥାନ୍ତି।

ଚୈତ୍ର ପଣାସଂକ୍ରାନ୍ତି ଠାକୁରାଣୀ ଯାତ୍ରା ସମୟ। ନୟାଗଡ଼ ଦକ୍ଷିଣକାଳୀ ପୀଠରେ ମହା ସମାରୋହରେ ଠାକୁରାଣୀ ଯାତ୍ରା ପାଳନ କରାଯାଏ। ଚାରିଦିନ ଧରି ଏ ଯାତ୍ରା ଲାଗିରହେ। ସଂକ୍ରାନ୍ତି ରାତ୍ରରେ ତୋପ,ଗଛବାଣ, ହାବେଲିଚକ୍ର, ଚେଙ୍ଗ ବାଣ ଶବ୍ଦରେ ଯାତ୍ରା ପଡ଼ିଆ ଦୁଲୁକି ପଡ଼େ। ରୁଚିପୂର୍ଣ୍ଣ ସାଂସ୍କୃତିକ କାର୍ଯ୍ୟକ୍ରମ ଦ୍ୱାରା ଜନସମାବେଶକୁ ବାନ୍ଧି ରଖାଯାଏ। ନୟାଗଡ଼ କଜଳାଇ ପଲ୍ଲୀ ଓ ଭାପୁର ନିକଟସ୍ଥ ଚକ୍ରଧର ପ୍ରସାଦଠାରେ ଠାକୁରାଣୀଙ୍କ ପଣାଯାତ୍ରା ଖୁବ୍ ଯାକଜକମରେ ବହୁ ଜନସମାବେଶ ମଧ୍ୟରେ ପାଳିତ ହୁଏ। ମାଘ ମକର ମେଳାରେ ନୟାଗଡ଼ ନିକଟସ୍ଥ ପଥରାରେ ମା' ଭୂଇଁଆଣୀଙ୍କର ପ୍ରସିଦ୍ଧ ମକର ଯାତ୍ରା ଅନୁଷ୍ଠିତ ହୁଏ। ଛ ଦିନ ଧରି ଏଠାକାର ଯଜ୍ଞ ହୋଇଥାଏ। ଦିବା ରାତ୍ର ମନୋରଜଂନ କାର୍ଯ୍ୟକ୍ରମ ଲାଗି ରହିଥିବାରୁ ଭୂଇଁଆଣୀଙ୍କ ପୀଠରେ ହଜାର ହଜାର ଭକ୍ତଙ୍କର ଭିଡ଼ ହୁଏ। ବୈଶାଖ ମାସ ହାଣ୍ଡିଭଙ୍ଗା ପୂର୍ଣ୍ଣମୀରେ ପ୍ରତି ଗାଁର ଗ୍ରାମ ଦେବତୀଙ୍କ ନିକଟରେ ମୁଗ, ଚାଉଳ, ଗୁଡ଼ ଯାଉର ଲାଗି କରାଯାଇ ହାଣ୍ଡିଟିକୁ ଭଙ୍ଗା ଯାଇଥାଏ। କାର୍ତ୍ତିକ ଅମାବାସ୍ୟା ଦିପାବଳୀ ଦିନ କାଳୀଙ୍କର ମୃଣ୍ମୟ ମୂର୍ତ୍ତି ନିର୍ମାଣ କରାଯାଇ ଆଡ଼ମ୍ବର ସହକାରେ କାଳୀ ପୂଜା କରାଯାଉଛି। ଭାଦ୍ରବ ମାସରେ ଘରେ ଘରେ ମାଙ୍କର ପୂଜା କରାଯାଏ। ଭାଦ୍ରବ ମାସର ପ୍ରତି ବୁଧବାର ଦିନ ବୁଧେଇ ଓଷା ସ୍ତ୍ରୀ ଲୋକମାନେ କରିଥାନ୍ତି। ଭାଦ୍ରବ ମାସର ପ୍ରତି ରବିବାରରେ ଅଭିଆଡ଼ି ଝିଅମାନେ

ଭାଇମାନଙ୍କର ମଙ୍ଗଳ କାମନା କରି ମା' ମଙ୍ଗଳାଙ୍କର ଖୁଦୁରୁକୁଣୀ ଓଷା କରନ୍ତି। ସାଧବର ସାତ ପୁଅ, ସାତ ବୋହୂ ଓ ଝିଅ ତଅପୋଇ କଥା ଚରିତ ଏହି ଓଷାରେ ବୋଲାଯାଏ। ଆଶ୍ୱିନ ମାସର ଆରମ୍ଭରୁ କୁମାର ପୂର୍ଣ୍ଣମୀ ପର୍ଯ୍ୟନ୍ତ ଝିଅମାନେ ପ୍ରତି ସନ୍ଧ୍ୟାରେ ଜହ୍ନିଫୁଲ ପ୍ରଦାନ କରି ବୃନ୍ଦାବତୀଙ୍କର ଜହ୍ନି ଓଷା କରିଥାନ୍ତି। ମାର୍ଗଶୀର ମାସ ପ୍ରତି ଗୁରୁବାର ଦିନ କୂଳର ବୋହୂ ଲକ୍ଷ୍ମୀପୂଜା କରିଥାଏ। ଏବେ ନୟାଗଡ଼ର ବହୁ ଯାଗାରେ ଲକ୍ଷ୍ମୀଙ୍କର ମୃଣ୍ମୟ ମୂର୍ତ୍ତି ନିର୍ମାଣ କରି ବହୁଜନ ସମାରୋହ ମଧ୍ୟରେ ଲକ୍ଷ୍ମୀ ମା'ଙ୍କର ଆରାଧନା କରାଯାଉଥିବାର ଲକ୍ଷ୍ୟ କରାଯାଏ। ଏବେ ଝିଅମାନେ ମହାମାୟୀ ପୂଜା ମାନସିକ ସୂତ୍ରରେ କରୁଛନ୍ତି। ଠାକୁରାଣୀଙ୍କର ଏସବୁ ଓଷା, ବ୍ରତ, ପର୍ବପର୍ବାଣିରୁ ଜଣାଯାଏ ନୟାଗଡ଼ବାସୀ ଦେବୀ ଧର୍ମ ଦ୍ୱାରା କିପରି ପ୍ରଭାବିତ।

<u>ହାତୀଗଣ୍ଡ ଠାକୁରାଣୀ:</u> ଗୁମୀ ମାଳର କନ୍ଧମାନେ ଦଶହରାରେ ହାତୀଗଣ୍ଡ ଠାକୁରାଣୀଙ୍କର ପୂଜା କରିଥାନ୍ତି। ଏହି ଯାତ୍ରା ସପ୍ତମୀରୁ ଆରମ୍ଭ ହୋଇ ବିଜୟା ଦଶମୀରେ ସରିଥାଏ। ରଣପୁର ରାଆଁଳା ଗ୍ରାମର ଘନ ଜଙ୍ଗଲ ମଧ୍ୟରେ ଦେବୀ ଖିଲାମୁଣ୍ଡା ଠକୁରାଣୀଙ୍କର ଯାତ୍ରା ହୁଏ। ବନଭୂମି ମଧ୍ୟରେ ଖିଲାମୁଣ୍ଡା ଠାକୁରାଣୀ ପୀଠରେ ବିପୁଳ ଜନ ସମାବେଶ ହୁଏ। ଆଶ୍ୱିନ ଦ୍ୱିତୀୟାଠାରୁ ଷୋଳଦିନ ପାଇଁ ଠାକୁରାଣୀ ଖିଲାମୁଣ୍ଡା ରଣପୁର ରାଜପ୍ରାସାଦକୁ ନିମନ୍ତ୍ରିତ ହୁଅନ୍ତି। ଷୋଳ ହାତ ବାଉଁଶ ଦଣ୍ଡରେ ଖିଲାମୁଣ୍ଡା ଠାକୁରାଣୀଙ୍କର ଆଜ୍ଞାମାଳ ଗାଆଁଳ ଗ୍ରାମରୁ ରଣପୁର ରାଜବାଟୀକୁ ଯାଇଥାଏ। ରାଆଁଳାଠାରୁ ରଣପୁର ୨୩ କି.ମି ଦୂରତା। ଠାକୁରାଣୀଙ୍କର ଯାତ୍ରା କାଳରେ ପ୍ରତ୍ୟେକ ଗ୍ରାମରେ ଠାକୁରାଣୀଙ୍କର ପୂଜା ଅର୍ଚ୍ଚନା କରାଯାଏ।

<u>ମାଟେଣୀ ଦେବତା:</u> ପ୍ରତ୍ୟେକ କନ୍ଧ ବସ୍ତିର ଅଧିଷ୍ଠାତ୍ରୀ ଦେବୀ ଗ୍ରାମଦେବୀ। ପ୍ରାୟତଃ ଗ୍ରାମଦେବୀଙ୍କର ଆସ୍ଥାନ ଏକ ନିର୍ଜନ ସ୍ଥାନ। ମାଟି ବା ଧରଣୀ ଦେବତାଙ୍କ ନାମ ମାଟେଣୀ ଦେବତା। ସ୍ଥାନେ ସ୍ଥାନେ ମାଟେଣୀ ମେରିଆ ଖାଇ ମେରିଆ ଦେବୀ ଭାବରେ ପରିଚିତା। ମାଟେଣୀ ଠାକୁରାଣୀଙ୍କ ପ୍ରଧାନ ପର୍ବ ଦିନରେ ଟୋକୀ ବଳି ଦିଆଯାଉଥିଲା। ତେଣୁ ଏହି ପର୍ବକୁ ଟୋକୀମରା ପର୍ବ କୁହାଯାଉଥିଲା।

<u>ନାରାୟଣୀ:</u> କଣ୍ଟିଲୋର ମହାନଦୀର ଦକ୍ଷିଣ ଦାଢ଼ରେ ଚକାପଥର ଗ୍ରାମରେ ନାରାୟଣୀ ଦେବୀଙ୍କ ପୀଠ। କନ୍ଧ ଦେବୀଙ୍କର ପୂଜକ ଅଟେ। ଦଶପଲ୍ଲା ସହରରେ ପିତାବଳୀ ଠାକୁରାଣୀଙ୍କ ପୀଠ। ଦଶପଲ୍ଲା ନିକଟସ୍ଥ ଚକାପାଦ ଠାରେ ବାଗ୍‌ଦେବୀଙ୍କର ପୀଠ। ପୌଷ ପୂର୍ଣ୍ଣମୀରେ ଏଠାରେ ବୋଦାବଳୀ ପଡ଼େ। ମହାନଦୀ ଦକ୍ଷିଣ ତଟ ଦାଢ଼ରେ ମଣିଭଦ୍ରା ପର୍ବତର ପାଦ ଦେଶରେ ପଞ୍ଚୁପଲ୍ଲୀ କଳାପାଟ ଠାକୁରାଣୀଙ୍କର ଆସ୍ଥାନ। ଶୀତ ସମୟରେ କଳାପାଟ ଠାକୁରାଣୀ ପୀଠରେ ବହୁତ ବଡ଼ ଧରଣର ମେଳା ଅନୁଷ୍ଠିତ ହୁଏ। ଏହି ଯାତ୍ରାରେ ହଜାର ହଜାର ଯାତ୍ରୀଙ୍କର

ସମାଗମ ହୁଏ। ବଡ଼ମୂଳ ଘାଟି ପାଦଦେଶରେ ବଡ଼ବରାଉଳ ଠାକୁରାଣୀ ପୀଠ। ବଡ଼ମୂଳ ଜଙ୍ଗଲରୁ ଜଗନ୍ନାଥଙ୍କର ରଥକାଠ ସଂଗ୍ରହ ପୂର୍ବରୁ ବଡ଼ବରାଉଳ ଠାକୁରାଣୀଙ୍କର ପୂଜା କରାଯାଇ ଏକ ବୋଦା ବଳି ପକାଇ କାଠ କଟା ଆରମ୍ଭ ହୁଏ। ବାଇଶି ପଲ୍ଲୀର ୨୨ଖଣ୍ଡ କନ୍ଧ ମୌଜାର ଅଧିଷ୍ଠାତ୍ରୀ ଦେବୀ ପନ୍ଥେଇ ଦେବୀ। ଏଠି ବୋଦାବଳି ଦିଆଯାଏ। ପ୍ରତି ତିନି ବର୍ଷରେ ଥରେ ପଣ୍ଡା ବଳି ଦିଆଯାଏ। କନ୍ଧ ପୂଜକ ଏହି ଦେବୀ ମାନଙ୍କର ପୂଜା କରିଥାଏ। ପେଟେଇ ଚଣ୍ଡୀ, ବୁଢ଼ାବୁଢ଼ୀଆଣୀ, ଛାଞ୍ଚୁଣୀ ଆଣି, କାଉଁରୀ ଠାକୁରାଣୀ, ବାନ୍ଦେରୀ ଠାକୁରାଣୀ ମଧ୍ୟ ପ୍ରତ୍ୟକ୍ଷ ଦେବୀ ଅଟନ୍ତି। କନ୍ଧ ଜାନୀ ଏମାନଙ୍କର ପୂଜକ। ଆଦିବାସୀ ଅଞ୍ଚଳରେ ପୁରୁଷ ଦେବତାଙ୍କ ସଂଖ୍ୟା ବହୁତ କମ୍। ଏହି ଦେବୀ ପୀଠ ମାନଙ୍କରେ ଭିନ୍ନ ଭିନ୍ନ ସମୟରେ ଜାନୀଯାତ୍ରା ଉତ୍ସବ ଯୋଡ଼ି ହୋଇ ରହିଥାଏ। ଜିଲ୍ଲାର ଆଦିବାସୀ ସଂସ୍କୃତି ସଂପୂର୍ଣ୍ଣ ଦେବୀ ଧର୍ମ ରଜ୍ଜୁରେ ବନ୍ଧା।

**ଶୈବ ଧର୍ମ:** ଓଡ଼ିଶା ଦକ୍ଷିଣ ଭାରତର ଅଂଶବିଶେଷ। ଏହାର ସଂସ୍କୃତି ଦ୍ରାବିଡ଼। ଏଣୁ ଏହା ଏକ ଶୈବ ଉପାସନା କ୍ଷେତ୍ର। କେଶରୀ ବଂଶର ରାଜାମାନେ ପ୍ରଚ୍ଛନ୍ନ ଶୈବ ଥିଲେ। ଏକାମ୍ର ନଗରୀରେ ଲିଙ୍ଗରାଜ ଜୀଉଙ୍କର ଚାରୁ ଚିତ୍ରକଳା ଖୋଦେଇ ବିଶିଷ୍ଟ ଅତ୍ୟୁଚ୍ଚ ଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିଲେ। ଏହାର ପ୍ରଭାବ ଉତ୍କଳ ଦେଶକୁ ବ୍ୟାପୀ ରହିଥିଲା। ଭୁବନେଶ୍ୱର ଠାରୁ ନୟାଗଡ଼ର ଦୂରତା ୪୦ କୋଶର ବ୍ୟବଧାନ ମାତ୍ର। ନୟାଗଡ଼ ଅଞ୍ଚଳକୁ ଶୈବଧର୍ମର ପ୍ରବେଶ ସହଜ ଓ ସୁଗମ ଥିଲା ନିଶ୍ଚିତ। ଶିବ ମନ୍ଦିର ତଥା ଶୈବ ଧର୍ମର ଯାନିଯାତ୍ରାକୁ ଓ ଚୈତ୍ରମାସର ମେରୁ ସଂକ୍ରାନ୍ତି ପର୍ଯ୍ୟନ୍ତ ବାନାମ୍ବର ଗୋସାଇଁଙ୍କର ଗ୍ରୀଷ୍ମରେ ଅଗ୍ନି ଖେଳକୁ ଲକ୍ଷ୍ୟ କଲେ ନୟାଗଡ଼ ଏକ ପ୍ରଶସ୍ତ ଶୈବ ଉପାସନା କ୍ଷେତ୍ର। ଏହି ସତ୍ୟତାକୁ ପ୍ରମାଣ କରିବାକୁ ହେଲେ ନୟାଗଡ଼ରେ ଦ୍ୱାଦଶ ଅର୍ଦ୍ଧେକ ସ୍ୱଂୟ ଆବିର୍ଭୁତ (ଫୁଟାଲିଙ୍ଗ) ଲିଙ୍ଗଙ୍କର ଦର୍ଶନ ତେରୋଟି ପୁଣ୍ୟ ପୀଠରେ ମିଳେ।

ଉଗ୍ରସେନ ଧବଳେଶ୍ୱରଃ ପ୍ରତିଦିଶଂ<br>
ଶ୍ରୀ ନୀଳକଣ୍ଠ ତଥା<br>
ମୁକ୍ତେଶ୍ୱଂ କପିଳେଶ୍ୱର ବିଜୟତେ<br>
ଶ୍ରୀ ଲଡୁକେଶ ପ୍ରଭୁ<br>
ତତ୍ପଶ୍ଚାତ୍ ମଧୁ, ଦୂତୀ, ଫୁଲ ଗତିକମ୍<br>
ସିଂଘେଶ୍ୱର ତଥା ଶ୍ରୀ ନବଦୁର୍ଗେ<br>
ଦ୍ୱାଦର୍ଶାର୍ଦ୍ଧେ ମହୀ ଶ୍ରୀ ସୋମନାଥଃ ପୁନଃ।

**ସ୍ୱୟଂ ଆବିର୍ଭାବ ଲିଙ୍ଗ:** ପଣ୍ଡୁସର ଉଗ୍ରସେନ ଜୀଉଙ୍କର ମନ୍ଦିର, ବାଘେରା ଧବଳେଶ୍ୱର ଜୀଉଙ୍କର ମନ୍ଦିର, ଲାଠିପଡ଼ା ନୀଳକଣ୍ଠେଶ୍ୱର ଜୀଉଙ୍କ ମନ୍ଦିର,

ଗୋଡିସାହି ମୁକ୍ତେଶ୍ୱର ଜୀଉଙ୍କ ମନ୍ଦିର, ଶରଣକୂଳ ଲଡୁକେଶ ଜୀଉଙ୍କ ମନ୍ଦିର, ଗୁଂଜବାରଣ କପିଳେଶ୍ୱର ଜୀଉଙ୍କ ମନ୍ଦିର, ରାବେର ମଧୁକେଶ ଜୀଉଙ୍କ ମନ୍ଦିର, ଜାମୁପାଟଣା ଦୂତୀକେଶ୍ୱର ଜୀଉଙ୍କ ମନ୍ଦିର, ବାହାଡ଼ାଝୋଲା ଫୁଲେଶ୍ୱର ଜୀଉଙ୍କ ମନ୍ଦିର, ମାଳି ସାହି ଗତିକେଶ୍ୱର ଜୀଉଙ୍କ ମନ୍ଦିର, ଯଦୁପୁର ସିଂଘେଶ୍ୱର ଜୀଉଙ୍କ ମନ୍ଦିର, ଗୋବିନ୍ଦପୁର ସୋମନାଥ ଜୀଉଙ୍କ ମନ୍ଦିର, ପାଞ୍ଚଗଡ଼ ମାଳିସାହି ଦିବ୍ୟସିଂହପୁର ସୋମନାଥ ଜୀଉଙ୍କ ମନ୍ଦିର ଏକ ଏକ ସାରସ୍ୱତ ଶୈବପୀଠ ।

ଏହା ସହିତ ଜିଲ୍ଲାର ବହୁ ସ୍ଥାନରେ ଶିବଲିଙ୍ଗ ସ୍ଥାପନ କରାଯାଇ ଯଥା- ବାଲୁଙ୍କେଶ୍ୱର, ଗଙ୍ଗେଶ୍ୱର, ସୁବର୍ଣ୍ଣେଶ୍ୱର, ସ୍ୱପ୍ନେଶ୍ୱର, ରାମେଶ୍ୱର, ଏକାନ୍ତବାସୀ, ଘଟକେଶ୍ୱର ନାମରେ ଶିବ ମନ୍ଦିର ଦେଖିବାକୁ ମିଳେ । ଶିବ ମନ୍ଦିରର ପରିଚାଳନା ପାଇଁ ଜମିବାଡ଼ି ଖଂଜା ରହିଛି । ମନ୍ଦିର ଗୁଡ଼ିକରେ ନୀତିକାନ୍ତି ନିୟମ ମୁତାବକ ଚାଲେ । କାର୍ତ୍ତିକ ମାସରେ ଶିବ ଚତୁଃର୍ଦ୍ଦଶୀ ସମୟରେ ମନ୍ଦିର ମାନଙ୍କରେ ଭକ୍ତଙ୍କର ଭିଡ଼ ଜମେ । ଗୁହାରିଆ ଭକ୍ତମାନେ ଶିବ ମନ୍ଦିରରେ ଗୁହାରୀ ପଡ଼ି ଫଳ ପ୍ରାପ୍ତ ହୋଇଥାନ୍ତି । ଶିବ ଉପାସନାରେ ଭକ୍ତମାନଙ୍କର ମାନସିକ କାମନା ସିଦ୍ଧ ହେଉଥିବାରୁ ଶିବ ଉପାସକ ସଂଖ୍ୟା ସର୍ବାଧିକ । ଶିବ ଉପାସନାର କେନ୍ଦ୍ର ପୀଠ ହେଉଛି ଲଡୁକେଶ୍ୱର ଜୀଉ ଶରଣକୂଳ ପୀଠ । ଲଡୁବାବା ମାନସିକ ପୂରଣ କରିବା ମହାଦେବ । ଲଡୁବାବାଙ୍କର ଜାଗର ଯାତ୍ରାରେ ହଜାର ହଜାର ଭକ୍ତଙ୍କର ସମାବେଶ ହୁଏ । ଏହି ଯାତ୍ରା ଦୋଳ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଲାଗିରହେ । ପଶ୍ଚିମ ମୁଖି ମହାଦେବ ଦୂତୀକେଶ୍ୱର ଜୀଉଙ୍କ କାର୍ତ୍ତିକ ରାସ ପୂର୍ଣ୍ଣମୀରେ ବାରେଡ଼ି ଯାତ୍ରା ହୁଏ । ଲଡୁବାବା ପୀଠ ଶରଣକୂଳ, ଦୂତୀକେଶ୍ୱର ପୀଠ ଜାମୁପାଟଣା ନୟାଗଡ଼ ଜିଲ୍ଲାର ଦୁଇଟି ମୁଖ୍ୟ ପର୍ଯ୍ୟଟନ ଶୈବପୀଠର ମାନ୍ୟତା ବହନ କରେ ।

ନୟାଗଡ଼ ଅଞ୍ଚଳର ପାରମ୍ପରିକ ଯାତ୍ରା ହେଲା ଦଣ୍ଡ ଯାତ୍ରା । ଅକର୍ମ କର୍ମଦାୟକ ଦେବ ଦେବ ମହାଦେବଙ୍କ ବାନାମ୍ବର ବେଶକୁ ବେତ ଦଣ୍ଡରେ ଧାରଣ କରି ଗଣଦେବତା ଭାବରେ ଦଣ୍ଡଭକତା ମାନେ ଗ୍ରାମରୁ ଗ୍ରାମକୁ ଯାଇ ଗ୍ରାମର ମଙ୍ଗଳ କରହେ, ସଂସାରର ମଙ୍ଗଳ କରହେ, ଡ଼ାକ ଦେଇ ଭ୍ରମଣ କରିଥାନ୍ତି । କାୟା ଶୁଦ୍ଧ କରି କାୟାକୁ କଷ୍ଟ ଦେଇ ବାନାମ୍ବରଙ୍କୁ ବେତ ଦଣ୍ଡରେ ଧାରଣ କରି ଚୈତ୍ରର ପ୍ରଚଣ୍ଡ ରୌଦ୍ରତାପରେ ଚଡ଼ ଚଡ଼ ତାତିରେ ଦଣ୍ଡ ମଶାଲ ସହିତ ଖେଳି ଖେଳି ଯାତ୍ରା କରିବା ଦଣ୍ଡଯାତ୍ରା । ଦଣ୍ଡର କାଷ୍ଠା ଅର୍ଥାତ୍ କାୟ ଶୁଦ୍ଧି ପାଇଁ ପର୍ବ ଆରମ୍ଭର ଏକ ମାସ ପୂର୍ବରୁ ଦଣ୍ଡ ଭକତା ମାନେ ନୀତିରେ ରୁହନ୍ତି । ଅରୁଆ ସାରିବା ଅଭ୍ୟାସ, ଆମିଷ ନ ଛୁଇଁବା, ପରପାଗରେ ନ ଖାଇବା, ପ୍ରବାସୀ ନ ହେବା, ସ୍ତ୍ରୀ ସହବାସରୁ ଦୂରେଇ ରହିବା, ଏପରି କି ପିଆଜ ଲେମ୍ବୁ ଖାଇବା ନିଷିଦ୍ଧ । ନୀତିମୟ ଶୁଦ୍ଧ କାୟା ଯୋଗୁଁ ଭକ୍ତମାନେ ସହଜରେ ଦଣ୍ଡଯାତ୍ରାର କଷ୍ଟମୟ ଜୀବନ ଯାତ୍ରାକୁ

ଅତିକ୍ରମ କରିଥାନ୍ତି । ମଧ୍ୟାହ୍ନର ଚଡ଼ ଚଡ଼ ତାତିଥିବା ଧୂଳିରେ ଖେଳିବା, ହାନ୍ଦୋଳା ଚଢ଼ି ଅଗ୍ନିରେ ସ୍ନାନ କରିବା, ନିଆଁ ଗାତରେ ଚାଲିବା ବାନାମ୍ବରଙ୍କ ମହିମାରୁ ସହଜ ହୋଇଥାଏ । ଭକତା ମାନଙ୍କର ଦୁଃସାହସିକ ଅଗ୍ନିକ୍ରୀଡ଼ା ଦର୍ଶକ ମାନଙ୍କୁ ବିସ୍ମିତ କରିଥାଏ । ରାତ୍ରରେ ଦଣ୍ଡ ନାଟୁଆମାନେ ଚଢ଼େୟା ସୁଆଙ୍ଗ ପରିବେଷଣ କରିଥାନ୍ତି । ଚଢ଼େୟା ନାଚରେ ହର ପାର୍ବତୀଙ୍କର ମହିମା ଗାନ କରାଯାଇଛି । ଈଶ୍ୱର ପାର୍ବତୀ ସର୍ପାଘାତରୁ କିପରି ଚଢ଼େୟାକୁ ଜୀବନ ଦାନ କରିଛନ୍ତି ଏହାହିଁ ଚଢ଼େୟା ସୁଆଙ୍ଗର ମୂଳ ରହସ୍ୟ । ଚୈତ୍ର ମାସରେ ୨୧ ଦିନ ବ୍ୟାପୀ ପଣାସଂକ୍ରାନ୍ତି ପର୍ଯ୍ୟନ୍ତ ଗ୍ରାମ ମାନଙ୍କରେ ଦଣ୍ଡ ଉତ୍ସବ ଲାଗିରହେ । ଦଣ୍ଡ ମେଳଣ ବଡ଼ ଚମତ୍କାର ଦୃଶ୍ୟ ଏ ଅଞ୍ଚଳରେ । ସମୟେ ସମୟେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ଏପରିକି ୧୦ ଦଣ୍ଡ ୧୫ ଦଣ୍ଡ ମେଳଣ କରାଯାଇଥାଏ । ସବୁ ଦଣ୍ଡ ଭକତାଙ୍କର ଏକ ସମୟରେ ଗହଳ ଚହଳ ଶିବ ଉପାସନାର ମହିମାକୁ ଅଧିକ ବ୍ୟାପକ କରିଥାଏ । ଏଥିରୁ ଆଲୋଚନା କରାଯାଏ ଅଂଚଳରେ ଶିବ ଉପାସନାର ମହିମା କେତେ ଯେ ପରମ୍ପରାକୁ ଜାବୁଡ଼ି ରଖିଛି ।

<u>ବୈଷ୍ଣବ:</u> ବିଷ୍ଣୁ ମନ୍ଦିର, ଭାଗବତ ଗାଦୀ ଗ୍ରାମେ ଗ୍ରାମେ ସଂକୀର୍ତ୍ତନ ଦଳ ଓ ମଠ ସଂସ୍କୃତିକୁ ଲକ୍ଷ୍ୟକଲେ ନୟାଗଡ଼ ଅଂଚଳରେ ବୈଷ୍ଣବ ଧର୍ମ ଧାରାର ପ୍ରଭାବ ଗଭୀର ଓ ବ୍ୟାପକ । ପ୍ରଥମତଃ କଣ୍ଟିଲୋ ନୀଳମାଧବଙ୍କ ଉପାସନା ପ୍ରାଚୀନତାର ସୂଚକ । କଣ୍ଟିଲୋ, ଖଣ୍ଡପଡ଼ା ତାଲୁକା ଅନ୍ତର୍ଭୁକ୍ତ । ଗବେଷକଙ୍କ ମତରେ ଖ୍ରୀ.ପୂ ୨୦୦୦ ବେଳକୁ ଶବର ରାଜା ବିଶ୍ୱାବସୁ ମହାନଦୀ ତଟସ୍ଥିତ ବ୍ରହ୍ମାଦ୍ରୀ ପର୍ବତ ଗୁହାରେ ନୀଳ ମାଧବଙ୍କୁ ପୂଜା କରୁଥିଲେ । ନୀଳମାଧବ ହେଉଛନ୍ତି ଇନ୍ଦ୍ରନୀଳମଣୀ ବିଗ୍ରହ । ମାଧବ ଉପାସନା ଓ ବିଷ୍ଣୁ ଉପାସନା ଏକ ଅଭିନ୍ନ । ବୈଷ୍ଣବମାନେ ରାଧା ମାଧବଙ୍କୁ ଯୋଡ଼ି ପୂଜା କରିଥାନ୍ତି । ଲୋକବିଶ୍ୱାସରେ ନୀଳମାଧବ ହେଉଛନ୍ତି ଜଗନ୍ନାଥ । ନୀଳମାଧବଙ୍କୁ ଦର୍ଶନ କଲେ ଜଗନ୍ନାଥ ଦର୍ଶନର ତୃପ୍ତି ମିଳିଥାଏ । ଧାନଚାଙ୍ଗଡ଼ା, କଣ୍ଟିଲୋ ଓ ତା'ର ନିକଟସ୍ଥ ଅଂଚଳରେ ମାଧବ ଉପାସନାର କ୍ଷେତ୍ରମାନ ଦେଖାଯାଏ । ଧାନ ଚାଙ୍ଗଡ଼ାର ଧାଙ୍ଗେଡ଼ି ପାହାଡ଼ ଶୀର୍ଷ ସ୍ଥଳୀରେ ଏକ ସୁନ୍ଦର ଉଚ୍ଚ ମନ୍ଦିର ମଧ୍ୟରେ ନୀଳମାଧବଙ୍କ ସୁନ୍ଦର ମୂର୍ତ୍ତି ପୂଜା ପାଉଛନ୍ତି । କଣ୍ଟିଲୋ ନୀଳମାଧବଙ୍କ ଅବସ୍ଥିତି ଯୋଗୁଁ ଖଣ୍ଡପଡ଼ା ଅଂଚଳରେ ବିଷ୍ଣୁ ଉପାସନାର ପ୍ରଭାବ ବ୍ୟାପକ । ମାଘମେଳା ନୀଳମାଧବଙ୍କ ପ୍ରସିଦ୍ଧ ମେଳା । ନଦୀ ଏପାରି ସେପାରିରୁ ହଜାର ହଜାର ଯାତ୍ରୀ ମାଘମେଳାରେ ସମବେତ ହୁଅନ୍ତି ।

ରଣପୁର, ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା ଗଡ଼ର ଆରାଧ୍ୟ ଦେବତା ଜଗନ୍ନାଥ । ପ୍ରତିଗଡ଼ରେ ଜଗନ୍ନାଥ ଜୀଉଙ୍କର ଉଚ୍ଚ ମନ୍ଦିର ନିର୍ମାଣ କରାଯାଇଛି । ପୁରୀ ମନ୍ଦିର ରୀତିରେ ଏହି ମନ୍ଦିରମାନଙ୍କ ନୀତି ନିୟମ ଚାଲେ । ଚାରିଗଡ଼ରେ ଜଗନ୍ନାଥଙ୍କର

ରଥଯାତ୍ରା ମହା ସମାରୋହରେ ଭିଡ଼ାଯାଏ । ଜଗନ୍ନାଥଙ୍କର ରଥ ଟାଣିବାକୁ ଗାଁ ଗହଳର ଲୋକଙ୍କ ଭିଡ଼ ଜମେ ଗଡ଼ଭିତରେ । ନୟାଗଡ଼ର ଶିଖରପୁର, ଶରଣକୂଳ, ଦେଉଳସାହି, ଇଟାମାଟି, ଶରଣକୂଳ ପଞ୍ଚରିଡ଼ା, ଗୋଡ଼ିପଲ୍ଲୀ, କୁରାଳ, ସାକେରୀଠାରେ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଛି । ଜଗନ୍ନାଥ ସଂସ୍କୃତି ଭାବଧାରାରେ ନୟାଗଡ଼ବାସୀ ଓତପ୍ରୋତଃ ଭାବେ ଜଡ଼ିତ । କାହିଁକି ନା ପାପମୁକ୍ତ ପାଇଁ ଭକ୍ତମାନେ ଗଭୀର ବିଶ୍ୱାସ ନେଇ ଶ୍ରୀମନ୍ଦିର ମୁକ୍ତି ମଣ୍ଡପକୁ ଦୌଡ଼ିଥାନ୍ତି । ଓଡ଼ିଆଙ୍କ ଆରାଧ ଠାକୁର ଜଗନ୍ନାଥ । ଅତିବଡ଼ି ଜଗନ୍ନାଥଙ୍କ ଭାଗବତ ପ୍ରତି ସଂନ୍ଧ୍ୟାରେ ଘରେ ଘରେ ପାଠ କରାଯାଏ । ଗ୍ରାମେ ଗ୍ରାମେ ଶ୍ରୀ ଚୈତନ୍ୟଦେବ, ଗୌରାଙ୍ଗ ଦେବଙ୍କ ପ୍ରଣିତ ନାମ ସଂକୀର୍ତ୍ତନ, ମୃଦଙ୍ଗ, ଗିନି, ଝାଞ୍ଜ ତାଳେ ତାଳେ ସଂଗୀତ ମୁଖର ହୁଏ । ଅଷ୍ଟପ୍ରହରୀ, ଦେଉଳ ବେଢ଼ାରେ, ଭାଗବତ ମେଳାରେ ଭକ୍ତମାନେ ମୃଦଙ୍ଗ ଗିନି ତାଳରେ ଭିନ୍ନ ଭିନ୍ନ ଠାଣିରେ 'ହରେରାମ ହରେରାମ –ରାମରାମ ହରେହରେ । ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେ ହରେ' ନାମ ଗାନ କରିଥାନ୍ତି । ରାଧା ଗୋବିନ୍ଦଙ୍କ ବସନ୍ତ ରାସକୁ ନେଇ ଫଗୁଣ ମାସରେ ଦୋଳଯାତ୍ରା ହୁଏ । ଦୋଳଯାତ୍ରା ଫଗୁଣ ଶୁକ୍ଳପକ୍ଷରୁ ଚୈତ୍ର କୃଷ୍ଣପକ୍ଷ ପର୍ଯ୍ୟନ୍ତ ଲାଗିରହେ । ନୟାଗଡ଼ରେ ଯେତେ ଯାତ୍ରା ହୁଏ ତତ୍ ମଧ୍ୟରୁ ଦୋଳଯାତ୍ରା ବହୁଦିନ ଧରି ଲୋକ ସଂସ୍କୃତିକୁ ପ୍ରଭାବିତ କରେ । ନୟାଗଡ଼ର ଜାମୁଝୋଲା, ଘଡୁଆଳ, ମାଛିପଡ଼ା, ବାଲୁଗାଁ, ଇଟାମାଟି, ଗୋଡ଼ିପଡ଼ା ଠାରେ ଏକ ଦୋଳ ଠାରୁ ପନ୍ଦର ଦୋଳ ପର୍ଯ୍ୟନ୍ତ ଯାତ୍ରା ହୁଏ । ନୟାଗଡ଼ ଜିଲ୍ଲାର ବହୁସ୍ଥାନରେ ରାମ ମନ୍ଦିର ନିର୍ମିତ ହୋଇଛି । ଓଡ଼ିଶାରେ ରଘୁନାଥ ଜୀଉଙ୍କ ମୁଖ୍ୟ ପୀଠ ନୟାଗଡ଼ ଜିଲ୍ଲାର ଓଡ଼ଗାଁ । ଓଡ଼ଗାଁ ଦ୍ୱିତୀୟ ଶ୍ରୀକ୍ଷେତ୍ରର ମାନ୍ୟତା ଗ୍ରହଣ କରିଅଛଇ । ତୀର୍ଥଯାତ୍ରୀ ଚାରିତୀର୍ଥ ଭ୍ରମଣ କରି ସିଦ୍ଧି ପ୍ରାପ୍ତି ପାଇଁ ଶେଷରେ ଓଡ଼ଗାଁ ରଘୁନାଥଙ୍କୁ ଦର୍ଶନ କରିବାକୁ ଆସିଥାଏ । ଓଡ଼ଗାଁ ଶ୍ରୀରାମ ନବମୀ ଯାତ୍ରା ଦଶପଲ୍ଲାର ଲଙ୍କାପୋଡ଼ି ଯାତ୍ରା ଓଡ଼ିଶାର ଏକ ଏକ ପ୍ରସିଦ୍ଧ ଯାତ୍ରା । ରଘୁନାଥ ଜୀଉଙ୍କ ମହିମା ଗାନ ପାଇଁ ଜିଲ୍ଲାର ପ୍ରାୟତଃ ପ୍ରତି ଗ୍ରାମରେ ରାମଲୀଳା ନାଟକ ଦଳ ଅଛି । ନୟାଗଡ଼ ଜିଲ୍ଲାର ଦଶପଲ୍ଲା ରାମଲୀଳା ନାଟକ ଭାରତ ପ୍ରସିଦ୍ଧି ଖ୍ୟାତି ଅର୍ଜନ କରିଅଛି ।

<u>ମଠ:</u> ତୀର୍ଥ ଭ୍ରମଣରେ ଆସୁଥିବା ସାଧୁ ସନ୍ଥଙ୍କର ଆତିଥେୟ ପାଇଁ ମଠ ପରମ୍ପରା ଉଦ୍ଦିଷ୍ଟ । ନୟାଗଡ଼ ଜିଲ୍ଲାରେ ଅନେକ ମଠ ଥିବାରୁ ଲକ୍ଷ କରାଯାଏ– ବଡ଼ମଠ, ଢେଙ୍କଣା ମଠ, ବଡ଼ ଛାଉଣୀ ମଠ, ଛୋଟ ଛାଉଣୀ ମଠ, ଖାକି ମଠ, ବାଲାଡ଼ିପି ମଠ, ନବନାଲ ମଠ, ଗୁଣ୍ଡିଚା ବାଡ଼ି ମଠ, କୁଞ୍ଜବିହାରୀ ମଠ, ଗମେଇ ମଠ, ଗୋଲଗାଁ ମଠ, ମଦନ ମୋହନ ମଠ, ବଡ଼ ପଣ୍ଡୁସର ମଠ, ଇଟାମାଟି– ରାଧାମାଧବ ଜୀଉ ମଠ, ଲକ୍ଷ୍ମୀମାତା ମଠ, ରାସବିହାରୀ ମଠ, ରାଧାକାନ୍ତ ମଠ,

ଚିତ୍ରକୂଟ ବିହାରି ମଠ, ଗମେଇ ମଠ, ଗୋଲା ଗାଁ ମଠ, ଲେଙ୍କୁଡ଼ିପଡ଼ା ରାଧାକାନ୍ତ ମଠ, ମଦନ ମୋହନମଠ, ଢ଼ିମିସର ମଠ, ଗବନଳ ମଠ, ଆଙ୍ଗିସିଙ୍ଗି ମଠ, ଚଣ୍ଡିବସ୍ତ ମଠ, ଆଙ୍କୁଲାଇ ପାଟଣା ମଠ, ରାଧାକାନ୍ତ ମଠ, ଓଡ଼ଗାଁ ଖଣ୍ଡପଡ଼ା-ଭାପୁର ମଠ, ଗଡ଼ ଖୋଲ ମଠ, କଇଁଫୁଲିଆ ମଠ, ରଘୁନାଥ ଜୀଉ ମଠ, କଣ୍ଟିଲୋ ରାଧାମୋହନ ମଠ, ରାଜସୁନାଖଳା-ବୃନ୍ଦାବନଚନ୍ଦ୍ର ମଠ, ରାଧା ଗୋବିନ୍ଦ ମଠ, କୁରାଳ ମଠ। ମଠମାନଙ୍କରେ ରାଧାମାଧବ, ରାଧାଗୋବିନ୍ଦ, ବିଷ୍ଣୁ ପ୍ରତିମାମାନଙ୍କର ଶାଳଗ୍ରାମ ପୂଜା ପାଉଛନ୍ତି। ମଠ ସଂସ୍କୃତି ବୈଷ୍ଣବ ଧର୍ମ ପ୍ରଚାର ପ୍ରସାରର କେତେ ଯେ ସରଳ ସୁଗମ ପଥ ପ୍ରମାଣ କରାଯାଇପାରେ। ଉପର ଲିଖିତ ତଥ୍ୟ ସଂଗ୍ରହରୁ ଜଣାଯାଏ ବୈଷ୍ଣବ ଧର୍ମର ପ୍ରଭାବ ବିସ୍ତାର ସମଗ୍ର ନୟାଗଡ଼ ଜିଲ୍ଲାରେ ସୁଦୂର ପ୍ରସାରୀ।

ମହିମାଧର୍ମ: ଊନବିଂଶ ଶତକରେ ଯେତେବେଳେ ହିନ୍ଦୁଧର୍ମ କଳୁଷିତ ହେବାକୁ ଲାଗିଲା ଶୂନ୍ୟବାଦ ମହିମା ଧର୍ମ ବା ଅଲେଖ ଧର୍ମ ଓଡ଼ିଶାରେ ପ୍ରଚାର ହେଲା। ୧୯୩୮ ମସିହାରେ ଜଣେ କୌପୀନଧାରୀ ଅଲେଖ ବାବା ନୟାଗଡ଼ର ପୁରୁଷୋତ୍ତମପୁର ଗ୍ରାମରେ ପ୍ରଥମ ମହିମା ଆଶ୍ରମ ଟୁଙ୍ଗୀ ସ୍ଥାପନ କରିଥିଲେ। ପରବର୍ତ୍ତୀ ସମୟରେ ବକଳଧାରୀ ବିଶ୍ୱନାଥ ବାବା ନୟାଗଡ଼ରେ ଅଲେଖ ଧର୍ମର ମୁଖ୍ୟ ପ୍ରଚାରକ ଥିଲେ। ନୟାଗଡ଼ ଅଂଚଳରେ ମହିମା ଧର୍ମକୁ ଅଧିକ ଲୋକ ମୁଖୀ କରାଇଥିଲେ ଈଶ୍ୱର ବାବା, ପବିତ୍ରବାବା, ବଂଶୀଧର ବାବା, ମୋହନ ବାବା, ଅନ୍ତର୍ଯ୍ୟାମୀ ବାବା, ଅଭୟ ବାବା ଓ ଦାଶରଥି ବାବା। ଅଲେଖ ସନ୍ୟାସୀ କୁମ୍ଭିପଟର ବକଳ ଅଥବା ଗେରୁ କୌପୀନ ପରିଧାନ କରି ଜଟାଜୁଟ ବାଳଗଣ୍ଠି ସହାୟକ ପାଇଁ ହାତରେ ଏକ ବାଉଁଶ ଦଣ୍ଡଧରି ତାଳ ପତ୍ରରେ ନିର୍ମିତ ଝୁଲାପେଡ଼ି କାନ୍ଧରେ ଝୁଲାଇ ପଙ୍ଖାପରି ତାଳପତ୍ର ଛତ୍ରଧରି ଖାଲି ପାଦରେ ଗ୍ରାମରୁ ଗ୍ରାମକୁ ଯାତ୍ରା କରନ୍ତି। ଅଲେଖ ସନ୍ୟାସୀ କୌଣସି ଗ୍ରାମରେ ଦୁଇରାତି ରୁହନ୍ତି ନାହିଁ। ଆହାର ଭିକ୍ଷା ମିଳିଲେ ଖାଆନ୍ତି କାହାକୁ ମାଗନ୍ତି ନାହିଁ। ଅଲେଖ ସନ୍ୟାସୀ ଗ୍ରାମେ ଗ୍ରାମେ ଶିଷ୍ୟ ଗ୍ରହଣ କରି ମହିମା ଧର୍ମବାଣୀ ପ୍ରଚାର କରନ୍ତି। ଗ୍ରାମର ଏକାନ୍ତ ଜାଗାରେ ଅଲେଖ ଟୁଙ୍ଗୀ ସ୍ଥାପନ ପାଇଁ ଶିଷ୍ୟମାନଙ୍କୁ ପ୍ରବର୍ତ୍ତାଇ ଥାନ୍ତି। ପ୍ରାତଃକାଳରେ ତଥା ସାୟଂ କାଳରେ ଅଲେଖ ସନ୍ୟାସୀ ଦିନରେ ଦୁଇଥର ମହିମା ଗୋସାଇଁଙ୍କର ଶରଣ ନିଅନ୍ତି। ସୂର୍ଯ୍ୟଉଦୟ ଦେଢ଼ ଘଣ୍ଟା ପୂର୍ବରୁ ସୂର୍ଯ୍ୟ ଅସ୍ତ ଦେଢ଼ଘଣ୍ଟା ପରେ ବ୍ରହ୍ମ ମୁହୂର୍ତ୍ତରେ ଗୃହୀ ହୁଅନ୍ତୁ କି ସନ୍ୟାସୀ ହୁଅନ୍ତୁ କାୟିକ ଦଣ୍ଡବତ, ବାଚିକ ଓ ମାନସିକ ପ୍ରକ୍ରିୟାରେ ବ୍ରହ୍ମ ଦର୍ଶନ କରି ଶରଣ ଯାଆନ୍ତି। ଏହା କଷ୍ଟ ସାଧନା ହୋଇଥିଲେ ହେଁ ଶରଣଗତ ଭକ୍ତର ବ୍ରହ୍ମ ପ୍ରାପ୍ତିର ସରଳ ସୁଗମ ପଥ। ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଅଲେଖ ଧର୍ମ ଗ୍ରହଣ କରିପାରିବେ। ନୟାଗଡ଼ର

ବହୁଗ୍ରାମରେ ଅଲେଖ ଟୁଙ୍ଗୀ ସ୍ଥାପନ ହୋଇଛି । ଗୋଡିସାହି, କଲ୍ୟାଣପୁର, ଗମ୍ଭାରଃ ଡ଼ିହି, ସୋଲପଟା, ଫାଶୀପଲ୍ଲୀ ନୂଆଗାଁ, କୋମଣ୍ଡ,ଗୋପପୁର, ବାହାଡ଼ା ଝୋଲା, ବେରୁଆଁବାରୀ, କୁରାଳ, ମହୀପୁର, ମହିତମା, ସିକ୍ରିଡ଼ା, ବନ୍ଧ ମିରିଗ, ମଗର ବନ୍ଧ, ଢ଼ୋଲମରା, କୋଶକା, ମଧୁପୁର, ବନମାଳୀପୁର, ଖଳିସାହି, କଣ୍ଟିଲୋ, ରଣପୁର, ଦର୍ପନାରାୟଣପୁର, ଖଡିଆ, ଡ଼ମସାହି, କାଳିକାପ୍ରସାଦ, ଚିନ୍ଦିରା, ବେଗୁନିଆପାଟଣା, ଡ଼ିମିସର, ଆଡ଼ଚେର, ହରିପୁର, ଚମ୍ପତିପୁର, ସାଲୁଣି, ସୁକଳ ଗାଡ଼ିଆ, ବାଲୁଗାଁ, ଶିମିଳି ସାହି, ନୟାଗଡ଼ । ନୟାଗଡ଼ ଟୁଙ୍ଗୀରେ ଅଲେଖ ସାଧୁମାନେ ଭାଦ୍ରବ ପୂର୍ଣ୍ଣମୀରେ ନବାନ୍ନ ଭକ୍ଷଣ କରିବାର ଉତ୍ସବ ପାଳନ କରିଥାନ୍ତି । ସାଧୁମାନେ ଖଂଜଣି, ଗିନି ବାଦ୍ୟ ତାଳ ଦେଇ ଭୀମଭୋଇଙ୍କ ଭଜନ ଗାନ କରନ୍ତି । ମହିମା ଗୋସାଇଁଙ୍କର ପ୍ରଥମ ଶିଷ୍ୟ ସନ୍ଥକବି ଭୀମଭୋଇ ରେଢ଼ାଖୋଲରେ ଜନ୍ମଗ୍ରହଣ କରିଥିଲେ । ମହିମା ଗୋସାଇଁଙ୍କର ଦେହତ୍ୟାଗ ସ୍ଥାନ ଢ଼େଙ୍କାନାଳ ଜୋରନ୍ଦା । ପ୍ରତିବର୍ଷ ମାଘ ଚତୁଃର୍ଦ୍ଦଶୀରେ ଜୋରନ୍ଦା ଗାଦୀରେ ମେଳା ହୁଏ । ଏହି ମେଳାରେ ଲକ୍ଷ ଲକ୍ଷ ଭକ୍ତଙ୍କର ସମାବେଶ ହୁଏ । ଏକଦା କାନାଡ଼ାର ପରିବ୍ରାଜକ ମହିମା ଧର୍ମର ଗବେଷଣା ଉଦ୍ଦେଶ୍ୟରେ ନୟାଗଡ଼ ନିଟସ୍ଥ ଫାଶୀପଲ୍ଲୀ, ନୂଆଗାଁ ବାଲିସାହିରେ ପହଞ୍ଚିଥିବାର ଏଠାକାର ଭକ୍ତମାନେ କୁହନ୍ତି ।

<u>ବୌଦ୍ଧଧର୍ମ:</u> ଖ୍ରୀ.ପୂ ୨୬୧ରେ ମଗଧ ସମ୍ରାଟ ଅଶୋକ କଳିଙ୍ଗ ଯୁଦ୍ଧରେ ବୌଦ୍ଧଧର୍ମ ପ୍ରଭାବରେ ଚଣ୍ଡାଶୋକରୁ ଧର୍ମାଶୋକକୁ ବଦଳି ଯାଇଥିଲେ । ତାଙ୍କ ଶାସନ କାଳରେ କଳିଙ୍ଗରେ ଅନେକ ସ୍ଥାନରେ ଶିଳାଲେଖରେ ବୌଦ୍ଧଧର୍ମର ନୀତିବାଣୀ ଦର୍ଶାଇଥିଲେ । କଣ୍ଟିଲୋ ସାମ୍ନା ମହାନଦୀର ଉତ୍ତର ଦାଢ଼ରେ ବାଣେଶ୍ୱର ଗ୍ରାମର ବାଣେଶ୍ୱର ପାହାଡ଼ ଉପରେ ବୌଦ୍ଧ କିର୍ତ୍ତୀ ପରିଲକ୍ଷିତ ହୁଏ । ଏହାର ୧୦/୧୫ କିଲୋମିଟର ଦୂରରେ ନୟାଗଡ଼ ଜିଲ୍ଲାର ଖଣ୍ଡପଡ଼ା ତହସିଲ ଅନ୍ତର୍ଗତ କୋଶକା ପଞ୍ଚାୟତ ଅଁଳାପଟା ମୌଜା ପାହାଡ଼ ପାଦଦେଶର ଝରଣା କୂଳରେ ଯୋଗୀ ଯୋଗୀଆଣୀ ପୀଠ ଏକ ବୌଦ୍ଧପୀଠ । ଏହି ବୌଦ୍ଧ ପୀଠରେ ୯ମ ୧୦ମ ଶତାବ୍ଦୀର ଚାରୋଟି ବୌଦ୍ଧ ମୂର୍ତ୍ତି ପୂଜା ପାଉଛନ୍ତି । ଜନଶ୍ରୁତିରୁ ଜଣାଯାଏ ଗୌଡ଼ପୁଟ ବୁଢ଼ାବୁଢ଼ୀଆଣି ପୀଠଠାରେ ଏକ ବୌଦ୍ଧ ବିଦ୍ୟାଳୟ ଥିଲା । ଏହା ଗ୍ରହଣୀୟ ହୋଇପାରେ । ବୁଢ଼ାବୁଢ଼ିଆଣୀ ପଶ୍ଚିମକୁ ବୁଗୁଡ଼ା ବୁଦ୍ଧଖୋଲ । ବୁଗୁଡ଼ାରେ ବୌଦ୍ଧମଠ ରହିଛି । ଗଞ୍ଜାମ ଜିଲ୍ଲାରେ ଜଡ଼ଗଡ଼ ରହିଛି ନୟାଗଡ଼ ସରହଦ ନିକଟସ୍ଥ । ନୟାଗଡ଼ ଜିଲ୍ଲାର ମଧ୍ୟବର୍ତ୍ତୀ ସ୍ଥାନ ଲଡୁବାବାଙ୍କ ପୀଠ ଭିକାରୀପଡ଼ା ଗ୍ରାମର ପଣ୍ଡିତ କିଶୋର ଚନ୍ଦ୍ର କର କୁହନ୍ତି- ଭିକାରୀପଡ଼ା ଶାସନରେ କୌଣ୍ଡିନ୍ୟ ଗୋତ୍ରୀୟ ବ୍ରାହ୍ମଣ ବୌଦ୍ଧ ଧର୍ମ ସଂପ୍ରଦାୟର ବଂଶଜ ଅଟନ୍ତି । ତାଙ୍କ ବଂଶ କୌଣ୍ଡିନ୍ୟ ଗୋତ୍ରୀୟ ବ୍ରାହ୍ମଣ । ଉପରୋକ୍ତ ତିନୋଟି ତଥ୍ୟକୁ ଆଧାର କରି ଗ୍ରହଣ କରାଯାଏ ଯେ ନୟାଗଡ଼ରେ ବୌଦ୍ଧଧର୍ମର ପ୍ରଭାବ ଥିଲା ।

ତର୍ଜମା କଲେ- ଲଡୁବାବା ମନ୍ଦିର ବେଢ଼ା ମଧ୍ୟରେ ପାର୍ଶ୍ୱଦେବାଦେବୀଙ୍କର ଯଥା ଅନେକ ଠାକୁରାଣୀ ମୂର୍ତ୍ତୀ , ନବଗ୍ରହ ମୂର୍ତ୍ତି, ଦଶଅବତାର ମୂର୍ତ୍ତି, ପାର୍ବତୀ ମନ୍ଦିର, ଲକ୍ଷ୍ମୀ ମନ୍ଦିର, ଜଗନ୍ନାଥ ମନ୍ଦିର, ଶ୍ରୀରାମ ମନ୍ଦିର, ମହାବୀର ମନ୍ଦିର, କାମଧେନୁ ମୂର୍ତ୍ତି ସ୍ଥାପନ କରାଯାଇଛି। ପୂର୍ବ ମୁନୀରଷିଙ୍କର ଚିତ୍ର କିମ୍ବା ମୂର୍ତ୍ତି ଖୋଦେଇ ହୋଇଛି। କିନ୍ତୁ ଅଲେଖ ଧର୍ମର କୌଣସି ସାଧୁଙ୍କର ମୂର୍ତ୍ତି ଖୋଦେଇ ନାହିଁ। ପ୍ରାୟତଃ ଜିଲ୍ଲାର ମୁଖ୍ୟ ମନ୍ଦିରଗୁଡ଼ିକ ଏଇ ଢ଼ାଞ୍ଚାରେ ନିର୍ମିତ। ଏସବୁ ତଥ୍ୟରୁ ଉପନୀତ ହେବାକୁ ହୁଏ ଯେ ନୟାଗଡ଼ ଅଞ୍ଚଳ ଶାକ୍ତ ଓ ଶୈବ, ବୈଷ୍ଣବ ଧର୍ମର ମହା ମିଳନ କ୍ଷେତ୍ର ଅଟେ। ଏତଦ୍ ସତ୍ତ୍ୱେ ଅଲେଖ ଧର୍ମ, ବୌଦ୍ଧ ଧର୍ମର ବ୍ୟାପକ ପ୍ରଭାବ ଜିଲ୍ଲା ମଧ୍ୟରେ ରହିଛି।



## ଷଷ୍ଠ ଅଧ୍ୟାୟ

# ନୟାଗଡ଼ର ଲୋକନୃତ୍ୟ ପରମ୍ପରା ଓ ଦଣ୍ଡ ନାଚ

ନୟାଗଡ଼ ଦକ୍ଷିଣ ଓଡ଼ିଶା ଓ ପଶ୍ଚିମ ଓଡ଼ିଶା ସରହଦକୁ ଲାଗିଥିବା ପୁରୀଜିଲ୍ଲାର ଏକ ବିଭକ୍ତ ନବଗଠିତ ଜିଲ୍ଲା । ଏହାର ସଂସ୍କୃତି ଆଦିବାସୀ ଓ ଓଡ଼ ସଂପ୍ରଦାୟ ମିଶ୍ରଣର ସମନ୍ୱୟ । ଶାକ୍ତ, ଶୈବ, ବୈଷ୍ଣବ, ଶୂନ୍ୟବାଦ ଅଲେଖ ଧର୍ମର ଧର୍ମ ଦର୍ଶନ ନୟାଗଡ଼ ଅଞ୍ଚଳର ଜନ ଜୀବନକୁ ଆଚ୍ଛନ୍ନ କରି ରହିଛି । ନୟାଗଡ଼ ଜିଲ୍ଲାର ଉତ୍ତରରେ ଚିର ପ୍ରବାହିତ ମହାନଦୀର କଣ୍ଟିଲୋ ମୋଡ଼ାଣିରେ ବ୍ରହ୍ମାଦ୍ରୀ ପାହାଡ଼ ଉପରେ ଶବର ଆରାଧ୍ୟ ନୀଳମାଧବ ଜୀଉ, ଦେବୀ ନାରାୟଣୀ, ପୂର୍ବଭାଗରେ ରଣପୁର ମଣିନାଗ, ଦକ୍ଷିଣରେ ଶରଣକୂଳ ଲଡୁବାବା, ଓଡ଼ଗାଁ ରଘୁନାଥ ଜୀଉ, ଦୂତୀକେଶ୍ୱର ଦେବ, ପଶ୍ଚିମରେ ଦଶପଲ୍ଲା ମହାବୀର ଜୀଉ, ନୟାଗଡ଼ ବାଉରୀ ଠାକୁରାଣୀ, ଦକ୍ଷିଣ କାଳୀ ଆସ୍ଥାନ ଏ ଅଞ୍ଚଳର ଲୋକ ସଂସ୍କୃତିକୁ ଧର୍ମ ରଜ୍ଜୁରେ ବାନ୍ଧି ରଖିଛି । ଦେବା ଦେବୀଙ୍କର ପବିତ୍ର ପୀଠମାନଙ୍କରେ ବର୍ଷର ନିର୍ଦ୍ଦିଷ୍ଟ ପୁଣ୍ୟତିଥି ମାନଙ୍କରେ ଯାତ୍ରାର ସଂଯୋଗ ଯଥା- ନୟାଗଡ଼ ଦଶହରା, ରାସପୂର୍ଣ୍ଣିମାରେ ଅଞ୍ଚଳର ଶୈବପୀଠମାନଙ୍କରେ ଅନୁଷ୍ଠିତ ଯାତ୍ରା ଉତ୍ସବ, କଣ୍ଟିଲୋ ମାଘସପ୍ତମୀ ଯାତ୍ରା, ଶରଣକୁଳ ଲଡୁବାବାଙ୍କର ଶିବଚତୁର୍ଦ୍ଦଶୀ ଯାତ୍ରା, ଦଶପଲ୍ଲା ବାଣୀଗୋଛା ମକର, ନୟାଗଡ଼ ପଥରା ମକର ଯାତ୍ରା, କୋମଣ୍ଡ ମକର ଯାତ୍ରା, ଦୋଳପର୍ବରେ ମହିପୁର, ମାଛିପଡ଼ା, ଇଟାମାଟି, ବାଲୁଗାଁ, ରଣପୁର ଦୋଳଯାତ୍ରା, ଭାଦ୍ରବରେ ଖୁଦୁରକୁଣୀ ଓଷା ବାଦୀ ଯାତ୍ରା, ଗୋଡିସାହି ଓ ଚଇତ୍ର ପଣାସଂକ୍ରାନ୍ତିର ଝାମୁଯାତ୍ରା ଜନଜୀବନକୁ ବିଶେଷ ପ୍ରଭାବିତ କରିଥାଏ । ଏହି ଆଧ୍ୟାତ୍ମିକ ଉତ୍ସବ ଓ ସାମାଜିକ ଉତ୍ସବମାନଙ୍କରେ ଜନସମାଜର ମନୋରଂଜନ ପାଇଁ ଲୋକ ନୃତ୍ୟ କଳାର ରୂପ ରଙ୍ଗ ରସ ଯୋଡ଼ି ହୋଇଯାଏ । ନୟାଗଡ଼ ଜିଲ୍ଲାର କାଳେସି ନାଚ, ଜିନ୍ଦା ଧାଙ୍ଗେଡ଼ି ଆଦିବାସୀ ନାଚ, ଧୁଡୁକି ନାଚ, ଦାସକାଠି, ଦ୍ୱାରୀ ନାଚ, (ଭାରତ ଲୀଳା) ସୁଆଙ୍ଗ, ଫାର୍ଶ, କେଳାନାଚ, (ବାଉଁଶ ରାଣୀ) କଣ୍ଢେଇ ନାଚ, ମାଙ୍କଡ଼ ନାଚ, ପାଇକ ନାଚ, ଜାନୁଘଣ୍ଟ ଅଭିନୟ , ରାସ, ଦଣ୍ଡ ନାଚ, ରାମଲୀଳା ଇତ୍ୟାଦି ବିବିଧ କଳାର ରୂପ ରଙ୍ଗରସ ଜନମାନସକୁ ରସସିକ୍ତ କରାଇ ଓଡ଼ିଶାର ନୃତ୍ୟକଳା ଜଗତରେ ମାନ୍ୟତା ଅର୍ଜନ କରିଛି ।

ଲୋକ ଚଳଣି, କାର୍ଯ୍ୟ ନିର୍ବାହର ଧାରା ଏବଂ ଆଧ୍ୟାତ୍ମିକ ଚିନ୍ତାଧାରାକୁ ନେଇ ଯେଉଁ ମନୋରଂଜନ ଧର୍ମୀ କାର୍ଯ୍ୟକ୍ରମ ଗୁଡ଼ିକ ସଂଯୋଜିତ ଓ ପରିବେଷିତ ତାହାହିଁ ଲୋକନୃତ୍ୟ । ନୟାଗଡ଼ ଜିଲ୍ଲାର ଚଉହଦୀକୁ ଦୃଷ୍ଟି ବଢ଼ାଇଲେ ଅଞ୍ଚଳର ଭିନ୍ନଭିନ୍ନ

ଲୋକନୃତ୍ୟ କଳା ସହିତ ସ୍ୱତନ୍ତ୍ର ଭଙ୍ଗୀ ଓ ଶୈଳୀ ସ୍ୱତନ୍ତ୍ର ବାଦ୍ୟ ଓ ସଂଗୀତ ଯୋଡ଼ି ହୋଇ ଦର୍ଶକର ଚିତ୍ତ ବିନୋଦନ କରିଥାଏ । ପ୍ରଦର୍ଶିତ ଲୋକନୃତ୍ୟ କଳା ସାମାଜିକ ଅଙ୍ଗୀକାର ବହନ କରି ଲୋକ ସଂସ୍କୃତିକୁ ସାଇତି ରଖିବାର ପ୍ରୟାସ ରଖେ ।

**କାଳେସି ନାଚ/ ମଙ୍ଗଳା ନାଚ:**

ମଙ୍ଗଳା ଠାକୁରାଣୀ ପୂଜା ନୟାଗଡ଼ ଅଞ୍ଚଳର ଏକ ପ୍ରାଚୀନ ପରମ୍ପରା । ଗ୍ରାମେ ଗ୍ରାମେ ପ୍ରାନ୍ତେ ପ୍ରାନ୍ତେ ଶକ୍ତି ସର୍ବତ୍ର ବିଦ୍ୟମାନ । ଗ୍ରାମର ଇଷ୍ଟଦେବୀ ଗ୍ରାମଦେବୀ ପ୍ରତ୍ୟେକ ଗ୍ରାମରେ ଭିନ୍ନ ଭିନ୍ନ ନାମ ବହନ କରି ପୂଜା ପାଆନ୍ତି । ନୟାଗଡ଼ର ସବୁ ଅଞ୍ଚଳରେ ପ୍ରାୟତଃ ପାଖାପାଖି ମଙ୍ଗଳା କୋଠିମାନ ଅଛି । ମଙ୍ଗଳା କୋଠିରେ କଳସ ଧରି ଯାହା ମନାସିଲେ ମା ମଙ୍ଗଳା ମାନସିକ ପୂର୍ଣ୍ଣ କରନ୍ତି । ଚୈତ୍ର ଓ ଆଶ୍ୱିନ ମାସରେ କାଳେସି କଳାଶାଢ଼ୀ ଓ ନାଲି ଛିଟ ଶାଢ଼ୀ ପିନ୍ଧି ମଙ୍ଗଳା କଳସ ମୁଣ୍ଡାଇ ଏକ ହସ୍ତେ ଝୁମୁକା କାଠି ଅନ୍ୟ ହସ୍ତେ ଚଅଁର ଧରି ଢ଼ୋଲ ଝାଞ୍ଜ ମହୁରୀର ତାଳେ ତାଳେ ଗାଁର ଦ୍ୱାରେ ଦ୍ୱାରେ କାଳେସି ନାଚ ନାଚି ନାଚି ମଙ୍ଗଳାଙ୍କ ମହିମା ପ୍ରଚାର କରେ । ନୟାଗଡ଼ ଆଙ୍ଗିସିଙ୍ଗି ଗ୍ରାମର କାଳେନ୍ଦୀ ନାୟକ, ହରିଜନ କାଳେସି ନାଚରେ ମୁକୁତା ସୁନ୍ଦରୀ, ହରିବନ୍ଧୁ ଲାଳିକା ଢ଼ୋଲ ଝାଞ୍ଜର ତାଳରେ ଗୀତ ଗାଇ ନାଚିଲା ବେଳେ ରାସ୍ତାରେ ଯାଉଥିବା ଲୋକ କ୍ଷଣେ ଅଟକେ । ନାଚର ଗୀତ –

ରାମ ରାମ ତ ଶ୍ରୀହରି
ତଳେ ଅଛୁ ବସୁମାତା
ଉପରେ ଅଛୁ ଧରମ ଦେବତା
ମାନ୍ୟ ହେଲିଲୋ ସାରଳା
ଏଥାନେ ଗୀତ ଏଥାନେ ଗଲା
ମୋର ଗୀତ ଯାଇ ଲାଗିଲା
ହରିବନ୍ଧୁ ପାଶେ ... ମୁକୁତା ଦେଇ ପାଶେ
x x x x x
ଶୁଣ ଶୁଣରେ ହରି ବନ୍ଧୁ
ଯୁଗଳ ବନ୍ଧୁ ମୋର
ଗେଣ୍ଡାରେ ମୁଦାଥିବ
ଶପତ ସରା ଶାଢ଼ୀ ।

**କଥାବସ୍ତୁ :** ମୁକୁତା ସୁନ୍ଦରୀ ହରିବନ୍ଧୁ ଭାବି ଦମ୍ପତି । ଭାଉଜ ବେଲେରୀ ଦେଖି ଦେବର ହରିବନ୍ଧୁକୁ ଶରଧା କଲାରୁ ମୁକୁତା ସୁନ୍ଦରୀ ଦୁଃଖ ପାଇଲା ।

ବେଲେରୀ ଭାଉଜ ମୁକୁତାର ନିନ୍ଦା କରିବା ସତ୍ତ୍ୱେ ହରିବନ୍ଧୁ ମୁକୁତାକୁ ଇଚ୍ଛା କଲା। ବେଲେରୀ ମୁକୁତାକୁ ବେଶ କଲାବେଳେ କଜଳରେ ଲଙ୍କା ମରିଚ ଫେଣ୍ଟି ମୁକୁତା ଆଖିରେ କଜଳ ଦେଲା। ମୁକୁତା ସୁନ୍ଦରୀ ଲୁହ ବୁହାଇବାରୁ ଅସୁନ୍ଦରୀ ଦିଶିଲା। ହରିବନ୍ଧୁ ମୁକୁତାକୁ ଅନାଇଲା ନାହିଁ। ବେଲେରୀ ଭାଉଜ ଗୋଟାପଣେ ହରିବନ୍ଧୁର ହେଲା। ମୁକୁତା ସୁନ୍ଦରୀ ଦୁଃଖ ପାଇଲା। ମା' ମଙ୍ଗଳା ସାହା ହେଲାରୁ ମୁକୁତା ହରିବନ୍ଧୁର ମିଳନ ହେଲା। ମନ୍ଦବୁଦ୍ଧି ବେଲେରୀ ଭାଉଜର ମୁଣ୍ଡ କଟାହେଲା। ଏଇହେଲା କାଳେସି ନାଚର କଥାବସ୍ତୁ।

ନୟାଗଡ଼ ଜିଲ୍ଲାର ପ୍ରାୟତଃ ସବୁ ଅଞ୍ଚଳରେ କାଳେସି ନାଚ ଦେଖାଯାଏ। ମା' ମଙ୍ଗଳାଙ୍କ ମହିମା ପ୍ରଚାର ସଙ୍ଗେ ସଙ୍ଗେ କାଳେସି ନାଚ ଦଳ ଗାଁରୁ ମୁଗ,ବିରି, ଚଣା ଆଦି ରବିଶସ୍ୟ ଆଦାୟ କରି ଜୀବିକା ଅର୍ଜନ କରିଥାନ୍ତି। ଏହି ନାଚକୁ ଅନେକ ମୁଗ ମହାପୁର ନାଚ କହନ୍ତି। ନୟାଗଡ଼ର ଆଙ୍ଗିସିଙ୍ଗି, ବରସାହି, କେଶପାନିଆ, ଡ଼ମସାହି, ଶରଣକୂଳ, ମାନପୁର, ଶିମିଳି ସାହି, ଲାଠିପଡ଼ା, ନୂଆଗାଁ ଅଞ୍ଚଳରେ, ବାହାଡ଼ା ଝୋଲା, ଜୋଡ଼ାସାହି, ମହିପୁର, ଖଣ୍ଡପଡ଼ାର ଯୋଗିଆପଲ୍ଲୀ ଗାଁମାନଙ୍କରେ ମଙ୍ଗଳା ନାଚ ବେଉସା ଅଛି। କାଳେସି ନାଚ ହରିଜନ ଶ୍ରେଣୀର ଲୋକମାନେ ଗ୍ରାମେ ଗ୍ରାମେ ବୁଲି ପରିବେଷଣ କରିଥାନ୍ତି।

**ଜିନ୍ଦା ଧାଙ୍ଗଡ଼ୀ :** ଜିନ୍ଦା ଧାଙ୍ଗଡ଼ୀ ନାଚ ନୟାଗଡ଼ ଜିଲ୍ଲାର ଦଶପଲ୍ଲା ବଣ ମୂଳକରେ ଆଦିବାସୀମାନଙ୍କର ପାରମ୍ପରିକ ଲୋକନୃତ୍ୟ। କନ୍ଧ ପଲ୍ଲୀମାନଙ୍କରେ ଧାଙ୍ଗଡ଼ୀ ଘର ଥାଏ। ଜୁଆନ ପୁଅ ଝିଅ ଜିନ୍ଦା ଧାଙ୍ଗେଡ଼ୀ। ଧାଙ୍ଗେଡ଼ୀଘର କନ୍ଧ ପୁଅ ଝିଅଙ୍କ ମନ ଦିଆନିଆ ଘର। ଗୋଟିଏ ଗାଁର ଧାଙ୍ଗଡ଼ା ଧାଙ୍ଗେଡ଼ୀ ଆର ଗାଁକୁ ଧାଙ୍ଗଡ଼ା ନାଚିଯିବାକୁ ଖବର ଦିଏ। ଧାଙ୍ଗେଡ଼ୀମାନେ କୁଣିଆ ଧାଙ୍ଗଡ଼ାଙ୍କର ଆତିଥ୍ୟ ପାଇଁ ଉଖୁଡ଼ା, ମଦ ଦିଅନ୍ତି । ଶାଳୁଆ ପତର ଠୋଲାରେ ମଦ ପିଅନ୍ତି। ଉଖୁଡ଼ା ଖାଆନ୍ତି। ଧାଙ୍ଗଡ଼ା ବାଦ୍ୟର ତାଳେ ତାଳେ ଜିନ୍ଦା ଧାଙ୍ଗେଡ଼ୀ ଅଣ୍ଟା ଧରାଧରି ହୋଇ ନାଚନ୍ତି। ନାଚରେ ପାହାନ୍ତିଆ ତାରା ଡୁବିଯାଏ। ରାତି ପାହିଯାଏ। ମନଦିଆନିଆ ରାତିରେ ଜିନ୍ଦା ଧାଙ୍ଗେଡ଼ାର ମନ ମିଶିଗଲେ ଧାଙ୍ଗେଡ଼ୀ ଘରୁ ଉଦୁଲିଆ ହୁଅନ୍ତି। ରାତିରେ ସେମାନଙ୍କର ବାହାଘର ହୋଇଯାଏ।

ଏହା ବ୍ୟତୀତ ଦଶପଲ୍ଲା କନ୍ଧଙ୍କର ସ୍ୱତନ୍ତ୍ର ପର୍ବ ବୈଶାଖ ମାସରେ ଠାକୁରାଣୀ ଚିଙ୍ଗିଡ଼ି ଦେବୀଙ୍କର କୁରୁବୀ ପୂଜା। ଏହି ପରବରେ ୩୦/୪୦ ଝିଅ ଗଜା ଶାଳ ଗଛଟାଏ କାଟି ଆଣନ୍ତି। ଗଛ ଚାରିପଟେ ଘିରି ଘିରି ନାଚନ୍ତି। ବଡ଼ କାଠ ମାଦଳ, ଢ଼ୋଲ ବାଜୁଥାଏ। ବାନ୍ଦେରୀ ଠାକୁରାଣୀ ପରବ ମାଘ ମାସରେ, ଡ଼ାଲଖାଇ ଠାକୁରାଣୀ ପରବ ମାର୍ଗଶୀର ମାସରେ ପଡ଼େ। ତିନି ଦିନ ଧରି ଏହି ପର୍ବ ଚାଲିଥାଏ। ଏହି ପରବ ମାନଙ୍କରେ ଜିନ୍ଦା ଧାଙ୍ଗେଡ଼ୀ ମୁକ୍ତଭାବରେ ନୃତ୍ୟ କରିଥାନ୍ତି। ରାତି

ଆଠଟାରୁ ପରବ ଆରମ୍ଭ ହୁଏ ନାଚ ତାମସାରେ ରାତି ବିତେ। ସକାଳ ହୁଏ। ଯାତ୍ରା ସରେ। ଦଶପଲ୍ଲା କୁରାଗଣ୍ଡା, ତିରିକି ବାଡ଼ି, କୁରୁମି, କାଠପତନୀ, କୁଡ଼ାସିନ୍ଦୂର, କୁମ୍ଭା, ବାଇଝରୀ, ବାଲିବେରଣା, ଡ଼ିକିରି, ଫେଁପଡ଼ା, ଡାଙ୍ଗଲାଡ଼ି, କଳାପଦର, ବାଣିଗୋଛା, ଶିକର ପଙ୍ଗା, ଚକାପାଦୁ, ବରଡ଼ାଖୋଲ, ପଧାନପଡ଼ା, ଗାଡ଼ିଆ ପଡ଼ା, ପ୍ରଭୃତି ପଲ୍ଲୀ ଅଂଚଳରେ ଦଶପଲ୍ଲା କନ୍ଧର ମନଛୁଆଁ ନାଚ ଖାସ୍ ଆମୋଦ ଦାୟକ। ନୟାଗଡ଼ର ଗୋଛା, ସୁଡୁକାବାରି, କାବତାପଲ୍ଲୀ, କୋରାଗାଡୁ, ମକରପଲ୍ଲୀ, କିଆଝର, କଟକଟୀ, ବନ୍ତା, ବରକୋଳା ଅଞ୍ଚଳର ଅଗ୍ନି ଉତ୍ସବ ଚିତ୍ତାକର୍ଷକ। ଅଗ୍ନି ପାଉଁଶକୁ ହୋରିଖେଳ ପରି ପରସ୍ପର ଉପରକୁ ଫୋପାଡ଼ିବା ଆତ୍ମୀୟତାର ପରିଚୟ ଦିଏ। ନୟାଗଡ଼ ଗୁମି ମାଳରେ କାଠି ଠାକୁରାଣୀ ତଥା ରଣପୁର ଅଂଚଳରେ କାଠି ଠାକୁରାଣୀ ପ୍ରସିଦ୍ଧ କନ୍ଧ ଯାତ୍ରା। ଏହି ଯାତ୍ରାରେ ପୁଅମାନେ କାଠିଠାକୁରାଣୀଙ୍କୁ ଧରି ଦୈବୀ ଆଜ୍ଞାରେ ନାଚିଥାନ୍ତି। ସାନତୁଲୁଭି, ବଡ଼ତୁଲୁଭି, ଖିଲାମୁଣ୍ଡା, ଜାମୁଗଣ୍ଡ, ଶଂଖ ଯୋଡ଼ି, ଧୂଆଁନଳୀ ଅଂଚଳରେ ଏହି ଯାତ୍ରା ହୁଏ। ଅଥଚ କନ୍ଧମାନଙ୍କର ସ୍ୱତନ୍ତ୍ର ଲୋକନୃତ୍ୟ କଳା ପ୍ରଦର୍ଶନ ହୁଏନି।

<u>ମାଟିଆ ନାଚ :</u> ମାଟିଆ ଓ ମୁଣ୍ଡପୋତା ନାମକ ଜାତି ଗାଁ ଗାଁ ବୁଲି ଫାର୍ଶ କରି ପେଟ ଦେଖାଇ ଭାତ ମାଗନ୍ତି। ଦେଖିବାକୁ ନିପଟ କଳା। ଆମ ଭାଷାର ଲୋକ ନୁହଁନ୍ତି। ଆମ ଭାଷା ବଙ୍କାଇ କହିଥାନ୍ତି। ଆମ ଅଞ୍ଚଳରେ କେଉଁଠି କେଉଁଠି ତାଳ ବରଡ଼ାରେ ଅସ୍ଥାୟୀ ଝୁମ୍ପୁଡ଼ି କରି ଅଛନ୍ତି। ନୟାଗଡ଼ର ପାଣି ପଇଲା, ଶରଧାପୁର, ବେଲବଣି, ମାଛିପଡ଼ା, ମଗରବନ୍ଧ, କଜଳାଇପଲ୍ଲୀ ଗାଁରେ ଏମାନେ ଦେଖିବାକୁ ମିଳନ୍ତି। ଚାଙ୍ଗୁ ବାଜା ବଜାଇ ମୁଣ୍ଡପୋତା ଗାଁକୁ ଆସିବାର ଇସାରା ଦିଏ। ଗାଁ ମଝିରେ ଭାତ ହାଣ୍ଡିଟାଏ ଥୁଏ। ଦେହରେ ପାଉଁଶ କଳା ବୋଳିହୋଇ ମୁଣ୍ଡରେ ପରବନ୍ଧା ଟୋପି ଲଗାଇ ମାଟିଆ ଫାର୍ଶକରେ। ଚାଙ୍ଗୁ ବାଜାର ତାଳରେ ଇସ୍ ଇସ୍ ଇସ୍, ଆ ବେଲେ ବେଲେ ଆବେଲେ ବେଲେ-ଉର୍ଦ୍ଧା-ଉର୍ଦ୍ଧା ବିକୃତ ଶବ୍ଦ ବାହାର କରି ପିଚାକୁ ଦେଖାଇ, ପିଚାକୁ ବାଡ଼େଇ ନାଚ କରେ। ନାକରେ ଟାକୁଆ ଲଗାଇ ନାଚେ। ନାକ ପୁଡ଼ାରେ ଓ ତଳ ଓଠରେ ଦୁଇଟା କାଠି ଲଗାଇ ଦାନ୍ତ ନିକୁଟି ମାଙ୍କଡ଼ ଭଳି ଖିଂକାରି ନାଚିବା ଦୃଶ୍ୟ ଲୋକଙ୍କୁ ଚକିତ କରାଏ। ଆ ବେଲେ ବେଲେ ଆବେଲେ ବେଲେ-ଉର୍ଦ୍ଧା-ଉର୍ଦ୍ଧା କହି ମୁହଁକୁ ନାକକୁ ବିକୃତରେ ନଚାଇ ଦର୍ଶକଙ୍କୁ ହସାଇ ଥାଏ। ମାଟିଆ ବଙ୍କଡ଼ା, ବାଉଁଶ ଘୋଡ଼ାରେ ଚଢ଼ି ଗାଁ ଦାଣ୍ଡରେ ଏ ମୁଣ୍ଡରୁ ସେ ମୁଣ୍ଡକୁ ଚିଲା ମାରୁଥାଏ। ଦୌଡ଼ ସମୟରେ ଘୋଡ଼ା ଲାତମାରି ମାଲିକକୁ ପକାଇ ଦେବା ଦୃଶ୍ୟ ବେଶ୍ ଆମୋଦ ଦାୟକ। ଘୋଡ଼ା ମାଲିକ ଖରା ତାତିରେ ପଡ଼ି ଛଟପଟ ହୁଏ। ବାଉଁଶ ଘୋଡ଼ା ମାଲିକ ବାଟରେ ବାଉଁଶ ଘୋଡ଼ାକୁ ପାଣି ପିଆଏ। ବାଲିଭାତ ଖୁଆଏ। ବାଉଁଶ ଘୋଡ଼ା ଅଧିକ ମଳତ୍ୟାଗ କଲେ

ମାଲିକ ଘୋଡ଼ାର ମଳଦ୍ୱାରରେ ପାଳ ଚୁଣ୍ଟା ଦେବା ଫାର୍ଶ ହାସ୍ୟୋଦ୍ଦୀପକ। ମୁଣ୍ଡପୋତା ମୁଣ୍ଡକୁ ଗାତରେ ପୋତି ପେଟ ଦେଖାଇ ଭାତ ମାଗେ। ପେଟରେ ପଥର ମଡ଼ାଇ ପେଟ ଦେଖାଏ। ମାଟିଆର ଏ ଅଦ୍ଭୁତ ଫାର୍ଶ ଦେଖି ଦର୍ଶକ ହସି ହସି ବେଦମ ହୁଏ। ମାଟିଆର ବ୍ୟଙ୍ଗାତ୍ମକ ଫାର୍ଶ ଦେଖି ବ୍ୟଥିତ ଦର୍ଶକର ବ୍ୟଥା ଲାଘବ ହୁଏ। ପିଲାମାନେ ଘରମାନଙ୍କରୁ ଭାତ ଆଣି ମାଟିଆକୁ ଦିଅନ୍ତି। ଏହି ଜୀବିକା ନିର୍ବାହ ଫାର୍ଶ ଗୁଡ଼ିକ କ୍ରମଶଃ ବିଲୋପ ହେବାର ଜଣା ପଡୁଛି।

ଡୁବୁଡୁବା ନାଚ : ଡୁବୁଡୁବା ଜାତିର ଲୋକ ଡୁବୁଡୁବା ବଜାଇ ଗାଁ ଗାଁରେ ମାଙ୍କଡ଼ ନାଚ କରାଇ ଜୀବିକା ନିର୍ବାହ କରନ୍ତି। ଡୁବୁଡୁବା ପାତିମାଙ୍କଡ଼କୁ ମନେଇ ତା କାନରେ କାନଫାଶିଆ ଲଗାଇ ନଚାଇଥାଏ। ଡୁବଡୁବା ବଜାଇ ବାଡ଼ିରେ ମାଟିକୁ ତାଳରେ ବାଡ଼େଇଲେ ମାଙ୍କଡ଼ ଡୁବଡୁବାର ନିର୍ଦ୍ଦେଶ ମତେ ନାଚେ। ମାଙ୍କଡ଼ର ଚଂପା ବେଶ ଓ ଜମ୍ଭୁ ଚୌକିଦାର ବେଶ କୌତୂହଳ ସୃଷ୍ଟି କରାଏ। ସେଇ ଗୋଟିଏ ମାଙ୍କଡ଼ ଚମ୍ପା ଓ ଜମ୍ଭୁ ଚୌକିଦାର ଅଭିନୟ କରିଥାଏ। ଡୁବୁଡୁବାର କହିବା ଢ଼ଙ୍ଗ ସହ ମାଙ୍କଡ଼ ନାଚେ।

ଚମ୍ପା ଅଭିନୟ କରେ- ଚମ୍ପା ମୋର ଥେଇକି ନାଚ
ଚମ୍ପା ମୋର ହାଟକୁ ଯିବ
ନୋଥ ଫୁଲଗୁଣା ହାଟୁ ଆଣିବ
ଜମ୍ଭୁ ଅଭିନୟ- ଜମ୍ଭୁ ମୋର ନାଚ କରିବ
ଚଉକିଆ ହୋଇ ଗାଁ ଜଗିବ
ରାତିରେ ବୁଲି ଚୋର ଧରିବ।
ମାଲି ମକଦ୍ଦମା ଗଡ଼କୁ ନେବ
ଚୋରକୁ ବାନ୍ଧି ଜିଅଲ ଦେବ
ଶାଢ଼ୀ ଶଙ୍ଖା ଆଣି
ଚମ୍ପାକୁ ବାହା ହୋଇବ।

ମାଙ୍କଡ଼ ନାଚ ଦେଖିବାକୁ ପିଲା ଜମା ହୁଅନ୍ତି। ଡୁବୁଡୁବାକୁ ପଇସା ଚାଉଳ ଦିଅନ୍ତି।

ଡାଳ ମାଙ୍କୁଡ଼ି (ଜାମୁଡାଳ) ନାଚ : ବୈଶାଖ ଜ୍ୟେଷ୍ଠର ପ୍ରଚଣ୍ଡ ଖରାରେ ଗାଁର କିଶୋର ମାନେ ଡ଼ାଳମାଙ୍କୁଡ଼ି ନାଚ କରି ବର୍ଷା ପାଇଁ ଇନ୍ଦ୍ର ଦେବତାଙ୍କୁ ପ୍ରାର୍ଥନା କରନ୍ତି। ପୁଅମାନେ ଦେହରେ ଜାମୁଡ଼ାଳ ବାନ୍ଧି ନିଜକୁ ଜାମୁଡ଼ାଳି ମଣିଷ ବେଶ ସଜାଇ ମଧ୍ୟାହ୍ନରେ ଢ଼ହ ଢ଼ହ ତାତିରେ ହାତରେ ବେଙ୍ଗ ଧରି ବର୍ଷା ଅଭାବର ଦୁଃଖ ଜଣାଇ ଦ୍ୱାରେ ଦ୍ୱାରେ ନାଚି ଗୀତ ଗାଇଥାନ୍ତି।

ବେଙ୍ଗୁଲୀ ବେଙ୍ଗୁଲୀ ମାଉସୀ ମଲା

ନଈନାଳ କରେ ଭସାଇ ଦେଲା
ଇନ୍ଦର ରାଜା ମାଇପ କାଣୀ
ଢୁଳଢୁଳକରି ବରଷେ ପାଣି ।

ଗାଇ ଗାଇ ନାଚି ନାଚି ତାତିଲା ଧୂଳିରେ ଗାଁ ଦାଣ୍ଡରେ ଗଡ଼ନ୍ତି। ପ୍ରତି ଦ୍ୱାରେ ଘରର ବୋହୂମାନେ ହଳଦୀ ପାଣି ଡ଼ାଳ ମାଙ୍କୁଡ଼ି ଉପରକୁ ଫୋପାଡ଼ନ୍ତି । ଏ ନୃତ୍ୟ ଗ୍ରୀଷ୍ମଋତୁରେ ପୁରପଲ୍ଲୀରେ ବେଶ୍ ଆଦୃତ ।

<u>ପାଇକ ନାଚ :</u> ପାଇକ ନାଚ ଗଡ଼ଜାତ ଅମଳର ନାଚ। ଏହା ଏକ ସମର ଅଭ୍ୟାସ ନାଚ ଥିଲା । ପୁରୁଣା ପାଇକ ଗୁରୁ ଶ୍ରୀଯୁକ୍ତ ବାଇଧର ପରିଡ଼ା ଗୋଡିସାହିର କହନ୍ତି 'ରାଜାଙ୍କର ଯାତ୍ରା ସମୟରେ ପାଇକ ମାନେ ଢ଼ାଲ, ଖଣ୍ଡା, ବର୍ଚ୍ଛା ଧରି ପାଇକ ନାଚ ପକାଇ ଦେହରକ୍ଷୀ ଭାବେ ଯାଇଥାନ୍ତି । ଢ଼ୋଲିଆର ଢ଼ୋଲ ତାଳରେ ପାଇକମାନେ ବିଭିନ୍ନ ମୁଦ୍ରାରେ ପାହୁଲ କାଟି ନାଚି ନାଚି ଗଲାବେଳେ ସ୍ୱତଃ ମନ ମଧ୍ୟରେ ବୀରଭାବ ସଞ୍ଚାର ହୁଏ। ଦଶହରା ଦୋଳ ସମୟରେ ପାଇକ ପ୍ରତିଯୋଗୀତାମାନ ଅନୁଷ୍ଠିତ ହୁଏ। ବାହାଘର ପଟୁଆରରେ ପାଇକ ନାଚ କଲାବେଳେ ଅନ୍ୟ ଗାଁର ପାଇକମାନେ ପାଇକ ଓଗାଳ କରନ୍ତି । ପାଇକ ଓଗାଳରେ ପାଇକ ଦଳ ନିଜର ଖେଳ ନୈପୁଣ୍ୟ ପ୍ରଦର୍ଶନ କରି ପ୍ରଶଂସିତ ହୁଅନ୍ତି। ପାଇକ ନାଚ କ୍ରମଶଃ କମି କମି ଆସିଲେ ହେଁ ଅନେକ ଗ୍ରାମରେ ସ୍ମୃତି ସ୍ୱରୂପ ଦେଖିବାକୁ ମିଳେ । ନୟାଗଡ଼ର ସବୁ ଅଞ୍ଚଳରେ ପାଇକ ଗାଦୀ ଥିବାର ଜଣାପଡ଼େ । ଗୋଡିସାହି, କଲ୍ୟାଣପୁର. ଭାଡ଼ିକିଲା,ମାଛିପଡ଼ା, ଜାମୁସାହି, ଲାଠିପଡ଼ା, ଉସ୍ତିଆ, ଭୁତଡ଼ି, ନାଗମୁଣ୍ଡଲୀ, ପଣ୍ଡୁସର, ଗୁଡୁପାଙ୍ଗି, ରୋହିସାହି, ହରିପୁର ପାଇକମାନେ ପାଇକ କଳା ପ୍ରଦର୍ଶନ କରି ଭିନ୍ନଭିନ୍ନ ସମୟରେ ପ୍ରଶଂସିତ ହୋଇଥିବାର ଜଣାଯାଏ ।

<u>ଜାନୁଘଣ୍ଟ ଅଭିନୟ :</u> ନୟାଗଡ଼ର ରଘୁନାଥପୁର, ବିଟଳଗାଡ଼ିଆ ଓ ଚାହାଳୀ ଗ୍ରାମରେ ବୈଷ୍ଣବ ସଂପ୍ରଦାୟର ଲୋକ ଜାନୁଘଣ୍ଟ ଅଭିନୟ କରି ଭିକ୍ଷାକରି ଜୀବିକା ନିର୍ବାହ କରନ୍ତି। ଜାନୁଘଣ୍ଟ ପର୍ଶୁରାମର ଅଭିନୟକାରୀ ଡ଼ାହାଣ ଜଙ୍ଘରେ ଘଣ୍ଟି ବାନ୍ଧି, ଡ଼ାହାଣ ହାତରେ ପର୍ଶୁ ଧାରଣ କରି, ବାମ ହସ୍ତରେ ଚିତ୍ରିତ ଭିକ୍ଷାପାତ୍ର ଧରି ଗ୍ରାମ ଦାଣ୍ଡରେ ବୀର ଦର୍ପରେ ଉଚ୍ଚସ୍ୱରରେ ବଚନିକା କହି ଚାଲେ-

ରେ ଶସ୍ତ୍ରଧାରୀରା
ମତ୍ସ୍ୟ କଚ୍ଛପ ବରାହ ନୃସିଂହ
ବାମନ ହଳଧର ରାମ ଯେ ରାମ ପର୍ଶୁରାମ ।

ପର୍ଶୁରାମ ଯାତ୍ରାପଥରେ କୋଦଣ୍ଡଧାରୀ ରାମଚନ୍ଦ୍ରଙ୍କୁ ଭେଟେ। ବୀରର ଦର୍ପ ଗଂଜନକାରୀ କ୍ରୋଧୀ ପର୍ଶୁରାମ ରାମଙ୍କ ପଥ ଅବରୋଧ କରେ। ରାମ ପର୍ଶୁରାମଙ୍କର ଚମତ୍କାର ସମର ପ୍ରତିଯୋଗୀତା ଦର୍ଶକଙ୍କୁ ମୁଗ୍ଧ କରାଏ ।

**ନୟାଗଡ଼ ଜିଲ୍ଲାର ପ୍ରସିଦ୍ଧ ଯାନୁଘଣ୍ଟ - ବିଦ୍ୟାଧର ଦାଶ (୭୦), ବିଟଳଗାଡ଼ିଆ ଗ୍ରାମର ଜଣେ ବିଚକ୍ଷଣ କଳାକାର ।**

**କେଳାନାଚ/ବାଉଁଶ ରାଣୀ :** ନୟାଗଡ଼ ଦକ୍ଷିଣ ସୀମାନ୍ତରେ ଅବସ୍ଥିତ କୁରାଳଗ୍ରାମ ନାଥିଆପଲ୍ଲୀ ଓ ଖଣ୍ଡପଡ଼ାର ଗୁଣ୍ଠୁଣୀ ଗାଁରେ କେଳାମାନେ ବାଉଁଶରାଣୀ ଖେଳ ଦେଖାନ୍ତି । ଏକ ବାଉଁଶରାଣୀ ଦଳକୁ ଛୋଟ ସର୍କସ ଦଳ କହିଲେ ଭୁଲ ହେବନି । କେଳାମାନେ ନିଜ ବାସସ୍ଥାନ ଛାଡ଼ି ଗାଁ ଗାଁ ବୁଲି ବାଉଁଶରାଣୀ ନାଚ ଦେଖାଇ ଥାନ୍ତି । ପୁରୁଷମାନେ ନାଚର ସମସ୍ତ ଉପକରଣ ବୋହି ଗ୍ରାମରୁ ଗ୍ରାମକୁ ଯାଆନ୍ତି । ଦିନର ମଧ୍ୟାହ୍ନ ସମୟରେ ସ୍ତ୍ରୀ ପୁରୁଷ ଉଭୟେ ଏହି ନାଚରେ ଅଂଶଗ୍ରହଣ କରନ୍ତି । ଗ୍ରାମର ମଧ୍ୟ ଭାଗରେ ନାଚର ମଞ୍ଚ ନିର୍ମାଣ କରନ୍ତି । ଏକ ଶକ୍ତ ଉଚ୍ଚା ମୋଟା ବାଉଁଶକୁ ଚତୁଃପାର୍ଶ୍ୱକୁ ଶକ୍ତ ଦଉଡ଼ିରେ ଟାଙ୍ଗ ଦେଇ ମଜଭୁତ ଭାବେ ଠିଆ କରାନ୍ତି । ଠିଆ ବାଉଁଶର ମଧ୍ୟ ଭାଗରେ ଆଡ଼ରେ ଏକ ଶକ୍ତ ବାଉଁଶ ବନ୍ଧାଯାଏ ଆଡ଼ ବାଉଁଶର ଏକ ପାର୍ଶ୍ୱରେ ମହମ ଲାଖ ବୋଲା ଅଳ୍ପ ଲମ୍ବର ବାଉଁଶ ଆଡ଼ି ବାଉଁଶରୁ ତଳମୁହାଁ ହୋଇ ବନ୍ଧା ଯାଇଥାଏ । ଆଡ଼ି ବାଉଁଶର ଅନ୍ୟ ପାର୍ଶ୍ୱରୁ କ୍ଷୁଦ୍ର ଶକ୍ତ ବାଉଁଶ ଖଣ୍ଡ ବନ୍ଧା ଦୋଳି ଝୁଲୁଥାଏ । ହାରମୋନିୟମ, ଛୋଟ ଢ଼ୋଲର ମିଳିତ ବାଦ୍ୟରେ କେଳାର ଛୋଟ ପୁଅଝିଅ ଭକ୍ତିପୂର୍ଣ୍ଣ ପ୍ରାର୍ଥନା ସଂଗୀତ ଗାନକରି ଚମତ୍କାର ମୁଦ୍ରାରେ ଶୂନ୍ନ ମାରି ନାଚ ଆରମ୍ଭ କରନ୍ତି । ବାଦ୍ୟ ସଂଗୀତର ଆକର୍ଷଣରେ ଦର୍ଶକମାନେ ରୁଣ୍ଡ ହୁଅନ୍ତି ।

ମଞ୍ଚ ଉପରେ ତିନୋଟି ସ୍ତର ଦେଇ ନାଚ ଗୁଡ଼ିକର ସମାପ୍ତି ଘଟେ । ଭୂମି ଉପରେ କେଳା ଶୂନ ମାରିବା ଖେଳଠାରୁ ଛୋଟ ଝିଅଙ୍କୁ ଲମ୍ବ ବାଉଁଶ ଶୀର୍ଷରେ ଚଢ଼ାଇ ବାଉଁଶକୁ ଏକ କାନ୍ଧରୁ ଅନ୍ୟକାନ୍ଧରେ ଥୋଇବା, ପାଟିର ତଳ ମାଢ଼ିରେ ରଖିବା, ମଥାରେ ରଖିବା, ବାଉଁଶ ଉପରୁ ପିଲାଟି ଲେହୁଣିଆ ଭାଙ୍ଗି ଭାଙ୍ଗି ଉପରୁ ତଳକୁ ତଳୁ ଉପରକୁ ଯିବା ଦୃଶ୍ୟ ଦର୍ଶକଙ୍କୁ ଆକୃଷ୍ଟ କରିଥାଏ । ପର ପର୍ଯ୍ୟାୟରେ ଝିଅଟି ଠିଆ ବାଉଁଶର ଆଡ଼ି ବାଉଁଶରୁ ଝୁଲୁଥିବା ତଳମୁହାଁ ବାଉଁଶକୁ ଚଢ଼େ ଅନ୍ୟ ଝିଅ ଦୋଳିରେ ବସେ । ଢ଼ୋଲ ବାଦ୍ୟର ତାଳରେ ସଂଗୀତ ଗାନକରି କେଳାର ବଚନିକା ଅନୁସାରେ ଜଣପରେ ଜଣେ ଚିତ୍ତାକର୍ଷକ ଖେଳ ପ୍ରଦର୍ଶନ କରନ୍ତି । ଶେଷ ପର୍ଯ୍ୟାୟରେ କେଳୁଣୀ ବାଉଁଶ ରାଣୀ ବେଶ ବାନ୍ଧି ଉଚ୍ଚ ଶୂନ୍ୟକୁ ଭେଦୀ ଠିଆ ହୋଇଥିବା ବାଉଁଶ ଉପରକୁ ଉଠେ । ବାଉଁଶରାଣୀ ବାଉଁଶର ଶୀର୍ଷ ସ୍ଥାନରେ ବସି ସୁଲଳିତ ସ୍ୱରରେ ଶୂନ୍ୟରୁ ଭଜନ ଗାଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ । କେଳାର ବଚନିକା ଅନୁସାରେ ବାଉଁଶରାଣୀ ବାଉଁଶ ଶୀର୍ଷରେ ପେଟ ଲଗାଇ ଗୋଡ଼କୁ ପଦ୍ମାସନରେ ଯୋଡ଼ି ହାତ ଛାଡ଼ି ଚକ୍ର ସଦୃଶ ଘୂର୍ଣ୍ଣନ କରିବା ଦୃଶ୍ୟ ଦର୍ଶକକୁ ସ୍ତମ୍ଭୀଭୂତ କରାଏ । ଏହା ପୂର୍ବରୁ କେଳା ଝିଅ ଦେଖଣାହାରୀଙ୍କଠାରୁ

ନାଚଦେଖା ପଇସା ଆଦାୟ କରିଥାଏ। ବାଉଁଶରାଣୀ ନାଚ ନୟାଗଡ଼ରୁ ଯାଇ ପଡ଼ୋଶୀ ଅଞ୍ଚଳରେ ଉଚ୍ଚ ପ୍ରଶଂସା ଅର୍ଜନ କରିପାରିଛି।

<u>କଣ୍ଢେଇ ନାଚ:</u> କଣ୍ଢେଇ ନାଚ ନୟାଗଡ଼ ଅଞ୍ଚଳର ଶିଖରପୁର ଓ ମୁଗୁପାଟଣାରେ ଅଛି। ମୁଗୁପାଟଣା କଣ୍ଢେଇ ନାଚ ଦଳ ନାଚଗୁରୁ ମଦନ ପ୍ରଧାନଙ୍କର ତତ୍ତ୍ୱାବଧାନରେ ଓଡ଼ିଶାର ବିଭିନ୍ନ ଅଂଚଳରେ କଣ୍ଢେଇ ନାଚ ପ୍ରଦର୍ଶିତ ହେବା ସଙ୍ଗେ ସଙ୍ଗେ ଓଡ଼ିଶାର ପଡ଼ୋଶୀ ରାଜ୍ୟମାନଙ୍କରେ ପ୍ରଦର୍ଶିତ ହୋଇ ଖ୍ୟାତି ଅର୍ଜନ କରିଅଛି। ପରଦା ଦ୍ୱାରା ଆବଦ୍ଧ ମଞ୍ଚର ନାଚ କଣ୍ଢେଇ ନାଚ। ପରଦାର ଅନ୍ତରାଳରେ କଣ୍ଢେଇ ଚାଳକ ତାର ମାଧ୍ୟମରେ କଣ୍ଢେଇମାନଙ୍କୁ ଚାଳନା କରି ମଂଚରେ ଦର୍ଶକଙ୍କୁ କଣ୍ଢେଇର ଜୀବନ୍ତ ଅଭିନୟ ଦେଖାଏ। ବାଦ୍ୟ ଯନ୍ତ୍ରଗୀତ ସଂଗୀତକୁ ଲୟ ରଖି କଣ୍ଢେଇ ଚାଳକ କଣ୍ଢେଇମାନଙ୍କର ଅଭିନୟକୁ ସଚଳ କରାଏ। କଣ୍ଢେଇ ନାଚରେ ଦାନୀବୀର ହରିଶ୍ଚନ୍ଦ୍ର, ରାମବନବାସ, ମହୀରାବଣ ବଧ, ପ୍ରଭୃତି ନାଟକ ସୁନ୍ଦର ଭାବେ ପରିବେଷଣ ହେବାର ଲକ୍ଷ୍ୟ କରାଯାଇଛି। ଥିଏଟର ଧର୍ମୀ କଣ୍ଢେଇ ନାଚ ମଞ୍ଚସ୍ଥ ହୋଇପାରେ କିନ୍ତୁ ଗୋଟିଏ ପରଦାରେ ଅନେକ ଦୃଶ୍ୟ ପ୍ରଦର୍ଶନ କରାଯାଇଥାଏ।

<u>ଏକକ କଳା :</u> ଏକକ ନାଟକରେ ମଞ୍ଚ ଉପରେ କେବଳ ଜଣେ କଳାକାର ଭିନ୍ନ ଭିନ୍ନ ଚରିତ୍ରରେ ଅଭିନୟ କରି ଏକ ପୂର୍ଣ୍ଣାଙ୍ଗ ନାଟକର ସମାପ୍ତି ଘଟାଏ। ଏହା ନୟାଗଡ଼ ଜିଲ୍ଲାରେ ଜନ୍ମଲାଭ କରିଥିବା ସ୍ୱତନ୍ତ୍ର ଲୋକକଳା। ଏକକ ନାଟ୍ୟକଳାର ଜନ୍ମଦାତା ଓ ଅଭିନେତା ଓଡ଼ଗାଁ ନିକଟସ୍ଥ ରାବେରା ଗ୍ରାମର ସ୍ୱର୍ଗୀୟ ଗଳ୍ପ ସାଗର କଳାନିଧି ବାଞ୍ଛାନିଧି ଶତପଥି। ବାଞ୍ଛାନିଧି ଶତପଥି ନାଟକର ମଞ୍ଚ ସରଞ୍ଜାମ, ପୋଷାକ ଗୋଟିଏ ଛୋଟ ଗଣ୍ଠିଲିରେ ରଖି କାଖରେ ଯାକି ଗୋଟିଏ ଗ୍ରାମରୁ ଆଉ ଏକ ଗ୍ରାମକୁ ନୃତ୍ୟ ପରିବେଷଣ କରିବାକୁ ଯାଉଥିଲେ। ସ୍ୱର୍ଗତ ବାଞ୍ଛାନିଧି ଶତପଥି ପରଦା ଆବଦ୍ଧ କ୍ଷୁଦ୍ର ମଞ୍ଚରେ ପୂର୍ଣ୍ଣାଙ୍ଗ ନାଟକ ବିଲ୍ୱମଙ୍ଗଳ, ଜୟଦେବ, ଭକ୍ତର ଭଗବାନ ଇତ୍ୟାଦି ନାଟକ ମଞ୍ଚସ୍ଥ କରୁଥିଲେ। ତାଙ୍କର ନାଟ୍ୟ ପ୍ରଦର୍ଶନ ଥିଏଟର ଧର୍ମୀ ହେଲେହେଁ ଏଥିରୁ ବହୁଳଭାବରେ ଶବରର ବାଘ ଲଢ଼େଇ ଫାର୍ଶ, ବାୟାଣୀ ଫାର୍ଶ, କୁଷ୍ଠରୋଗୀର ଅଭିନୟ, ନେଉଳ ମାର୍ଜାର କଳି ପ୍ରହସନ, ହାସ୍ୟ ବ୍ୟଙ୍ଗର ଗଳ୍ପ କଥନ, ବିସ୍ମୟକର ବଚନିକା ଆବୃତ୍ତି ଯଥା- ନୟାଗଡ଼ ସଂସ୍କୃତି, ଖଣ୍ଡପଡ଼ା ଗଣିତ, ଘୁମୁସରର ସାହିତ୍ୟ, ପାରଳା ଖେମୁଣ୍ଡି ସଂଗୀତ, ଧରାକୋଟ ରାଜନୀତି, କଟକର ସଂସ୍କୃତି, ପଞ୍ଚଭୂତିର ଜଡ଼ା, ଘୁମୁସର ଡୁହଡୁହାର ଖଡ଼ା, ବାଲେଶ୍ୱରିଆ ମଶା, ଖଲିକୋଟିଆ ଭାଷା, ଖୋର୍ଦ୍ଧାର ଓଡ଼ିଆ ଭାଷା, ବୌଦ୍ଧ ସୋନପୁରିଆ ମାଇଙ୍କ କାନମୂଳିଆ ଖୋସା, ସମ୍ବଲପୁରିଆ ମାଇ, ଯାଜପୁରିଆ ଭାଇ, ଭଦ୍ରଖର ଗାଇ, ଆଠଗଡ଼ର ଦହି, ଭୁବନେଶ୍ୱର ଖଇ, ଗଞ୍ଜାମ ପାଣ୍ଡିଆ

ସୁବୁଦ୍ଧି ଗୁଣ୍ଡି, ଢେଙ୍କାନାଳର ଭେଣ୍ଡି, ଜଗତସିଂହପୁର ଫାଣ୍ଡି, ପୁରୀରେ ଠୁଳ କାର୍ତ୍ତିକ ମାସରେ ରାଣ୍ଡି ତାଙ୍କର ନାଟକ ଥିଏଟର ଠାରୁ ଭିନ୍ନ ସ୍ୱାଦ ଦର୍ଶକଙ୍କୁ ପ୍ରଦାନ କରି ମୁଗ୍ଧ କରାଇଥାଏ।

ଏକକ ନଟ୍ୟକଳାକୁ ଗୁରୁ ୰ବାଞ୍ଛାନିଧି ଶତପଥିଙ୍କ ସେହି ରାବେରା ଗ୍ରାମରୁ ଶିଷ୍ୟ ସୀତାରାମ ଚୌଧୁରୀ ଓ ଅର୍ଜୁନ ମହାପାତ୍ର ଏକକ ଅଭିନୟ ପ୍ରଦର୍ଶନ କରୁଛନ୍ତି । ଏମାନଙ୍କ ପରେ ଏକକ ନାଟ୍ୟକଳା ନୟାଗଡ଼ରୁ ବୁଡ଼ିଲାପରି ମନେ ହେଉଛି।

<u>ଧୁଡ଼ିକି ନାଚ :</u> ପତର ସଉରା, ମାଟିଆ କେଳା ଜାତିର ଲୋକ ମୁଣ୍ଡରେ ବିଭିନ୍ନ ରଙ୍ଗର ପକ୍ଷୀ ପରବନ୍ଧା ଟୋପି ଲଗାଇ କୁରୁତା ଓ ଜମ୍ପର ପୋଷାକ ପରିଧାନ କରି ଗଳାରେ ଘାଗରା ମାଳି ବାଜୁବନ୍ଧରେ ଘାଗରା ବାନ୍ଧି, ଘାଗରା ମାଳିରେ ଦେହକୁ ଛନ୍ଦି ଅଣ୍ଟାରେ ଘାଗୁଡ଼ି ଗୋଡ଼ରେ ଘୁଙ୍ଗୁର ବାନ୍ଧି ଧୁଡ଼ିକି ବାଜାର ତାଳରେ ପୁରାଣ ଗାଇ ନାଚ କରେ। ଧୁଡ଼ିକିୟା ଓ ଧୁଡୁକିଆଣୀ ମଙ୍ଗଳାଚରଣରେ ପଞ୍ଚଦେବତା ଓ ବାଗ୍‌ଦେବୀଙ୍କୁ ଆଶ୍ରୟକରି ପୁରାଣ କାହାଣୀ ଆରମ୍ଭ କରେ। ନବରଙ୍ଗରେ ଧୁଡୁକି ନାଚ ପରିବେଷଣ ହୁଏ। ଯେତେ ପ୍ରକାର ସଙ୍ଗୀତ ଓ ନୃତ୍ୟ ଅଛି ଧୁଡୁକି ନୃତ୍ୟରେ ତାହା ପ୍ରତିଫଳିତ ହୁଏ। ନିର୍ଦ୍ଦିଷ୍ଟ ବିଷୟ ନେଇ ନୃତ୍ୟ ଆରମ୍ଭ ହେଲେ ମଧ ତା ଭିତରେ ସବୁ ପ୍ରକାର ରସ ଅନୁଭବ କରିହୁଏ।

ଧୁଡୁକି ନାଚ ଦଶପଲ୍ଲା କନ୍ଦଳବ, ନୟାଗଡ଼ ପଦ୍ମପୁର, ବାରବାଟି, ଦରପଦା, କେସ୍ତପଡ଼ା, କିରିଆଲାଞ୍ଜି, ଖଇରପଟି, କାଞ୍ଚନଭେଲି, ଭାଟ ସାହି ଗ୍ରାମରେ ଥିବାର ଜଣାପଡ଼େ।

<u>ସଂକୀର୍ତ୍ତନ :</u> ନୟାଗଡ଼ ଜିଲ୍ଲାର ଗ୍ରାମେ ଗ୍ରାମେ ସଂକୀର୍ତ୍ତନ ଦଳ ଅଛନ୍ତି। ଗ୍ରାମରେ କୌଣସି ମାଙ୍ଗଳିକ ଅନୁଷ୍ଠାନରେ ସଂକୀର୍ତ୍ତନ ମେଳ ଖୋଳ ଓ ଝାଞ୍ଜ ବଜାଇ ଗୌରାଙ୍ଗଙ୍କୁ ସୁମରଣା କରି ଶୁଭ କାମନା କରନ୍ତି। ନବଜାତ ଶିଶୁର ନାମକରଣ କରି ଦୀର୍ଘଜୀବନ କାମନା କରନ୍ତି। ନୂତନ ଗୃହ ପ୍ରବେଶ, ମୃତବ୍ୟକ୍ତିର ଦ୍ୱାଦଶ କ୍ରିୟା ଦିବସରେ ସଂକୀର୍ତ୍ତନ ଅନୁଷ୍ଠାନ ଦୁଆରେ ପରିବେଷଣ ହୁଏ କିନ୍ତୁ ନାମ ସଂକୀର୍ତ୍ତନ ଦଳ ଖୋଳ, ଗିନି, ଝାଞ୍ଜ, ଝୁମୁକା ବଜାଇ 'ହରେକୃଷ୍ଣ ହରେରାମ' ଭିନ୍ନ ଭିନ୍ନ ସ୍ୱରଦେଇ ଗାଇ ନାନା ଛନ୍ଦରେ ନାଚି ନାଚି ଭକ୍ତି ରସରେ ଦର୍ଶକଙ୍କ ମନ ବଶ କରନ୍ତି। ଭାଗବତ ପୂଜା ଅଷ୍ଟପ୍ରହରୀମାନଙ୍କରେ ରାସପୂର୍ଣ୍ଣମୀରେ ମହାଦେବଙ୍କ ବେଢ଼ାରେ, ରାଧାକୃଷ୍ଣ ଓ ରଘୁନାଥଙ୍କ ବେଢ଼ାରେ ନାମ ଦଳ ନାମସଂକୀର୍ତ୍ତନ କରିଥାନ୍ତି।

<u>ଦାସକାଠିଆ :</u> ଦାସକାଠିଆ ନାଚ ଦୁଇଜଣ କଳାକାରଙ୍କୁ ନେଇ ଅଭିନୟ କରାଯାଏ। ଶ୍ରୀ ଗାୟକ ଓ ଡ଼ାହାଣ ପାଳିଆ। କଳାକାରମାନେ ଧୋତି ଜରିପକା

ସେରୁଆନି ପିନ୍ଧି, ମୁଣ୍ଡରେ ପଗଡ଼ି ବଗ ଶାମଲ ମାରି, ରାମତାଳି କାଠି ଦୁଇହାତରେ ବଜାଇ ମଙ୍ଗଳାଚରଣ ଗାନକରି ପଞ୍ଚଦେବତା, ବାଗ୍‌ଦେବୀଙ୍କର ଆଶ୍ରୟ ନେଇ ପୁରାଣ କାହାଣୀ ଗାନ କରନ୍ତି । କେଉଁ କାହାଣୀ ପରିବେଷଣ କରିବ ଶ୍ରୀଗାୟକ ଦର୍ଶକଙ୍କୁ ପ୍ରଶ୍ନ କରେ । ସୂର୍ଯ୍ୟକାନ୍ତି ହରଣ କି ଚନ୍ଦ୍ରକଳା ହରଣ କି ରୁକ୍ମିଣୀ ସ୍ୱୟମ୍ବର ଇତ୍ୟାଦି ପୁରାଣ । ଦର୍ଶକଙ୍କ ଇଚ୍ଛା ମୁତାବକ କାହାଣୀଟିକୁ ଶ୍ରୀଗାୟକ ଗୀତ ଅଭିନୟ ମାଧ୍ୟମରେ ଉପସ୍ଥାପନା କରେ । ଶ୍ରୀଗାୟକ କାହାଣୀର ଶାନ୍ତରସ, ବିରହ ରସ, ବୀରରସ ପରିବେଷଣ କରି ଦର୍ଶକଙ୍କୁ ବଶ କଲାବେଳେ ଡାହାଣ ପାଳିଆ ଢ଼ଗ ଢ଼ମାଳି ଯୋଡ଼ି ହାସ୍ୟରସରେ ଦର୍ଶକର ଚିତ୍ତ ବିନୋଦନ କରିଥାଏ । ଅନ୍ତରାରେ ଗାଏ ଜୟରାମ ଯେ ହରି ରାମ ଯେ ନବୀନ ସୁନ୍ଦର ଘନଶ୍ୟାମ ଯେ- ତହୁଁ କାଞ୍ଚି ଗଲା ଖରେ ଯାଇ ପଶିଲା ପଡ଼ିଶା ଘରେ- କେତେବେଳେ ଢ଼ଗ ମେଲେ-

ଅଣ୍ଟା ଭଙ୍ଗା ଗୁଆକାତି<br>
ଜଂଘରେ ବସାଇ ପାନ ଖୁଆନ୍ତିଲୋ<br>
ନୋହିଲେ ଆପଣା ଜାତି ।।<br>
ଆଖୁ ବାଡ଼ି ଖସ ଖସ<br>
ଜାଦୁଆ ଡ଼ାକେ ଜାଦୁଆଣିକୁ<br>
ରମ୍ଭା ରମ୍ଭି ହେବା ଆସ ।।

କୁରାଳର ୰ ନରସିଂହ ପାଣିଗ୍ରାହୀ, ୰ ସତ୍ୟବାଦୀ ଦାସ ନୟାଗଡ଼ର ଜାନିଯାତ୍ରାମାନଙ୍କରେ ପ୍ରଥମେ ଦାସକାଠିଆ ମାଧ୍ୟମରେ ପୁରାଣ ଗାନ କରୁଥିଲେ । ଦାସକାଠି କୁରାଳ ଅଞ୍ଚଳରୁ ଆରମ୍ଭ ହୋଇ ନୟାଗଡ଼ର ବିଭିନ୍ନ ଅଞ୍ଚଳକୁ ପ୍ରସାର ଲାଭ କରିଛି । ଅଧୁନା ନୟାଗଡ଼ ଜିଲ୍ଲାର କୋଶକା, ବେତନଟୀ, ଦୁବପଲ୍ଲୀ, ଶାଳଝରିଆ, ଖଳିସାହି, ଗୋଡ଼ିପାଟଣା, ଆନନ୍ଦାପଲ୍ଲୀ, କଟରାଝରୀ, ବେତଖୋଲି, ଭାଟସାହି ଓ ବରପଲ୍ଲୀ ଗ୍ରାମରେ ଦାସକାଠିଆ ଦଳ ଅଛନ୍ତି । କଟରାଝରୀ ଦାସକାଠିଆ ଶ୍ରୀଗାୟ ପ୍ରଫୁଲ୍ଲ ନାହାକ ଓ ତାଙ୍କ ସାଥୀ ଅଲେଖ ନାହାକ ମଧୁର ରାଗରାଗିଣୀରେ ଅଧୁନା ଦାସକାଠିଆ କରୁଛନ୍ତି ।

<u>ପାଲା :</u> ପାଲା ନୟାଗଡ଼ ଅଞ୍ଚଳରେ ବହୁ ଚର୍ଚ୍ଚିତ ଲୋକକଳା । ନୟାଗଡ଼ ଜିଲ୍ଲାରେ ରମ୍ଭାବେଲି ଗ୍ରାମର ବିଶ୍ୱନାଥ ପଟ୍ଟଯୋଶୀ ଓଡ଼ିଶାର ପାଲାଗାୟକ ସମ୍ରାଟ ଉପାଧି ପାଇ ଉଚ୍ଚ ପ୍ରଶଂସିତ । ପାଲାରେ ଛଅଜଣ କଳାକାର ଧୋତି, ଜରିପକା ସେରୁଆନି ପରିଧାନ କରି ମୃଦଙ୍ଗ, ଝାଞ୍ଜ, ଗିନିର ତାଳରେ ନାନା ରଙ୍ଗ ରହସ୍ୟ ଯୋଡ଼ି କାବ୍ୟ ପରିବେଷଣ କରି ଦର୍ଶକଙ୍କୁ ମୁଗ୍ଧ କରିଥାନ୍ତି । ପାଲା 'ସତ୍ୟପୀର' ଗୋସାଇଁଙ୍କ ପୂଜା କରେ । ଜନ୍ମଉତ୍ସବମାନଙ୍କରେ ମାନସିକ ପାଲା ଅନୁଷ୍ଠିତ ହୋଇଥାଏ । ପାଲା ସାହିତ୍ୟ ପରିବେଷଣର ଲୋକକଳା । ନୟାଗଡ଼ କାଳିକା ପ୍ରସାଦ,

ଦର୍ପନାରାୟଣପୁର, ନୋତର, ଶଙ୍ଖେଇ, ବେଣାଗାଡ଼ିଆ, ପଥରଦ୍ୱାର, ପଣ୍ଡୁସର, ସୁନାଖଳା ଠାରେ ରଜ ଉତ୍ସବ ଗଣେଷ ପୂଜାରେ ବାଦୀପାଲା ହୋଇଥାଏ। ବାଦୀପାଲା ସ୍ଥାନରେ ଗ୍ରାମାଞ୍ଚଳରୁ ବହୁ ଦର୍ଶକ ଗୁଣ୍ଡ ହୋଇଥାନ୍ତି। ନୟାଗଡ଼ ଅଂଚଳର ପାଲାକାର ୰ ବିଶ୍ୱନାଥ ପଟ୍ଟଯୋଶୀ (ରମ୍ଭାବେଲି) ୰ ଉଦ୍ୟନାଥ ରଥଶର୍ମା (କୁମ୍ଭାର ପଡ଼ା), ମାଧବ ଚନ୍ଦ୍ର ସାମନ୍ତରାୟ, ପ୍ରଫୁଲ୍ଲ କୁମାର ଷଡ଼ଙ୍ଗୀ (ବାରବାଟି) ଜଗନ୍ନାଥ ବାରିକ (ବାଉଁଶିଆ ପଡ଼ା) ରମେଶ ଚନ୍ଦ୍ର ପଣ୍ଡା (ଦୁବପଲ୍ଲୀ) ମନୋରମା ପଣ୍ଡା (ଦୁବପଲ୍ଲୀ) ଗୋବିନ୍ଦ ଚନ୍ଦ୍ର ପଣ୍ଡା (ଶିଖରପୁର) ୰ ରାଜନ ସ୍ୱାଇଁ (ଶିଖରପୁର) ମନୋଜ ମିଶ୍ର (ଗୋଡ଼ିପଡ଼ା) ବିନାୟକ ମିଶ୍ର (ଚମ୍ପତିପୁର) ସୁଶାନ୍ତ ଦାସ (ନନ୍ଦୀଘୋର), ଦାମ ପାତ୍ର (କଲ୍ୟାଣପୁର)ଙ୍କ ପାଲା ସତ୍ୟପୀରଙ୍କର ମହିମା ପ୍ରଚାର କରି ଉଚ୍ଚପ୍ରଶଂସିତ ହୋଇଛନ୍ତି।

ରାସ : ରାସ ରାଗରାଗିଣୀ ମିଶ୍ରିତ ପଦ୍ୟାଶ୍ରୟୀ ଲୀଳା ଯାହାକି ଅଷ୍ଟସଖୀଙ୍କ ଗହଣରେ ରାଧାକୃଷ୍ଣଙ୍କର ଲୀଳା ପ୍ରକଟ କରାଏ। ମଠ, ଦେଉଳର ନାଟମନ୍ଦିରରେ ରାସଲୀଳା ଅଭିନୟ କରାଯାଉଥିଲା। ନୟାଗଡ଼, କଣ୍ଟିଲୋ, ସୁନାଖଳା, ରଣପୁର, ମଧୁମଙ୍ଗଳ ଠାରେ ରାସ ଅଭିନୟ ଦଳ ଥିବାର ଜଣାପଡ଼େ। ନୟାଗଡ଼ ଦେଉଳୀ ଠାରେ କଣ୍ଟିଲୋର ନଦୀବାଲିରେ, ନୀଳମାଧବଙ୍କ ବେଢ଼ାରେ ରାଧାକୃଷ୍ଣଙ୍କର ମନ୍ଦିର ସାମ୍ନାରେ ରାସଲୀଳା ପରିବେଷଣ ହୁଏ। ପ୍ରଥମେ ରାସ ମୁକ୍ତମଞ୍ଚରେ ଅଭିନୟ ହେଉଥିଲା। ପରବର୍ତ୍ତୀ ସମୟରେ ନୟାଗଡ଼ର ଗୋବିନ୍ଦ ଚନ୍ଦ୍ର ଶୂରଦେଓ ରାସରେ ରାଗ ରାଗିଣୀ, ସଂଗୀତ, ଗଦ୍ୟ ସଂଳାପ ପ୍ରୟୋଗ କରି ମୁକ୍ତମଞ୍ଚ ସହିତ ଉପଯୁକ୍ତ ସିନ୍ ସିନେରୀ ଯୋଡ଼ି ରାସଲୀଳାକୁ ଅଧିକ ଜନ ଆଦୃତ କରାଇ ପାରିଥିଲେ।

କାଳୀୟ ଦଳନ : କାଳୀୟ ଦଳନ ନାଚ ନୟାଗଡ଼ ଅଞ୍ଚଳର ଏକ କୃଷ୍ଣ ଭକ୍ତିରସପୂର୍ଣ୍ଣ ଲୋକପ୍ରିୟ ଲୋକକଳା। ଏହି ନାଟକର କଳାକାରମାନେ କାୟା ଶୁଦ୍ଧ କରି ନିଷ୍ଠାର ସହ ଏହାର ନୀତି ନିୟମକୁ ପାଳନ କରି ନାଟକରେ ଅଭିନୟ କରିଥାନ୍ତି। ଚତୁର୍ମୁଖୀ ଖୋଲା ମଞ୍ଚ ପାଖକୁ ଲାଗି ପଦ୍ମଫୁଲ ପରିବେଷ୍ଟିତ ଅନୁରୂପ କାଳିନ୍ଦୀ ହ୍ରଦକୁ ବ୍ୟବହାର କରି ନାଟକଟିକୁ ଅଭିନୟ କରାଯାଏ। ମାମୁଁ କଂସାସୁର ଆଦେଶରେ ଲକ୍ଷେଭାର ପଦ୍ମଫୁଲ ଧନୁଯାତ୍ରା ଲାଗି ନେବାକୁ ହେବ। କୃଷ୍ଣ କାଳିନ୍ଦୀ ହ୍ରଦରେ ପଶି ପଦ୍ମଫୁଲ ତୋଳିବାରୁ କ୍ରୋଧରେ କାଳୀୟ ସର୍ପ ଦଂଶନ କରେ। କାଳୀ ସର୍ପ ଓ କୃଷ୍ଣଙ୍କର ପରସ୍ପର ପ୍ରତି ଆକ୍ରମଣ ଦେଖଣାହାରିଙ୍କୁ ସ୍ତମ୍ଭୀଭୂତ କରିଥାଏ। ସହସ୍ର ଫଣି କାଳୀର ଦଂଶନରେ କୃଷ୍ଣ ମୂର୍ଚ୍ଛାଗତ ହେବାରୁ ଦର୍ଶକ ପଟୁ ହରିବୋଲ ହୁଳହୁଳିରେ ଗାଁ ଦାଣ୍ଡ ଉଛୁଳି ପଡ଼େ। କୃଷ୍ଣ ସହସ୍ର ଫଣା ଉପରେ ନାଚି ନାଚି କାଳୀର ଦର୍ପକୁ ଦଳନ କରିବା ଦୃଶ୍ୟ ଚମତ୍କାର ଲାଗେ। କାଳୀୟ ଦଳନ ନାଟ୍ୟକଳା ଅଧୁନା ନୟାଗଡ଼ ଅଂଚଳର ଲାଠିପଡ଼ା, ବଢ଼ିଆସାହି,

ବାଙ୍କଶାଳୁଆ, ଭାଲିଆଡ଼ିହି, ଖଣ୍ଡପଡ଼ା, ଗୋପାଳିପଡ଼ା, ଆଙ୍ଗିସିଙ୍ଗି ଗ୍ରାମରେ ଅଭିନୀତ ହେଉଅଛି ।

<u>ରାମଲୀଳା :</u> ରାମଲୀଳା ନୟାଗଡ଼ ଅଞ୍ଚଳରେ ସର୍ବତ୍ର ସର୍ବାଦୃତ ନାଟ୍ୟକଳା । କହିବାକୁ ଗଲେ ଅଞ୍ଚଳର ପାଖାପାଖି ଗ୍ରାମମାନଙ୍କରେ ରାମଲୀଳା ନାଟ୍ୟାନୁଷ୍ଠାନମାନ ଦେଖାଯାଏ । ରାମଲୀଳା ନାଟକରେ ରାମାୟଣର ସାତକାଣ୍ଡ କାହାଣୀ ସହଜରେ ଅଭିନୟ କରିହୁଏ । ଧର୍ମୀୟ ଓ ସାମାଜିକ ଉତ୍ସବମାନଙ୍କରେ ବିଶେଷ କରି ରାମଲୀଳା ଅଭିନୟକୁ ପ୍ରାଧାନ୍ୟ ଦିଆଯାଇଥାଏ । ଓଡ଼ଗାଁର ରଘୁନାଥ ଜୀଉଙ୍କର ପ୍ରଭାବ ପ୍ରସାର ପାଇଁ ବିଭିନ୍ନ କାଣ୍ଡର ନାଟ୍ୟକଳାକୁ ପାରମ୍ପରିକ ଶୈଳୀରେ ପରିବେଷଣ କରାଯାଏ । ରାମଲୀଳା ନାଟକ ସଂପୂର୍ଣ୍ଣ ପଦ୍ୟାଶ୍ରୟୀ । ଆଗରୁ ରାମନାଟକରେ ଚରିତ୍ରମାନେ ମୁଣ୍ଡ ଲଗାଇ ଅଭିନୟ କରୁଥିଲେ । ଅଧୁନା ରାମଲୀଳାରେ ମୁଣ୍ଡଲଗା ଅଭିନୟକୁ ଦୂରରେ ରଖି ଦେହରେ ରଙ୍ଗବୋଳି ହୋଇ ପ୍ରକୃତ ଚରିତ୍ରର ପ୍ରତିନିଧିତ୍ୱ କରି ନାଟକରେ ମୁକ୍ତ ଅଭିନୟ କରାଯାଇ ବେଳକୁବେଳ ଅଧିକ ଜନାଦୃତ ହେଉଛି । ଦଶପଲ୍ଲା ଲଙ୍କାପୋଡ଼ି, ରଘୁନାଥ ଜୀଉଙ୍କ ଯାତ୍ରା ଉତ୍ସବ ରାମଲୀଳା ନାଟ୍ୟାନୁଷ୍ଠାନ ମାନଙ୍କୁ ସଂପୂର୍ଣ୍ଣ ଉତ୍ସାହିତ କରେ । ଦଶପଲ୍ଲା ରାମଲୀଳା କଳାତ୍ମକ ଦିଗ ପ୍ରତି ଅଧିକ ଦୃଷ୍ଟିଦେଇ ଭାରତ ବର୍ଷରେ ସୁନାମ ଅର୍ଜନ କରିଛି ।

<u>ଦୁଆରୀ ନାଚ:</u> ଦୁଆରୀ ନାଚ ନୟାଗଡ଼ ଜିଲ୍ଲାର ଏକ ସ୍ୱତନ୍ତ୍ର ଲୋକକଳା । ଏ ନାଟକ ପଦ୍ୟାଶ୍ରୟୀ ଓ ଗଦ୍ୟାଶ୍ରୟୀ । ନାଟକଟି ଗୋସିଂହ ଦୈତ୍ୟ ବଧରୁ ଆରମ୍ଭ ହୋଇ ଅର୍ଜୁନ, ଦୁଆରୀ, ସୁଭଦ୍ରାଙ୍କର କଥୋପକଥନକୁ ନାଚର ମୁଖ୍ୟ ଅଭିନୟ ରୂପେ ଧରାଯାଏ । ଦୁଆରୀ ଲୀଳା ସାହିତ୍ୟ ଶାସ୍ତ୍ର ଆଲୋଚନା ଭିତିକ ଲୋକନାଟ୍ୟ କଳା । ନୟାଗଡ଼ରେ ପ୍ରଥମେ ଦୁଆରୀ ନାଚ ପଥରକଟାର ୰ ନବକିଶୋର ସାମନ୍ତ (ଦୁଆରୀ) ପଥରକଟା ନୀଳମଣି ଜାନୀ (ସୁଭଦ୍ରା) ଡ଼ିଆଁପଡ଼ାର ଭିକ୍ଷାକାରୀ ମହାପାତ୍ର (ଅର୍ଜୁନ)ଙ୍କୁ ନେଇ ଦୁଆରୀଲୀଳା ସମଗ୍ର ନୟାଗଡ଼ ଜିଲ୍ଲାରେ ଉଚ୍ଚ ସମ୍ମାନର ଅଧିକାରୀ ହେଲା । ଅନେକ ଦିନ ପରେ ଦୁଆରୀ ଗୁରୁ ନବକିଶୋର ସାମନ୍ତଙ୍କ ଦ୍ୱାରା ନୟାଗଡ଼ର ଅନେକ ଗ୍ରାମରେ ଦୁଆରୀ ନାଚ ଅନୁଷ୍ଠାନମାନ ଗଢ଼ାଗଲା । ନବଘନପୁର, ବଉଳସାହି, ଗୋଡ଼ିପଡ଼ା, ଗୋଡ଼ିପଲ୍ଲୀ, ମହୁଲିଆ, କେନ୍ଦୁପଲ୍ଲୀ, ବିଜିପୁର, ଚଣ୍ଡୀବସ୍ତ, ଡ଼ିମିରି ଝର, ବକଳବନ୍ଧ, କ୍ଷତ୍ରିବରପୁର, ନୂଆଗାଁ, ଉଦୟପୁର, ଖଣ୍ଡପଡ଼ା ନାଥନୂଆପଲ୍ଲୀ, ରଣପୁର, ବାଉଁଶଗଡ଼ର ଦୁଆରୀ ନାଚଦଳ ନୟାଗଡ଼ର ସାମାଜିକ ଓ ଧର୍ମୀୟ ଉତ୍ସବ ପୀଠମାନଙ୍କରେ ଦୁଆରୀ ନୃତ୍ୟକଳା ପରିବେଷଣ କରି ଦର୍ଶକଙ୍କର ବେଶ୍ ପ୍ରିୟଭାଜନ ହୋଇପାରିଛନ୍ତି ।

ନୟାଗଡ଼ର ଦୁଆରୀ ଲୀଳାର ପ୍ରଥମ ଅର୍ଜୁନ ଭିକ୍ଷାକାରୀ ମହାପାତ୍ର କହନ୍ତି-

'ଦୁଆରୀ ନାଚ ଗଞ୍ଜାମର କନ୍ଧଖରଡ଼ାର ଦୀନବନ୍ଧୁ ଦାସଙ୍କ ଦ୍ୱାରା ଯାଜପୁର ଅଞ୍ଚଳରୁ ଗଞ୍ଜାମକୁ ଆସିଥିଲା। ପରେ ଏହି ଲୋକକଳା ଗଞ୍ଜାମର ଜଗନ୍ନାଥ ପାଢ଼ୀ ଓ କୀର୍ତ୍ତନ ଗୌଡ଼ଙ୍କ ଦ୍ୱାରା ନୟାଗଡ଼ ରଘୁନାଥପୁର ଗ୍ରାମରେ ମଞ୍ଚସ୍ଥ ହେଲା। ଦୁଆରୀ ଲୀଳାକୁ ଦେଖି ନୟାଗଡ଼ ପଥରକଟା ଗ୍ରାମରେ ଦୁଆରୀ ନାଚ ଆରମ୍ଭ ହେଲା। ଏହାପରେ ଦୁଆରୀ ଲୀଳା ଲୋକପ୍ରିୟ କଳା ଭାବରେ ନୟାଗଡ଼ର ଅଙ୍ଗୀକାର ହେଲା।

**ଗୀତିନାଟ୍ୟ ଓ ଗଣନାଟ୍ୟ :** ଗଣକବି ବୈଷ୍ଣବ ପାଣି ଓ ଗୋପାଳ ଛୋଟରାୟଙ୍କ ଦ୍ୱାରା ରଚିତ ଗୀତ ଓ କଥନ ଶୈଳୀ ଆଶ୍ରୟୀ ଗୀତିନାଟ୍ୟ ପୁରପଲ୍ଲୀରେ ବେଶ୍ ଚହଳ ପକାଇଲା। ଅଦ୍ୟାବଧି ଗୀତିନାଟ୍ୟ ଚତୁର୍ମୁଖୀ ମଞ୍ଚରେ ଅନେକ ଗ୍ରାମରେ ମଞ୍ଚସ୍ଥ ହେଉଅଛି। ଚତୁର୍ମୁଖୀ ମଞ୍ଚଯାତ୍ରା ବ୍ୟୟବହୁଳ ହେଲେହେଁ ଏହାର ଝଲକ ସାଂପ୍ରତିକ ଯୁବମାନସକୁ ବେଶ୍ ସ୍ପର୍ଶ କରି ଅନେକ ଗ୍ରାମରେ ଆନୁଷ୍ଠାନିକ ଭାବେ ଗଢ଼ି ଉଠିଛି। ଗଣନାଟ୍ୟ ଗ୍ରାମାଞ୍ଚଳର ଯାତ୍ରା ମହୋତ୍ସବମାନଙ୍କରେ ପାରମ୍ପରିକ ମନୋରଞ୍ଜନର ମୁଖ୍ୟ ସାଧନ ଭାବେ ଦର୍ଶକ ମହଲରେ ଆଦୃତ ହେଉଅଛି।

**ପାଟମରା ନାଚ :** ପାଟମରା ନାଚ ଚଇତ୍ରମାସରେ ପଣାସଂକ୍ରାନ୍ତି ସମୟରେ ଏକ ମାନସିକ ମଙ୍ଗଳା ନାଚ। ପାଟୁଆ ପଣା ସଂକ୍ରାନ୍ତିର ଏକୋଇଶ ଦିନ ପୂର୍ବରୁ କାୟାଶୁଦ୍ଧି ପାଇଁ ନିଷ୍ଠାରେ ରହେ। ସଂକ୍ରାନ୍ତି ଦିନରେ ମାନସିକ ଦୁଆରେ ପାଟୁଆ ପାଟମାରେ। ପାଟୁଆ ପିଠିରେ ମେରୁହାଡ଼ର ଉଭୟ ପାର୍ଶ୍ୱର ଚମଡ଼ାରେ ଲୁହା ଆଙ୍କୁଶ ମାରି ଢ଼ୋଲ ଝାଞ୍ଜର ତାଳରେ ନାଚେ। ନାଚି ନାଚି ଦୁଆରେ ଦୁଆରେ ବୁଲି ଠାକୁରାଣୀଙ୍କର ମହିମା ପ୍ରଚାର କରେ। ଦଶଫୁଟ ବାରଫୁଟ ଉଚ୍ଚରେ ଘୂରୁଥିବା ଅରଟିରେ ଝୁଲି ଭକ୍ତମାନଙ୍କୁ ବଶ କରାଏ। ଏହି ପାଟମରା ନୃତ୍ୟ ହରିଜନ ଶ୍ରେଣୀୟ ଲୋକମାନେ କରିଥା'ନ୍ତି। ଅନେକ ଦିନ ତଳେ ଗୋଡିସାହି ଗ୍ରାମର ଶୁକୁରିଆ ନାହାକ ପାଟ ମାରିବାର ଦୃଶ୍ୟ ଭକ୍ତମାନଙ୍କୁ ବିସ୍ମୟ କରିଥିଲା। ଏହି ପାଟମରା ଦୃଶ୍ୟ ଅଧୁନା ଭାପୁର ଚକ୍ରଧର ପ୍ରସାଦ ଗ୍ରାମରେ ପ୍ରଦର୍ଶିତ ହେବାର ଲକ୍ଷ୍ୟ କରାଯାଏ।

**ଦଣ୍ଡନାଚ/ଝାମୁ ନାଚ/ ଚଢ଼େୟା ସୁଆଙ୍ଗ :** ଦଣ୍ଡନାଚ/ଝାମୁ ନାଚ/ ଚଢ଼େୟା ସୁଆଙ୍ଗ ନୟାଗଡ଼ ଅଞ୍ଚଳର ବହୁ ପ୍ରାଚୀନ ପାରମ୍ପରିକ ଲୋକନାଚ। ଚୈତ୍ର ଆରମ୍ଭରୁ ପଣା ସଂକ୍ରାନ୍ତି ପର୍ଯ୍ୟନ୍ତ ପ୍ରାୟ ଏକମାସ ଧରି ଏହି ନାଚ ଗ୍ରାମ୍ୟ ଜୀବନ ଧାରାକୁ ସଂପୂର୍ଣ୍ଣ ପ୍ରଭାବିତ କରିଥାଏ। ଚଢ଼େୟା ସୁଆଙ୍ଗ ଦେବଦେବ ମହାଦେବଙ୍କର ମହିମା ପ୍ରଚାର କରିଥାଏ। ନୟାଗଡ଼ର ବହୁ ଅଞ୍ଚଳରେ ଶୈବ ପୀଠମାନ ଅଛି। ଶୈବ ପ୍ରଭାବିତ ଅଞ୍ଚଳ ନୟାଗଡ଼ର ଗ୍ରାମେ ଗ୍ରାମେ ଦଣ୍ଡ ଉତ୍ସବ ପାଳନ କରାଯାଇ

ଚଢ଼େୟା ସୁଆଙ୍ଗ ମାଧମରେ ଶାକ୍ତ ଶୈବ ଧର୍ମର ମାହାତ୍ମ୍ୟ ପ୍ରସାର କରାଯାଇଥାଏ ।

ଲୋକକଥାରୁ ଜଣାଯାଏ ନୟାଗଡ଼ ଷ୍ଟେଟ୍‌ର ତତ୍କାଳୀନ ରାଜା ସାହେବ ବିନାୟକ ସିଂହଙ୍କ ପୃଷ୍ଠପୋଷକତାରେ ନନ୍ଦୀଘର ଗ୍ରାମରେ ପ୍ରଥମେ ଦଣ୍ଡ ଯାତ୍ରା ଆରମ୍ଭ ହେବାପରେ ଦ୍ୱିତୀୟତଃ ପଞ୍ଚରିଡ଼ା ମାନପୁର ଗ୍ରାମରେ ଏହି ଯାତ୍ରା ଉତ୍ସବ ଅନୁଷ୍ଠିତ ହେଲା । ଦଣ୍ଡନୃତ୍ୟ ପରମ୍ପରା ତାର କାୟା ବିସ୍ତାର କରି ସହସ୍ର ହସ୍ତ ହୋଇ ନୟାଗଡ଼ ଷ୍ଟେଟ ସହିତ ପ୍ରତିବେଶୀ ଗଞ୍ଜାମ ଅଞ୍ଚଳକୁ ପ୍ରସାରିତ ହୋଇଥିଲା । ଏ ନୃତ୍ୟକଳା ନୟାଗଡ଼ରେ ପ୍ରାଚୀନ ତଥା ପ୍ରଧାନ ଲୋକ ନୃତ୍ୟକଳା ଭାବେ ଗ୍ରାମେ ଗ୍ରାମେ ପରିଗୃହୀତ । ନୟାଗଡ଼ ନନ୍ଦୀଘର, ପଞ୍ଚରିଡ଼ା, ମାନପୁର, ଅସୁରଢ଼ିପା, ଓଡ଼ଗାଁ, କୁରାଳ, ପନ୍ତିଖାରି, ରଙ୍ଗଣୀପାଟଣା, ମଶାବାରି, ରୋହିବାଙ୍କ, ଚେମେଡ଼ି, ଗିରିଡ଼ିପଲ୍ଲୀ, ବାଙ୍କତରା, ବାହାଡ଼ାଝୋଲା, ବେରୁଆଁବାରି, ପାଣ୍ଡେରୀପଡ଼ା, ମହୁଲିଆ, ଜୟପୁର, ଗୋଟିସାହି, ମାଙ୍କପଲ୍ଲୀ, ଚଣ୍ଡୀବସ୍ତ, ବଢ଼ିଆସାହି, ଶରଧାପୁର, କଲ୍ୟାଣପୁର, ସୋଲପଟା, ପୁଆଣିଆ, କୋରପିଠା, ବରସାହିଏ ଲାଠିପଡ଼ା, ଶଙ୍ଖେଇ, ଇଟାମାଟି, ଶରଣକୂଳ, ଚମ୍ପତିପୁର, ଡ଼ିମିଶର, ଗୋଡ଼ିପଡ଼ା, ଡ଼ମସାହି, ମଖିଆଖଣ୍ଡ, ଫାଶିପଡ଼ା, ଆଙ୍ଗିସିଙ୍ଗି, ଇକିରି, ଗମ୍ଭାଡ଼ି, ଦେଉଳି, ଟିପୁରା, ମଳୁରିଆପଲ୍ଲୀ,ବୃନ୍ଦାବନପୁର, ରାଜପାଟଣା, ଗୋଡ଼ିପଡ଼ା, ପାଣିଭଣ୍ଡାର, ରଣପୁର, କନ୍ଧନୂଆଗଡ଼, ଚାନ୍ଦପୁର, ଆନନ୍ଦାପଲ୍ଲୀ, ଖଳିସାହି, ଘଣାଶାଳିଆ,ସିଧାମୂଳା, ଧାନଚାଙ୍ଗଡ଼ା, ଚକ୍ରଧରପ୍ରସାଦ, କଣ୍ଟିଲୋ, ଶିଖରପୁର, ଦଶପଲ୍ଲା, ମଧଖଣ୍ଡ, ବାଇଝରୀ, କନ୍ଦଳ, ଉଦ୍ୟପୁର ଗ୍ରାମମାନଙ୍କରେ ଦଣ୍ଡପର୍ବ ବହୁ ବର୍ଷରୁ ପାରମ୍ପରିକ ପର୍ବ । ଏପରିକି ଭାଙ୍ଗି ଯାଇଥିବା ଗାଁ ଗୁଡ଼ିକ ଦଣ୍ଡପର୍ବ ଆସିଲେ ଯୋଡ଼ି ହୋଇଯାଏ ।

କାୟା ଶୁଦ୍ଧିକରି, କାୟାକୁ କଷ୍ଟଦେଇ ବାନାମ୍ବରଙ୍କୁ ବେତ ଦଣ୍ଡରେ ଧାରଣ କରି ପ୍ରଚଣ୍ଡ ଚୈତ୍ର ତାପରେ ଦଣ୍ଡ ମଶାଲ ସହିତ ଖେଳିଖେଳି ଯାତ୍ରା କରିବା ଦଣ୍ଡଯାତ୍ରା । କାୟା ଶୁଦ୍ଧି ପାଇଁ ଦଣ୍ଡ ଭକ୍ତାମାନେ ଏକ ମାସ ପୂର୍ବରୁ ଅରୁଆ ସାରିବା, ଆମିଷ ନ ଖାଇବା, ପରପାଗରେ ନ ଖାଇବା, ପ୍ରବାସୀ ନହେବା, ସ୍ତ୍ରୀ ସହବାସରୁ ଦୂରେଇ ରହିବା, ଏପରି କି ପିଆଜ ଲେମ୍ବୁ ଖାଇବା ନିଷିଦ୍ଧ ଅଭ୍ୟାସ ରଖନ୍ତି । କାୟାଶୁଦ୍ଧି ଦଣ୍ଡର ନୀତି ନିୟମକୁ ମାନି ଭକତାମାନେ ସହଜରେ ଧୁଧୁ ମଧ୍ୟାହ୍ନରେ ଅଗ୍ନିଦଣ୍ଡ ଧରି ଖେଳିବା ଚଡ଼ଚଡ଼ ତାତିଥିବା ଧୂଳିରେ ଖେଳିବା, ହାନ୍ଦୋଳା ଚଢ଼ି ଅଗ୍ନିରେ ସ୍ନାନ କରିବା, ହସି ହସି ନିଆଁ ଗାଡ଼ରେ ଚାଲିଯିବା ଦୃଶ୍ୟ ଭକ୍ତଙ୍କୁ ବିସ୍ମିତ କରାଇଥାଏ । ଦଣ୍ଡଭକତା ମାନେ ବେତ ଦଣ୍ଡରେ ବାନାମ୍ବରଙ୍କୁ ଧାରଣକରି ଢ଼ୋଲ ଝାଞ୍ଜର ତାଳେ ତାଳେ ଏକ ଗ୍ରାମରୁ ଆଉ ଏକ ଗ୍ରାମକୁ ଭ୍ରମଣ କରିଥାନ୍ତି । ଦଣ୍ଡ ଠାକୁର ଗ୍ରାମ ପାର୍ଶ୍ୱରେ ପହଞ୍ଚିଲେ ଗ୍ରାମବାସୀ ଠାକୁରଙ୍କୁ ବରଣ କରି ନିଅନ୍ତି । ଫୁଲସଂଜରେ ଠାକୁର ସରୋବରରେ ସ୍ନାନ କରି ଗ୍ରାମର ଦ୍ୱାରେ ଦ୍ୱାରେ ଡ଼ାକ

ଦେଇ ମାନସିକ ଦୁଆରେ ପୂଜା ପାଆନ୍ତି। ଦଣ୍ଡଭକତାମାନେ ରାତ୍ରୀରେ ନିକାଞ୍ଚନ ସ୍ଥାନରେ ପଣା ସାରନ୍ତି।

ନିଶାର୍ଦ୍ଧରେ ବାନାମ୍ବର ପୁନଶ୍ଚ ମାନସିକ ଦ୍ୱାରରେ ଗୋମୟଲିପା ବେଦୀରେ ବିଜେ ହୋଇ ଝାମୁ ସୁଆଙ୍ଗ କରାନ୍ତି। ମଞ୍ଚରେ ପ୍ରଥମେ ମା' କାଳୀଙ୍କର ନୃତ୍ୟ, ହାଡ଼ିହାଡ଼ିଆଣୀ, ଚାଷୀ ଚାଷୁଣୀ, ଗୁଡ଼ିଆଣୀ, ଗୋପାଳ, ଗୋପାଳୁଣୀ, କେଳା କେଲୁଣୀ, ପତର ସଉରା ପତର ସଉରାଣୀ ସୁଆଙ୍ଗ ସହିତ ମୁଖ୍ୟ ସୁଆଙ୍ଗ ଚଢ଼େୟା ଚଢ଼େୟାଣୀ ଅଭିନୟ ହୁଏ। ଚଢ଼େୟା ଜୟନ୍ତ ଶିବଙ୍କର କାମ୍ୟକ ବନରୁ ପକ୍ଷୀ ଧରିବାରୁ ସର୍ପାଘାତ ହୋଇ ଶିବ ପାର୍ବତୀଙ୍କ କରୁଣାରୁ ପୁନଶ୍ଚ ଜୀବନ ପାଇବା ସୁଆଙ୍ଗ ଦର୍ଶକଙ୍କ ଉପରେ ଶୈବ ମାହାତ୍ମ୍ୟ ପ୍ରଭାବ ପକାଏ। ସୁଆଙ୍ଗ ଗୁଡ଼ିକ ସାମାଜିକ ଜୀବନ ଚର୍ଯ୍ୟାକୁ ବହନ କରି ପ୍ରଦର୍ଶିତ ହୋଇଥାଏ। ଦଣ୍ଡ ନୃତ୍ୟର ଗୀତ ଗୁଡ଼ିକ ଏପରି ହୃଦୟକୁ ଛୁଇଁଥାଏ ଯେ ସବୁ ସମୟରେ ଦଣ୍ଡ ନୃତ୍ୟ ଗୀତ ପାଟିରୁ ବାହାରି ପଡ଼େ।

ଜନେ ହରିହରି ବୋଲ ହେ ସାଆଁନ୍ତ
ଜନେ ହରିହରି ବୋଲ
କେଳା ନଳ ଧରି ହେଲା ବାହାର
ଏତ ଅଠାକାଠି ସମତୁଲ
ସରୁବାଲି ରଜ ରଜ
ଚଂପା ଡ଼ାଙ୍ଗୁଆ ପାନ ବରଜ
ସରୁ ବାଲି ରଜରଜ
କୋରଡ଼େ ବୋବାଏ ବଣି
ଏହିବାଟେ ଗଲା ଚଂପା କେଲୁଣୀ
ଯାଇ ବାଟେ କଲା ଚୂଡ଼ା ପାଣି
ବଡ଼ବୋହୂ ଅଦିନକିଆ
ଭାବ ମାରିନେବ ବିନୋଦିଆ
ଚାଉଳ ଭାଜିଲି ଝାଇଁ
ମଙ୍ଗଳା ମାତାଙ୍କୁ ଜଣାଉଅଛି
ଚଂପା ନଯାଉ ଦୂତୀଅ ହୋଇ
ବଡ଼ ବୋହୂ ପୋଇ ପତର
କଥା ଲାଗିବ ଘଟ ସୁତର
ବଡ଼ ବୋହୂ ପୋଇ ପତର
ଗୁଆ ଗଛ ଧାଡ଼ି ଧାଡ଼ି

ଗୁଆ ଗଛ ଧାଡ଼ି ଧାଡ଼ି
କେତେ ନେଇଥିଲି ମଶାଲ କିଣି
ତମ ଘରେ ଦେଇଥିଲି ପୋତିଲୋ
ବରଯାତ୍ରୀ ଅନେକ
ତୋର ଭାଇ ଫୁଙ୍କୁଥିଲା ଶଂଖଲୋ
ବରଯାତ୍ରୀ ଅନେକ

ଦଣ୍ଡ ଉତ୍ସବ ନୟାଗଡ଼ ଜିଲ୍ଲାର ଗାଁ ଗାଁର ଉତ୍ସବ। ଦଣ୍ଡପର୍ବ ଦୀର୍ଘଦିନ ଧରି ଗ୍ରାମମାନଙ୍କରେ ବ୍ୟାପୀ ରହେ। ଭକତାମାନେ ବାନାମ୍ବରଙ୍କୁ ଧରି ହେ ଭକତା ଶବ୍ଦ ଉଚ୍ଚାରଣ କରି ଯୋଗୀସମ ରାସ୍ତାରେ ଧାଡ଼ିବାନ୍ଧି ଚାଲିଥାନ୍ତି। ନିଶାର୍ଦ୍ଧରେ ଚଢ଼େୟା ସୁଆଙ୍ଗ ପ୍ରାୟତଃ ପ୍ରତ୍ୟେକ ଗ୍ରାମରେ ଅଭିନୀତ ହେବାର ଲକ୍ଷ୍ୟ କରାଯାଏ। ଗହୀର ରାସ୍ତା ଅତିକ୍ରମି ଦର୍ଶକମାନଙ୍କର ଅନ୍ୟଗ୍ରାମକୁ ଦଣ୍ଡନାଚ ଦେଖିଯିବାର କୋଳାହଳ ଶୁଭେ। ଏ ଦୃଷ୍ଟିରୁ ଦଣ୍ଡନାଚ ଆଞ୍ଚଳିକ ସଦ୍‌ଭାବକୁ ଧରିରଖେ। ଏ ନୃତ୍ୟକୁ ଯେତେ ଦେଖୁଥିଲେ ମନ ମଧ୍ୟରେ ସେତେ ଆନନ୍ଦ ଭରିହୁଏ।

ଶିବ ଉପାସନା ଦ୍ରାବିଡ଼ ସଂସ୍କୃତିର ଅନ୍ତର୍ଭୁକ୍ତ। ଦଣ୍ଡ ଭକତାଙ୍କ ମଧ୍ୟରେ ଶୂଦ୍ର ସଂଖ୍ୟା ବହୁତ। ଦଣ୍ଡନାଚର କଥା ଉପକଥା ଗୁଡ଼ିକ ସମାଜର ତଳ ଶ୍ରେଣୀ କଥାକୁହେ। ଅକର୍ମକର୍ମ ଦାୟକ ଦେବ ଦେବ ମହାଦେବଙ୍କର ବାନାମ୍ବର ବେଶକୁ ବେତ ଦଣ୍ଡରେ ଧାରଣ କରି ଗଣଦେବତା ରୂପେ ଦଣ୍ଡଭକତା ମାନେ ଗ୍ରାମ ଭ୍ରମଣ କରାଇଥାନ୍ତି। ଅନ୍ୱେଷଣରୁ ଜଣାପଡ଼େ ଦଣ୍ଡଯାତ୍ରା ନୟାଗଡ଼ ଜିଲ୍ଲାର ଅଭ୍ୟନ୍ତରକୁ ସଂପୂର୍ଣ୍ଣ ବ୍ୟାପୀ ରହିଛି। ନୟାଗଡ଼ ଜିଲ୍ଲାର ଦଣ୍ଡ ପରମ୍ପରା ବହୁ ପ୍ରାଚୀନ କାଳରୁ ପାଳନ ହୋଇ ଆସୁଥିବାର ପରିଲକ୍ଷିତ ହୁଏ।





## ସପ୍ତମ ଅଧ୍ୟାୟ

# ନୟାଗଡ଼ ମଞ୍ଚକଳା

ମଞ୍ଚକଳା : ଜନଗଣଙ୍କର ଅବସର ବିନୋଦନ ପାଇଁ ଏକ ସୁଚିନ୍ତିତ କାହାଣୀରେ ରଙ୍ଗରସ ଦେଇ ଜନଘେର ମଧ୍ୟରେ ପ୍ରସ୍ତାବିତ ସ୍ଥାନରେ କାହାଣୀରେ ଥିବା ଚରିତ୍ରମାନଙ୍କର ଅନୁରୂପ ଅଭିନୟ ପରିବେଷଣକୁ ମଞ୍ଚକଳା କୁହାଯାଏ। ଏହା ଲୋକକଳାର ପରିମାର୍ଜିତ ଶୃଙ୍ଖଳିତ ଅଭିନୟ କଳା। ଏହାର ଉଦ୍ଭବ କାଳ ନିରୂପଣ କଲାବେଳେ ଏହାର ପ୍ରାଚୀନତା ବହୁତ ପଛରେ। ନାଟ୍ୟକଳା ପରିବେଷଣ ପାଇଁ ଉଦ୍ଦିଷ୍ଟ ସଂରକ୍ଷିତ ସ୍ଥାନକୁ ରଙ୍ଗମଞ୍ଚ କୁହାଯାଏ। ସେ କାଳରୁ ଏକାଳ ମଧ୍ୟରେ ଏହାର ବିକଶିତ ମଞ୍ଚ ରୂପକୁ ତିନୋଟି ସ୍ତରରେ ବିଚାର କରାଯାଏ, ଯଥା- ମୁକ୍ତ ମଞ୍ଚ ବା ଖୋଲାମଞ୍ଚ ସାଜସଜ୍ଜାଜନିତ ଚତୁଃମୁଖ ଖୋଲାମଞ୍ଚ ଏବଂ ଦୃଶ୍ୟ ପରଦା ବେଷ୍ଟିତ ଏକମୁଖ ଖୋଲାମଞ୍ଚ ବା ଥିଏଟର ମଞ୍ଚ। ଲୋକକଳା ସଭ୍ୟତାର ଏକ ଏକ ଚିରଞ୍ଜିବୀ ଜନ ଆଦୃତ କଳା ହୋଇଥିଲେ ହେଁ ଏହାର ମାର୍ଜିତ ନାଟ୍ୟ ସଂରଚନା ରଙ୍ଗମଞ୍ଚମାନଙ୍କରେ ମଞ୍ଚସ୍ଥ ହୋଇ ଦର୍ଶକଙ୍କୁ ବିମୋହିତ କରେ।

ମୁକ୍ତ ମଞ୍ଚ ବା ଖୋଲା ମଞ୍ଚ : ଲୋକକଳା ପ୍ରଥମତଃ ଖୋଲାମଞ୍ଚରେ ପରିବେଷଣ ହେଉଥିଲା। ଏ କଳାର ପ୍ରଦର୍ଶନ ପ୍ରାଚୀନରୁ ମାନବସଭ୍ୟତାରେ ଯୋଡ଼ିହୋଇ ଏଯାବତ୍ ଗତିଶୀଳ। ଯେପରି ମୁଣ୍ଡପୁତା ଫାର୍ଶ ଚୈତ୍ର, ବୈଶାଖ, ଜ୍ୟେଷ୍ଠର ଡହଡହ ତାତିରେ ଗାଁ ମଝିରେ ଭାତମଗା ହାଣ୍ଡି ଥୋଇ ଖୋଲାଦେହରେ ତତଲା ବାଲିରେ ଶୋଇ ବିଭିନ୍ନ ପ୍ରକାରର ଅଶୃଙ୍ଖଳ ଫାର୍ଶ ଦେଖାଏ, ବାଉଁଶ ଘୋଡ଼ାରେ ଗାଁର ଏପାଖରୁ ସେପାଖ ତିଲାମାରେ ଏହାହିଁ ମୁକ୍ତମଞ୍ଚର ଅବଧାରଣା। ଦଣ୍ଡନାଚ, ରାମଲୀଳା, ସୁଆଙ୍ଗ, କାଳେସୀ ନାଚ, ଲୀଳାବନ୍ଦୀ, ହରରଙ୍ଗୀ, ଦାସକାଠି, ପାଲା, ରାସସଂଗୀତ ଖୋଲାମଞ୍ଚରେ ପ୍ରଦର୍ଶିତ ହୋଇ ଦର୍ଶକଙ୍କୁ ମନୋରଞ୍ଜନ ଦେଉଥିଲା।

ଖୋଲା ଆକାଶ ତଳେ ଦର୍ଶକଙ୍କର ସମାବେଶ ସ୍ଥାନର ମଧ୍ୟବର୍ତ୍ତୀ ସ୍ଥଳରେ ନାଟ୍ୟକଳା ପରିବେଷଣ ପାଇଁ ବର୍ଗାକାର କ୍ଷେତ୍ର ସଂରକ୍ଷିତ ରହେ ଯେଉଁ ସ୍ଥାନଟି କଳାକାରମାନଙ୍କର ଅଭିନୟ ସ୍ଥାନ। ଏ ସ୍ଥାନର ଏକପାର୍ଶ୍ୱରେ ବାଦ୍ୟଯନ୍ତ୍ରକାର ଓ ନାଚଗୁରୁଙ୍କ ସଂଗୀତ ପରିବେଷଣର ସ୍ଥାନ। ଏହା ହେଉଛି କଳାକାରମାନଙ୍କର ମୁଖ୍ୟ ଅଭିନୟ କ୍ଷେତ୍ର। ମୁଖ୍ୟ ଅଭିନୟ କ୍ଷେତ୍ରରୁ ଚରିତ୍ରମାନଙ୍କର ପ୍ରବେଶ ପ୍ରସ୍ଥାନ ପାଇଁ ଗୋଟିଏ ସଂରକ୍ଷିତ ବାଟ ବେଶଘରକୁ ସଂଯୋଜିତ ହୋଇଥାଏ। ଏହା ଦର୍ଶକଙ୍କର ମଧ୍ୟଭାଗରେ କଳା ପରିବେଷଣ ପାଇଁ ଉଦ୍ଦିଷ୍ଟ ଭୂମିହିଁ ମୁଖ୍ୟମଞ୍ଚ। ମୁଖ୍ୟ ମଞ୍ଚକୁ ଲାଗି ଓସ୍ତାଦ୍ ବିଭିନ୍ନ ବାଦ୍ୟକାରଙ୍କ ଗହଣରେ ନାଟକ ପରିଚାଳନା

କରେ। ହୁଇସିଲ୍ ବାଜିଲେ ବେଶଘରୁ କଳାକାର ନୃତ୍ୟ ପରିବେଷଣ କରି କରି ମୁଖ୍ୟ ମଞ୍ଚରେ ପ୍ରବେଶ କରେ। ମୁଖ୍ୟ ମଞ୍ଚରେ ଅଭିଳକ୍ଷିତ ଅଭିନୟ ସହିତ ବଚନିକାର ଦୃଶ୍ୟ ସରିଆସିଲେ ସେହି ପ୍ରବେଶ ପଥରେ ଅଭିନୟ କରି କରି ବେଶଗୃହକୁ ପ୍ରସ୍ଥାନ କରେ। ଆଜିପରିକା ସେତେବେଳେ ଆଲୋକର ସହଜ ବ୍ୟବସ୍ଥା ନଥିଲା। ମଶାଲ ଆଲୋକ ଦ୍ୱାରା ନାଟ୍ୟକଳା ପରିବେଷଣ ହେଉଥିଲା। ପରବର୍ତ୍ତୀ ସମୟରେ ଡେ ଲାଇଟ୍, ପେଟ୍ରୋମାକ୍ସ ଦ୍ୱାରା ଆଲୋକିତ କରାଗଲା ମଞ୍ଚ। ଅଧୁନା ବିଜୁଳି ଆଲୋକର ଚମତ୍କାରିତା ନାଟ୍ୟମଞ୍ଚକୁ ଅଧିକ ଉପଭୋଗ୍ୟ କରାଇଲା।

ଗଣନାଟକର ରାମଲୀଳା, ସୁଭଦ୍ରା ହରଣ ନାଟକ, ମୁଣ୍ଡମଡ଼ା ରାମଲୀଳା, ଦଣ୍ଡନାଚ, ହରରଙ୍ଗୀ, ଲୀଳାବନ୍ଧୀ, କାଳୀୟ ଦଳନ (ରାସ) ମୁକ୍ତମଞ୍ଚରେ ପ୍ରଦର୍ଶିତ ହୋଇ ଦର୍ଶକଙ୍କ ମନୋରଞ୍ଜନ କରୁଥିଲା। ଦଣ୍ଡନାଚ ପ୍ରାଚୀନ ମୁକ୍ତମଞ୍ଚ କଳା ଏଯାବତ୍ ଆଦରଣୀୟ।

<u>ବେଶଘର (Green Room)</u> – ନାଟ୍ୟକଳାର ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଏ ବେଶଘର। ନାଟକ ପରିବେଷଣ ପାଇଁ ଉପଯୁକ୍ତ ଦୂରତାରେ ଓସ୍ତାଦ୍ ବେଶଘର ଠିକ୍ କରିଥାଏ। ବେଶଘରେ ନାଟକରେ ଥିବା ଚରିତ୍ରମାନଙ୍କର ଅବିକଳ ବେଶ କରାଯାଏ। ଅଭିନୟ କରୁଥିବା କଳାକାରମାନଙ୍କର, ରାଜା, ଯୁବରାଜ, ରାଣୀ, ଦାସୀ, ସହଚରୀ, ମନ୍ତ୍ରୀ, ସେନାପତି, ଦୂତ, ପୌରାଣିକ ହେଉ ବା କାଳ୍ପନିକ ହେଉ ଅବା ସାମାଜିକ ଚରିତ୍ର ହେଉ, ଓସ୍ତାଦ୍ କଳାକାରଙ୍କୁ ବେଶ କରାଏ। ସେତେବେଳେ ପୁଅମାନେ ନାରୀ ଭୂମିକାରେ ସୁନ୍ଦର ଅଭିନୟ କରୁଥିଲେ। ବିଂଶ ଶତାବ୍ଦୀର ଶେଷ ପାଦଠାରୁ ଝିଅମାନେ ଝିଅ ଭୂମିକାରେ ଅବତୀର୍ଣ୍ଣ ହେଲେ। କିନ୍ତୁ ନାଟ୍ୟକଳା ପ୍ରଥମ ଭାଗରୁ ପୁଅମାନେ ଝିଅ ଭୂମିକାରେ ଅଭିନୟ କରି ନାଟକକୁ ବେଶ୍ ସରସ ସୁନ୍ଦର କରିପାରୁଥିଲେ। ନାଚଗୁରୁ, କଳାକାରମାନଙ୍କୁ ରଙ୍ଗ ଲଗାଇ ଉପଯୁକ୍ତ ଚରିତ୍ରର ଉପଯୁକ୍ତ ବେଶ କରାଏ। ବେଶ ସରିଲେ ନାଚଗୁରୁଙ୍କ ନିର୍ଦ୍ଦେଶରେ ମୁଖ୍ୟ ମଞ୍ଚରେ, ଯନ୍ତ୍ରସଂଗୀତ ଆରମ୍ଭ ହୁଏ ମଞ୍ଚରେ ନାଟ୍ୟ କଳା ପରିବେଷଣ ହୁଏ।

<u>ନୟାଗଡ଼ର ସର୍ବବୃହତ୍ ମୁକ୍ତମଞ୍ଚ ନାଟକ ଦଶପଲ୍ଲା ଲଙ୍କାପୋଡ଼ି :</u> ୨୦୧୯ ମାର୍ଚ୍ଚ ପ୍ରଗତିବାଦୀ ଖବରକାଗଜରେ ପି.ଏମ୍.ଏସ୍. ଦ୍ୱାରା ପ୍ରକାଶଥାଏକି ୨କି.ମି. ମୁକ୍ତାକାଶ ରଙ୍ଗମଞ୍ଚରେ ହେବ ରାମାୟଣ। ୧୮୦୨ ମସିହାରୁ ଦୀର୍ଘ ୨୧୮ ବର୍ଷ ଧରି ଏଯାବତ୍ ନିରବଚ୍ଛିନ୍ନ ଭାବରେ ଏହି ଯାତ୍ରା ହେଉଛି। ଏହି ଯାତ୍ରା ଶ୍ରୀରାମ ନବମୀଠାରୁ ଆରମ୍ଭ ହୋଇ ଶ୍ରୀରାମଙ୍କ ଅଭିଷେକ ଉତ୍ସବରେ ସମାପ୍ତ ହୋଇଥାଏ। ଏହି ଯାତ୍ରାର ବିଶେଷତ୍ୱ ୩୫ଫୁଟ ଉଚ୍ଚତା ବିଶିଷ୍ଟ ଚଳନକ୍ଷମ

ବିଶାଳକାୟ କାଷ୍ଠନିର୍ମିତ ରାବଣ ପ୍ରଭୁ ରାମଚନ୍ଦ୍ରଙ୍କର ପୁଷ୍ପକ ବିମାନର ଶୋଭା ଅତୀବ ମନୋରମ। ଏ ଯାତ୍ରାର ସ୍ୱତନ୍ତ୍ରତା ହେଲା କାଠ ତିଆରି ମୁଖା ଏବଂ ପୌରାଣିକ ଶୈଳୀର ବେଶ ସଜ୍ଜା। ସବୁଠାରୁ ବିଶେଷଭାବେ ଆକର୍ଷଣୀୟ ଶ୍ରୀରାମଙ୍କ ତୁଣୀରରୁ ଏକ ବ୍ରହ୍ମାସ୍ତ୍ର ନିର୍ଗତ ହୋଇ ୩ଶହ ମିଟର ଦୂରରେ ଥିବା ରାବଣର ବକ୍ଷଭେଦ କରି ପୁନଶ୍ଚ ପ୍ରଭୁ ତୁଣୀରକୁ ଫେରିଆସିବା। ଏହି ଅଲୌକିକ ଦୃଶ୍ୟ ଦେଖିବାକୁ ଦଶପଲ୍ଲା ମହାବୀରଙ୍କ ବଡ଼ଦାଣ୍ଡରେ ଲକ୍ଷାଧିକ ଜନ ସମାବେଶ। ପୁରାତନ ଶୈଳୀରେ ଗିନି, ମୃଦଙ୍ଗ, ପଖଉଜ ଇତ୍ୟାଦି ବାଦ୍ୟଯନ୍ତ୍ର ବ୍ୟବହାର କରାଯାଇ ଏହି ରାମ ନାଟକ ଜୀବନ୍ତ ସମଗ୍ର ଅନୁଭବ ହୁଏ। ଭାରତବର୍ଷରେ ୨ୟ ପ୍ରାଚୀନ ରାମଲୀଳା ମଞ୍ଚ ମାନ୍ୟତା ପାଇଥିବା ୨ଶହ କଳାକାରଙ୍କୁ ନେଇ ପାରମ୍ପରିକ ରୀତିନୀତି ଶୈଳୀରେ ପ୍ରଦର୍ଶିତ ଏହି ଲୋକନାଟକ ଲୋକନୃତ୍ୟ ସମନ୍ୱୟର ଏକ ମଞ୍ଚ। ଏହା ଅଞ୍ଚଳର ଗଣପର୍ବ ରୂପେ ପରିଚିତ। ବିକ୍ରମ ଭଣତି ଶ୍ରୀରାମଲୀଳା ପୁରାଣର ରାଗ ରସ ଛନ୍ଦ ସହ ଅଢ଼େଇ ପାଦର ନୃତ୍ୟ, ଯୁଦ୍ଧ, ଦୁଃଖ, ଶୋକ ଲାଳିତ୍ୟ ଆଦିକୁ ନେଇ ଦର୍ଶକଙ୍କୁ ଆକୃଷ୍ଟ କରିପାରୁଛି।"

ଦଶପଲ୍ଲା ଲଙ୍କାପୋଡ଼ି ମଞ୍ଚ ୨କି.ମି. ବ୍ୟାପୀ ମୁକ୍ତ ରଙ୍ଗମଞ୍ଚ। ଏହି ମଞ୍ଚ ଦଶପଲ୍ଲା ରାଜବାଟୀଠାରୁ ଥାନା ପଡ଼ିଆ ଯାଏ ରାମ ରାବଣର ଯୁଦ୍ଧ ଦର୍ଶକଙ୍କର ଚିତ୍ତ ମନୋରଞ୍ଜନ କରିଥାଏ। ରାବଣ ନିଧନ ପରେ ପରେ ବିଭିନ୍ନ ପ୍ରକାରର ବାଣ, କୁମ୍ଭି, ଚକ୍ର, ତୋପ, ଚେଙ୍ଗ, ଗଛବାଣ ଶବ୍ଦରେ ଆରଣ୍ୟକ ସହର ପ୍ରକମ୍ପିତ ହୋଇ ସମାବେଶ ଦର୍ଶକଙ୍କୁ ଚକିତ କରାଏ। ରାତି ପାହିଯାଏ। ଏ ତ ଶ୍ରୀରାମ ପୁରାଣର ଯାତ୍ରା।

**ଦଣ୍ଡନାଚ :** ଦଣ୍ଡନାଚ ଓଡ଼ିଶାର ପ୍ରାଚୀନ ମୁକ୍ତମଞ୍ଚ ଲୋକକଳା। ଏ ନାଚ ମଶାଲ ଆଲୋକରେ ଅଭିନୀତ ହୋଇ ଅଧୁନା ବିଦ୍ୟୁତ୍ ଆଲୋକରେ ସଜ୍ଜିତ ମଞ୍ଚରେ ଅଭିନୀତ ହୋଇ ଦର୍ଶକଙ୍କର ଆଦର ଲାଭକରିଛି। ଏହାର ସୁଆଙ୍ଗଗୁଡ଼ିକ- ହାଡ଼ି- ହାଡ଼ିଆଣୀ, ଧୋବା-ଧୋବଣୀ, କେଳା-କେଳୁଣୀ, ପତର ସଉରା, ଯୋଗୀ-ଯୋଗିଆଣୀ ସମାଜରେ ଅଧିକ ମନୋରଞ୍ଜନଧର୍ମୀ। ଏ ସୁଆଙ୍ଗଗୁଡ଼ିକ ମୁଖ୍ୟ ମଞ୍ଚରୁ ବାହାରିଆସି ଦର୍ଶକଙ୍କ ଭିତରେ ଅଭିନୟ ରଙ୍ଗ ପରିବେଷଣ ବେଶ୍ କୌତୂହଳ ସୃଷ୍ଟି କରେ। ସମାଜର ତଳ ଶ୍ରେଣୀର ନାରୀ ପୁରୁଷର ଘର ଭିତରର ଦାମ୍ପତ୍ୟ ରହସ୍ୟ ଘର ବାହାରେ ଦାଣ୍ଡରେ ଶୃଙ୍ଖଳା ଅଶୃଙ୍ଖଳାର ଅଭିନୟ ରଙ୍ଗ ମଧ୍ୟରେ ରାଗରୁଷା, ମାନ ଅଭିମାନ ନିଜ ନିଜର ବଂଶର ଗୋହିଖୋଳିବା ଦୃଶ୍ୟ ମାନଭଞ୍ଜନରେ ନାରୀର ଗୁରୁତ୍ୱକୁ ପ୍ରାଧାନ୍ୟ ଦେଇ ଦାମ୍ପତ୍ୟ ସୁହାଗ ସୁଖଦ ମିଳନ ଘଟାଏ। ବର୍ଷର ଚୈତ୍ର ମାସ ଛୁଇଁଲେ ଦଣ୍ଡନାଚର ପ୍ରସ୍ତୁତି ଆରମ୍ଭ ହୋଇଯାଏ। ଗାଁ'ମାନଙ୍କରୁ ଢୋଲ ବାଦ୍ୟର ଆବାଜ ରିହରସାଲ ଆଖଡ଼ାଶାଳରୁ ଶୁଭେ। ଦଣ୍ଡଯାତ୍ରା

ଚୈତ୍ରର ମେରୁ ସଂକ୍ରାନ୍ତି ପର୍ଯ୍ୟନ୍ତ ଚାଲେ। ଦଣ୍ଡଯାତ୍ରାରେ ଏ ମାସର ରାତିଗୁଡ଼ିକ ଉଜାଗର ରହେ। ନୟାଗଡ଼ର ପ୍ରାୟ ପ୍ରତି ଗାଁ'ରୁ ଚଢ଼େୟା ସୁଆଙ୍ଗର ସ୍ୱର ଶୁଭେ।

**ଦଣ୍ଡନାଚର କାହାଣୀ :** ଦଣ୍ଡନାଚର ମୁଖ୍ୟ କାହାଣୀଟି ଚଢ଼େୟା, ଜୟନ୍ତ ଓ ତା'ର ଦୁଇ ରମଣୀଙ୍କୁ ନେଇ ଗତିଶୀଳ। ଏକ ପୁରୁଷ ତା'ର ଦୁଇ ନାରୀକୁ ନେଇ ଅର୍ଥାତ୍ ଦୁଇ ସଉତୁଣୀ ଥାଇ ପରିବାର ପ୍ରତିପୋଷଣ ପାଇଁ ଚଢ଼େୟାର ଜୀବିକା ପକ୍ଷୀ ଧରିବା। ବଣରୁ ବଣ ବୁଲି ଚଢ଼େୟା ବଣି, ଶୁଆଶାରୀ ପିକ, ମୟୂର, ହରଡ଼ ଚଢ଼େଇ ନଳ କାଣ୍ଡିଆରେ ସହଜରେ ଧରିଥାଏ। ଚଢ଼େଆର ପାହାଡ଼ି ଶବର ବେଶ ହାତରେ ପକ୍ଷୀଧରା ନଳବାଡ଼ି ଓ ଫାଶ ବେଶଘରୁ ଢୋଲବାଦ୍ୟର ତାଳେ ତାଳେ କେତେ ରଙ୍ଗରେ ପାହୁଲ ପକାଇ ବେଶଘରୁ ଖୋଲା ମଞ୍ଚ ଦାଣ୍ଡରେ ନାଚି ନାଚି ଆସିବା ସମବେତ ଦର୍ଶକଙ୍କର ଚିତ୍ତ ପ୍ରମୋଦ କରେ। ଚଢ଼େୟା ବଣ ମୂଲକରୁ ପକ୍ଷୀ ଧରି ତା'ର ଦୁଇ ନାରୀଙ୍କୁ ଦିଏ। ଦୁଇ ଚଢ଼ଉଣୀ ଗାଁ ଗାଁ ବୁଲି ଗୀତ ଗାଇ, ଢ଼ଗମେଲି କେତେ ଝଟୁରେ ଉଚ୍ଚାରଣ କରି ନାଚି ନାଚି ପକ୍ଷୀ ବିକନ୍ତି। ପକ୍ଷୀବିକାରୁ ଯାହାଟା ଉପାର୍ଜନ ହୁଏ ସେଥିରେ ଚଢ଼େୟାର ସଂସାର ଚଳେ।

**ଦଣ୍ଡନାଚର ରଚୟିତା :** ଦଣ୍ଡନାଚର ନାଟ୍ୟକାର ରାମଚନ୍ଦ୍ର ସ୍ୱାଇଁ, ଓଡ଼ଗାଁ କଣମରେଇ ସାହି, ହରେକୃଷ୍ଣ ଦାଶ, ଖଣ୍ଡପଡ଼ା, କୁମ୍ଭାରପଡ଼ା, ପ୍ରହଲ୍ଲାଦ ପ୍ରଧାନ, ଭାପୁର ଚକ୍ରଧର ପ୍ରସାଦ, ରଘୁନାଥ, ଅଗାଧୁ, ଗୀତ ସଂଗୀତ ରୀତିରେ ଏତେ ସୁନ୍ଦର ଭାବରେ ବିଭିନ୍ନ ରଙ୍ଗରସରେ ନାଟ୍ୟ ଉପସ୍ଥାପନା କରିଥାନ୍ତି ଯେ ଦଣ୍ଡନାଚକୁ ଯେତେ ଦେଖୁଥିଲେ ନୂଆ ନୂଆ ଲାଗେ। ଗୋଟାଏ ପୁରୁଷର ଦୁଇ ଦୁଇଟା ସ୍ତ୍ରୀ ଥିଲେ ଜୀବନରେ ଯେଉଁ ଯନ୍ତ୍ରଣା ଆସେ ଘର କଳି ଦାଣ୍ଡରେ ପଡ଼େ ସାମାଜିକ ପରିହାସକୁ ନାଟ୍ୟକାରମାନେ ଚତୁରତାର ସହିତ ମୀମାଂଶା କରାଇ ନାଟକକୁ ଉପଭୋଗ୍ୟ କରାଇଥାନ୍ତି। ଦୁଇ ସଉତୁଣୀ କଳିରେ ବିଚରା ଚଢ଼େୟା ଯେପରି ହନ୍ତସନ୍ତ ହୁଏ ଦୁଇ ସ୍ତ୍ରୀଙ୍କର ମାନଭଞ୍ଜନ ମନ୍ତ୍ର ଜାଣିଥିବାରୁ ମନାଇଲେ ଦୁଇ ପତ୍ନୀଙ୍କର ପ୍ରେମ ପ୍ରଣୟରେ ତା'ର ସଂସାର ବେଶ୍ ଜୀବନଭୋଗୀ ବିଳାସମୟ ଅଟେ।

ଏକଦା ଜୟନ୍ତ ଚଢ଼େଇ ଧରିବା ପାଇଁ ମହାଦେବଙ୍କର ପାର୍ବତୀ ବନରେ ପ୍ରବେଶ କଲା। ପାର୍ବତୀ ବନରୁ ପକ୍ଷୀ ଧରିବା ମହାଦେବଙ୍କର ନିଷିଦ୍ଧ ଅରଣ୍ୟ। ଜୟନ୍ତ ବଳପୂର୍ବକ ସେ ବନରୁ ପକ୍ଷୀ ଧରିଲା। ଶିବଙ୍କ ଅନୁଚର ନନ୍ଦୀ, ଭୃଙ୍ଗୀଙ୍କୁ ପରାସ୍ତ କରି ପକ୍ଷୀ ଧରିଲା। ଶେଷରେ ସାପୁଆକେଳାମାନେ ତାକୁ ସର୍ପ ଦଂଶନ କରାଇଲେ। ସର୍ପାଘାତରେ ଜୟନ୍ତ ପ୍ରାଣ ହରାଇଲା। ଦୁଇ ଚଢ଼ଉଣୀ ସ୍ୱାମୀଙ୍କୁ ଖୋଜି ଖୋଜି ପାର୍ବତୀ ବନରେ ସ୍ୱାମୀଙ୍କର ମୃତାବସ୍ଥା ଦେଖିଲେ। ସ୍ୱାମୀହରା ଦୁଇ ତରୁଣୀଙ୍କ କ୍ରନ୍ଦନରେ ପାର୍ବତୀ ବନ ଥରିଉଠିଲା। ପାର୍ବତୀଙ୍କ ଅନୁରୋଧ

କ୍ରମେ ହର ହର ମହାଦେବ ଚଢ଼େୟାକୁ ଜୀବନ ଦାନ ଦେଲେ। ଏଇ ହେଉଛି ଦଣ୍ଡନାଚର କ୍ଷୁଦ୍ର କାହାଣୀ। କିନ୍ତୁ ନାଟ୍ୟକାରମାନେ କାହାଣୀ ସହିତ ପାର୍ଶ୍ୱ ଚରିତ୍ରମାନଙ୍କୁ ଯୋଡ଼ି ଚଢ଼େୟା ସୁଆଙ୍ଗକୁ ଅଧିକ ମନୋରଞ୍ଜନଧର୍ମୀ କରାଇ ପରଦିନର ୧୦/୧୧ଟା ପର୍ଯ୍ୟନ୍ତ ନାଟ୍ୟ ପରିବେଷଣ ପାଇଁ ପାର୍ଶ୍ୱ ସୁଆଙ୍ଗ ଯଥା- ହାଡ଼ି ହାଡିଆଣୀ, ଧୋବା ଧୋବଣୀ, କେଳା କେଳୁଣୀ, ପତର ସଉରା, ଯୋଗୀ ଯୋଗିଆଣୀ ସୁଆଙ୍ଗ ପ୍ରଦର୍ଶନ କରାଇଥାନ୍ତି। ଦଣ୍ଡ ସୁଆଙ୍ଗ ଢ଼ୋଲ, ଝାଞ୍ଜ, ତୂରୀ, ମହୁରୀ ବାଜଣାରେ ଦେଖଣାହାରୀଙ୍କୁ ବେଶ୍ କୌତୁକ ପ୍ରମୋଦରେ ବାନ୍ଧିରଖେ।

ଦଣ୍ଡନାଚ କ୍ଷୁଦ୍ର କାହାଣୀ ବିଶିଷ୍ଟ ମୁକ୍ତମଞ୍ଚ ଲୋକକଳା। ଏହି ସୁଆଙ୍ଗ ରାତ୍ର ୧୨ଟା ପରଠାରୁ ପରଦିନ ସକାଳ ୧୦/୧୧ଟା ପର୍ଯ୍ୟନ୍ତ ଗାଁ ଦାଣ୍ଡରେ ପରିବେଷଣ ହୁଏ। ଏ ନାଚକୁ ରାତିରେ ଦିନରେ ଦେଖିହୁଏ। ସୁଆଙ୍ଗରେ ନାରୀ ପୁରୁଷର ଯୁଗଳ ଅନୁରାଗ, ବିରାଗ, ରାଗରୁଷା, ପରିହାସ, ମାନ ଅଭିମାନର ଢଗଢ଼ମାଳି, ବଚନିକା ଦର୍ଶକଙ୍କର ଚିତ୍ତବିନୋଦନ କରିଥାଏ। ଚୈତ୍ର ଗ୍ରୀଷ୍ମ ରାତ୍ରିରେ ଦଣ୍ଡନାଚ ହେଉଥିବା ଗାଁକୁ ଆଖପାଖ ଗାଁ'ର ଦେଖଣାହାରୀଏ ଧାଡ଼ି ଲଗେଇଥାନ୍ତି। ନୟାଗଡ଼ ଜିଲ୍ଲାର ପ୍ରାୟତଃ ସବୁ ଗାଁ'ରେ ଦଣ୍ଡ ଉତ୍ସବ ପାଳିତ ହୁଏ।

ଦଣ୍ଡ ଉତ୍ସବ ଶିବଙ୍କର ମହିମା ପ୍ରସାର ଉତ୍ସବ। ଅକର୍ମ କର୍ମଦାୟକ ଯୋଗେଶ୍ୱର ଶିବ ବେତଦଣ୍ଡ-ଧାରଣ କରି ତେର ଭକତାଙ୍କ ଗହଣରେ ମନ୍ଦିରରୁ ବାହାରି ଆସି ଭକ୍ତଙ୍କୁ ଦେଖାଦେବା ପାଇଁ ଗ୍ରୀଷ୍ମର ଡହଡହ ତାତିରେ ଗାଁ ଗାଁ'ରେ ବୁଲନ୍ତି। ଏଣୁ ପାଟଭକତା ସହ ଅନ୍ୟ ଦଣ୍ଡଭକତାମାନେ ଦଣ୍ଡ ଉତ୍ସବ ଆରମ୍ଭ ମାସକ ଆଗରୁ କାୟାଶୁଦ୍ଧି ପାଇଁ ନିଷ୍ଠା ପାଳନ କରନ୍ତି। ଘର ବାହାରେ ଖାଆନ୍ତି। ଆମିଷ, ପିଆଜ, ରସୁଣ, ଲେମ୍ବୁ ଛୁଅଁନ୍ତି ନାହିଁ। ପରପାଗରେ ଖାଆନ୍ତି ନାହିଁ। ସ୍ତ୍ରୀ ସହବାସ ହୁଅନ୍ତି ନାହିଁ, ଘର ବାହାରେ ରହନ୍ତି। ନଡ଼ା ପାରି ଶୁଅନ୍ତି।

ଦଣ୍ଡଯାତ୍ରାରେ ତେରଭକତା ହେଲେ ମୁଖ୍ୟ। ଏମାନଙ୍କ ମଧ୍ୟରୁ ଜଣେ ପାଟଦଣ୍ଡୁଆ। ପାଟଦଣ୍ଡୁଆ ଠାକୁରଙ୍କର ପ୍ରତିନିଧିତ୍ୱ କଲାଭଳି ମନେହୁଏ। ଠାକୁରଙ୍କର ପାଣିତୋଳା ଦିନ ବ୍ରାହ୍ମଣ ପୂଜକ ବାନାମ୍ବରଙ୍କର ପ୍ରତିରୂପ ସ୍ୱରୂପ ବେତଦଣ୍ଡକୁ ଏକାଠି କରି ବେତଦଣ୍ଡରେ ଶିରିପା ବାନ୍ଧି ନବବସ୍ତ୍ର ପିନ୍ଧାଇ ଅରଖଫୁଲ ଝିଙ୍କା ମୁକୁଟ ପିନ୍ଧା ଫୁଲହାରରେ ଶୋଭାବନ କରାଇ ପୂଜା କରେ। ହାଡ଼ିର ଢୋଲ ମହୁରୀ, ଝାଞ୍ଜ ବାଜଣାରେ ଦୁଇହଳ ମାଟିଦଣ୍ଡରେ ଅଗ୍ନି ଉଜ୍ଜୀବିତ କରାଏ। ଦଣ୍ଡ ଭକତାମାନେ ବେକରେ ମନ୍ତୁରା ସୁତା, ପଇତା ପକାଇଦେଲା ପରେ ସେମାନଙ୍କ ମଧ୍ୟରେ ଉଚ୍ଚନୀଚ ଜାତିଆଣ ଭାବ ରହେ ନାହିଁ। ପଣାସଂକ୍ରାନ୍ତି ପୂର୍ବରୁ ଠାକୁରଙ୍କ ସ୍ୱପ୍ନାଦେଶ ପାଳନ କରି ଦଣ୍ଡଭକତାମାନେ ୨୧ଦିନରୁ, ୧୭ଦିନରୁ, ୧୩ ଦିନରୁ, ୯, ୭, ୩ ଦିନରୁ ଠାକୁରଙ୍କର ପାଣି ତୋଳିଥାନ୍ତି। ସେହିଠାରୁ

ଦଣ୍ଡ ଠାକୁର କାମନା ଘରକୁ ବିଜେ ହୁଅନ୍ତି। କାମନା ଘରୁ ଦଣ୍ଡ ଭକତାମାନେ ଠାକୁରଙ୍କୁ ଛାତିରେ ଧରି ଗାଁରୁ ଗାଁ ବାନାମ୍ବର ଗୋସାଇଁଙ୍କର ମହିମା ପ୍ରସାରରେ ବାହାରି ଯାଆନ୍ତି। ପାଣିତୋଳା ଦିନଠାରୁ ଠାକୁରଙ୍କର ମେରୁ ଉତ୍ସବ ପର୍ଯ୍ୟନ୍ତ ଡହଡହ ତାତିରେ ଗାଁ ଯେତେଦୂର ହେଲେ ମଧ୍ୟ ଯାଇପାରନ୍ତି ଠାକୁରଙ୍କର ମହିମାରୁ। ଝୁଣାମାଡ଼ରେ ପ୍ରଜ୍ୱଳିତ ଅଗ୍ନିଦଣ୍ଡ ମୁଠାଧରି ଯିବା ସହଜ କଥା ନୁହେଁ। ଦଣ୍ଡଯାତ୍ରାକୁ ଝାମୁଯାତ୍ରା କୁହାଯାଏ। ଠାକୁରଙ୍କ ସାଥିରେ ଝାମୁନାଟୁଆମାନେ ମଧ୍ୟ ଯାଆନ୍ତି। ଯେଉଁ ଗାଁ'ରେ ଦଣ୍ଡ ଠାକୁର ନିମନ୍ତ୍ରଣ ହୋଇଥାନ୍ତି ସେହି ଗାଁ'ରେ ଦଣ୍ଡନାଚ ହୁଏ। ଦିନ ୨ଟାରୁ ୫ଟା ମଧ୍ୟରେ ଧୂଳିଦଣ୍ଡ ହୁଏ।

ଧୂଳିଦଣ୍ଡ : ଦଣ୍ଡ ଠାକୁର ନିମନ୍ତ୍ରିତ ହୋଇଥିବା ଗାଁ'ର ଭକତା ଦୁଆରେ ପୂର୍ବାହ୍ନରେ ବନ୍ଦାଣ ହୁଅନ୍ତି। ମଧ୍ୟାହ୍ନ ଖରାଟା ନିର୍ଜନ ତୋଟା ଛାଇରେ ବିଶ୍ରାମ ନିଅନ୍ତି। ଦିନ ଦୁଇଟାରେ ଭକତା ଦୁଆରେ ବାନାମ୍ବରଙ୍କର ଧୂଳିଦଣ୍ଡ ଖେଳ ହୁଏ ଖୋଲା ଖରାରେ। ଉତ୍ତମ କୃଷିର ସୂଚନା ସ୍ୱରୂପ ଭକତାମାନେ କୃଷିକାର୍ଯ୍ୟ କରନ୍ତି। ଧୂଳିର ଦାଣ୍ଡ ଥିଲା ସେମାନଙ୍କର ଚଷ କିଆରୀ। ଭକତାମାନେ ଲଙ୍ଗଳ, ମଇ, ଶଗଡ଼, ହଳ, ହଳୁଆ ଭୂମିକାରେ ଅଭିନୟ କରନ୍ତି। ଧାନ ବୁଣନ୍ତି, ଜମିରେ ପାଣି ବନ୍ଧାନ୍ତି, ବେଉଷଣ ମଇମରା କାମ କରନ୍ତି। ଧାନଚରା ରୁଆ ବଛା, ଧାନକଟା, ଶଗଡ଼ରେ ଶସ୍ୟ ଗୋଛା ଖଳାକୁ ବୁହନ୍ତି। ଖଳାରେ ଫସଲ ଅମଳ ଶସ୍ୟକୁ ସୁରକ୍ଷିତ ଭାବେ ଘରେ ସାଇତିବା ଦୃଶ୍ୟ ଧୂଳିଦଣ୍ଡ ଖେଳରେ ପ୍ରଦର୍ଶିତ ହୋଇ ଏହା ସମାଜକୁ ଉତ୍ତମ କୃଷିକର୍ମର ସଂକେତ ପ୍ରଦାନ କରେ। ଧୂଳିଦଣ୍ଡ ଖେଳ ଭକତାମାନେ ତତଲା ଧୂଳିରେ ଗଡ଼ି ଘୋସାଡ଼ି ହୋଇ ଖେଳନ୍ତି। ଧୂଳିଖେଳ ପରେ ପରେ ଗଉଡ଼ର ଜଙ୍ଗଲରେ ଗାଇଚରା ଦୃଶ୍ୟ ଆରମ୍ଭ ହୋଇଯାଏ। ବାଘ ଗାଈଗୋଠରେ ପଶି ଗାଈମାରିବା ଦୃଶ୍ୟ। ଢୋଲ ତାଳରେ ଚମତ୍କାର ବାଘ ଫାର୍ଶ ଚଲେ। ଶବରର ବାଘ ଶିକାର ବେଶ ରୋମାଞ୍ଚକର। ଗଉଡୁଣୀର କ୍ଷୀର, ଦହି ବିକା, ଗୁଡ଼ିଆଣୀର ବରା, ପକୁଡ଼ି ବିକା ଦୃଶ୍ୟ ହାସ୍ୟ ପରିହାସ ମଧ୍ୟରେ ଚିତ୍ତବିନୋଦନ କରେ।

ଦଣ୍ଡନାଚରେ ମଉସା ଭୂମିକା : ନାଟ୍ୟ କାହାଣୀର ଅଭିନୟକୁ ସଂଯୋଜିତ କରିବା ପାଇଁ ନାଟ ରଚୟିତାମାନେ ନାଟ୍ୟମଞ୍ଚକୁ ଗୋଟିଏ ଧାରାରେ ବାନ୍ଧି ରଖିବାକୁ ଏକ ମଉସା ଚରିତ୍ର ଯୋଡ଼ିଥାନ୍ତି। ଚଢ଼େୟାର ଦୁଇ ନାରୀ ଜଙ୍ଗଲ ପଥରେ ବାଟବଣା ହୋଇଯିବା ସମୟେ ମଉସା ଆବିର୍ଭାବ ହୋଇ ସେମାନଙ୍କୁ ବାଟ ବତାଇଦିଏ। ସୁଆଙ୍ଗରେ ନାରୀ-ପୁରୁଷର ଅମେଳକୁ ମୀମାଂସା କରାଇ ତାଙ୍କୁ ଏକାଠି କରିଦିଏ। ଦଣ୍ଡ କାହାଣୀରେ ମଉସା ହେଉଛି ଏକ ସଂଯୋଜକ ଚରିତ୍ର।

ଦଣ୍ଡ ମେଳଣ : ଭକ୍ତର ମାନସିକ ଥିଲେ ନିଜ ଦୁଆରେ ଦଣ୍ଡ ମେଳଣର ପୂଜା କରାଏ। ମାନସିକ ଅନୁସାରେ ଦୁଇଦଣ୍ଡ, ତିନି ଦଣ୍ଡ, ଚାରିଦଣ୍ଡ, ପାଞ୍ଚଦଣ୍ଡ

ତତୋଧିକ ଦଣ୍ଡଦଳଙ୍କୁ ନିମନ୍ତ୍ରଣ କରାଯାଇ ଠାକୁରଙ୍କର ଯଥାବିଧିରେ ପୂଜା କରିଥାଏ। ପ୍ରତ୍ୟେକ ଦଣ୍ଡଦଳର ଚଢ଼େୟା ସୁଆଙ୍ଗ ନାଟ୍ୟଦଳ ମାନସିକ ଥିବା ଗାଁ'ରେ ନିଜ ନିଜର ସଂରକ୍ଷିତ ସ୍ଥାନରେ ସୁଆଙ୍ଗ ପ୍ରଦର୍ଶନ କରନ୍ତି। ସେଦିନ ଗାଁ ଆଲୋକସଜ୍ଜାରେ ଝଲସିଉଠେ। ଦଣ୍ଡନାଚ ଗୀତ ଢୋଲ ବାଦ୍ୟ ତାଳେ ତାଳେ ନାଟୁଆମାନଙ୍କର ନୃତ୍ୟ, ହାସ୍ୟ, ପରିହାସ ସ୍ପର୍ଶରେ ଗାଁ ଉତ୍ସବମୁଖର ହୋଇ ଦୁଲୁକୁଥାଏ। ବନ୍ଧୁବାନ୍ଧବ ଗହଳ ପାଖ ଗାଁ ଦେଖଣାହାରୀଙ୍କ ସମାବେଶରେ ଗାଁ ଦାଣ୍ଡ କୋଳାହଳପୂର୍ଣ୍ଣ। ପ୍ରତି ଦଣ୍ଡଦଳର ଅଗ୍ନିଦଣ୍ଡ ଖେଳର ଝୁଣାମାଡ଼ ଅଗ୍ନି ଝଲକି ଗାଁ' ଉପରେ ଭାସିଯାଉଥିବା ଦୃଶ୍ୟ ବେଶ୍ ଚମତ୍କାର।

<u>ଦଣ୍ଡନାଚ ମଞ୍ଚ :</u> ଦଣ୍ଡ ସୁଆଙ୍ଗ ଖୋଲାମଞ୍ଚର ନାଟ। ଗାଁ'ର ଠାକୁରଙ୍କ ପୂଜାପାଠରେ ନାଟୁଆମାନଙ୍କର ଅଭିନୟ ସ୍ଥାନଟି ସଂରକ୍ଷିତ ଥାଏ। ଏ ସ୍ଥାନଟି ହେଲା ନାଟକର ମଞ୍ଚ। ମୁଖ୍ୟ ମଞ୍ଚଠାରୁ ଅଳପ ଦୂରରେ ବେଶଘର। ବେଶଘରୁ ମୁଖ୍ୟ ମଞ୍ଚକୁ ସଂଯୋଗ କରୁଥିବା ନାଟୁଆମାନଙ୍କର ଅଭିନୟ ଦାଣ୍ଡ। ଅଭିନୟ ପଥକୁ ଲକ୍ଷ୍ୟକରି ମୁଖ୍ୟ ମଞ୍ଚ ପାର୍ଶ୍ୱରେ ବାଦ୍ୟ ସଂଯୋଜନା କରୁଥିବା ବାଦ୍ୟ ସଂଚାଳକ ଦଳ। ହାରମନିୟମ, ଯାମା ସହିତ ଯୋଡ଼ିନାଗରା, ମହୁରୀ, ଝୁମୁକା, କର୍ଣ୍ଣେଟ, କ୍ଲାରିଓନେଟ ଅଭିନେତାଙ୍କର ନାଚ ଗୀତ ସହିତ ତାଳଦେଇ ଯନ୍ତ୍ରକାରମାନେ ବାଦ୍ୟଚାଳନା କରିଥାନ୍ତି। ମଞ୍ଚ ଆଲୋକିତ କରିବାପାଇଁ ପୁରୁଣା ଦିନରେ ମଶାଲ ଆଲୋକରେ ନାଟ୍ୟ ପରିବେଷଣ ହେଉଥିଲା। ପରେ ପରେ ଏଯାବତ୍ ବିଜୁଳି ଆଲୋକର ସଂଯୋଗରେ ନାଟକର ଅଭିନୟ ଦର୍ଶକଙ୍କୁ ଅଧିକ ମନୋରଞ୍ଜନ ଦେଲା। ଦଣ୍ଡନାଚରେ ଢୋଲବାଦ୍ୟର ବ୍ୟବହାର ଆଧିକ୍ୟ। ଢୋଲବାଦ୍ୟ ତାଳରେ ନାଟୁଆର ଅଭିନୟ ଅଧିକ ଚମତ୍କାର।

<u>ମୁଖ୍ୟ ମଞ୍ଚରେ ଦଣ୍ଡଠାକୁରଙ୍କ ଆବିର୍ଭାବ :</u> ମାନସିକ ଭକ୍ତ ଦୁଆରେ ସାୟଂକାଳରେ ଦଣ୍ଡଠାକୁର ଭୋଗ ପୂଜା ହୁଅନ୍ତି। ବ୍ରାହ୍ମଣ ପୂଜାପାଠ କରେ। ପୂଜା ସରିଲେ ପାଟଭକତାଙ୍କ ନିର୍ଦ୍ଦେଶରେ ଠାକୁର ଗ୍ରାମ ପରିକ୍ରମା କରନ୍ତି। ଠାକୁରଙ୍କୁ ଧାରଣ କରି ଦଣ୍ଡ ଭକତାମାନେ ଦ୍ୱାରେ ଦ୍ୱାରେ ଦଣ୍ଡରେ ଧୂପ ମାଡ଼କରି ଭକ୍ତମାନଙ୍କର ମଙ୍ଗଳ ପାଇଁ ହକ ଦିଅନ୍ତି। ବାନାମ୍ବର ହେ ଭକ୍ତର ମାନସ୍କାମନା ପୂର୍ଣ୍ଣ କରହେ, ଶରୀର ଆରୋଗ୍ୟ ରଖହେ, ଗ୍ରାମର ମଙ୍ଗଳ କରହେ, ଦେଶର ମଙ୍ଗଳ କରହେ ଆଶିଷ ଦିଅନ୍ତି। ଦଣ୍ଡ ଠାକୁରଙ୍କର ମୁଖ୍ୟ ପ୍ରସାଦ ହେଲା ଦଣ୍ଡରେ ଆହୂତି ଦେବା ଝୁଣାଧୂପ। ଗ୍ରାମ ପରିକ୍ରମା ସରିଲେ ବାନାମ୍ବରଙ୍କୁ ସାଥିରେ ନେଇ ଗାଁ'ର ଦେବଦେବୀ ପ୍ରାଙ୍ଗଣରେ ନିର୍ଜନରେ ବିଶ୍ରାମ ନିଅନ୍ତି।

<u>ଦଣ୍ଡ ପଣା :</u> ଦଣ୍ଡୁଆମାନେ ଦିନରେ ଗୋଟିଏ ଥର ପଣା ସାରନ୍ତି ରାତ୍ରର ନିକାଞ୍ଚନ ସମୟରେ। ଦଣ୍ଡୁଆଙ୍କର ସଂଖ୍ୟାକୁ ନେଇ ପିତଳ ହଣ୍ଡାରେ ଆବଶ୍ୟକ

ପରିମାଣର ପାଣି, ଚିନି ଅବା ନବାତ ଗୋଳା ସହିତ କଦଳୀ, ନଡ଼ିଆକୋରା, ଛେନା, ଅଙ୍ଗୁର, ସେଓ, କଞ୍ଚାବତୁରା ମୁଗଜାଇ ଘୋଳ ଫେଣ୍ଟାଯାଏ । ପାଣି ସହିତ ସବୁ ମିଶିଗଲେ ଅଦା, ଗୋଲମରିଚ ଗୁଣ୍ଡ ପକାଇ ଭଲଭାବରେ ଘାଣ୍ଟି ଦିଆଯାଏ । ଢୋଲିଆ ଢୋଲ ବଜାଉଥାଏ ଦଣ୍ଡୁଆମାନେ ନିଜର ଇଚ୍ଛାମୁତାବକ ପଣା ସାରନ୍ତି । ଦଣ୍ଡୁଆମାନଙ୍କର ଏକ ବକ୍ତ ହେଲା ପଣାସାରିବା । ଏ ରାତିରୁ ଆର ରାତି ଏଇ ଗୋଟିଏ ଥର ।

<u>ମାନସିକ ଦୁଆରେ ଦଣ୍ଡନାଚ ଆରମ୍ଭ :</u> ଦଣ୍ଡନାଚ ଆରମ୍ଭ ପୂର୍ବରୁ ଦଣ୍ଡଠାକୁର ମଞ୍ଚଥଳିର ଏକ ପାର୍ଶ୍ୱରେ ବିଜେ ହୁଅନ୍ତି । ହରିବୋଲ, ହୁଳହୁଳି, ଦଣ୍ଡରେ ଝୁଣାମାଡ଼ରେ ପ୍ରଜ୍ୱଳିତ ଅଗ୍ନିଶିଖାରେ ମଞ୍ଚଥଳି ଆଧାତ୍ମିକ ପରିବେଶ ସୃଷ୍ଟି ହୋଇଯାଏ । ଅଗ୍ନି ଦଣ୍ଡମୁଠାଧାରୀ ଦୁଇଜଣ ଦଣ୍ଡୁଆ ବାନାମ୍ବରଙ୍କର ଅଗ୍ନିଖେଳ ମଞ୍ଚରେ ପ୍ରଦର୍ଶନ କରନ୍ତି । ଅଗ୍ନିଦଣ୍ଡର ଚମତ୍କାର ଅଗ୍ନି କ୍ରୀଡ଼ାରେ ଅଗ୍ନିମୁଠାଧାରୀ ନିଜ ନିଜ ଶରୀରକୁ ଅଗ୍ନି ଭିତରେ ପହଁରାଇ ଦିଅନ୍ତି । ଠାକୁରଙ୍କର ମହିମା ନରହିଲେ ଏ କ୍ରୀଡ଼ା ସମ୍ଭବପର ନୁହେଁ । ତା'ପରେ ମା' କାଳୀ ବା ପରଭାଙ୍କର ମଞ୍ଚକୁ ଆଗମନ । ପରଭା ଢୋଲର ତାଳେ ତାଳେ ବେଶଘରୁ ନାଚି ନାଚି ଆସି ମୁଖ୍ୟ ମଞ୍ଚରେ ଦେବୀ କରାଳୀ ରୂପ ଧାରଣ କରି ଉନ୍ମତ୍ତ ହୋଇ ନାଚନ୍ତି ନାଚି ନାଚି ପୁନଶ୍ଚ ବେଶଘରୁ ଫେରନ୍ତି । ପରଭା ନାଚ ହେଉଛି ଦଣ୍ଡନାଚର ମୁଖ୍ୟ ନାଚ । ଏପରି ମଞ୍ଚକୁ ଶୁଦ୍ଧ କରିବା ହରଗୌରୀଙ୍କର ମଞ୍ଚକୁ ଆଗମନ କରିବାର ପୂର୍ବାଭାଷ । ଶିବପାର୍ବତୀ ବିଜେ ହେବେ ହାଡ଼ିହାଡ଼ିଆଣୀଙ୍କର ରାସ୍ତା ସଫେଇ ଦୃଶ୍ୟ । ଏଇଠୁ ଚଢ଼େୟା ସୁଆଙ୍ଗ ଗତିଶୀଳ । ରାତି ପାହି ଦିନ ୧୦/୧୧ଟା ହୋଇଯାଏ ।

<u>ଦଣ୍ଡ ଠାକୁରଙ୍କର ହାନ୍ଦୋଳା ଖେଳ ଓ ନିଆଁଗାଡ଼ ଚଲା :</u> ମେରୁ ସଂକ୍ରାନ୍ତି ଦଣ୍ଡଉତ୍ସବର ଶେଷଦିନ । ଏହିଦିନ ସନ୍ଧ୍ୟାରେ ଦଣ୍ଡଠାକୁର ହାନ୍ଦୋଳାଖେଳ ଖେଳନ୍ତି । ପାଞ୍ଚଫୁଟ ବା ସାତଫୁଟ ବ୍ୟବଧାନରେ ଝୋଟିଚିତାରେ ଚିତ୍ରିତ ଦୁଇଟି ସୁଢ଼ଳ ଶାଳ ଖମ୍ବ ପୋତାଯାଏ । ଦେଢ଼ ମଣିଷ ଅବା ଦୁଇ ମଣିଷ ଉଚ୍ଚରେ ଦୁଇ ଖମ୍ବର ଅଗ୍ରଭାଗରେ ଏକ ଶକ୍ତ ସୁଢ଼ଳ ଶାଳକାଠ ଆଡ଼ି ବନ୍ଧାଯାଏ । ଦୁଇ ସ୍ତମ୍ଭର ଠିକ୍ ମଧ୍ୟଭାଗରେ ଅଗ୍ନିକୁଣ୍ଡ ଖୋଳାଯାଇଥାଏ । ଅଗ୍ନିକୁଣ୍ଡର ପଶ୍ଚିମକୁ ଆୟତାକାର ଲମ୍ବର ନିଆଁଗାଡ଼ର ଗୋହୀ ଖୋଳା ଯାଇଥାଏ । ନିଆଁଗୋହୀ ବିଧି ଅନୁସାରେ ୭ହାତ-୧୩ହାତ-୧୭ହାତ-୨୧ହାତ ଦୈର୍ଘ୍ୟ ହୋଇପାରେ । ଅଗ୍ନିଗୋହୀରେ କୋଇଲା ଅଙ୍ଗାର ଭର୍ତ୍ତି କରାଯାଇଥାଏ । ଅଗ୍ନିଗୋହୀର ପଶ୍ଚିମକୁ ଲାଗି ଜଳକୁଣ୍ଡ ଖୋଳାଯାଇଥାଏ । ମେରୁ ସନ୍ଧ୍ୟାରେ ଦଣ୍ଡୁଆଙ୍କ ହାନ୍ଦୋଳା ଖେଳ ଉତ୍ସବ । ଦୁଇ ସ୍ତମ୍ଭର ଅଗ୍ରଭାଗକୁ ସଂଯୋଗ କରୁଥିବା ଆଡ଼ି କାଠର ଠିକ୍ ମଧ୍ୟଭାଗରେ ଶକ୍ତରଜ୍ଜୁର ଫାଶ ଝୁଲିଥାଏ । ପ୍ରଥମେ ବାନାମ୍ବରଙ୍କର ପ୍ରତୀକ ବେତଦଣ୍ଡର ଗୋଡ଼ ପାର୍ଶ୍ୱ ରଜ୍ଜୁ

ଫାଶରେ ବନ୍ଧାଯାଇ ଠାକୁରଙ୍କୁ ଅଗ୍ନିକୁଣ୍ଡ ଉପରେ ଝୁଲାଯାଏ। ଠାକୁର ଝୁଲିବା ସମୟରେ ଝୁଣାଧୂପ ଏପରି ମରାଯାଏ ଯେ ଆଡ଼ିବନ୍ଧର ଊର୍ଦ୍ଧ୍ୱକୁ ଅଗ୍ନି ଉଠିଯାଏ। ବେତ ଠାକୁରଙ୍କର କିଛି ଅଘଟଣ ଘଟେ ନାହିଁ। ତା'ପରେ ଯେତେ ଦଣ୍ଡୁଆ ଥିବେ ସମସ୍ତେ ରଜୁଫାଶରେ ଗୋଡ଼କୁ ବାନ୍ଧି ଅଗ୍ନିକୁଣ୍ଡକୁ ମୁଣ୍ଡ ଝୁଲାଇ ଝୁଲନ୍ତି। ଦେଖିବାକୁ ବିପଦଜନକ ଏ ଦୃଶ୍ୟ କିନ୍ତୁ ଦଣ୍ଡୁଆଙ୍କର କିଛି ହୁଏ ନାହିଁ। ହାନ୍ଦୋଳା ପ୍ରାଗଣ ହରିବୋଲ, ହୁଳହୁଳି ଶବ୍ଦରେ ଉଛୁଳି ପଡୁଥାଏ। ହାନ୍ଦୋଳା ଖେଳ ସରିଲେ ଦଣ୍ଡଭକତାମାନେ ରାତ୍ରର ନିର୍ଜନ ସ୍ଥାନରେ ପଣାସାରନ୍ତି। ତା'ପରେ କାମନା ଘର ସାମ୍ନାରେ ଚଢ଼େୟା ସୁଆଁଗ ଆରମ୍ଭ ହୁଏ। ଏହି ସମୟରେ ସମସ୍ତଙ୍କ ଅଜାଣତରେ ଦଣ୍ଡ ଛପାଯାଏ।

<u>ଦଣ୍ଡ ଠାକୁରଙ୍କ ନିଆଁଗାଡ଼ ଚଲା :</u> ହାନ୍ଦୋଳ ଖେଳ ସମୟର ଅଗ୍ନିକୁଣ୍ଡରୁ ଅଗ୍ନି ଅପସାରଣ କରାଯାଇ ସେଥିରେ କ୍ଷୀରପୂର୍ଣ୍ଣ କରାଯାଏ। ତା'ର ପଶ୍ଚିମକୁ ଲମ୍ବିଥାଏ ନିଆଁଗାଡ଼ର ଦୀର୍ଘପଥ। ତା'ପରେ ପାଣିକୁଣ୍ଡ। ପ୍ରଥମେ କୋଇଲାରେ ନିଆଁ ଧରାଇ କୁଲା ଆହୁଲାରେ କୋଇଲାକୁ ଡହ ଡହ ରଡ଼ କରାଯାଏ। ସେହି ନିଆଁ ରଡ଼ରେ ଠାକୁରଙ୍କ ସହ ଦଣ୍ଡ ଭକତାଙ୍କ ନିଅଁଗାଡ଼ ଚଲା। ପାଟଭକତା ପ୍ରଥମେ ଦଣ୍ଡ ଠାକୁରକୁ ଧରି ଏ ଅଗ୍ନିପଥକୁ ଅତିକ୍ରମ କରେ। ତା'ପରେ ଜଣକ ପରେ ଜଣେ କ୍ଷୀର କୁଣ୍ଡରେ ପାଦ ବୁଡ଼ାଇ ନିଆଁଗାଡ଼ ଅତିକ୍ରମୀ ପାଣିକୁଣ୍ଡରେ ଗୋଡ଼ ବୁଡ଼ାଇ ଚାଲିଯାଆନ୍ତି। ଏ ହେଉଛନ୍ତି ବିଶ୍ୱାସର କଥା ମହାଦେବଙ୍କର ମହିମା। ଦଣ୍ଡଯାତ୍ରା ଡହ ଡହ ଗ୍ରୀଷ୍ମ ତାତିର ପର୍ବ। ନୟାଗଡ଼ ଜିଲ୍ଲାର ଗ୍ରାମେ ଗ୍ରାମେ ଦଣ୍ଡଯାତ୍ରା ଉତ୍ସବ।

<u>ଦଣ୍ଡଯାତ୍ରା ହେଉଥିବା କେତେକ ଗାଁ :</u> ନୟାଗଡ଼ର କୁରାଳ, ସୁନାମୁହିଁ, କୋମଣ୍ଡ, ପନ୍ତିଖାଡ଼ି, ଦେଓଗାଁ, ପାଣ୍ଡିରିପଡ଼ା, ରଙ୍ଗଣୀପାଟଣା, ମଶାବାରୀ, ସାକିରି, ମରେଇସାହି, ଓଡ଼ଗାଁ, ନନ୍ଦିଘୋର, ଶରଧାପୁର, ପଞ୍ଚୁଡ଼ାମାନପୁର, ହରିହରପୁର, ଶରଣକୁଳ, କଟରାଝରି, ଶିଖରପୁର, ପାଣିଭଣ୍ଡାର, ଗୋଡ଼ିପଡ଼ା, ମଧ୍ୟଖଣ୍ଡ, କୁଟୁଣୀ, ଡିମିସର, ହରିପୁର, ନାଗମୁଣ୍ଡୁକି, ମାନପୁର, ଗୋତିସାହି, କଲ୍ୟାଣପୁର, ସୋଲପଟା, ପୁଆଣିଆ, ଦୁର୍ଗାପ୍ରସାଦ, ପ୍ରତାପପ୍ରସାଦ, ଲାଠିପଡ଼ା, ଇଟାମାଟି, ପଣ୍ଡୁସର, ବାଉଁଶିଆପଡ଼ା, ବାଲୁଗାଁ, ମାଳିସାହି, ଶରଧାପୁର, ଜୟପୁର

ରଣପୁର ଅଞ୍ଚଳରେ ଦର୍ପନାରାୟଣପୁର, ବାଉଁଶଗଡ଼, ଖତିଆ, କେନ୍ଦୁଢିପି, ରଣପୁର,ଲୋଧାଚୁଆ, ମଧ୍ୟଖଣ୍ଡ, ଗୋପାଳପୁର, ସୁନାଖଳା, ସୁରୁକାବାଡ଼ି, କାସେନ୍ଦା, ରମ୍ଭାବେଲି, ବିନୋଦପଡ଼ା, ନରେନ୍ଦ୍ରପୁର, ଦଧିପାଟଣା, ସିନ୍ଦୁରିଆ, ମଧୁପୁର, ଯଶୋଦାପୁର, ନନ୍ଦପୁର, କଣ୍ଡାରସିଂ।

ଖଣ୍ଡପଡ଼ା ଶିଖରପୁର, ରାଣୀପଡ଼ା, ବେତଖୋଲି, ଲକ୍ଷ୍ମୀପ୍ରସାଦ, ଖଣ୍ଡପଡ଼ା,

ବାହାଡ଼ା, ବାଇଗୁଣିଆ, ଖୁଣ୍ଟପଡ଼ା, ବନମାଳିପୁର, ଚକ୍ରଧର ପ୍ରସାଦ, ଫତେଗଡ଼, ଭାପୁର, ବିଜିପୁର, ମାଧପୁର, କଣ୍ଟିଲୋ, ବାଣପୁର, ଖଳିସାହି, ସିଧାମୂଳା, ବେଣୀଗାଡ଼ିଆ, ଘଣାସାଳିଆ, କୁମ୍ଭାରପଡ଼ା, ଢୋଲମରା, ଜାକେଲା, କୋଶକା, ନୂଆପଡ଼ା।

ଦଶପଲ୍ଲା, ଖଣ୍ଡପଡ଼ା, ମଧ୍ୟଖଣ୍ଡ, ଗଣିଆ, ବେଲପଡ଼ା, ଓ୍ବାଲିପୁର, ଡଙ୍କାରୀସାହି, ଖମାରିସାହି, ନୂଆଗାଁ, ଜିନ୍ଦାଭୂଇଁ, ଡିହଗାଁ, ମହିପୁର, ମାଳିସର, ବାହାଡ଼ାଝୋଲା।

ଦ୍ରାବିଡ଼ ଜନଜାତିର ଏକ ଘରୋଇ କ୍ଷୁଦ୍ର କାହାଣୀକୁ ନେଇ ଦଣ୍ଡ ସୁଆଁଗ ବିକଶିତ। ଦଣ୍ଡ ଉତ୍ସବ ପରମ୍ପରା ସମଗ୍ର ନୟାଗଡ଼ ଜିଲ୍ଲାକୁ ଆବୋରି ରହିଛି। ଏହାର ନାଟ୍ୟ ଶୈଳୀ, ଭାଷା, ସଂଳାପ, ଢଗଢ଼ମାଳି, ବଚନିକାକୁ ଓ ଯେଉଁ ପରିବେଶକୁ ନେଇ ସୁଆଁଗ ପ୍ରଦର୍ଶିତ ଏଥିରୁ ଜଣାପଡ଼ିଯାଏ ଦଣ୍ଡଯାତ୍ରା ନୟାଗଡ଼ ଅଞ୍ଚଳର କେତେ ପୁରୁଣା କାଳରୁ ପ୍ରଚଳିତ ହୋଇ ଆସୁଅଛି।

<u>ଦଣ୍ଡନାଚର ବ୍ୟବହୃତ ଢଗ :</u>

(୧)କୁରେଇ ଫୁଲ
ବାସ କାଶ ନାହିଁ ଟଙ୍କେଇ ମୂଳ

(୨) ଘରେ ନାହିଁ ତେଲଲୁଣ
ଦାଣ୍ଡରେ ଦେଖା ଘତରପଣ
ସଭାରେ ବଖାଣେ ତିନି ତୁଉଣ।

(୩) କୋଳଥ ବୋତି
କାଳୀ ଗୋଡ଼ରେ ହଳଦୀ ବୋଳିଲେ
କଉଡ଼ି କ୍ଷତି।

(୪) ଅଣ ପୋଇଲା
ବାପ ନାହିଁ ପୁଅ କାହୁଁ ଅଇଲା।

(୫) ଆରେ ଚଇତା
ଦି ମାଈପର ଘଇତା
ତତଲା ଖାଇବୁ କି ପଖାଳ ଖାଇବୁ
ଦିନ ଥାଉ ଥାଉ କହିଥା।

(୬) ଆଲୋ ମୁକୁତି
ଆର ପତାକେ ତୁ ହେବୁ ପୋଖତି।

(୭) ତାଇକି ଚିକ୍‌ଣ ଗୋରୀ
ଚମ୍ପାଫୁଲଠଉଁ ବଳି ସୁନ୍ଦରୀ
ଦେଖି ପେଟ ଯାଏ ପୂରି।

(୮) କଳିକତା କଲି ଚୂନ
ପରପୁଅଠାରେ ଶରଧା କଲି
ଝୁରି ଝୁରି ଗଲା ଦିନ।
(୯) ଅଡ଼ି ବଡ଼ ସୋଦର
ତିନିଦିନିଆ ଆଦର।

ଦଣ୍ଡର ମୁଖ୍ୟ ସୁଆଁଗ ଚଢ଼େୟା ସୁଆଁଗ। ଚଢ଼େୟା ସୁଆଁଗ ସହିତ କେତେକ ପାର୍ଶ୍ୱ ସୁଆଁଗ।

<u>ହାଡ଼ି ହାଡ଼ିଆଣୀ କଳି :</u>

ହାଡ଼ି - ହାଡ଼ିଆଣୀ କି ଚାହିଁ
ହାଡ଼ି ଯେ କହଇ
କହ କେଣେ ଯାଇଥିଲୁ
ମୋର ଘରଦ୍ୱାର କରି ନାରଖାର
ମୋର ସକଳ ସାରିଲୁ
ତୋର ଭୟ ନାହିଁ କି
ଦାଣ୍ଡ ହାଟେ ଲୋ ଦାଣ୍ଡ ହାଟେ
ଦାଣ୍ଡ ହାଟେ ତୁ ବୁଲୁ କାହିଁକି।

ହାଡ଼ିଆଣୀ- ହାଡ଼ିବାଣୀ ଶୁଣି
କହେ ହାଡ଼ିଆଣୀ
ଯାଇଥିଲି ବାପ ଘର
କାଣ୍ଡୁ କାଣ୍ଡୁଆ ବାପ
ବୃଥା କଥା ହେ ବୃଥା କଥା
ବୃଥା କଥାରେ କାହିଁକି କୋପ
କାଣ୍ଡୁକାଣ୍ଡୁଆ ବାପ।

ହାଡ଼ି-ଛଅଟା ମାସକୁ ନଅଟା ପଇସା
ଦେଇକରି ଯାଇଥିଲି
ବସିକରି ମଉଜ କରି ଖାଇବୁ
ଯାହା ବଳିବ ବୋଇଲି
ସବୁ କୁରୁଜା ଦେବୁ
ଧନୁ ମାସେ ଲୋ ଧନୁମାସେ
ଧନୁମାସେ ଅସୁଲ କରିବୁ

ହାଡ଼ିଆଣୀ- ଛଅଟା ମାସକୁ ନଅଟା ପଇସା

ଦେଇକରି ଯାଇଥିଲୁ
ଛଅଟା ପିଲାଙ୍କୁ ପାଳନ୍ତି କେମନ୍ତେ
ମନେ ଟିକେ ନ ହେଜିଲୁ
କାଣ୍ଡୁ କାଣ୍ଡୁଆ ବାପ
ମୋରେ ନ ବୁଝି କରୁଛୁ କୋପ ।

ହାଡ଼ି–ଆଲୋ ଲମ୍ବ ସେଣା
ମାଣ୍ଡିଆ ଘୋରଣା
ପିଲାଖାଇ କାଳିକାନି
ଯେତକ ଜନ୍ମିଲୁ ସେତକ ଖାଇଲୁ
ବୁଲିଲୁ ବାର ବିଟପୀ
ତୋତେ ରଖିବି ନାହିଁ
ତୋର ବାପଲୋ ତୋର ଭାଇ
ତୋର ଭାଇକୁ କହ ପଠାଇ (ଘୋଷ)

ହାଡ଼ିଆଣୀ– ହଇରେ ଛୋକାର
ଦାନ୍ତରେ ତୋହର
ଦେବି ରକତ ଚିପୁଡ଼ି
ପିଲାଖାଇ ବୋଲି
ମୋତେ ତୁ କହିଲୁ
ଯାଇଥିଲୁ କେଣେ ଛାଡ଼ି
ବାଡ଼ିପଡ଼ା ତତେ ଖାଇବି
ତୋର ଭାଇକି ଦୁତୀୟ ହେବି
ବାଡ଼ିପଡ଼ା ତତେ ଖାଇବି ।

ହାଡ଼ି–ହାଡ଼ି ବୋଲେ ଗିର
ସବୁ ଦୋଷ ମୋର
ରାସ୍ତାକୁ କର ସଫାଇ
ନଗର ଭିତରେ ନାଗରା ଦେଇଣ
ନିଜ ସଦନେ ଚଳଇ
ଯିବା ମାମୁଘରକୁ
କହେ ଅଗାଧୁ କହେ ଅଗାଧୁ
ଝାମୁ ଯାତ୍ରାକୁ । (ଘୋଷା)

**ଯୋଗୀ ଯୋଗୀଆଣୀ ସୁଆଁଗ :**

ଯୋଗୀ- ସାଧୁଭକ୍ତ ପଣ୍ଡିତେ ଭିକ୍ଷା ଆଣିଦିଅ ମୋତେ
ସଂଯୋଗୀ ଭିକ୍ଷା ଗ୍ରହଣ
କରିଛୁ ମୁକ୍ତି ନିମନ୍ତେ (ଘୋଷା)
କୃଷ୍ଣ ଆମ୍ଭର ଧନ
କୃଷ୍ଣ ଆମ୍ଭ ଜୀବନ
କୃଷ୍ଣ ନାମ ମାଳାକରି
ଭ୍ରମଣ ସାରା ଜଗତେ (ଘୋଷା)
ଅଛ କେ ଭକ୍ତଜନ
ବାଞ୍ଛା କରାଅ ପୂର୍ଣ୍ଣ
ହେଲେ ମାତ୍ର ଥାଳେ ଅନ୍ନ
ଆଣିଦିଅ ତୁରିତେ (ଘୋଷା)
କପଟିଆ ଲମ୍ପଟି
ନନେଇ ଆମ୍ଭେ ଜତି
ଧର୍ମ ପଥେ ଆମ୍ଭ ମତି
ରଘୁନାଥ କହେ ଚିତେ।

ଯୋଗୀଆଣୀ - ମନ୍ଦ ବିହି କରମେ ଯାହାଥିଲା ଲିହିରେ
ଯୁବାକାଳେ କାନ୍ତ ଛାଡ଼ିଗଲେ କାହିଁରେ
ଯୌବନ କାଳେ ଯୁବତୀ ପାଶେ ଯା'ର ନାହିଁ ପତି
କି ହେବ ସଂସାରେ ନାରୀଜନ୍ମ ପାଇରେ
ପ୍ରପଞ୍ଚ କନ୍ଦର୍ପ ଦାଉ କେତେ ବା ସହିବି ଆଉ
ଭେଟାଇ ଦେବ କେ ରଘୁନାଥ କହେରେ । (ଘୋଷା)
ଯୋଗୀଆଣୀ - ଆଷାଢ଼ରେ ମେଘ ରଡ଼ି ଛାଡ଼ଇ
ଗଛରୁ ପତର ଝଡ଼ି ପଡ଼ଇ
ଗଡ଼ିଆରେ ଫୁଟେ କଇଁ
ଭୁଲତା ଡିଆଁଇଁ ରସିକ ନାଗର
କରିଦେଲୁ ମୋତେ ବାଇ।
ଯୋଗୀ - ଶ୍ରାବଣ ମାସରେ ଝଡ଼ି ବରଷା
ଲାଗିଥିଲା ଧାନ ରୁଆ ବେଉସା
ପଡ଼ିଥିଲା ଇନ୍ଦ୍ରଧନୁ

ପୋଖରୀ ତୁଠରେ ଭାବ ଦିଆନିଆ
ପାଶୋରି ଦେଲୁକି ମନୁ ।

**ଶବରର ବିଦେଶ ଯାତ୍ରା ଗୀତ :**

ଶବର - କାଲି ଯିବି ପରବାସେ କରିନାହିଁ ପୁଣ୍ୟ ଥିବାକୁ ପାଶେ
କେଡ଼େ ମଧୁର ଏ ମଧୁ ମାସେ ଲୋ, କେଳି କଳା ଲାଳସୀ
କେହି ବଞ୍ଚିବ ଏ ଚନ୍ଦ ନିଶିଲୋ ।୧।
ଶବରୁଣୀ- ଖଳକଥା ଶୁଣି କାହିଁ ଖେଦ ସାଗରେ ଯାଉଛ ପକାଇ
କ୍ଷୀରେ ଦେଉଛ ଖାର ମିଶାଇ ହେ ଖଣ୍ଡ ତପସ୍ୟା ମୋର
ଖାଇ ମରିବି ନିଶ୍ଚେ ଜହର ହେ।୨।
ଶବର- ଗତ ସ୍ନେହ ମାନ ଭାବି ଗଲେ କି ସତେ ମୁଁ ରହିପାରିବି
ଗୋରୀ ଚରିଦିନରେ ଫେରିବି ଲୋ ଗଜରାଜ ଗମନା
ଗଣ୍ଠିଧନ ତୁ ମୋହର ସିନା ଲୋ।୩।
ଶବରୀ- ଘଡ଼ିଏ ହେଲେ ଅନ୍ତର ଘନ ଘନ ବିନ୍ଧେ କୁସୁମ ଶର
ଘାଣ୍ଟି ହେଉଥାଏ ହୃଦ ମୋର ହେ ଘରେ ଦେଖି ଏକାକି
ଘାତ ନକରିବ ମଦନ କି ହେ ।୪।
ଶବର - ନାହିଁ ଆୟତ ମୋହର ନ ଗଲେ ନିଶ୍ଚେ ହେବି ହରବର
ନିନ୍ଦା କଥାକୁ ଲାଗୁଛି ଡର ଲୋ ନବନବୀନା ବର
ନାହିଁ ନକର ଧରୁଛି କର ଲୋ ।୫।
ଶବରୀ- ଚତୁରୀ କହେ ବାଣୀକି ଚିତ୍ତ ତୁମର ଥିଲି ଜାଣିକି
ଚେତାଇଲ ସେ କଥା ଏଣିକି ହେ ଚିତ୍ତ ମୋହନ ମଣି
ଚିନ୍ତା ଦେଇଯାଉଅଛ ଆଣି ହେ।୬।
ଶବର- ଛଇଳି ନ ଭାଳକିଛି ଛୁରି ପରି ତୋର କଥା ଲାଗୁଛି
ଛାର ଜୀବନ ଯାହା ରହିଛି ଲୋ ଛଳି ନ କହ ଧନ
ଛାଡ଼ି ଯିବାକୁ ନବଳେ ମନ ଲୋ।୭।
ଶବରୀ- ଜାଣିଥାଅ ଜୀବଧନ ଜହର ଖାଇବି ବଳିଲେ ଦିନ
ଜାଳି ମରିବି ମୁଁ ହୁତାସନ ହେ ଯେବେ ନଇଲେ ଫେରି
ଜୀବନ କି ରଖିବି ମୋହରି ହେ।୮।
ଶବର- ଝୁଲ ଝୁଣ୍ଟିଆ ପାଦରେ ଝୁଲି ଝୁଲି ଝୁମୁଝୁମୁ ନାଦରେ
ଝଳି ହାସି ଆସୁ କେଳିପୁରେ ଲୋ ଝୁରି ଝୁରି ମୁଁ ତାହା
ଝଡ଼ି ନ ଯିବିକି ହେମ ଦେହା।୯।
ଶବରୀ- ନ ରଖ ବଚନ ମୋର ନୋହିବାକୁ ହୃଦୁ ହୃଦ ଅନ୍ତର

ନଦୀ ପରବତ ହେବ ପାର ହେ ନୂଆ ପୀରତି ଛାଡ଼ି
ନ ଯା ନ ଯା ପ୍ରାଣବନ୍ଧୁ ଏଡ଼ି ହେ।୧୦।
ଶବର - ଟେକ ସ୍ତନା ତୋର ବାଣୀ ଟଳି ଗିରି ସହିତ ଧରଣୀ
ଟାଣ ପାଷାଣ ହୋଇବ ପାଣି ଲୋ ଟେକି ବଦନ ତୋର
ଟହ ଟହ ହସି କହ ଗୀର ଲୋ।୧୧।
ଶବରୀ- ଠଣ ସୁନ୍ଦର ହେ ଶୁଣ ଠକପଣ କଲେ ଠାକୁର ରାଣ
ଠଉରିବ କି ଗଣକର ଜନ ହେ ଠକି ରହିବ ନାହିଁ
ଠିକେ ଦ୍ୱିଜ ହରେକୃଷ୍ଣ କହି ହେ।୧୨।

<u>ବାଉଁଶରାଣୀ :</u> ନୟାଗଡ଼ ଜିଲ୍ଲା କୁରାଳର ବାଉଁଶରାଣୀ ଖେଳ ଦିବସର ମଧ୍ୟାହ୍ନ କାଳରେ ମୁକ୍ତ ଆକାଶ ମଞ୍ଚରେ ବେଶ୍ ନାଟକୀୟତା ପ୍ରଦର୍ଶନ କରିଥାଏ। ଗ୍ରାମର ମଧ୍ୟଭାଗରେ କେଳା ସଂପ୍ରଦାୟର ଏକ ଗୋଷ୍ଠୀ ଛୋଟ ଛୋଟ ପୁଅ ଝିଅ ଏବଂ ପୂର୍ଣ୍ଣାଙ୍ଗ ବୟସ ତରୁଣୀମାନଙ୍କୁ ନେଇ ଦର୍ଶକ ମୋହିତ ବେଶ ପରିପାଟିରେ ବାଉଁଶରାଣୀ ଖେଳ ପ୍ରଦର୍ଶିତ କରନ୍ତି। ଏହାର ସମଗ୍ର ପୃଷ୍ଠଭୂମି ନାଟକୀୟକଳା ଆଧାରିତ। ୩୫ଫୁଟର ଏକ ଦୀର୍ଘ ବାଉଁଶକୁ ଚତୁଃପାର୍ଶ୍ୱକୁ ଶକ୍ତ ଟଣକା ଦଉଡ଼ିରେ ସ୍ଥିର ସୁଦୃଢ଼ କରାଇ ଠିଆ କରାଯାଇଥାଏ। ଏହି ବାଉଁଶର ମୂଳ ପାର୍ଶ୍ୱରୁ ତିନି ମଣିଷ ଉଚ୍ଚତା ଉପରେ ଏକ ଶକ୍ତ ଆଡ଼ିବାଉଁଶ ବନ୍ଧାହୁଏ। ଏହି ଆଡ଼ି ବାଉଁଶର ଉଭୟ ପାର୍ଶ୍ୱରେ ଏକପାର୍ଶ୍ୱରେ ଦୋଳି ଅନ୍ୟପାର୍ଶ୍ୱରେ ତଳମୁହାଁ ହୋଇ ଏକ ବାଉଁଶ ଝୁଲାଯାଏ। ମଞ୍ଚର ଭୂମି ପୃଷ୍ଠରେ କେଳା ଢୋଲକ ବଜାଇ ବାଜାର ତାଳରେ କେଲୁଣୀ ମଧୁର ଲଳିତ କଣ୍ଠରେ ଗୀତ ଗାଇ ଦର୍ଶକଙ୍କୁ ସମାବେଶ କରାଏ।

ଢ଼ୋଲକ ତାଳରେ କେଳା ପାଇକ ଖେଳରୁ ବାଉଁଶରାଣୀ ଖେଳ ଆରମ୍ଭ ହୁଏ। ଛୋଟ ଛୋଟ ପୁଅଝିଅ ଆଗୁଲି ପଛୁଲି ଶୂନମାରିବା ଶୂନ୍ୟରେ ଘୂରି ଶୂନ ମାରିବା ଖେଳ ଦେଖାନ୍ତି। ମଝିରେ ମଝିରେ କେଲୁଣୀର କୋଇଲିକଣ୍ଠର ଗୀତ ବିଦଗ୍ଧ ଦର୍ଶକଙ୍କୁ ବଶୀଭୂତ କରାଏ। ବାଉଁଶରାଣୀର ଦ୍ୱିତୀୟ ପର୍ଯ୍ୟାୟ ହେଲା ଦୋଳି ଖେଳ। ମୁଖ୍ୟ ବାଉଁଶର ଗଣ୍ଡିରେ ଆଡ଼ିବାଉଁଶରେ ଝୁଲିଥିବା ଦୋଳି ଏବଂ ବାଉଁଶ ଦୋଳିରେ ସାଜବେଶରେ ଦୁଇଟି ଝିଅ ମଧୁର ସଂଗୀତ ଗାନକରି ସଂଗୀତର ଅନ୍ତରାରେ ଚମତ୍କାର ଦୋଳିଖେଳ ପ୍ରଦର୍ଶନ କରିଥାନ୍ତି।

ତୃତୀୟ ପର୍ଯ୍ୟାୟରେ ବାଉଁଶରାଣୀ ମୁଖ୍ୟ ବାଉଁଶର ଶୀର୍ଷଭାଗକୁ ଉଠିଯାଏ। ଦର୍ଶକଙ୍କର ଚକ୍ଷୁ ଶୂନ୍ୟକୁ ଟେକି ହୋଇଯାଏ। ଏ ହେଉଛି ବାଉଁଶରାଣୀ ମଞ୍ଚର ଶେଷ ଦୃଶ୍ୟ। ଏତେ ଶୂନ୍ୟରେ ବାଉଁଶରାଣୀର ଲଳିତ, କୋମଳ, ମଧୁର ଗୀତଗାନରେ ସମାବେଶ ଦର୍ଶକ ସ୍ତବ୍ଧ। ଦର୍ଶକ ଶୃଙ୍ଖଳିତ ନୀରବ ହୋଇଗଲା

ପରେ ବାଉଁଶରାଣୀ ବାଉଁଶର ଶୀର୍ଷରେ ଥିବା ଚକ୍ରିକୁ ତା'ର ନାଭିଦେଶରେ ଚାପି ନିଜକୁ ଘୂରାଏ ଶେଷରେ ହସ୍ତପଦ ଖୋଲିଦେଇ ଚକ୍ରପ୍ରାୟକ ଶୂନ୍ୟରେ ଘୂରେ। ବଡ଼ ଚିତ୍ତାକର୍ଷକ ଏ ଦୃଶ୍ୟ। ଘୂରି ଘୂରି ଧୀରେ ଧୀରେ ସ୍ଥିର ହୋଇଯାଏ। ଏତିକିରେ ବାଉଁଶରାଣୀ ମଞ୍ଚର ସମାପନ। ବାଉଁଶରାଣୀର ଏ ଦୁଃସାହସିକ ଖେଳ ସର୍କସ ଖେଳଠାରୁ କୌଣସି ଗୁଣରେ ଫରକ ପଡ଼େନି।

ବାଉଁଶରାଣୀ ଖେଳ ନୟାଗଡ଼ ଜିଲ୍ଲାର ଏକ ପ୍ରାଚୀନ ମୁକ୍ତ ଆକାଶ ତଳର ମଞ୍ଚକଳା। ନୟାଗଡ଼ର କୁରାଳ, ନାଥିଆପଲ୍ଲୀ, ଖଣ୍ଡପଡ଼ା-ଗୁଣ୍ଡୁଣୀରେ କେଳାନାଚର ଉଦ୍ଭବ ସ୍ଥଳ। କୁରାଳର ବାଉଁଶରାଣୀ ଖେଳ ରାଜ୍ୟ, ଦେଶ, ବିଦେଶରେ ପ୍ରସାରିତ। ଯଥା ଫ୍ରାନ୍‌ସ, ରିୟୁନିୟନ, ମରିସସ୍, ପ୍ୟାରିସ, ହଲାଣ୍ଡ।

<u>ରାସ ସଂଗୀତ :</u> ରାସ କୃଷ୍ଣରସେ ବିନୋଦନ ନୃତ୍ୟ ସଂଗୀତ। ଏଥିରେ ରାଧାକୃଷ୍ଣଙ୍କର ଅଲୌକିକ ପ୍ରେମଭାବ ପ୍ରକଟିତ। ଅତିବଡ଼ି ଜଗନ୍ନାଥ ଦାଶ ଭାଗବତରେ ଗାୟନ କରିଛନ୍ତି- "ଷୋଳ ସହସ୍ର ଗୋପନାରୀ। ମୋତେ ବରିଲେ ତପ କରି। ମୁଁ ତାଙ୍କ ପୂରାଇବି ଆଶ / ସେ ମୋର ଭକତ ବିଶ୍ୱାସ।" ଭକ୍ତମାନଙ୍କର ମନର ଭାବ ପୂର୍ଣ୍ଣକରିବା ପାଇଁ ପରଂବ୍ରହ୍ମ ଶ୍ରୀକୃଷ୍ଣ ରାସ ପ୍ରେମ ସୃଷ୍ଟି କରିଥିଲେ- "ମାୟାର ଯୋଗବଳେ ହରି। ଷୋଳ ସହସ୍ର ରୂପ ଧରି / ହୋଇଲେ ବେନି ବେନି ଜନ / ଗୋପୀ ରମିଲେ ଭଗବାନ।" – ଏହାହିଁ ରାସର ଭାବ ରସ। ଗୋପୀ ଆଉ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଏ ମହାମିଳନରେ ଅଲୌକିକ ଭାବ ସଂରଚନାରେ ପାର୍ଥିବତା ନଥିଲା। ଶରତ ଓ ବସନ୍ତ ଋତୁର ପୂର୍ଣ୍ଣମୀ ଚନ୍ଦର ଚନ୍ଦ୍ରିକା ତଳେ ରାସବିନୋଦରେ ଭକ୍ତ ଭଗବାନ ଏ ଅପୂର୍ବ ରହସ୍ୟ ମଧ୍ୟରେ ଏକତ୍ର ଏକ ହୋଇଯା'ନ୍ତି।

<u>ବୈଷ୍ଣବପୀଠ କଣ୍ଟିଲୋ ନୀଳମାଧବ ପୀଠରେ ରାସ :</u> କଣ୍ଟିଲୋ ସ୍ଥିତି ମହାନଦୀର ଦକ୍ଷିଣ ଦାଡ଼ରେ ଅଶ୍ୱଖୁରାକୃତି ଭୂମି ଉପରେ ବ୍ରହ୍ମାଦ୍ରୀ ପର୍ବତ ଚୂଡ଼ାରେ. ବିଶ୍ୱାବସୁ ଶବର ରାଜା ସେବିତ ନୀଳମାଧବ ଜଗନ୍ନାଥ ସଂସ୍କୃତିର ଆଦି ଦେବତା। ମନ୍ଦିର ବେଢ଼ା ମଧ୍ୟରେ ହେଉ ଅବା ସିଂହଦ୍ୱାରରେ ହେଉ ଖୋଲା ମଞ୍ଚରେ ରାଧାକୃଷ୍ଣଙ୍କର ଗୋପଲୀଳା ଶରତ ରାସ ବସନ୍ତ ରାସ ପରିବେଷଣ ହୁଏ। ରାସନୃତ୍ୟରେ, ଶ୍ରୀକୃଷ୍ଣ ରାଧିକା ଅଷ୍ଟସଖୀ ଗୋପାଳ ବାଳକ ସାଥୀ ଗହଣରେ ଶ୍ରୀକୃଷ୍ଣଙ୍କର ଗୋପଲୀଳା ରହସ୍ୟକୁ ଆଧାର କରି ସଂଗୀତ ରସୋତ୍ତୀର୍ଣ୍ଣ ହୋଇଉଠେ। ରାସ ଅଭିନୟରେ ଏଗାର/ବାର ବୟସ ମଧ୍ୟରେ ବାଳକମାନେ ବିଭିନ୍ନ ଚରିତ୍ର ଅଭିନୟରେ ଅବତୀର୍ଣ୍ଣ ହୋଇ ରାସସଂଗୀତ ନୃତ୍ୟ କରନ୍ତି। ଠାକୁରଙ୍କ ପାରମ୍ପରିକ ନିୟମ ମାନି ରାସ ଚରିତ୍ରରେ ଅଭିନୟ କରିବାକୁ ହୁଏ। ଏହି ନିୟମ ପାଳନ କାଷ୍ଠାକୁ 'ନତବନ୍ତ୍ର' କୁହାଯାଏ। ରାସ ଅଭିନୟ କରୁଥିବା ବାଳକେ, ରାସଗୁରୁ, ରାସ ବାଦ୍ୟଯନ୍ତ୍ର ବଜାଉଥିବା ବାଦ୍ୟକାରମାନେ ମଠ କି ମନ୍ଦିରରେ

ପ୍ରସାଦ ସେବନ କରି କାୟା ପବିତ୍ର ରଖନ୍ତି । ଭଗବାନଙ୍କର ରାସଲୀଳା ଦେଖିବା ପାଇଁ ଦର୍ଶକଙ୍କର ବହୁଳ ସମାବେଶ ହୁଏ । କଣ୍ଟିଲୋ ନିକଟସ୍ଥ ପଦ୍ମାବତୀ ଗ୍ରାମରେ ଗୋପୀନାଥ ମନ୍ଦିର ପୀଠରେ ଏତାଦୃଶ ରାସସଙ୍ଗୀତ ନୃତ୍ୟ ପରିବେଷିତ ହୁଏ ।

<u>ଅବସରପ୍ରାପ୍ତ ଶିକ୍ଷୟିତ୍ରୀ ସବିତା ମହାନ୍ତିଙ୍କର ରାସ ସଂଗୀତର ଉପସ୍ଥାପନା :</u> ନୟାଗଡ଼ ଆରଣ୍ୟକ ପତ୍ରିକାରେ 'ନୟାଗଡ଼ର ସଂଗୀତ ଚର୍ଚ୍ଚା' ଶୀର୍ଷକ ପ୍ରବନ୍ଧରେ ଅବସରପ୍ରାପ୍ତ ଶିକ୍ଷୟିତ୍ରୀ ସବିତା ମହାନ୍ତି ଉପସ୍ଥାପନା କରିଛନ୍ତି- 'ରଣପୁର ରାଜା ବ୍ରଜସୁନ୍ଦର ନରେନ୍ଦ୍ର (୧୮୨୧ ମସିହାରୁ ୧୮୪୨)ଙ୍କ କନିଷ୍ଠ ପୁତ୍ର କବି ରାମଚନ୍ଦ୍ର ଭୁଙ୍ଗବର ରାୟ କାଳୀୟ ଦଳନ, ବିରହମାନ, ଦୁର୍ଜୟମାନ, ବାସବସଜ୍ଜା ନାମକ ଚାରିଗୋଟି ରାସଗ୍ରନ୍ଥ ରଚନା କରି ଅଭିନୟ କରାଇଥିଲେ । କାଳୀୟଦଳନ ଦର୍ଶକଙ୍କର ଉଚ୍ଚପ୍ରଶଂସିତ ରାସ ଥିଲା । ରଣପୁର ରାସ ସବୁଠାରୁ ଉତ୍କୃଷ୍ଟମାନର ଥିଲା ।

ଖଣ୍ଡପଡ଼ା ରାଜା କୁଞ୍ଜବିହାରୀ ସିଂହ ମର୍ଦ୍ଦରାଜ (୧୮୩୩-୧୮୬୬) ଶାସନ ସମୟକୁ ଖଣ୍ଡପଡ଼ା ଗଡ଼ର ସାହିତ୍ୟ ସଂଗୀତର ସୁବର୍ଣ୍ଣ ଗଡ଼ କୁହାଯାଏ । ଲୋକନୃତ୍ୟ, କୃଷ୍ଣଲୀଳା, ଝୁଲଣ ରାସ, ଚମ୍ପୁ, ପାଲା, ଧୁଡୁକି, କଳସୀ ନାଚ ଓ ଭାରତଲୀଳା ରାଜ ଅନୁଗ୍ରହ ଲାଭକରି ଜନଜୀବନକୁ ରସାଳ ଓ ରୁଚିବନ୍ତ କରୁଥିଲା । ରାଜା ରାମଚନ୍ଦ୍ର ସିଂହ (୧୯୦୮-୧୯୨୨) ସଂଗୀତ ଅନୁରାଗୀ ଥିଲେ । ତାଙ୍କ ସମୟରେ ନାଟ୍ୟକାର କାଳୀ ଚରଣ ପଟ୍ଟନାୟକ ଖଣ୍ଡପଡ଼ା ରାଜ୍ୟର ସ୍କୁଲ ପରିଦର୍ଶକ ଭାବେ ନିଯୁକ୍ତି ପାଇଥିଲେ । କାଳିଚରଣ ପଟ୍ଟନାୟକ ତାଙ୍କ ଆତ୍ମଜୀବନୀ ପ୍ରକାଶ କରିଛନ୍ତି 'ଖଣ୍ଡପଡ଼ା ମାଟି ଖାଣ୍ଟି ଓଡ଼ିଶୀ ସଂଗୀତର ମାଟି' । ଆର୍ତ୍ତମାର୍ଥୀ ସୀତାର ବଜାଉଥିଲେ । ଗୁଣ୍ଡିନନ୍ଦ ଦିଲ୍ଲୀ ଓ ବନାରସ ବୁଲି ନିରୋଳା ଓଡ଼ିଶୀ ସଂଗୀତ ଗାଉଥିଲେ । ନରସିଂହ ସାମନ୍ତ ସଂଗୀତର ଏକ ଅନନ୍ୟ ପ୍ରତିଭା । ସେସବୁ ଯନ୍ତ୍ରରେ ହାତ ପକାଇଥିଲେ । ତାଙ୍କର ଓଡ଼ିଶୀ ଛାନ୍ଦ, ଚମ୍ପୁ, ତୁମ୍ପା ସଂଗୀତରେ ନୈପୁଣ୍ୟ ଆବାଳବୃଦ୍ଧ ସମସ୍ତଙ୍କୁ ଚମତ୍କୃତ କରୁଥିଲା ।

ନୟାଗଡ଼ ରାଜନ୍ୟବର୍ଗ ସାହିତ୍ୟ ସଂଗୀତର ପୂଜାରୀ ଥିଲେ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା, ଉତ୍କଳଘଣ୍ଟ ଯଦୁମଣି ମହାପାତ୍ର, ରୀତିରସପୂର୍ଣ୍ଣ କାବ୍ୟ ସୃଷ୍ଟିକରି ଯଶସ୍ୱୀ ଏହାକୁ ଅସ୍ୱୀକାର କରିହେବ ନାହିଁ । ଏଣୁ ନୟାଗଡ଼ ହେଉଛି ରସକ୍ଷେତ୍ର । ନୟାଗଡ଼ ରାଜ୍ୟ ରାସ ସଂଗୀତ ଆଲୋଚନା କଲାବେଳେ ନାଟ୍ୟରଥୀ ଗୋବିନ୍ଦ ସୁରଦେଓକୁ ଆଗକୁ ଆଣିବାକୁ ପଡ଼େ । ସେ ରାସକଳା ତଥା ନାଟ୍ୟକଳାର ବିବର୍ତ୍ତନର ପ୍ରଥିତଯଶା ବ୍ୟକ୍ତିତ୍ୱ ।

<u>**ନାଟ୍ୟରଥୀ ଗୋବିନ୍ଦ ଚନ୍ଦ୍ର ସୁରଦେଓ :**</u> ଗୋବିନ୍ଦ ଚନ୍ଦ୍ର ସୁରଦେଓଙ୍କ ପୌତ୍ର ନୟାଗଡ଼ ପରମ୍ପରା ପତ୍ରିକା ସଂପାଦକ ଶ୍ରୀଯୁକ୍ତ ନିର୍ମଳ ଚନ୍ଦ୍ର ସୁରଦେଓ ପ୍ରକାଶ କରନ୍ତି- 'ନାଟ୍ୟରଥୀ ଗୋବିନ୍ଦ ଚନ୍ଦ୍ର ସୁରଦେଓ ଓଡ଼ିଶାର ଦକ୍ଷିଣ ବିଛିନ୍ନାଞ୍ଚଳ



ଆନ୍ଧ୍ରପ୍ରଦେଶର ସିକାକୁଲମ ଜିଲ୍ଲାର ପ୍ରସିଦ୍ଧ ତରଳା ରାଜବଂଶରେ ଜନ୍ମଗ୍ରହଣ କରିଥିଲେ। ବାଲ୍ୟ ସମୟରୁ ପିତୃମାତୃ ହରାଇଥିବାରୁ ତାଙ୍କର ମାମୁଁ ନୟାଗଡ଼ ରାଜା ରଘୁନାଥ ସିଂ ମାନଧାତା (୧୮୯୦-୧୮୯୭) ତାଙ୍କର ଲାଳନପାଳନ ବହନ କରିଥିଲେ। ନୟାଗଡ଼ ରାଜାଙ୍କ ତତ୍ତ୍ୱାବଧାନରେ ସେ କଟକ ରେଭେନ୍‌ସା କଲେଜରୁ ବି.ଏ. ପାସ୍ କରିଥିଲେ। ମଞ୍ଚକଳା ସାହିତ୍ୟରେ ତାଙ୍କର ଗଭୀର ଦଖଲ ଥିଲା। ସେ ଏକାଧାରରେ ଗୀତିକାର, ସଂଗୀତଜ୍ଞ, ନାଟ୍ୟକାର, ମଞ୍ଚଶିଳ୍ପୀ, ରୂପକାର ଏବଂ ନିର୍ଦ୍ଦେଶକ ଥିଲେ। ଗୋବିନ୍ଦ ଚନ୍ଦ୍ର ସୁରଦେଓଙ୍କର ଲିଖିତ ପୌରାଣିକ ନାଟକ, ଐତିହାସିକ ନାଟକ ଓ ପ୍ରହସନ ନାଟକ ମଧ୍ୟରେ, ରାସଲୀଳା ମାନଭଞ୍ଜନ, ଯୁଗଳ ମିଳନ, ସାକ୍ଷୀଗୋପାଳ, ଧ୍ରୁବ ଇନ୍ଦ୍ରସଭା, ସୁଦାମା, ଗୋପେଶ୍ୱର ପୂଜା, ନରମେଧ ଯଜ୍ଞ, ନରକାସୁର ବଧ, ମାୟାଶବରୀ, ପାଠୋଇ ବୋହୂ, ଫାଶୀ, ପେଷ୍ଟେଡ଼ ମେଡ଼ିସିନ୍, ହାଡୁବାବୁ ଫାର୍ସ, ମହନ୍ତ ଫାର୍ସ, କୁଳରକ୍ଷା। ସୁରଦେଓଙ୍କର ଐତିହାସିକ ନାଟକ ଉତ୍କଳ ରମଣୀ, ହିନ୍ଦୋଳ ବିଜୟ, ମିବାର ପୁତ୍ର, ମୁକୁନ୍ଦଦେବ । ଓଡ଼ିଶାରେ ମଞ୍ଚ ନାଟକ ସ୍ରଷ୍ଟା ଭାବେ ନାଟ୍ୟରଥୀ ଗୋବିନ୍ଦ ସୁରଦେଓ ଓଡ଼ିଆ ସାହିତ୍ୟ ଆକାଶରେ ଧ୍ରୁବତାରାର ପ୍ରଭା।

ନାଟ୍ୟରଥୀ ସୁରଦେଓ ରାସକୁ ଗୀତିନାଟ୍ୟ ରୂପ ଦେଇ ରାସକୁ ବେଶ୍ ମାଧୁର୍ଯ୍ୟପୂର୍ଣ୍ଣ କରିପାରିଥିଲେ। ଏହାକୁ ଏକମୁଖୀ ମଞ୍ଚରେ ରୂପ ଦେଇ ଦର୍ଶକଙ୍କର ପ୍ରିୟଭାଜନ ହୋଇଥିଲେ। କାଳୀଚରଣ ପଟ୍ଟନାୟକ ତାଙ୍କର କୁମ୍ଭାର ଚକରେ ଲେଖିଛନ୍ତି- "ଓଡ଼ିଶାର ଠାଏ ଠାଏ ରାସର ଆଦର ଥିଲା। ସାକ୍ଷୀଗୋପାଳ ରଣପୁରରେ ଏହାକୁ 'ପିଣ୍ଡିକ' ଶ୍ରୀଚନ୍ଦନ ରାସ ବୋଲାଯାଏ। ଏଗୁଡ଼ିକ ଅଧିକାଂଶ କୀର୍ତ୍ତନ ସ୍ୱର (ପାଳି ଧରନ୍ତି ପଞ୍ଚାଏ ପାଳିଆ) ସେଥିରେ ବାଜେ ଖୋଳ ତାଳ। ବଡ଼ ଘାଇଆ ଲାଗେ ଏଭଳି ରାସ। ଶୂରଦେଓ ହିଁ ପହିଲେ ରାସର ରୂପ ବଦଳାଇ ଦେଲେ। ସେ ରାସକୁ ଗୀତିନାଟ୍ୟ କରିବାରେ ପ୍ରଥମ ବ୍ୟକ୍ତି, ପ୍ରଥମ ସ୍ରଷ୍ଟା। ସ୍ଥୂଳତଃ କହିବି ଯେ ଶୂରଦେଓଙ୍କ ଛାୟାରେ ମୋ ରାସଦଳ ଗଠନ ଜୀବନ ଆରମ୍ଭ।"

କେନ୍ଦ୍ରାପଡ଼ା ଜମିଦାର ଶ୍ୟାମସୁନ୍ଦର ନରେନ୍ଦ୍ରଙ୍କର ଜୋଇଁ ଥିଲେ ଗୋବିନ୍ଦ ଶୂରଦେଓ। କେନ୍ଦ୍ରାପଡ଼ା ରହଣିକାଳରେ ସେ ରାସର ଅଭିନବ ପରିବର୍ତ୍ତନ ଆଣିଥିଲେ। ଶୁକଦେବ ସାହୁ ଶୂରଦେଓ ଓ ତାଙ୍କର ପ୍ରତିଭା ସଂପର୍କ ଲେଖିଛନ୍ତି- "ଅନୁଭୂତି ଓ ଅଭିଜ୍ଞତାପୁଷ୍ଟ ଅଭିନୟ କଳାକଳ୍ପନାକୁ ସମ୍ବଳ କରି ଶୂରଦେଓ

ସର୍ବପ୍ରଥମେ ମାର୍ଜିତ ରୁଚିସମ୍ପନ୍ନ ଓଡ଼ିଆ ଶରତ ରାସ ରଚନା କରିଥିଲେ ଓ ତା'ର ସଫଳ ଅଭିନୟ ୧ ୯ ୧ ୨ ମସିହାରେ କେନ୍ଦ୍ରାପଡ଼ାରେ ପରିବେଷଣ କରିଥିଲେ।"

କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଭାଷ୍ୟରେ- "ଶ୍ରୀରାଧା କୃଷ୍ଣଙ୍କ ନୈସର୍ଗିକ ପ୍ରେମ, ବିରହ ଓ ମିଳନ ଯୁଗେ ଯୁଗେ ଭାରତୀୟ ସାହିତ୍ୟ କଳା ସଂଗୀତକୁ ଯେଭଳି ସମୃଦ୍ଧ କରିଛି ତାହାରି ଜଣେ ମହାନ୍ ସୂତ୍ରଧର ରୂପେ ସ୍ୱର୍ଗୀୟ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ଆଧୁନିକ ଓଡ଼ିଶାର ସଂଗୀତ ଓ ନୃତ୍ୟକଳାର ଉତ୍କର୍ଷ ସାଧନାରେ ନେତୃତ୍ୱ ଗ୍ରହଣ କରି ତିରସ୍କରଣୀୟ ହୋଇ ରହିଛନ୍ତି।"

ବୀରକିଶୋର ଦାସ 'ଯୁଗେ ଯୁଗେ ନାଟ୍ୟ ସାହିତ୍ୟ' ପୁସ୍ତକରେ ଲେଖିଛନ୍ତି- "ଓଡ଼ିଆ ସାହିତ୍ୟରେ ଗୋବିନ୍ଦ ଶୂରଦେଓ ହେଉଛନ୍ତି ପ୍ରଥମ ପରିମାର୍ଜିତ ରାସସ୍ରଷ୍ଟା।"

ବିଶ୍ୱନାଥ କରଙ୍କ ଭାଷାରେ- "ଯାତ୍ରା ସଂସ୍କାରରେ ମନନିବେଶ କରି ଅଳ୍ପକାଳ ମଧ୍ୟରେ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ଯେଉଁ ଯେଉଁ କୃତିତ୍ୱ ଦେଖାଇଛନ୍ତି, ତାହା ସାମାନ୍ୟ ପ୍ରଶଂସାର କଥା ନୁହେଁ। ଆମ୍ଭେମାନେ ତାଙ୍କ ରାସଲୀଳା ଓ ମାନଭଞ୍ଜନ ଏ ଦୁଇଟିଯାକ ଅଭିନୟ ଦେଖି ଅତ୍ୟନ୍ତ ପ୍ରୀତ ହୋଇଅଛୁ। ଯଥାର୍ଥରେ ଅଭିନୟ ବିଷୟରେ ବାଛିବାର କିଛି ନାହିଁ। ଗୀତଗୁଡ଼ିକର ଭାଷା ବିଶୁଦ୍ଧ ଅଥଚ ସୁଲଳିତ ରାଗରାଗିଣୀ, ମନୋହର। ଅଭିନେତା ବାଳକମାନଙ୍କର ବେଶଭୂଷା, ଭାବଭଙ୍ଗୀ, କଥୋପକଥନ ନୃତ୍ୟ ସବୁ ଚିତ୍ତାକର୍ଷକ।"

ମାୟାଧର ମାନସିଂହ ଶୂରଦେଓ ପ୍ରତି ଲେଖିଛନ୍ତି- "Gobinda Chandra Surdeo is the first who bringing Rasalila on the formula stage had created terrible sensation in his time and undoubtedly proved the irresistible attraction.

ନୟାଗଡ଼ କଲେଜ ଅଧ୍ୟକ୍ଷ ଗୋପୀନାଥ ମିଶ୍ର ଲେଖିଛନ୍ତି- "ଶୂରଦେଓଙ୍କ ରାସଗୀତଗୁଡ଼ିକ ଜନପଦବାସୀ, ଗୃହୀ, ବୈଷ୍ଣବ, ବିଷୟୀ ସମସ୍ତଙ୍କ ନିକଟରେ ବେଶ୍ ଲୋକପ୍ରିୟ ହୋଇଛି।"

ନୟାଗଡ଼ ଜିଲ୍ଲାର ଏକକ କଳାର ସ୍ରଷ୍ଟା ରାବେରା ଗ୍ରାମର ବାଞ୍ଛାନିଧି ଶତପଥି ସହିତ ସାକ୍ଷାତ୍‌କାରରେ ସେ କହନ୍ତି- ଗୋବିନ୍ଦ ଶୂରଦେଓଙ୍କ ମଞ୍ଚ ଅଭିନୀତ ନାଟକ ଅନେକ ଜାଗାରେ ଦେଖିଛି। ତାଙ୍କ ମଞ୍ଚ ମାୟାରେ ଅଭିଭୂତ ହୋଇଛି। ଏକକ ନାଟକକୁ ପରଦାବେଷ୍ଟିତ ଏକମୁଖୀ ମଞ୍ଚରେ କିପରି ପରିଚାଳନା କରିବି ତା'ର ପ୍ରୟାସ କଲି। ନାଟକର କାହାଣୀ ସହିତ ଖାପଖାଇଲା ପରିକା ପାର୍ଶ୍ୱଦୃଶ୍ୟ ଖଞ୍ଜି ନାଟକକୁ ଦର୍ଶକଙ୍କୁ ମନୋରଞ୍ଜନ କରିବାରେ ସକ୍ଷମ ହେଲି।

ଗୋବିନ୍ଦ ଚନ୍ଦ୍ର ଶୂରଦେଓ ରାସର ଅଭିନବ ରୂପ ଦେଖାଇ ମଞ୍ଚମାୟାରେ

ନାଟକକୁ ସଂଯୋଜିତ କରାଇ ସମଗ୍ର ସାହିତ୍ୟିକ ମହଲରେ ଯେଉଁ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ ତାଙ୍କର ଏ ପରିକଳ୍ପନାର ସାଧନା ପାଇଁ ନୟାଗଡ଼ ମାଟି ଗର୍ବ କରେ।

ବଂଶାନୁଗତ ପରମ୍ପରାର ସାଧକ ନିର୍ମଳ ଚନ୍ଦ୍ର ଶୂରଦେଓ : ନାଟ୍ୟରଥୀ ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କର ପୌତ୍ର ପ୍ରଖ୍ୟାତ ଚିତ୍ରଶିଳ୍ପୀ ପୂର୍ଣ୍ଣଚନ୍ଦ୍ର ଶୂରଦେଓଙ୍କର ଖ୍ୟାତନାମା ସୁପୁତ୍ର ନିର୍ମଳ ଚନ୍ଦ୍ର ଶୂରଦେଓ ନୟାଗଡ଼ ପୁରୁଣା ସହର ଶୂରଶିଳ୍ପୀ ବାସଭବନର ଉଜ୍ଜଳ ମଣିଟିଏ। ନିର୍ମଳ ଚନ୍ଦ୍ର ଶୂରଦେଓ ସ୍ନାତକୋତ୍ତର ଉପାଧି ଲାଭକରି ସାହିତ୍ୟ ସାଧନାର ବ୍ରତ ନେଲେ। ସେ ସାହିତ୍ୟ ଓ ସଂସ୍କୃତି ପରିଷଦ ଗଢ଼ି ନିଜ ସଂପାଦନାରେ 'ପ୍ରାଚ୍ୟ ପରମ୍ପରା' ନାମକ ଏକ ସାହିତ୍ୟ ପତ୍ରିକା ସଂପାଦନ କଲେ। ପତ୍ରିକାର କଳେବର ପ୍ରବନ୍ଧ, ଗଳ୍ପ, କବିତା, ଅନୁବାଦ ରଚନାରେ ଋଦ୍ଧିମନ୍ତ ହୋଇ ପାଠକୀୟ ଆଦର ଲାଭକଲା। ସଂପାଦକ ନିର୍ମଳ ଚନ୍ଦ୍ର ଶୂରଦେଓଙ୍କର ସମଗ୍ର ନୟାଗଡ଼ା ଜିଲ୍ଲାରେ ଲେଖକ ସୃଷ୍ଟି କରିବାରେ ସଫଳ ଭୂମିକା। ନୂଆ ପୁରୁଣା ଲେଖକମାନଙ୍କୁ ଉତ୍ସାହିତ କରି ତାଙ୍କର ପତ୍ରିକା ପରମ୍ପରାରେ ସ୍ଥାନ ଦେଲେ। ପରମ୍ପରା ଫଳକରେ ଭ୍ରାମ୍ୟମାଣ ସାହିତ୍ୟ ଆସର କଲେ। ନିର୍ମଳ ଚନ୍ଦ୍ର ଶୂରଦେଓ ସାମ୍ବାଦିକତା କରିବା ସଙ୍ଗେ ସଙ୍ଗେ ସାପ୍ତାହିକ ପରମ୍ପରା ସମ୍ବାଦ ଉଭୟ ଓଡ଼ିଆ ଇଂରାଜୀ ଭାଷାରେ ପ୍ରକାଶ କଲେ। ବର୍ତ୍ତମାନ ନୟାଗଡ଼ ସହରରେ ପ୍ରାଚ୍ୟ ପରମ୍ପରା ପୁରୁଣା ସାହିତ୍ୟ ପତ୍ରିକାର ମାନ୍ୟତା ବହନ କରେ। ପରମ୍ପରା ପତ୍ରିକା ହେଉଛି ଶୂର ଭବନର ପତ୍ରିକା। ଜିଲ୍ଲାସ୍ତରରେ ନୟାଗଡ଼ ଜିଲ୍ଲା ଲେଖକ ପରିଷଦ ପ୍ରତିଷ୍ଠା କରିବାରେ ଶୂରଦେଓଙ୍କର ପ୍ରଧାନ ସହଯୋଗ ଥିଲା। ସାହିତ୍ୟ ଅନୁରାଗୀ ନିର୍ମଳ ଚନ୍ଦ୍ର ଶୂରଦେଓ ରାଜ୍ୟ ସାହିତ୍ୟ ଏକାଡ଼େମୀର ନୟାଗଡ଼ ଜିଲ୍ଲାର ପ୍ରତିନିଧିତ୍ୱ ସଭ୍ୟ ଥିଲେ। ସାହିତ୍ୟ ସାଧନା କରି ବଞ୍ଚିବା ସେ ଚାହୁଁଥିଲେ। ସେ ସାହିତ୍ୟ ଘରର ପୁଅ ସାହିତ୍ୟିକ।

କାଳୀୟ ଦଳନ : କାଳୀୟ ଦଳନ ଏକ ପ୍ରଧାନ ରାସ ନାଟକ। ଏହା କୃଷ୍ଣ ରସାଶ୍ରିତ ମୁକ୍ତମଞ୍ଚରେ ନାଟକ ନାଟକର କାହାଣୀ ଏହି ଯେ ରାଜା କଂସାସୁର ତା'ର ଜୀବନ ନାଟିକା କୃଷ୍ଣଙ୍କୁ କିପରି ବଧ କରିବ। ସେଥିଯୋଗୁଁ ଗୋପରାଜା ନନ୍ଦକୁ ଚିଟାଉ ଦେଇଛି ରାଣୀ ପଦ୍ମାବତୀର ବ୍ରତ ପୂରଣ ପାଇଁ ବିଷର ହ୍ରଦ କାଳିନ୍ଦୀ ହ୍ରଦରୁ ଲକ୍ଷେଭାର ପଦ୍ମ ଧନୁଯାତ୍ରାକୁ ପଠାଇବ। କାଳୀୟ ନାଗର ବାସସ୍ଥଳୀ ହେଉଛି କାଳିନ୍ଦୀ ହ୍ରଦ।

କାଳୀୟ ଦଳନ ନାଟକରେ କୃଷ୍ଣଙ୍କ ଗୋପଲୀଳା ପରିବେଷଣ ସମେତ ଶ୍ରୀକୃଷ୍ଣଙ୍କର କାଳିନ୍ଦୀ ହ୍ରଦରୁ ପଦ୍ମଫୁଲ ତୋଳା ଦୃଶ୍ୟ ଏବଂ କାଳୀନାଗ ଦର୍ପଦଳନ ଦୃଶ୍ୟ ଅଭିନୀତ ହେବା। ଏହା ଏକ ଦୀର୍ଘ ନାଟକ। ଦର୍ଶକଙ୍କ ମଧ୍ୟରେ କାଳିନ୍ଦୀ ହ୍ରଦର ନିର୍ମାଣ ମଧ୍ୟରେ ପଦ୍ମବନର ଦୃଶ୍ୟ ବେଶ୍ ଆକର୍ଷଣୀୟ। ଏ ନାଟକରେ ଶ୍ରୀଗାୟକର ମୁଖ୍ୟ ଭୂମିକା।

ନାଟକଟିରେ ଗୋପଲୀଳା ରାସ ଦର୍ଶକଙ୍କୁ କୃଷ୍ଣ ରସ ଭିତରେ ଯେତିକି ଭିଜାଇଥାଏ କାଳୀୟ ନାଗ ଦଂଶନରେ ମୂର୍ଚ୍ଛିତ କୃଷ୍ଣଙ୍କର ଅବସ୍ଥାରେ ନନ୍ଦ ଯଶୋଦାଙ୍କର ବିଳାପ, କୃଷ୍ଣ ମୂର୍ଚ୍ଛାଗତ ଅବସ୍ଥାରେ ଦର୍ଶକଙ୍କର ଚକିତ ଭାବ ହୃଦୟସ୍ପର୍ଶୀ। ଶ୍ରୀକୃଷ୍ଣଙ୍କର ଉଦ୍ଧାର ପାଇଁ ହରିବୋଲ ହୁଳହୁଳି ମଞ୍ଚସ୍ଥଳର ଚମକପ୍ରଦ ଦୃଶ୍ୟ। ଗରା ଗରା ପାଣି ଢାଳିବା ପରେ କୃଷ୍ଣଙ୍କର ମୂର୍ଚ୍ଛାବସ୍ଥା ଅପସାରଣ ହୁଏ। ଶ୍ରୀକୃଷ୍ଣ କାଳୀୟନାଗର ସହସ୍ର ଫଣାରେ ତ୍ରିଭଙ୍ଗୀଛଟା ନୃତ୍ୟରେ କାଳୀନାଗ ଦର୍ପ ଦଳନ ବେଶ ଚିତ୍ତାକର୍ଷକ।

କାଳୀୟଦଳନ ନାଟକ ଜନସମାଜର ଏକ ମାନସିକ ନାଟକ। ପୁଅ ଝିଅର ମାନସିକରେ ଏ ନାଟକ ଜନାଦୃତ। ନୟାଗଡ଼ ଜିଲ୍ଲାର ବାଙ୍କଶାଲୁଆ ଗ୍ରାମ, ଲାଠିପଡ଼ା, ଆଙ୍ଗିସିଙ୍ଗି, ବଡ଼ିଆ ସାହି ଖଣ୍ଡପଡ଼ା ଗୋଛାବାରୀ କାଳୀୟଦଳନ ନାଟକ ଉପସ୍ଥାପନା କରନ୍ତି।

ରାସ ସଂଗୀତ ନୟାଗଡ଼ରେ ବିଂଶ ଶତାବ୍ଦୀର ଷଷ୍ଠ ଦଶକ ମଧ୍ୟରେ ଅଭିନୀତ ହେବାର ଜଣାଯାଏ। ବାଉଁଶିଆପଡ଼ା, ବନମାଳି ପଟ୍ଟନାୟକ ପଞ୍ଚୁ ଦାଶ ସଂଗୀତଗୁରୁଭାବେ ବେଶ୍ ପରିଚିତ। ୧୦/୧୨ ବର୍ଷ ପୁଅମାନଙ୍କୁ ନେଇ ସଂଗୀତ ଦଳ ଗଠନ କରିଥିଲେ। ବାବାଜୀ ନାୟକ, ଗୋଟିସାହି, ଅନାଥ ନାୟକ ଗୋଟିସାହି, ଶ୍ୟାମସୁନ୍ଦର ପ୍ରଧାନ, ଦେବପ୍ରଧାନ ଓ ସଂସାରୀ ପାତ୍ର କଲ୍ୟାଣପୁର ସଂଗୀତ ଶିକ୍ଷା ଲାଭକରି ରାଜଦ୍ୱାରେ, ସଂଭ୍ରାନ୍ତ ଜମିଦାରଙ୍କ ଗୃହ ପ୍ରାଙ୍ଗଣରେ ସଂଗୀତ ନୃତ୍ୟ ପରିବେଷଣ କରୁଥିଲେ।

**ସଂକୀର୍ତ୍ତନ :** ସଂକୀର୍ତ୍ତନ ଓଡ଼ିଶାର ବହୁ ପ୍ରାଚୀନ ମୁକ୍ତ ମଞ୍ଚକଳା। ସଂକୀର୍ତ୍ତନରେ ହରିନାମ ଗାୟନ କରାଯାଏ ଷୋଡ଼ଶ ଶତାବ୍ଦୀ ଆରମ୍ଭରେ ଶ୍ରୀ ଶ୍ରୀ ଚୈତନ୍ୟ ଗୋସାଇଁଙ୍କୁ ପାଛୋଟି ଆଣିବାକୁ ବାସ୍ତରୀ ସଂକୀର୍ତ୍ତନ ମଣ୍ଡଳ ଯୋଗ ଦେଇଥିଲେ। ସଂକୀର୍ତ୍ତନ ଗାୟନ ପାଇଁ ମନ୍ଦିରମାନଙ୍କରେ ସଂକୀର୍ତ୍ତନ ଚକଡ଼ା ସ୍ଥାନ ସଂରକ୍ଷିତ ଥାଏ। ସଂକୀର୍ତ୍ତନ ଜନସମାଜ ସହିତ ସଂପୂର୍ଣ୍ଣ ଜଡ଼ିତ ଲୋକକଳା। ଘରେ ନବଜାତ ଶିଶୁର ଏକୋଇଶିଆ ଏବଂ ସ୍ୱନକ୍ଷତ୍ରରେ ଶିଶୁର ନାମକରଣ ପାଇଁ ସଂକୀର୍ତ୍ତନ ହୋଇ ହରିନାମ ଗାୟନ କରାଯାଏ। ଗୃହରୁ ଶବ ବିଦାୟ କାଳରେ ହରିନାମ ସହିତ ଖୋଳ ଝାଞ୍ଜ ବାଜେ। ଗାଁ'ର ସବୁ ଦେବଦେବୀ ଉତ୍ସବରେ ସଂକୀର୍ତ୍ତନ ଚକଡ଼ାରେ ହରିନାମ ବିଷୟକ ଗୀତ ଗାନ କରାଯାଏ। ସାମାଜିକ ଜୀବନଯାତ୍ରା ସହିତ ସଂକୀର୍ତ୍ତନ ଅଙ୍ଗାଙ୍ଗୀଭାବେ ଜଡ଼ିତ। ବର୍ତ୍ତମାନର ସାଂପ୍ରତିକ କାଳରେ ସଂକୀର୍ତ୍ତନ ମେଳଗୁଡ଼ିକ ବୁଡ଼ିଆସିଲାଣି। କାହିଁକିନା ଏ ଆଧୁନିକ ପିଲାଙ୍କ ସେ ଆଡ଼କୁ ଆଦର ନାହିଁ।

ସଂକୀର୍ତ୍ତନ ମଣ୍ଡଳରେ ଜଣେ ଗାୟକ, ଝୁମୁକାତାଳି ବଜାଉଥିବା ଜଣେ ପାଳିଆ ଓ ଜଣେ ମୃଦଙ୍ଗ ବାଦକ। ସଂକୀର୍ତ୍ତନରେ ବିଶିଷ୍ଟ କବିମାନଙ୍କର ସାହିତ୍ୟ ଗୀତି

ଗାୟନ କରାଯାଏ। ସଂକୀର୍ତ୍ତନ ଚକଡ଼ାକୁ 'ହରିଦରବାର' କୁହାଯାଏ। ଏହି ହରିଦରବାରରେ ପୁରାଣଶାସ୍ତ୍ର ଗାୟନ କରି ଗାୟକ ଦର୍ଶକଙ୍କର ଶ୍ରୁତି ପବିତ୍ର କରାଏ। ସ୍ୱାଧୀନତାର ପୂର୍ବ ଦଶନ୍ଧିରୁ ସ୍ୱାଧୀନତାର ଦୁଇ ଦଶନ୍ଧି ମଧ୍ୟରେ ନୟାଗଡ଼ର ସୁନାମଧନ୍ୟ ଗାୟକମାନେ ରାଜ୍ୟରେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ। ଯୋଗେଶ୍ୱର ସ୍ୱାଇଁ ଶାଲୁଣୀ, ପ୍ରହଲ୍ଲାଦ ସ୍ୱାଇଁ ଖଣ୍ଡପଡ଼ା କାଦୁଆ, ଉଦ୍ୟନାଥ ପୃଷ୍ଟି ଗୋଡ଼ିପଡ଼ା, ଗାଣ୍ଡୁଖୁଣ୍ଟା ବଡ଼ପଣ୍ଡୁସର ଭାଗବତ ପ୍ରଧାନ ମାଳିସର, ହରି ନାୟକ ବଡ଼ଦେଶ ହରିପୁର, ସଂକୀର୍ତ୍ତନ ବାଦି ଚକଡ଼ାରେ ସପ୍ତଦିନ ନବଦିନ ଧରି ପୁରାଣଶାସ୍ତ୍ର ଓ କବିମାନଙ୍କର ସାହିତ୍ୟ ବର୍ଣ୍ଣନାରେ ଜନପ୍ରିୟ ଗାୟକ ଥିଲେ। ଏମାନଙ୍କ ପରବର୍ତ୍ତୀ ସମୟରେ ସଂକୀର୍ତ୍ତନ ଉତ୍ସବ ସୁପ୍ତ ହୋଇ ପଡ଼ିରହିଲା। ପୁନଶ୍ଚ ବିଂଶ ଶତାବ୍ଦୀର ଶେଷପାଦରୁ ଏଯାବତ୍ ସଂକୀର୍ତ୍ତନ ମଣ୍ଡଳ ଗଢ଼ିଉଠିବାର ପ୍ରତୀୟମାନ ହୁଏ।

ବାଣୀସୌରଭ ଅର୍ଜୁନ ବାରିକ ହରିପୁରଙ୍କର ଉତ୍ସାହରେ ନୟାଗଡ଼ ଜିଲ୍ଲା ସଂକୀର୍ତ୍ତନର ନବଜାଗରଣ ଦେଖାଦେଇଛି। ଅଧୁନା ନୟାଗଡ଼ର ପ୍ରସିଦ୍ଧ ସଂକୀର୍ତ୍ତନ ଚକଡ଼ା-ଓଡ଼ଗାଁ ରଘୁନାଥ ମନ୍ଦିର, ଶରଣକୁଳ ଲଡୁବାବା ମନ୍ଦିର, କଣ୍ଟିଲୋ ନୀଳମାଧବ ମନ୍ଦିର, ଦଶପଲ୍ଲା ମହାବୀର ମନ୍ଦିର, ମାଛିପଡ଼ା, ପଲ୍ଲୀ ଶାସନ, ହରିପୁର, ଚିନ୍ଦିରା, ଭୁତଡ଼ି, ଆଡ଼ଚେର, ସୁନାନଟୀ, ଦେଉଳି, ଗୋଡିସାହି, ନଛିପୁର, ଇକିରି, ରାଣୀପଡ଼ା, ନୂଆପଲ୍ଲୀ, ତୋଟାସାହି, ରାଇପୁର, ମଶାଣିଝୋଲା, ମାଳିଶର, ସଁପଡ଼ା, ଜିନ୍ଦାଭୂଇଁ, ମଧଖଣ୍ଡ,ଖଡ଼ିପଦର, କଲରାଝର, ଗୌରଚନ୍ଦ୍ରପୁର, ଖଇରପାଟି, କେନ୍ଦୁଢ଼ିପି, ରଣପୁର, ଫତେଗଡ଼, କରବର, ଭାପୁର। ଏ ଚକଡ଼ାମାନଙ୍କରେ ସଂକୀର୍ତ୍ତନ ମେଳା ଉତ୍ସବ ଅନୁଷ୍ଠିତ ହୁଏ।

୧୯୯୦ ମସିହା ପରବର୍ତ୍ତୀ ସୁନାମ ଅର୍ଜନ କରିଥିବା ଗାୟକମାନେ- ଚନ୍ଦ୍ରମଣି ମାଝି ପାଣିଭଣ୍ଡାର, ନରୋତ୍ତମ ପ୍ରଧାନ କୋଡ଼ିଏ କାହାଣୀଆ, ପୀତବାସ ଦଳେଇ ସୁନାନଟୀ, ବିଶ୍ୱନାଥ ପ୍ରଧାନ ଠଣାପଲ୍ଲୀ, ବାଉରୀବନ୍ଧୁ ସେନାପତି ହରିପୁର, ଗୁଣନିଧି ସାମନ୍ତରା ରଣପୁର ଗୌରଚନ୍ଦ୍ରପୁର, ଗୋଲକ ପ୍ରଧାନ ବାଘୁଆ ପଲ୍ଲୀ, ପୀତବାସ ପ୍ରଧାନ, ବାରବାଟୀ, ଲିଙ୍ଗରାଜ ଦାଶ ପନ୍ତିଖାଡ଼ି, ମଦନ ଦାଶ ବାଇଗୁଣିଆ ।

### ଗଣନାଟ୍ୟ-୧

## ଗଣନାଟ୍ୟ ଓ ନୟାଗଡ଼

**ଚତୁଃମୁଖ ଖୋଲା ରଙ୍ଗମଞ୍ଚ :**

ନାଟ୍ୟକଳା ବା ଯାତ୍ରାକଳା ଓଡ଼ିଶାର ପ୍ରାଚୀନକଳା ଲୋକସଭ୍ୟତା ସହ ଯୋଡ଼ିହୋଇ ଗତିଶୀଳ। ସମାଜରେ ଏହାର ଉଦ୍ଭବ ସଂପର୍କରେ ଶ୍ରୀ ଯାଜ୍ଞିକଙ୍କ

'The Indian Teatre' ପୁସ୍ତକରୁ ଜଣାଯାଏ ଧର୍ମପ୍ରାଣ ତୀର୍ଥଯାତ୍ରୀ ଅଥବା କୌଣସି ଦେବତାଙ୍କ ଉତ୍ସବ ସମୟରେ ଭକ୍ତମାନେ ବହୁଳସଂଖ୍ୟାରେ ପଟୁଆରରେ ଯାଉଥିବାବେଳେ ରାଜପଥରେ, ମନ୍ଦିର ପ୍ରାଙ୍ଗଣରେ ବାଦ୍ୟଯନ୍ତ୍ର ସହ ଯେଉଁ ନୃତ୍ୟ ସଂଗୀତ ପରିବେଷଣ କରୁଥିଲେ ତାହାକୁ ଯାତ୍ରା କୁହାଯାଉଥିଲା । କାଳକ୍ରମେ କେଉଁଠାକୁ ନଯାଇ ଗୋଟିଏ ସ୍ଥାନରେ ଅଭିନୟ ପ୍ରଦର୍ଶନକୁ ଯାତ୍ରା କୁହାଗଲା । ପ୍ରାଚୀନ ଦେବଭାବାପନ୍ନ ଯାତ୍ରାରୁ ପରବର୍ତ୍ତୀ କାଳରେ ଓଡ଼ିଶାରେ ଲୋକକଳାର ବିକଶିତ ରୂପ ରାସ, ଲୀଳା, ସୁଆଁଗ, ଦଣ୍ଡନାଟ, ପାଟୁଆ, ଧୁଡୁକୀ, ଚଇତି ଘୋଡ଼ାନାଚ, ଦାସକାଠିଆ, ପାଲା, ଗୀତିନାଟ୍ୟ ଓ ଗଣନାଟ୍ୟ । ଲୋକନାଟ୍ୟ ଓ ଗଣନାଟ୍ୟ ସମାନବୋଧକ ଅର୍ଥ ହେଲେ ହେଁ ନାଟ୍ୟ ପରିବେଷଣ ଦୃଷ୍ଟିରୁ ଏ ଦୁଇଟି ଶବ୍ଦ ପରସ୍ପରଠାରୁ ପୃଥକ ଓ ସ୍ୱତନ୍ତ୍ର । ଲୋକନାଟ୍ୟ ପରମ୍ପରା ସହିତ ନିବିଡ଼ ଭାବେ ଜଡ଼ିତ ଥିଲାବେଳେ ଗଣନାଟ୍ୟ ସମାଜ ଚେତନା ସହିତ ଜଡ଼ିତ । ଲୋକନାଟ୍ୟ ଆଦିମତର ଏକ ସାର୍ବଜନୀନ କଳା ଏହାର ଗୀତନୃତ୍ୟ ଅଭିନୟର ଶୃଙ୍ଖଳା ଓ ଅଶୃଙ୍ଖଳା ରୀତି ସାଧାରଣ ମଣିଷର ଚିତ୍ତବିନୋଦନ ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ଏହା ପ୍ରାଣବନ୍ତ । ସାଧାରଣ ଲୋକଙ୍କ ମନରେ ସମାଜ ସଚେତନା ଆସିବାରୁ ସାମାଜିକ କଥାବସ୍ତୁ ଲୋକନାଟକ ମଧ୍ୟକୁ ପ୍ରବେଶ କଲା । ସାମାଜିକ କଥାବସ୍ତୁ ଗଣଚେତନା ଉଦ୍‌ବୋଧନର ମାଧ୍ୟମ ହୋଇ ଠିଆହେଲା । ଏହା ଦର୍ଶକଙ୍କ ହୃଦୟରେ ପ୍ରତିକ୍ରିୟା ସୃଷ୍ଟି କଲା । ଏହାହିଁ ଲୋକନାଟ୍ୟର ଗଣନାଟ୍ୟ ରୂପ । ଅଧୁନା ଗଣନାଟ୍ୟ ନାଟ୍ୟଜଗତର ପତାକା ସ୍ତମ୍ଭ । ଓଡ଼ିଶାର ବ୍ୟବସାୟିକ ଭ୍ରାମ୍ୟମାଣ ଗଣନାଟ୍ୟ ଦଳ କଳିଙ୍ଗ ଗଣନାଟ୍ୟ, ପାର୍ବତୀ, ଗୌରୀ, ଅଷ୍ଟଶମ୍ଭୁ, ଶିବାନୀ, ଓଡ଼ିଶା ଅପେରା, ବାଘାଯତୀନ୍, ଇଷ୍ଟର୍ଣ୍ଣ ବ୍ଲୁ, ଇଷ୍ଟର୍ଣ୍ଣ ରେଡ୍, ଇଷ୍ଟର୍ଣ୍ଣ ଭାଓଲେଟ୍, ଦ ଗ୍ରେଟ୍ ଇଷ୍ଟର୍ଣ୍ଣ, ତୁଳସୀ ଗଣନାଟ୍ୟ ଓଡ଼ିଶା ବାହାରେ ନାଟକ ମଞ୍ଚସ୍ଥ କରାଇ ପ୍ରଚୁର ଅର୍ଥ ଉପାର୍ଜନ କରୁଛନ୍ତି । ଏ ନାଟ୍ୟଦଳମାନେ ଗ୍ରାମାଞ୍ଚଳ ଯାତ୍ରାଦଳକୁ ବିଶେଷଭାବେ ପ୍ରଭାବିତ କରନ୍ତି ।

ସଭ୍ୟତାର ପ୍ରଗତି ସହିତ ତାଳଦେଇ ଲୋକକଳାର ଅଙ୍ଗ, ରୂପଭାବ ସାଜସଜ୍ଜା ବଦଳି ବଦଳିଯାଏ । ସେପରି ଲୋକକଳାର ପରିବର୍ତ୍ତିତ ନାଟ୍ୟକଳା ଲୀଳାବନ୍ଦୀ ଓ ହରରଙ୍ଗୀ ନାଟ୍ୟରୂପ । ପୂର୍ବ ଅବସ୍ଥାରେ ଲୋକକଳା ମୁକ୍ତମଞ୍ଚରେ ପରିବେଷିତ ହେଉଥିଲା । ତା'ପରେ ଲୋକନାଟ୍ୟ ଗୁଡ଼ିକ ସ୍ୱତନ୍ତ୍ର ନିର୍ମିତ ମଞ୍ଚବେଦୀରେ ନାଟକ ପରିବେଷଣ ହେଲା ।

**ଲୀଳାବନ୍ଦୀ :** ଘଟଣା ପ୍ରବାହ ଏକ କାହାଣୀକୁ ଗଦ୍ୟ କଥୋପକଥନରେ ନାଟ୍ୟରୂପ ଦେଇ ନାଟକକୁ ଅଧିକ ସରସ ମାଧୁର୍ଯ୍ୟ କରିବା ଦିଗରେ ନାଟକ ଦୃଶ୍ୟ ମଧ୍ୟରେ, ସୁଆଁଗ, ବିକୃତ ହସ୍ୟରସ ଫାର୍ଶ, ପ୍ରହସନ ଯୋଡ଼ି ହୋଇଥିବା

ଲୋକନାଟ ଲୀଳାବନ୍ଦୀର ରୂପ । ଏହି ନାଟ୍ୟକଳା ପୌରାଣିକ, ଐତିହାସିକ କଥାବସ୍ତୁ ଉପରେ ଆଧାରିତ । ଲୀଳାବନ୍ଦୀ ଲୋକନାଟକର ଚରିତ୍ରମାନେ ଗଦ୍ୟସଂଳାପ କଥୋପକଥନରେ ଦର୍ଶକଙ୍କର ଅଧିକ ଆଦରଣୀୟ ହେଲେ । ଲୋକନାଟକର ଏ ପରିବର୍ତ୍ତନରେ ଚାରିଖୁଣ୍ଟ ମଧ୍ୟରେ ମଞ୍ଚବେଦୀ ନିର୍ମିତ ହୋଇ ଲୋକନାଟକକୁ ପରିବେଷଣ କରାଗଲା ।

ହରରଙ୍ଗୀ : ନବରସକୁ ନେଇ କଳାକାରଙ୍କ ଦ୍ୱାରା ଅଭିନୀତ ସଂଗୀତଧର୍ମୀ ଛୋଟ ଛୋଟ ଦୃଶ୍ୟ ସମୂହ ପରିବେଶଣ ହିଁ ହରରଙ୍ଗୀ । ହରରଙ୍ଗୀରେ ନଟୁଚୋରି, ସୀତାଚୋରି, ମାନଭଞ୍ଜନ, ଝିଅ ଶାଶୂଘର ଯିବା, ବୈଦ୍ୟ ପାଞ୍ଚନ ଇତ୍ୟାଦି ଯେତେ ରହସ୍ୟ ହୋଇପାରେ ପ୍ରଦର୍ଶନ ହୁଏ ।

ଲୋକନାଟକ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପରବର୍ତ୍ତୀ ସମୟରେ ଅଭିନୀତ ହେବାର ଅନୁମାନ କରାଯାଏ । କାହିଁକିନା ୧୮୭୫ ମସିହାରେ ଓଡ଼ିଶାର ଦୁଇଟି ସମାଜ ସଚେତନ ସାପ୍ତାହିକ ସମ୍ବାଦବାହିନୀ ଓ ଉତ୍କଳଦୀପିକା ପତ୍ରିକାଦ୍ୱୟ ଓଡ଼ିଆ ଯାତ୍ରାର ଉନ୍ନତି ପାଇଁ ବ୍ୟାକୁଳତା ପ୍ରକାଶ କରିଥିଲେ ଯେତେବେଳେ ଓଡ଼ିଆ ଯାତ୍ରା ବଙ୍ଗଳା ଯାତ୍ରାକୁ ଅନୁସରଣ କରି ଯାତ୍ରାର ରୂପରଙ୍ଗରେ ନୂତନତା ଆଣିବାର ପ୍ରୟାଶ ଜାରି ରଖିଥିଲେ । "୧୮୭୬ରେ ଉତ୍କଳ ଦୀପିକାରେ ପ୍ରକାଶିତ ବର୍ତ୍ତମାନ ଓଡ଼ିଶାରେ ଯାହାକୁ ଯାତ୍ରା ବୋଲାଯାଏ ତାହା ରାମଲୀଳା, କୃଷ୍ଣଲୀଳା, ସୁଭଦ୍ରା ହରଣ ପ୍ରଭୃତି ଅଟଇ X X X X ମାତ୍ର ଆମ୍ଭେମାନେ ଯେତେଦୂର ଦେଖିଅଛୁ କୌଣସି ଯାତ୍ରାରେ ସଂଗୀତ ବାସ୍ନା ସୁଦ୍ଧା ପାଇନାହୁଁ ଏବଂ ଆମ୍ଭମାନଙ୍କର ବିଶ୍ୱାସ ଏହି ଯେ ସଂଗୀତ କାହାକୁ ବୋଲାଯାଏ ଯାତ୍ରାବାଲାମାନେ ଜାଣନ୍ତି ନାହିଁ । କେବଳ ସଜବେଶ ହୋଇ ଗୁଡ଼ାଏ ପୋଥି ବୋଲନ୍ତି ଓ ନାନାପ୍ରକାର କଦର୍ଯ୍ୟ ଓ ଭଣ୍ଡରୂପ ଦେଖାଇ ଏବଂ ଅଶ୍ଲୀଳ ବାକ୍ୟ ଉଚ୍ଚାରଣ କରି ଦର୍ଶକଙ୍କୁ ସନ୍ତୁଷ୍ଟ କରନ୍ତି ।" ଏ ଅବବୋଧରୁ ଲୀଳାବନ୍ଦୀ ଯାତ୍ରାକୁ ସେ ସମୟକୁ ଧାର୍ଯ୍ୟ କରାଯାଏ ।

ଲୀଳାବନ୍ଦୀ ମଞ୍ଚ : ଲୋକକଳାର ପରିବର୍ତ୍ତିତ ରୂପ ଲୀଳାବନ୍ଦୀ । ଲୀଳାବନ୍ଦୀ ନାଟକ ନୂତନ ନିର୍ମିତ ମଞ୍ଚବେଦୀରେ ଅଭିନୀତ ହେଲା । ସମାବେଶ ଦର୍ଶକଙ୍କର ମଧ୍ୟଭାଗରେ ୧୦ଫୁଟରେ ୧୦ଫୁଟ ଏକ ବର୍ଗାକାର କ୍ଷେତ୍ରରେ ଚାରିଖୁଣ୍ଟ ମଧ୍ୟରେ ଖୁଣ୍ଟ ଚଟାଣର ୧୦ଫୁଟ ଉର୍ଦ୍ଧ୍ୱରେ ଛାମୁଣ୍ଡିଆ ତଳେ ନାଟକ ମଞ୍ଚସ୍ଥ ହେଲା । ଏହାକୁ ମଞ୍ଚବେଦୀ କୁହାଯାଏ । ମଞ୍ଚବେଦୀଠାରୁ କଳାକାରମାନଙ୍କର ପ୍ରବେଶ ପ୍ରସ୍ଥାନ ପାଇଁ ବେଶଘର ପର୍ଯ୍ୟନ୍ତ ଏକ ଅଭିନୟ ପଥ ରହିଲା । କଳାକାରମାନଙ୍କ ପ୍ରବେଶପଥର ସାମ୍ନାରେ ମଞ୍ଚବେଦୀ ତାକୁ ଲାଗିକରି ଓସ୍ତାଦଙ୍କ ନିର୍ଦ୍ଦେଶନାରେ ବାଦ୍ୟଯନ୍ତ୍ରର ସ୍ଥାନ ସଂରକ୍ଷିତ ରହିଲା । ନାଟକ ଆରମ୍ଭ ପୂର୍ବରୁ ସମ୍ମିଳିତ ବାଦ୍ୟଯନ୍ତ୍ରର ମାଙ୍ଗଳିକ ଧ୍ୱନି ବାଜେ ତା'ପରେ ଓସ୍ତାଦଙ୍କ ହୁଇସିଲ୍ ବାଜିଲେ ଦୃଶ୍ୟ ପରେ ଦୃଶ୍ୟ

ମଞ୍ଚବେଦୀରେ ଅଭିନୀତ ହୁଏ। ମଶାଲ ଆଲୋକରେ ଏ ନାଟକ ଅଭିନୀତ ହୁଏ।

ନାଟକରେ ରାଜାରାଣୀ କଥା, ରାଜକୁମାର ରାଜକୁମାରୀର ପ୍ରେମ ବିଚ୍ଛେଦ କଥା, ଖଳନାୟକର ନାଟକକୁ ଖେଳାଇବାର ଦୃଶ୍ୟ ତଲୁଆର ଯୁଦ୍ଧର ଘନଘଟା ଦର୍ଶକଙ୍କୁ ରାତିପାହିଲା ଯାଏ ମଞ୍ଚ ପାଖରେ ଛନ୍ଦି ରଖେ। ନୟାଗଡ଼ର କୁରାଳ, କୋମଣ୍ଡ, ଭାଡ଼ିକିଲା, ଗୋଟିସାହି କଲ୍ୟାଣପୁର, ସୋଲପଟା ବାଉଁଶିଆପଡ଼ା ଗ୍ରାମମାନଙ୍କରେ ଲୀଳାବନ୍ଦୀ ନାଟକ ଥିବାର ଶ୍ରବଣକୁ ଆସେ।

<u>ଅପେରା :</u> ଲୀଳାବନ୍ଦୀ ପରିମାର୍ଜିତ ରୂପ ଅପେରା ନାଟକ। ଅପେରାରେ ପୌରାଣିକ ଐତିହାସିକ କାଳ୍ପନିକ ନାଟକମାନ ଅଭିନୀତ ହେଲା। ନାଟକୀୟ ଧାରା ପରିବର୍ତ୍ତନ ସହିତ ସାଜସଜ୍ଜାପୂର୍ଣ୍ଣ ମଞ୍ଚ ଚାରିପାଖକୁ ମୁହଁ ଖୋଲା ରଖି ମଞ୍ଚବେଦୀରେ ନାଟକ ଅଭିନୀତ ହେଲା। ମଞ୍ଚର ଛାତକୁ ଚାନ୍ଦୁଆ ଦ୍ୱାରା ଆବୃତ୍ତ କରାଗଲା। ଚାନ୍ଦୁଆ ତଳକୁ ଦେଢ଼ ଫୁଟ ଓସାର ଝାଲର ଚାରିପଟକୁ ଘେର ହୋଇ ରହିଲା। ଏହି ସମୟରେ ପେଟ୍ରୋମାକ୍ସ ଲାଇଟ୍‌ର ବ୍ୟବହାର ମଞ୍ଚରେ ଦେଖାଗଲା। ନାଟ୍ୟକଳା ଅଧିକ ମାଧୁର୍ଯ୍ୟପୂର୍ଣ୍ଣ ହେଲା।

୧୯୭୦ ମସିହା ପର୍ଯ୍ୟନ୍ତ ଅପେରା ମଞ୍ଚରେ ଡେ ଲାଇଟ୍, ପେଟ୍ରୋମାକ୍‌ସ ଲାଇଟ୍‌ର ବ୍ୟବହାର ହେଉଥିଲା। ଏହା ପରେ ମଞ୍ଚରେ ଇଲେକ୍‌ଟ୍ରିକ୍ ଆଲୋକର ବ୍ୟବହାରରେ ଅପେରା ମଞ୍ଚ ଝଲସି ଉଠିଲା। ସ୍ୱଟ୍‌ଲାଇଟ୍‌ର ବ୍ୟବହାର ହେଲା। ମଞ୍ଚର ନକ୍ସା ବଦଳିଗଲା। ଅଭିନେତାର ପ୍ରବେଶ ପ୍ରସ୍ଥାନରେ ସ୍ୱଟ୍‌ଲାଇଟ୍‌ର ବ୍ୟବହାର, ଯୁଦ୍ଧ ସମୟରେ ଜିକ୍‌ଯାକ୍ ଆଲୋକରେ ଦୃଶ୍ୟ ପରିବେଷଣ ଚମତ୍କାର ହୋଇଉଠିଲା। ଏହି ସମୟରେ ନୟାଗଡ଼ ନାଚଗୁରୁମାନେ ବାବାଜୀ ନାୟକ ଗୋଟିସାହି, ପତିଆ ମାଷ୍ଟ୍ରେ ଖଡିଆ, ବନମାଳୀ ମାଷ୍ଟ୍ରେ ବାଉଁଶିଆପଡ଼ା, ନିବାସୀ ମାଷ୍ଟ୍ରେ ଖଡ଼ଗ ପ୍ରସାଦ। ଏମାନଙ୍କ ପରପୀଢ଼ି ନାଚଗୁରୁ ହେଲେ ଅନାଥ ନାୟକ ଗୋଟିସାହି, ମାନଭଞ୍ଜନ ନାୟକ ଗୋଟିସାହି, ଘନଶ୍ୟାମ ପ୍ରଧାନ କଲ୍ୟାଣପୁର। ଏହି ସମୟକୁ କଟକିୟା ଅପେରା ବେଣିରାମପୁର, ରାଢ଼ଙ୍ଗ, ତାରପୁର, କଟକ କଲ୍ୟାଣପୁର ଓଝା ପାର୍ଟି କଣ୍ଟିଲୋ, ଶରଣକୁଳ, ଇଟାମାଟି ଯାତ୍ରା ପଡ଼ିଆରେ ଟିକେଟ ଘେରରେ ନାଟକ ମଞ୍ଚସ୍ଥ କରୁଥିଲେ। କଟକିୟା ଅପେରାର ପ୍ରଭାବ ଗ୍ରାମ୍ୟ ନାଟ୍ୟଦଳକୁ ବିଶେଷଭାବେ ପ୍ରଭାବିତ କରୁଥିଲା। କଟକିୟା ଅପେରା ନାଟକ ପରିବେଷଣ ପୂର୍ବରୁ ଦର୍ଶକଙ୍କୁ ଆକୃଷ୍ଟ କରିବା ନିମିତ୍ତ ଓଡ଼ିଶୀ ନୃତ୍ୟ ଅବା ଆଦିବାସୀ ନୃତ୍ୟ ଅଥବା ପଲ୍ଲୀ ନୃତ୍ୟ ପ୍ରଦର୍ଶନ କରୁଥିଲେ। ନାଟ୍ୟ କାହାଣୀର ପ୍ରତି ଅଙ୍କ ଆରମ୍ଭରେ ଡୁଏଟ ପରିବେଷଣ କରୁଥିଲେ। ଗ୍ରାମ୍ୟ ନାଟ୍ୟଦଳଗୁଡ଼ିକ ପୋଖତ କଟକିୟା ନାଚଗୁରୁଙ୍କୁ ରଖି ନାଚ ଶିଖୁଥିଲେ। ଗ୍ରାମ୍ୟ ନାଟ୍ୟଦଳଗୁଡ଼ିକରେ ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱୀମୂଳକ ଭାବ ରହୁଥିଲା।

୧୯୭୪ ମସିହା ଅଥବା ଏହାର ପାଖାପାଖି ସମୟରେ ହରିପୁର ଗ୍ରାମର ନାଟ୍ୟ ସଂଗଠନ ନିବାସୀ ମାଷ୍ଟ୍ରଙ୍କ ନିର୍ଦ୍ଦେଶନାରେ ଏବଂ ଭାଡ଼ିକିଲା ନାଟ୍ୟଦଳ ଘନଶ୍ୟାମ ପ୍ରଧାନଙ୍କ ନିର୍ଦ୍ଦେଶନାରେ ଗେଟ୍ ଟିକେଟ୍‌ରେ ନାଟକ ମଞ୍ଚସ୍ଥ କରିବାରେ ସକ୍ଷମ ହୋଇଥିଲେ ।

<u>ମଞ୍ଚବେଦୀର ପରିବର୍ତ୍ତନ :</u> ୧୯୭୪ ମସିହାର ପରବର୍ତ୍ତୀ ସମୟରେ ମଞ୍ଚବେଦୀର ଦୈର୍ଘ୍ୟ ପ୍ରସ୍ଥ ୧୮ଫୁଟ ରହିଲା । ୧୦ଗୋଟି ଖୁଣ୍ଟ ସ୍ତମ୍ଭରେ ମଞ୍ଚର ଛାତ ସୁନ୍ଦର କରି ସଜ୍ଜା ହେଲା । ବିଭିନ୍ନ ପ୍ରକାର ଆଲୋକ ଫୋକସର ଇଲେକ୍ଟ୍ରି ବଲ୍‌ବରେ ପ୍ରଧାନ ସ୍ତମ୍ଭମାନଙ୍କରେ ଖଞ୍ଜାଗଲା, ବେଶଗୃହର ସାମ୍ନାପଟକୁ ରହିଥିବା ମୁଖ୍ୟ ସ୍ତମ୍ଭ ପାର୍ଶ୍ୱରୁ ଦୁଇଟି ପଥ ବେଶଗୃହ ପର୍ଯ୍ୟନ୍ତ ରହିଲା । ଗୋଟାଏ କାହାଣୀ ସହ ସଂଯୋଜିତ ବାହାରୁ ଆସୁଥିବା ଚରିତ୍ରର ପ୍ରବେଶପଥ ଅନ୍ୟଟି ଘର ଭିତରୁ ଆସୁଥିବା ଚରିତ୍ରର ପ୍ରବେଶପଥ । ନାଟ୍ୟ କାହାଣୀ ସହିତ ସଂପୂର୍ଣ୍ଣ ସଂପର୍କିତ ଏହି ଦୁଇ ପ୍ରବେଶ ପ୍ରସ୍ଥାନ ପଥ । ଯେପରିକି ଶହୀଦ୍ ପୃଥ୍ୱୀରାଜ ନାଟକରେ ବାହାର ରାଜ୍ୟରୁ ଆସୁଛି ମହମ୍ମଦ ଘୋରୀ ଦିଲ୍ଲୀ ମଧ୍ୟକୁ । ପୃଥ୍ୱୀରାଜ ନିଜ ରାଜ୍ୟ ମଧ୍ୟରୁ ପ୍ରବେଶ କରି ମହମ୍ମଦ ଘୋରୀର ସାମ୍ନା କରୁଛନ୍ତି । ପ୍ରବେଶ ପ୍ରସ୍ଥାନ ମଧ୍ୟବର୍ତ୍ତୀ ସ୍ଥାନ ମୁଖ୍ୟ ମଞ୍ଚକୁ ଲାଗି ସଂଗୀତ ବାଦ୍ୟଯନ୍ତ୍ରର ସ୍ଥାନ ସଂରକ୍ଷିତ । ମଞ୍ଚର ଚାରିପାର୍ଶ୍ୱକୁ ଘେରି ଦର୍ଶକମାନଙ୍କ ସ୍ଥାନ । ସେହି ସ୍ଥାନ ମଧ୍ୟରେ ଆଲୋକ ପରିଚାଳନାର ସ୍ଥାନ । ନାଟ୍ୟ ନିର୍ଦ୍ଦେଶକଙ୍କ ନିର୍ଦ୍ଦେଶନାରେ ମଞ୍ଚକ୍ରିୟା ଚାଲେ । ପ୍ରବେଶ ପ୍ରସ୍ଥାନ ପଥକୁ ସାମ୍ନାକରି ସ୍ପଟ୍‌ଲାଇଟ୍ ରହେ । ମୁଖ୍ୟ ମଞ୍ଚର ମଧ୍ୟଭାଗରେ ମାଇକ୍ରୋଫୋନ୍ ଝୁଲୁଥାଏ । କଳାକାରମାନଙ୍କ ଅଭିନୟ ସହିତ ତାଳମାନ ରଖି ଯନ୍ତ୍ରସଂଗୀତ ଓ ଆଲୋକର ପରିଚାଳନା ହୁଏ । ନିର୍ଦ୍ଦେଶକର ହୁଇସିଲ୍ ମାରିବାର ଆବଶ୍ୟକତା ନଥାଏ । ସଂଗୀତ ମାଧ୍ୟମରେ ଦୃଶ୍ୟ ଚରିତ୍ରର ପ୍ରବେଶ ମଞ୍ଚକୁ ହୁଏ । ଏ ହେଉଛି ଏକବେଦୀୟ ମଞ୍ଚର ନାଟ୍ୟ ସଂରଚନା । ଏହି ମଞ୍ଚରେ ଡୁଏଟ୍‌ର ପରିବେଷଣ ଦର୍ଶକଙ୍କର ଅଧିକ ଆଦରଣୀୟ ଥିଲା ।

<u>ନାଟକରେ ନୃତ୍ୟନାଟିକା ଓ ଡୁଏଟ୍‌ର ପ୍ରଭାବ :</u> ନାଟକର ମାଙ୍ଗଳିକ ଯନ୍ତ୍ରସଂଗୀତ ପରେ ପରେ ନାଟକ ଆରମ୍ଭ ପୂର୍ବରୁ ଦର୍ଶକଙ୍କୁ ନାଟକ ଆଡ଼କୁ ଟାଣିନେବା ପାଇଁ ନୃତ୍ୟନାଟିକାର ସଂଯୋଜନା ହୋଇଥାଏ । ଏ ନୃତ୍ୟନାଟିକା ଏକ କ୍ଷୁଦ୍ର କାହାଣୀର ଉପଲକ୍ଷ । ସେପରି ନାଟକର ଅଙ୍କ ସମାପ୍ତି ପରେ ଏକ ଡୁଏଟ୍‌ର ସଂଯୋଗ ନାଟକର ସାଙ୍ଗୀତିକତାକୁ ଧରି ରଖେ । ନୃତ୍ୟନାଟିକା ଓ ଡୁଏଟ୍ ନାଟକର ଅଲଗା ବିଭାବ ହୋଇଥିଲେ ହେଁ ଏ ଦୁଇ ପର୍ବ ନାଟକକୁ, ଗୀତିନୃତ୍ୟପୂର୍ଣ୍ଣ ମାଧୁର୍ଯ୍ୟ କରିଥାଏ । ୧୯୭୦ ମସିହାରୁ ୧୯୯୦ ମସିହା ପର୍ଯ୍ୟନ୍ତ ଗଣ ନାଟକରେ ନୃତ୍ୟନାଟିକା ଓ ଡୁଏଟ୍‌ର ପ୍ରଭାବ ରହିଥିଲା ।

ନୃତ୍ୟନାଟିକା ରଚନାର ସିଦ୍ଧପୁରୁଷ ବ୍ରଜବନ୍ଧୁ ପ୍ରଧାନ : ବ୍ରଜବନ୍ଧୁ ପ୍ରଧାନ ବଡ଼ଗୋରଡ଼ା ଜମିଦାର କୁବେର ଲୋକନାଥଙ୍କର ଉତ୍ତରଦାୟଦ। ସେ କୁବେର ଲୋକନାଥ ହାଇସ୍କୁଲ, ବଡ଼ଗୋରଡ଼ାର ଶାରୀରିକ ଶିକ୍ଷା ଶିକ୍ଷକ। ସେ ମହାଶୟ ଜଣେ ପ୍ରଖ୍ୟାତ ମଞ୍ଚ ଅଭିନେତା। ଦଗ୍ଧ ବନର ଗୋଲାପର ନାଟ୍ୟକାର ଏବଂ ସମାଜସେବୀ। ତାଙ୍କ ସହିତ ସାକ୍ଷାତ୍‌କାରରେ କହନ୍ତି- ସେ ଶତାଧିକ ନୃତ୍ୟନାଟିକା ରଚନା କରିଛନ୍ତି। ତାଙ୍କର ପଲ୍ଲୀଶ୍ରୀ ନୃତ୍ୟନାଟିକା ପୁସ୍ତକରେ ଷୋଳଟି ନୃତ୍ୟନାଟିକା ପ୍ରକାଶ ପାଇଛି, ଯଥା- ଭକ୍ତ ସାଲବେଗ, ଜତୁଗୃହ ଦହନ, ଅନ୍ତିମ ରାସ, ଲୀଳାବତୀ ହରଣ, ଦୁର୍ଭିକ୍ଷ ଶରଣ, ବ୍ରହ୍ମଶ୍ରୀ ବିଶ୍ୱାମିତ୍ର, ଅଭିମନ୍ୟୁ ବଧ, ସନ୍ନ୍ୟାସୀ ଗୌତମ, ସତୀ ଅନସୂୟା, ଟୀକା ଗୋବିନ୍ଦ ଚନ୍ଦ୍ର, ଅଶ୍ୱମେଧ ଯଜ୍ଞ, ଭକ୍ତ ବଳରାମ, ମାନଭଞ୍ଜନ, ମାନିନୀ, ଅନ୍ଧପୁଅ।

ଡୁଏଟ୍‌କାର ପଦ୍ମନାଭ ନାୟକ ଓ ଆନନ୍ଦ ଚନ୍ଦ୍ର ଲେଙ୍କା : ନୟାଗଡ଼ ଜିଲ୍ଲାର ସୁନାମଧନ୍ୟ ଡୁଏଟକାର ପଦ୍ମନାଭ ନାୟକ ଗୋଡିସାହି ଏବଂ ଆନନ୍ଦ ଚନ୍ଦ୍ର ଲେଙ୍କା ଗୋଡିସାହି। ପଦ୍ମନାଭ ନାୟକ ନାରୀ ଭୂମିକାରେ ଆନନ୍ଦ ଚନ୍ଦ୍ର ଲେଙ୍କା ପୁରୁଷ ଭୂମିକାରେ ଅଭିନୟ ନୃତ୍ୟ କରନ୍ତି। ସେମାନେ ଡୁଏଟରେ ପଲ୍ଲୀଗୀତି ନୃତ୍ୟ ଓ ସମ୍ବଲପୁରୀ ନୃତ୍ୟ କରନ୍ତି। ସେମାନଙ୍କର ବକମା ଡୁଏଟ ଏପର୍ଯ୍ୟନ୍ତ ମନରୁ ଲିଭିନି।

ଦାଶରଥୀ ପାଇକରାୟ ସୋଲପଟା, ରାହାଣ ପ୍ରଧାନ ସୋଲପଟା, କୀର୍ତ୍ତନ ସାହୁ ମାଛିପଡ଼ା, ଶଙ୍କର୍ଷଣ ନନ୍ଦ ରଘୁନାଥପୁର, ନୟାଗଡ଼ର ଖ୍ୟାତନାମା ଡୁଏଟ ଅଭିନେତା। ଏ ପର୍ଯ୍ୟନ୍ତ ଗଣନାଟ୍ୟରେ ପୁରୁଷମାନେ ନାରୀ ଚରିତ୍ରରେ ଅଭିନୟ କରୁଥିଲେ।

ଆଧୁନିକ ଦ୍ୱିବେଦୀୟ ମଞ୍ଚ : ୧୯୮୦ ମସିହା ପରଠାରୁ ଗଣନାଟ୍ୟରେ ଦୁଇଟି ପୂର୍ଣ୍ଣ ମଞ୍ଚରେ ନାଟକ ଅଭିନୀତ ହେଲା। ମୁଖ୍ୟ ମଞ୍ଚ ସମାବେଶ ଦର୍ଶକଙ୍କ ମଧ୍ୟଭାଗରେ ଯେପରି ଆଗରୁ ବ୍ୟବହାର ହେଉଥିଲା। ମୁଖ୍ୟ ମଞ୍ଚର ବିପରୀତ ସ୍ଥାନରେ ନାଟ ପରିବେଷଣ ଦୂରତା ରକ୍ଷାକରି ବେଶଘରକୁ ଲାଗି ଦୃଶ୍ୟ ପରଦା ଦ୍ୱାର ଆବଦ୍ଧ ଥିଏଟର ମଞ୍ଚ। ଥିଏଟର ମଞ୍ଚଠାରୁ ଦୁଇଟି ପ୍ରବେଶ ପ୍ରସ୍ଥାନ ପଥ ମୁଖ୍ୟ ମଞ୍ଚକୁ ସଂଯୋଜିତ। ମୁଖ୍ୟ ମଞ୍ଚରେ ନାଟ୍ୟ କାହାଣୀ ଅଭିନୀତ ହେଲାବେଳେ କାହାଣୀ ବିସ୍ମୟ ଘଟଣାବଳୀ ଝଡ଼ ବତାଶ ଦୃଶ୍ୟ, ନଦୀରେ ଘଟିଯାଉଥିବା ଦୁର୍ଘଟଣା, ଚଉରା ମୂଳରେ ସନ୍ଧ୍ୟାଦୀପ ଲଗାଇବା ଦୃଶ୍ୟ ପରଦା ମଞ୍ଚରେ ଦୃଶ୍ୟମାନ ହୁଏ। ଡ୍ରାମା ମଞ୍ଚ ଅପେରା ମଞ୍ଚ ସଂଯୋଗରେ ନାଟକ ଦର୍ଶକଙ୍କୁ ଅଧିକ ଆକର୍ଷଣ କରେ। ଭ୍ରାମ୍ୟମାଣ ନାଟ୍ୟଦଳ ପଣ୍ଡାଙ୍କର ସାମାଜିକ ନାଟକ ଦୁଃଖନଦୀର ତୀରେ ଗ୍ରାମ୍ୟ ନାଟ୍ୟ ଦଳ ଉପରେ ପ୍ରଭାବ ପକାଇଥିଲା। ୧୯୮୨ ମସିହାରେ ରଜ ଉତ୍ସବ ସମୟରେ ଲେଖକ (ପାଣ୍ଡବ ନାୟକ)ଙ୍କ ନିର୍ଦ୍ଦେଶନାରେ ବ୍ରାହ୍ମଣୀଦେଈ ନାଟ୍ୟ

ଅନୁଷ୍ଠାନ ଗୋଡିସାହିରେ ଉମାକାନ୍ତ ବେହେରାଙ୍କ ସାମାଜିକ ନାଟକ 'ବାହାବେଦୀ ହେଲା ଗାଁ ମଶାଣି' ଏହି ଦ୍ୱିବେଦୀ ମଞ୍ଚରେ ଗୋଡିସାହିରେ ମଞ୍ଚସ୍ଥ କରାଇ ବାହା ବାହା ନେଇଥିଲେ। ଗ୍ରାମର ବଟକୃଷ୍ଣ ନାୟକଙ୍କ ନିର୍ଦ୍ଦେଶରେ ଭୁବନ ଚିତ୍ରାଳୟ ଇଟାମାଟି ଏ ମଞ୍ଚ ନିର୍ମାଣ କରିଥିଲେ। ପୃଷ୍ଟି ଇଲେକ୍ଟ୍ରିକାଲ୍‌ସ ଓଡ଼ଗାଁ ଆଲୋକର ସାଜସଜ୍ଜା କରିଥିଲେ। ଅଞ୍ଚଳରେ ଗୋଡିସାହି ଗ୍ରାମରେ ସାମାଜିକ ନାଟକ ପ୍ରଥମେ ମଞ୍ଚସ୍ଥ ହୋଇଥିଲା। ଏହି ସମୟକୁ କାଳ୍ପନିକ ନାଟକଗୁଡ଼ିକ ମଞ୍ଚରୁ ଓହରିଲେଣି। କେବଳ ଐତିହାସିକ ନାଟକର ପ୍ରଭାବ ରହିଛି। ଗ୍ରାମାଞ୍ଚଳ ନାଟ୍ୟ ଅନୁଷ୍ଠାନମାନଙ୍କରେ ରିକ୍‌ସାବାଲା, ଗୋଟିଏ ପଇସା, ଅନ୍ୟ ସାମାଜିକ ନାଟକମାନ ମଞ୍ଚସ୍ଥ ହେବାର ଦେଖାଯାଏ।

<u>ଗଣନାଟ୍ୟର ସାଂପ୍ରତିକ ମଞ୍ଚଶୈଳୀ :</u> ୧୯୯୦ ମସିହା ପରଠାରୁ ଯାତ୍ରା ମଞ୍ଚ ସାଂପ୍ରତିକ କଳାଶୈଳୀରେ ନିର୍ମାଣ ହେବାର ଦେଖାଗଲା। ଯାତ୍ରା ମଞ୍ଚରେ ଥିଏଟର ମଞ୍ଚ ସହ ଚଳଚ୍ଚିତ୍ର ଶୈଳୀ ପ୍ରୟୋଗ ହେଲା। ନାଟ୍ୟ କାହାଣୀ ତିନି ଥାକ ମଞ୍ଚରେ ପରିବେଷଣ ହେଲା। ସମାବେଶ ଦର୍ଶକଙ୍କର ମଧ୍ୟଭାଗରୁ ମୁଖ୍ୟ ମଞ୍ଚ ସହିତ ଗୋଟିଏ ସମତଳରେ ନାଟ୍ୟମଞ୍ଚର ଦୂରତା ରକ୍ଷାକରି ପ୍ରବେଶ ପ୍ରସ୍ଥାନ ଶେଷଭାଗରେ ବେଶଘରକୁ ଲାଗି ତ୍ରିମୁଖୀ ପରଦା ମଞ୍ଚ ନିର୍ମାଣ ହେଲା। ପରଦା ମଞ୍ଚର ବାମପାର୍ଶ୍ୱରେ ଦକ୍ଷିଣ ପାର୍ଶ୍ୱରେ ନାଟ୍ୟ ମଞ୍ଚର ସମତଳକୁ ଲାଗି ସମୂହ ବାଦ୍ୟଯନ୍ତ୍ର ଗାୟକ ଗାୟିକାଙ୍କ ସ୍ଥାନ ଏବଂ ବିଦ୍ୟୁତ୍ ସରବରାହର ପରିଚାଳନା ରହିଲା। ନାଟକ ରାତ୍ର ୧୧ଟାରୁ ଆରମ୍ଭ ହୁଏ ରାତି ପାହିଯାଏ। ନାଟକ ଆରମ୍ଭ ପୂର୍ବରୁ ମେଲୋଡ଼ି କାର୍ଯ୍ୟକ୍ରମ ରେକର୍ଡ଼ ଡ୍ୟାନ୍‌ସ ଦେଢ଼ ଘଣ୍ଟା ଦୁଇ ଘଣ୍ଟା ପର୍ଯ୍ୟନ୍ତ ଦର୍ଶକଙ୍କୁ ପ୍ରମୋଦ କରି ବାନ୍ଧିରଖେ। ମେଲୋଡ଼ି ଆରମ୍ଭ ପୂର୍ବରୁ ଦଶଭୂଜା ଦୁର୍ଗା, ମହାଦେବ, ଗଣେଶ ଗଣନାଟକର ଆରାଧ୍ୟ ଦେବଦେବୀଙ୍କ ଭକ୍ତି ସଂଗୀତ ନୃତ୍ୟରତା ସଂଖ୍ୟାଧିକ ପୁଅଝିଅ କଳାକାରଙ୍କ ବନ୍ଦନା ଗୀତିକାରେ ପରଦା ମଞ୍ଚରେ ଉପସ୍ଥିତ ଦେବାଦେବୀଙ୍କ ଆବିର୍ଭାବରେ ଦର୍ଶକ ବିମୋହିତ ହୋଇଯାନ୍ତି। ତା'ପରେ ଗୋଟାକ ପରେ ଗୋଟେ ମେଲୋଡ଼ି ସଂଗୀତ ଗାୟକ ଗାୟିକାଙ୍କର ଗୀତ ଓ କଥା ଫୋପଡ଼ା ଫୋପଡ଼ିରେ ଚାଲେ। ଗୋଟାଏ ମେଲୋଡ଼ି ଗୀତ ସରିଲେ ସଂଖ୍ୟାଧିକ ନୃତ୍ୟରତା ପୁଅ ଝିଅଙ୍କର ରେକର୍ଡ଼ ଡ୍ୟାନ୍‌ସ ଚାଲେ। ମେଲୋଡ଼ି ଡ୍ୟାନ୍‌ସରେ ମୁଖ୍ୟ ମଞ୍ଚ, ମଧ୍ୟ ମଞ୍ଚ ଏବଂ ପରଦା ମଞ୍ଚ ଏକସମୟରେ ଚଳଚଞ୍ଚଳ ହୋଇଉଠେ। ଏ ପ୍ରୋଗ୍ରାମ ଦୁଇଘଣ୍ଟା ମଞ୍ଚରେ ବିତାଏ। ତା'ପରେ ନାଟ୍ୟ କାହାଣୀ ଗତିଶୀଳ ହୋଇ ରାତି ପାହିଲା ବେଳକୁ ସରିଯାଏ। ଏ ସାଜସଜ୍ଜାର ନାଟକ ପ୍ରାୟତଃ ସବୁ ଗାଁ'ରେ ଦଶହରା, ରଜପର୍ବ ଏବଂ ଗ୍ରାମର ଯାନିଯାତ୍ରା ସମୟରେ ଅନୁଷ୍ଠିତ ହେଲାଣି। ଝିଅ ଭୂମିକାରେ ଝିଅମାନେ ଅଭିନୟ କଲେଣି। ବର୍ତ୍ତମାନ ନାଟ୍ୟଦଳମାନେ କେବଳ ସାମାଜିକ ନାଟକ ମଞ୍ଚସ୍ଥ କରୁଛନ୍ତି।

ଆଜିର ନାଟକ ମଞ୍ଚସ୍ଥ ବ୍ୟୟବହୁଳର ଅର୍ଥ ଅଟକଳ। ନାଟ୍ୟଦଳମାନେ ରିହରସାଲ ଗୃହରେ ୨୦/୨୫ ଦିନ ନିର୍ଦ୍ଦେଶକଙ୍କ ନିର୍ଦ୍ଦେଶନାରେ ଚରିତ୍ରର ସଂଳାପ ପୋଜପୋଷ୍ଟର ଅଭ୍ୟାସ କରନ୍ତି। ନାଟକ ମଞ୍ଚସ୍ଥ ପୂର୍ବରୁ ନାଟକରେ ଅଭିନୟ କରୁଥିବା କଳାକାରମାନେ ନିଜର ଅଭିନୟକୁ ରଜଘୋଷ କରି ମାଜି ରଖିଥାନ୍ତି। କାହିଁକିନା ସେମାନେ ଦର୍ଶକଙ୍କର ସମ୍ମୁଖୀନ ହେବେ। ନାଟକକୁ ଉଚ୍ଚମାନରେ ଧରି ରଖିବା ପାଇଁ ମଞ୍ଚର ସମସ୍ତ ବିନିଯୋଗ କ୍ରିୟାକୁ ରାତିକ ପାଇଁ କିଣିବାକୁ ପଡ଼େ- ଚିତ୍ରାଳୟ ତା'ର ମଞ୍ଚ ସହିତ ବିଦ୍ୟୁତ୍ ପରିଚାଳନା, ମ୍ୟୁଜିକ୍, ଝିଅ କଳାକାର, ନିର୍ଦ୍ଦେଶକ, ମେଲୋଡ଼ି, ରେକର୍ଡ଼ ଡ୍ୟାନ୍ସ ଦଳ। ଏଣୁ ଆଜିର ଗ୍ରାମ୍ୟ ନାଟ୍ୟଦଳ ନାଟକଟିଏ ମଞ୍ଚସ୍ଥ କରିବାକୁ ହେଲେ ବ୍ୟୟବହୁଳ ସହିବାକୁ ହୁଏ।

<u>ନାଟ୍ୟ ନିର୍ଦ୍ଦେଶକ ସଂଘ ନୟାଗଡ଼ :</u> ନୟାଗଡ଼ ଜିଲ୍ଲାର ସବୁ ଅଞ୍ଚଳରେ ନାଟ୍ୟ ନିର୍ଦ୍ଦେଶକମାନେ ନାଟ୍ୟ ନିର୍ଦ୍ଦେଶନା ଦିଅନ୍ତି। ଓଡ଼ିଶାର ସୁନାମଧନ୍ୟ ଯାତ୍ରା ନିର୍ଦ୍ଦେଶକ ଜନାର୍ଦ୍ଦନ ମିଶ୍ରଙ୍କ ଦ୍ୱାରା ନାଟ୍ୟ ନିର୍ଦ୍ଦେଶକମାନେ ପ୍ରଭାବିତ ହୋଇ ନୟାଗଡ଼ରେ ଯାତ୍ରା ନାଟକ ପରିବେଷଣରେ ଅଦ୍ଭୁତ ପରିବର୍ତ୍ତନ ଆଣିଥିଲେ ଅଭିନୟରେ ମଞ୍ଚାୟନରେ। ତ୍ରିବେଦୀୟ ମଞ୍ଚ ବ୍ୟବହର କରି ନୟାଗଡ଼ର ଯାତ୍ରାମଞ୍ଚ ଦର୍ଶକଙ୍କର ଆଦରଣୀୟ ହୋଇପାରିଛି। ନୟାଗଡ଼ର ଯାତ୍ରାମଞ୍ଚ ନିର୍ଦ୍ଦେଶକମାନେ ଯାତ୍ରା ନାଟକ ରଚୟିତା ଜନାର୍ଦ୍ଦନ ମିଶ୍ର, ଅନନ୍ତ ଓଝା, କୈଳାଶ ମଲ୍ଲିକ, ଆଶୁତୋଷ ମହାପାତ୍ର, କିଶୋର ଖଣ୍ଡୁଆଳ, ହୃଷିକେଶ ଷଡ଼ଙ୍ଗୀ, ଜୀବନ ଜେନା, ପ୍ରଦୀପ ବେହେରା, ହର ବାରିକ, ସର୍ବେଶ୍ୱର ଦାସ ନାଟ୍ୟକାରମାନଙ୍କର ନାଟକ ମଞ୍ଚସ୍ଥ କରାଇ ବେଶ୍ ଖ୍ୟାତି ଅର୍ଜନ କରିଛନ୍ତି।

ଏ ଗ୍ରନ୍ଥର ଲେଖକ ନିର୍ଦ୍ଦେଶକ ପାଣ୍ଡବ ନାୟକ ଗୋଡିସାହି, ନିର୍ଦ୍ଦେଶକ ସୁବାସ କଅଁର ଖେଡ଼ପଡ଼ା, ପ୍ରଭାକର ପ୍ରଧାନ ଗମ୍ଭାରିଡିହି, ଯୋଗେନ୍ଦ୍ର ଲେଙ୍କା ଗୋଡିସାହି, ପରମାନନ୍ଦ ପ୍ରଧାନ ଗବନଙ୍କ ଆଲୋଚନାଚକ୍ରର ନିଷ୍ପତ୍ତିକ୍ରମେ ନାଟ୍ୟ ନିର୍ଦ୍ଦେଶକ ସଂଘ, ନୟାଗଡ଼ ୦୧.୦୪.୨୦୦୭ ମସିହାରେ ଗଢ଼ା ହେଲା। ନାଟ୍ୟ ନିର୍ଦ୍ଦେଶ ସଂଘରେ ନୟାଗଡ଼ ଅଞ୍ଚଳର ୭୮ ଜଣ ନାଟ୍ୟ ନିର୍ଦ୍ଦେଶକ ପଞ୍ଜିକୃତ ହୋଇଥିଲେ। ନୟାଗଡ଼ ନାଟ୍ୟ ନିର୍ଦ୍ଦେଶ ସଂଘ ସରକାରଙ୍କ ଦପ୍ତରରେ ରେ.ନଂ.୨୭୨୮୬୪ ଅଫ୍ ୨୦୧୧ରେ ପଞ୍ଜିକୃତ ହୋଇଛି। ସରକାରଙ୍କ ଜନ ସଚେତନ ବିଜ୍ଞାପନଗୁଡ଼ିକୁ ପଥପ୍ରାନ୍ତର ନାଟକ ମାଧ୍ୟମରେ ନୟାଗଡ଼ ନାଟ୍ୟ ନିର୍ଦ୍ଦେଶକ ସଂଘର କଳାକାରମାନେ ଗ୍ରାମେ ଗ୍ରାମେ ଭ୍ରମଣ କରି ଜନସଚେତନ ସୃଷ୍ଟି କରନ୍ତି।

<u>ଓଡ଼ିଶାର ଯଶସ୍ୱୀ ଯଶା ଯାତ୍ରା ନିର୍ଦ୍ଦେଶକ ଜନାର୍ଦ୍ଦନ ମିଶ୍ର :</u> ଜନାର୍ଦ୍ଦନ ମିଶ୍ର ଓଡ଼ିଶାର ଗଣନାଟ୍ୟ ରଙ୍ଗମଞ୍ଚର ଜଣେ ଯଶସ୍ୱୀଯଶା ନିର୍ଦ୍ଦେଶକ, ଯାତ୍ରା ମଞ୍ଚ ଆକାଶରେ ଏକ ଉଜ୍ଜ୍ୱଳ ତାରକାର ପ୍ରତିଭା ନୟାଗଡ଼ର ଗର୍ବ ଗୌରବ। ଜନାର୍ଦ୍ଦନ

ମିଶ୍ର ନୟାଗଡ଼ ଜିଲ୍ଲା ସୋଲପଟା ପଞ୍ଚାୟତ ଅଧୀନସ୍ଥ ପଦ୍ମାଦେଇପୁର ବ୍ରାହ୍ମଣ ଶାସନରେ ପିତା ସୋମନାଥ ମିଶ୍ର ମାତା ହୀରାଦେଈଙ୍କ କୋଳରେ ତା.୦୨.୦୨.୧୯୫୨ ମସିହାରେ ଜନ୍ମଗ୍ରହଣ କରିଥିଲେ। ସୋଲପଟା ଉଚ୍ଚବିଦ୍ୟାଳୟରେ ସେ ଲେଖକଙ୍କର ସହପାଠୀ ଥିଲେ। ସେହି ସମୟରୁ ସେ ଅଭିନୟ କଳାକୁ ଆଦରି ନେଇଥିଲେ। ସ୍ନାତକୋତ୍ତର ଉପାଧି ଲାଭ ପରେ ୧୯୭୭ ମସିହାରେ କୃଷ୍ଣଚନ୍ଦ୍ର ଗୁରୁକୁଳ ସଂସ୍କୃତ ମହାବିଦ୍ୟାଳୟ ଭୁବନେଶ୍ୱରରେ ଓଡ଼ିଆ ଅଧ୍ୟାପକ ଭାବେ ନିଯୁକ୍ତି ପାଇଥିଲେ । ଏ ସ୍ଥାନ ଥିଲା ତାଙ୍କର କଳା ତୀର୍ଥ। ଚଳଚ୍ଚିତ୍ର-ଜୟ ମା' ମଙ୍ଗଳା ଓ ବତାସୀ ଝଡ଼ର ସହ ନିର୍ଦ୍ଦେଶକ ସଂଗେ ସଂଗେ 'ଜୟ ମା' ମଙ୍ଗଳା' ଚଳଚ୍ଚିତ୍ରରେ ଅଭିନୟ କରିଥିଲେ। ଓଡ଼ିଶାର ଖ୍ୟାତନାମା ଗଣନାଟ୍ୟର ସେ ଜଣେ ସଫଳ ନିର୍ଦ୍ଦେଶକ। ଖଣ୍ଡଗିରି ଅପେରା, ଶିବାନୀ ଗଣନାଟ୍ୟ, ସାବିତ୍ରୀ ଗଣନାଟ୍ୟ, ଉତ୍ତରାୟଣୀ ଅପେରା, ସାତଶଙ୍ଖ ଗଣନାଟ୍ୟ, ତ୍ରିନାଥ ଗଣନାଟ୍ୟ, ସୋନାଲି ଗଣନାଟ୍ୟ, ତାରିଣୀ ଗଣନାଟ୍ୟ, ଅଷ୍ଟଶମ୍ଭୁ ଗଣନାଟ୍ୟ, କଳିଙ୍ଗ ଗଣନାଟ୍ୟ, ମା' ଗଣନାଟ୍ୟରେ ନାଟକମାନ ନିର୍ଦ୍ଦେଶନା ଦେଇ ନାଟ୍ୟ ଜଗତରେ ଖ୍ୟାତି ଅର୍ଜନ କରିଥିଲେ। ସେ ମହାଶୟ ଜଣେ ସୁଚିନ୍ତିତ ନାଟକ ରଚୟିତା ଥିଲେ। ୧୯୮୪ ମସିହାରେ ବ୍ରାହ୍ମଣୀଦେବୀ ନାଟ୍ୟ ସଂସଦ, ଗୋଟିସାହି ସଂଗୀତ ନାଟକ ଏକାଡ଼େମୀ ଦ୍ୱାରା ପ୍ରଯୋଜିତ ଗୀତିନାଟ୍ୟ ପ୍ରତିଯୋଗିତାରେ ବୋଲଗଡ଼ ରଙ୍ଗମଞ୍ଚରେ ଜନାର୍ଦ୍ଦନ ମିଶ୍ରଙ୍କ ନିର୍ଦ୍ଦେଶନାରେ କୃଷ୍ଣପ୍ରିୟା ପଟ୍ଟନାୟକ ଗୋଟିସାହିଙ୍କର ଗୀତିନାଟ୍ୟ ଭଗ୍ନ ଯାନୁ ଦୁର୍ଯ୍ୟୋଧନ ଶ୍ରେଷ୍ଠକୃତିତ୍ୱ ଲାଭ କରିଥିଲା।

ଶ୍ରୀଯୁକ୍ତ ଜନାର୍ଦ୍ଦନ ମିଶ୍ର ଯାତ୍ରା ଜଗତରେ ଜଣେ କାଳଜୟୀ ପୁରୁଷ। ତାଙ୍କ ନିର୍ଦ୍ଦେଶନା ମଞ୍ଜମାୟାରେ ଦର୍ଶକ ବିସ୍ମିତ। ଶ୍ରୀଯୁକ୍ତ ମିଶ୍ରଙ୍କ ପ୍ରେରଣାରେ ତିନୋଟି ଗଣନାଟ୍ୟ ଦଳ ନୟାଗଡ଼ରେ ଗଢ଼ିଉଠିଥିଲା। ଯୋଗେନ୍ଦ୍ର ବରାଡ଼ ସୋଲପଟାଙ୍କ ଯୋଗେନ୍ଦ୍ର ଗଣନାଟ୍ୟ, ନାରାୟଣ ସାହୁ, ମାଛିପଡ଼ାଙ୍କ ପ୍ରଭାତୀ ଗଣନାଟ୍ୟ, ଜଗନ୍ନାଥ ସ୍ୱାଇଁ, ବରସାହିଙ୍କ ଗଣନାଟ୍ୟ। ଯାତ୍ରା ଜଗତର ଏହି ଅମ୍ଳାନ ପ୍ରତିଭାଙ୍କର ତିରୋଧାନ ୦୪.୦୫.୨୦୦୨ ମସିହାରେ ଘଟିଲା। ଅଭୁଲା ସ୍ମୃତି ଏହି ଯାତ୍ରା ପୁରୁଷଙ୍କର ଏକ ପ୍ରତିମୂର୍ତ୍ତି ପଦ୍ମାଦେଇପୁର ପ୍ରବେଶ ପଥରେ ସ୍ଥାପିତ ହୋଇଛି।

ନାଟ୍ୟପ୍ରେମୀ ଜଗନ୍ନାଥ ସ୍ୱାଇଁ : ନାଟ୍ୟପ୍ରେମୀ ଜଗନ୍ନାଥ ସ୍ୱାଇଁଙ୍କର ଜନ୍ମସ୍ଥାନ ଶରଣକୁଳ ନିକଟସ୍ଥ ବରସାହି ଗାଁ। ସେ ସ୍ନାତକୋତ୍ତର ଉପାଧି ଲାଭ ପରେ ଜବାହର ଉଚ୍ଚବିଦ୍ୟାପୀଠ, ନନ୍ଦୀଘୋରରେ ପ୍ରଧାନଶିକ୍ଷକ ଭାବେ ନିଯୁକ୍ତି ପାଇ ଶିକ୍ଷକତା ଜୀବନ ସେହି ବିଦ୍ୟାଳୟରେ ଶେଷକରି ଅବସର ନେଇଥିଲେ। ସେ ନୟାଗଡ଼ ଜିଲ୍ଲାରେ ଜଣେ ଆଦର୍ଶ ପ୍ରଧାନଶିକ୍ଷକ ଭାବେ ପ୍ରଶଂସିତ। ସେ ଛାତ୍ରୀଛାତ୍ରବତ୍ସଳ ଶିକ୍ଷକ। ଛାତ୍ରୀଛାତ୍ରଙ୍କ ବିଭିନ୍ନ ଦିଗରେ ବିକାଶ ପାଇଁ ସେ

ବିଦ୍ୟାଳୟରେ ଯୋଜନା ଗଢୁଥିଲେ । ଛାତ୍ରୀଛାତ୍ରଙ୍କୁ ନେଇ ଗଣେଶ ପୂଜା, ସରସ୍ୱତୀ ପୂଜାରେ ନାଟକ ମଞ୍ଚସ୍ଥ କରୁଥିଲେ । ସେ କବି, ନାଟ୍ୟକାର ଏବଂ ନାଟ୍ୟ ନିର୍ଦ୍ଦେଶକ ଭାବରେ ଅଞ୍ଚଳରେ ବେଶ୍ ପରିଚିତ ।

<u>ଯାତ୍ରା ସମ୍ରାଟ ଯୋଗେନ୍ଦ୍ର ବରାଡ଼ :</u> ଯାତ୍ରା ସମ୍ରାଟ ଯୋଗେନ୍ଦ୍ର ବରାଡ଼ଙ୍କର ଜନ୍ମସ୍ଥାନ ସୋଲପଟା ଗ୍ରାମ । ତାଙ୍କ ଜୀବନର କର୍ମକ୍ଷେତ୍ର ହେଲା ସୋଲପଟା ମଧ୍ୟଇଂରାଜୀ ବିଦ୍ୟାଳୟ । ସେହିଠାରେ ନିଯୁକ୍ତି ଓ ସେହିଠାରୁ ଅବସର ନେଇଥିଲେ । ସେ ଜଣେ ଉଚ୍ଚମାନର ଅଭିନେତା । ଜୀବନକାଳ ତାଙ୍କର ଯାତ୍ରାମଞ୍ଚ ଏବଂ ଥିଏଟର ମଞ୍ଚରେ ଅଭିନୟ କରି ସରିଲା । ମାଟିର ମଣିଷ ନାଟକରୁ ତାଙ୍କର ଡ୍ରାମା ମଞ୍ଚରେ ଅଭିନୟ ଆରମ୍ଭ । ମାଟିର ମଣିଷ ନାଟକରେ ସେ ଛକଡ଼ି ଚରିତ୍ରର ଅଭିନୟ କରିଥିଲେ । ତାଙ୍କ ପ୍ରଯୋଜନାରେ ସ୍କୁଲପଡ଼ିଆରେ ଦେବଯାନୀ ଏବଂ ଗୋଟିସାହି ପଞ୍ଚାୟତ ମଧ୍ୟରେ 'ଶେଷ ଅଶ୍ରୁ', ତିମିର ତୀର୍ଥ ଡ୍ରାମାମଞ୍ଚ ନିର୍ମାଣ କରି ଟିକେଟ ସେଲ୍‌ର ମଞ୍ଚ ନାଟକ ପରିବେଷଣ କରିବା ସଙ୍ଗେ ସଙ୍ଗେ ଛତ୍ରପତି ଶିବାଜୀ, ଆଲେକ୍‌ଜାଣ୍ଡର, ମୟୂର ସିଂହାସନ, ଯାତ୍ରା ମଞ୍ଚରେ ଆଞ୍ଚଳିକ କଳାକାରଙ୍କୁ ନେଇ ଦାମୀ ନାଟକମାନ ମଞ୍ଚସ୍ଥ କରିଥିଲେ । ଓଡ଼ିଶା ସଂଗୀତ ନାଟକ ପ୍ରତିଯୋଗିତାମୂଳକ ଗୀତିନାଟ୍ୟ 'ଭଗ୍ନଯାନୁ ଦୁର୍ଯ୍ୟୋଧନ' ନାଟକରେ ଭୀମ ଭୂମିକାରେ ଅବତୀର୍ଣ୍ଣ ହୋଇ ଓଡ଼ିଶା ଭୀମ ଖ୍ୟାତିରେ ଦର୍ଶକ ମହଲରେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ନୟାଗଡ଼ ଅଞ୍ଚଳରେ ସେ ପ୍ରଥମେ ତାଙ୍କ ପ୍ରଯୋଜିତ ନାଟକମାନଙ୍କରେ ନାରୀ ଅଭିନେତ୍ରୀଙ୍କୁ ଅଭିନୟ କରିବାର ସୁଯୋଗ ଦେଇଥିଲେ । ଏହି ନାରୀ ଅଭିନେତ୍ରୀ ପଣ୍ଡୁସୁରରେ ରହୁଥିବା ସୁକାନ୍ତି ଓ ନିରୁ ଅଟନ୍ତି । ଯୋଗେନ୍ଦ୍ର ବରାଡ଼ ତାଙ୍କ ପ୍ରଯୋଜନାରେ 'ଯୋଗେନ୍ଦ୍ର ଗଣନାଟ୍ୟ' ନାମକ ଏକ ଭ୍ରାମ୍ୟମାଣ ନାଟ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ଏ ଅନୁଷ୍ଠାନ ଗଞ୍ଜାମ ଓ ନୟାଗଡ଼ ଅଞ୍ଚଳରେ ରିକ୍‌ସାବାଲା, ଗୋଟିଏ ପଇସା 'ଆ ଜହ୍ନମାମୁ ସରଗଶଶି', ବାପର ଚଉକା ପୁଅର ଛକା, ପୌରାଣିକ ନାଟକ ଶ୍ରୀକୃଷ୍ଣ ଐତିହାସିକ ନାଟକ ଛତ୍ରପତି ଶିବାଜୀ ନାଟକ ମଞ୍ଚସ୍ଥ କରାଇ ପ୍ରଶଂସିତ ହୋଇଥିଲା । ନୟାଗଡ଼ ସ୍ୱାକ୍ଷରତା ଅଭିଯାନରେ 'ମୁଁ ଯୋଗୀସାର କହୁଛି' ଦୀର୍ଘ ଦୁଇମାସ କାଳ ବଛାବଛା କଳାକାରଙ୍କୁ ନେଇ ସାରା ନୟାଗଡ଼ ଜିଲ୍ଲାରେ ପଥପ୍ରାନ୍ତର ନାଟକ ପରିବେଷଣ କରି ଯୋଗେନ୍ଦ୍ର ଜନ ସଚେତନତା ସୃଷ୍ଟି କରିଥିଲେ । ନୟାଗଡ଼ ନାଟ୍ୟକଳାକୁ ପ୍ରସାର କରିବା ଦିଗରେ ଯାତ୍ରା ସମ୍ରାଟ ଯୋଗେନ୍ଦ୍ର ବରାଡ଼ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

<u>ନୟାଗଡ଼ ଚିତ୍ରାଳୟ – ପୂର୍ଣ୍ଣ ପଟ୍ଟନାୟକଙ୍କ ଚିତ୍ରାଳୟ :</u> ନାଟକରେ ଅଭିନୟ କରୁଥିବା ଚରିତ୍ରମାନଙ୍କ ବେଶ ପରିପାଟି, ନାଟକରେ ବ୍ୟବହୃତ ନାଟ୍ୟ ସରଞ୍ଜାମ ଓ ଥିଏଟର ମଞ୍ଚରେ ବ୍ୟବହୃତ ଦୃଶ୍ୟ ପରଦା ସର୍ବପ୍ରଥମେ ପୂର୍ଣ୍ଣ ପଟ୍ଟନାୟକଙ୍କ

ଚିତ୍ରାଳୟ ଯୋଗାଉଥିଲା। ପୂର୍ଣ୍ଣ ପଟ୍ଟନାୟକ ବାସସ୍ଥାନ ବାଇଗୁଣିଆ। ସେ ରଙ୍ଗକାର ବୈରିଗଞ୍ଜନଙ୍କୁ ତାଙ୍କ ଚିତ୍ରାଳୟରେ ରଖିଥିଲେ। ସବୁଠାରୁ ଉଚ୍ଚମାନର ଥିଏଟର ପ୍ରଦର୍ଶନ କରାଉଥିବା ନୟାଗଡ଼ ସଂସ୍କୃତି ସଂସଦକୁ ପୂର୍ଣ୍ଣ ପଟ୍ଟନାୟକଙ୍କ ଚିତ୍ରାଳୟ ସହଯୋଗ କରୁଥିଲା। ପୂର୍ଣ୍ଣ ପଟ୍ଟନାୟକଙ୍କ ଚିତ୍ରାଳୟ ଓଡ଼ିଶା ପ୍ରସିଦ୍ଧ ଚିତ୍ରାଳୟ। ଅଧୁନା ପୂର୍ଣ୍ଣ ପଟ୍ଟନାୟକଙ୍କ ସୁପୁତ୍ର ଅଶୋକ ପଟ୍ଟନାୟକ ଚିତ୍ରାଳୟକୁ ଭୁବନେଶ୍ୱର ସ୍ଥାନାନ୍ତର କରି ସମଗ୍ର ଓଡ଼ିଶାକୁ ଚିତ୍ରାଳୟ ଭୂଷଣ ଦକ୍ଷତାର ସହିତ ଯୋଗାଉଛନ୍ତି।

ଭୁବନ ଚିତ୍ରାଳୟ ଇଟାମାଟି : ଭୁବନ ଚିତ୍ରାଳୟ ଇଟାମାଟି ସାରା ଓଡ଼ିଶାରେ ଖ୍ୟାତି ଅର୍ଜନ କରିଥିବା ଚିତ୍ରାଳୟ, ମଞ୍ଚକଳାର ସମସ୍ତ ଉପକରଣ ଯୋଗାଉଥିଲା। ଗ୍ରାମ୍ୟ ନାଟ୍ୟଦଳକୁ ବାଦ୍ୟଯନ୍ତ୍ରଠାରୁ ପୋଷାକ ଓ ନାଟ୍ୟଉପକରଣ ଯୋଗାଉଥିଲା। ଏହା ଏକ ଲାଭଜନକ ବ୍ୟବସାୟ ପନ୍ଥା ଦେଖାଇବାରୁ ପରବର୍ତ୍ତୀ ସମୟରେ ଇଟାମାଟିରେ ବିଶ୍ୱଶ୍ରୀ ଚିତ୍ରାଳୟ ମା' ଚିତ୍ରାଳୟ ମୁଣ୍ଡ ଟେକିଲା। ଭୁବନ ଚିତ୍ରାଳୟ ଓଡ଼ିଶାର ବହୁ ଜିଲ୍ଲାରେ ନାଟ୍ୟମଞ୍ଚକୁ ନାଟ୍ୟବେଶ ସରଞ୍ଜାମ ତଥା ମହୋତ୍ସବର ସରଞ୍ଜାମ ଯୋଗାଇ ଉଚ୍ଚ ପ୍ରଶଂସିତ ହୋଇଛି । ତେଣୁ ନାଟୁଆମାନେ କହନ୍ତି- ଭୁବନ ଚିତ୍ରାଳୟ କଲିକତା ଚିତ୍ରାଳୟକୁ ଇଟାମାଟିକୁ ଉଠାଇ ଆଣିଲାଣି ।

ମାଛିପଡ଼ା ନାରାୟଣ ଚିତ୍ରାଳୟ : ବର୍ତ୍ତମାନ ମାଛିପଡ଼ା ନାରାୟଣ ଚିତ୍ରାଳୟ ସବୁଠାରୁ ବଡ଼ ବ୍ୟବସାୟଭିତ୍ତିକ ଚିତ୍ରାଳୟ। ଏହି ଚିତ୍ରାଳୟ ରାମଲୀଳା ନାଟକ, ଦଣ୍ଡନାଚ ଏବଂ ଯେକୌଣସି ନାଟକର ମଞ୍ଚ ସରଞ୍ଜାମ ଯୋଗାଏ।

ନୟାଗଡ଼ର ଚିତ୍ରାଳୟଗୁଡ଼ିକ ମଞ୍ଚ ନିର୍ମାଣଠାରୁ ବିଦ୍ୟୁତ୍ ସରଞ୍ଜାମ ନାଟକର ସମସ୍ତ ଉପକରଣ ଯୋଗାଉଛନ୍ତି। ଚିତ୍ରାଳୟର ବେଶସାଜ ମଞ୍ଚ ନିର୍ମାଣ ଆଲୋକ ପରିବେଷଣ ନାଟକକୁ ସରସ ସୁନ୍ଦର କରାଏ। ବିନା ଚିତ୍ରାଳୟରେ ଆଜିର ନାଟକ ମଞ୍ଚସ୍ଥ ହେବା କଷ୍ଟକର।

ସଂଗୀତ : ସଂଗୀତ ପରିସରକୁ ଖୋଜିଲାବେଳେ ୧୯୫୦ରୁ ୧୯୬୦ ମଧ୍ୟରେ ନୟାଗଡ଼ ସଂଗୀତକୁ ଧରି ରଖିଥିଲେ ରୁବେନ୍ ସିଂ, ରଘୁନାଥ ପଟ୍ଟନାୟକ ଓ ବାଞ୍ଛାନିଧି ପଟ୍ଟନାୟକଙ୍କ ପରିବାର। ସଂଗୀତ ହୃଦୟର ଆନନ୍ଦ, ପ୍ରମୋଦ, ପ୍ରୀତି ଉଲ୍ଲାସର ଶିହରଣ ଗୀତିକଳା। ନାଟକର ପ୍ରାଣ ମୂର୍ଚ୍ଛନା। ସଂଗୀତ ବିହୁନେନାଟକର ଗତି ମନ୍ଥର ଶୁଖିଲା ଶୁଖିଲା ରସହୀନ ଲାଗେ। ସଂଗୀତ ନାଟକର ଆତ୍ମଦର୍ଶନ କରାଏ। ସେହି ପରିପ୍ରେକ୍ଷୀରେ ୧୯୪୫ଠାରୁ ପରବର୍ତ୍ତୀ ସମୟର ମଞ୍ଚ ନାଟକରେ ସଂଗୀତ ପରିବେଷଣ କରିଥିବା ସଂଗୀତ ଗୁରୁଙ୍କୁ ସ୍ମରଣ କରାଯାଏ।

ସାଇଗଲ ରୁବେନ୍ ସିଂ : ରାଜଗୁଡ଼ା ସମୟରେ ରୁବେନ୍ ସିଂ ବ୍ରଜେନ୍ଦ୍ର ଉଚ୍ଚବିଦ୍ୟାଳୟର କ୍ରୀଡ଼ାଶିକ୍ଷକ ଥିଲେ। ସେ ଚମତ୍କାର କ୍ରୀଡ଼ାବିତ୍ ଓ ସଂଗୀତଜ୍ଞ ଥିଲେ। କ୍ରୀଡ଼ା ଓ ସଂଗୀତ ବିପରୀତ ବିମୁଖ ଶବ୍ଦ ହୋଇଥିଲେ ହେଁ ଏ ଦୁଇଟି

ଭିନ୍ନଧର୍ମୀ କଳା ଗୁବେନ୍ ସିଂଙ୍କଠାରେ ସମ୍ମିଳିତ ହୋଇଥିଲା। ଗୁବେନ୍ ସିଂ ନୟାଗଡ଼ ସଂଗୀତର ସାଇଗଲ ତାଙ୍କର କଣ୍ଠ ପ୍ରଖ୍ୟାତ ଗାୟକ କେ.ଏଲ୍. ସାଇଗଲଙ୍କ ଭଳି ମୋଟା କଣ୍ଠସ୍ୱର ଅଥଚ ମିଠା। ସେ ସାଇଗଲ ଗାଇଥିବା ଠୁମରୀ ଢଙ୍ଗରେ ଆଧୁନିକ ଗୀତ ଓ ପଲ୍ଲୀ ସ୍ୱର ଗାଉଥିଲେ। ସେ ହାରମୋନିୟମ ଓ ତବଲା ବାଦନରେ ପ୍ରବୀଣ ଓସ୍ତାଦ୍ ଥିଲେ। ତାଙ୍କର ସୁପୁତ୍ର ତାନ୍‌ସେନ୍ ସିଏ ଓଡ଼ିଶାର ଜଣେ ବରିଷ୍ଠ ଆଗଧାଡ଼ିର କଣ୍ଠଶିଳ୍ପୀ। ତାନ୍‌ସେନ୍ ସିଂ ଆକାଶବାଣୀ ଏବଂ ଚଳଚ୍ଚିତ୍ରର ସୁନାମଧନ୍ୟ ପ୍ରଖ୍ୟାତ କଣ୍ଠଶିଳ୍ପୀ।

<u>ପ୍ରଦୀପ୍ତ କୁମାର ପଟ୍ଟନାୟକ :</u> ପ୍ରଦୀପ୍ତ କୁମାର ପଟ୍ଟନାୟକ ଯଶସ୍ୱୀ ପ୍ରଧାନଶିକ୍ଷକ ରଘୁନାଥ ପଟ୍ଟନାୟକଙ୍କର ସୁପୁତ୍ର। ତାଙ୍କର ବାସସ୍ଥାନ ନୟାଗଡ଼ ନୂଆ ସହରରେ। ରଘୁନାଥ ପଟ୍ଟନାୟକଙ୍କ ପରିବାର ସଂଗୀତ ନୃତ୍ୟ ଅନୁରାଗୀ। ପ୍ରଦୀପ୍ତ କୁମାର ପଟ୍ଟନାୟକ ଗୁବେନ୍ ସିଂଙ୍କ ଶିଷ୍ୟ ଥିଲେ। ଗୁବେନ୍ ସିଂ ପରେ ସେ ନୟାଗଡ଼ର ସଂଗୀତ ନିର୍ଦ୍ଦେଶକ। ସେ ଇଂରେଜୀ ଖବରକାଗଜ 'ଟାଇମ୍‌ସ'ର ବରିଷ୍ଠ ସାମ୍ବାଦିକ। ନୟାଗଡ଼ ସହରର ଯୁବପୀଢ଼ି ତାଙ୍କୁ 'ଖୁଖାନା' ବୋଲି ସମ୍ବୋଧନ କରି ଡାକୁଥିଲେ। ଏହି ନାମରେ ସହରରେ ସେ ବେଶ୍ ଜଣାଶୁଣା। ସେ ଓଡ଼ିଶାର ଏକମାତ୍ର ଧ୍ରୁବକ ଗାୟକ ଶ୍ୟାମସୁନ୍ଦର ଧୀରଙ୍କ ସଂସ୍ପର୍ଶରେ ଆସି ରାଗପ୍ରଧାନ ସଂଗୀତରେ ସୁନାମ ଅର୍ଜନ କଲେ। ଯଦୁମଣି କଳାକେନ୍ଦ୍ର ପ୍ରଯୋଜିତ ମାନଭଞ୍ଜନ ଗୀତିନାଟ୍ୟରେ ରଘୁନାଥ ପଟ୍ଟନାୟକଙ୍କ ଦୁଇଝିଅ ଜୟନ୍ତୀ ଓ ଯସ୍ମିନୀ ରାଧାକୃଷ୍ଣ ଭୂମିକାରେ ଅଭିନୟ ଏଯାଏ ଭୁଲିହୁଏନି। ଏ ଗୀତିନାଟ୍ୟର ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ପ୍ରଦୀପ୍ତ ପଟ୍ଟନାୟକ। ୧୯୫୫ ମସିହାରୁ ୧୯୬୪ ପର୍ଯ୍ୟନ୍ତ ଯେଉଁ ମଞ୍ଚନାଟକ ମଞ୍ଚସ୍ଥ ହୋଇଛି ତା'ର ସଂଗୀତ ନିର୍ଦ୍ଦେଶନା ଦେଇଛନ୍ତି ପ୍ରଦୀପ୍ତ କୁମାର ପଟ୍ଟନାୟକ। ପ୍ରଦୀପ୍ତ ପଟ୍ଟନାୟକଙ୍କର ପ୍ରାକ୍ତନ ବୟସରେ ତାଙ୍କର ଯୁବସୁଲଭ ଶୈଳୀ ଦେଖିଲେ ଖୁସି ଲାଗେ।

<u>ସବୁଜପୁରୁଷ ଭଗବତୀ ଚରଣ ପଟ୍ଟନାୟକ :</u> ଭଗବତୀ ଚରଣ ପଟ୍ଟନାୟକ ସଂଗୀତ ଗାୟକ ତଥା ତବଲାବାଦକ ବାଞ୍ଛାନିଧି ପଟ୍ଟନାୟକଙ୍କର ପୁତ୍ର। କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର ଭିଣୋଇ ଥିଲେ ବାଞ୍ଛାନିଧି ପଟ୍ଟନାୟକ। କାଳୀ ବାବୁଙ୍କ ଥିଏଟର ସହିତ ତାଙ୍କର ସଂପୃକ୍ତି ଥିଲା। ତାଙ୍କର ପୁଅମାନେ ଉମା, ଶ୍ୟାମା ଓ ଭଗବତୀ ସମସ୍ତେ ଉଚ୍ଚକୋଟୀର ସଂଗୀତଜ୍ଞ ଓ ମଞ୍ଚ କଳାକାର। ଝିଅ ଟୁସି ଓଡ଼ିଶୀ ନାଚୁଥିଲା ଓ କୁମୁଦିନୀ ମଞ୍ଚଶିଳ୍ପୀ ଥିଲା। ନୟାଗଡ଼ ସଂସ୍କୃତି ସଂସଦର ସଂଗୀତ ତଥା ମଞ୍ଚ ନିର୍ଦ୍ଦେଶନା ଏଯାବତ୍ ଭଗବତୀ ଚରଣ ପଟ୍ଟନାୟକ କରୁଛନ୍ତି। ୮୦ ବର୍ଷ ବୟସ ପରେ ବି ତାଙ୍କଠାରୁ ଯୁବସୁଲଭ ଛାଡ଼ିନାହିଁ। ନୟାଗଡ଼ ରାଜଦାଣ୍ଡରେ ଡ୍ରାମାଟିକ୍ ଷ୍ଟାଇଲ୍‌ରେ ଚାଲିଯାଉଥିଲେ ଆଧୁନିକ ଆଧୁନିକ ଦିଶୁଥିବା

ସେ ସବୁଜପୁରୁଷ ଜଣକ ଭଗବତୀ ଚରଣ ପଟ୍ଟନାୟକ । ଏନ୍ଏସି ଉଚ୍ଚବିଦ୍ୟାଳୟର ସାମ୍ନା ଘର ଭଗବତୀ ଚରଣ ପଟ୍ଟନାୟକଙ୍କର ।

<u>ସଂଗୀତ ପୂଜାରୀ ପ୍ରଫୁଲ ଚନ୍ଦ୍ର ମହାନ୍ତି (ଦ୍ରାଘିମା) :</u> ପ୍ରଫୁଲ ଚନ୍ଦ୍ର ମହାନ୍ତି ଜଟଣୀ କୁସୁମାଟି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ନୟାଗଡ଼ ମହାବିଦ୍ୟାଳୟରେ ଇଂରାଜୀ ଅଧ୍ୟାପକ ଭାବେନିଯୁକ୍ତି ପାଇଲା ପରେ ନୟାଗଡ଼କୁ ନିଜର କରିନେଲେ । ତାଙ୍କର ବାସସ୍ଥାନ ନୟାଗଡ଼ ପୁରୁଣା ସହର ଜଗନ୍ନାଥଙ୍କ ପୂର୍ବଦ୍ୱାର ନିକଟରେ । ଅଧକ୍ଷ ପ୍ରଫୁଲ ଚନ୍ଦ୍ର ମହାନ୍ତି ଜଣେ ଉଚ୍ଚକୋଟୀର ସ୍ୱରକାର ଶୁଦ୍ଧ ଓଡ଼ିଆ ଭାଷାରେ ସଂପାଦିତ ଦ୍ରାଘିମା, କାହାଣୀ, କଳାତୀର୍ଥ ସ୍ମରଣିକାର ସଂପାଦକ । ନୟାଗଡ଼ କଲେଜରେ ଯୋଗଦେବା ପୂର୍ବରୁ ସେ କେନ୍ଦ୍ର ସରକାରଙ୍କ ବେତାର କେନ୍ଦ୍ରରେ ଓଡ଼ିଆ ଭାଷାରେ ଖବର ଘୋଷକ ଥିଲେ । ତାଙ୍କର ଭାଷଣ ଦେବାର ଶୈଳୀ ଉଚ୍ଚକୋଟୀର ଥିଲା । ସେ ଶୈଳୀକୁ ଏଯାବତ୍ ଅନୁକରଣ କରିହୁଏନି । ନୟାଗଡ଼ କଲେଜର ସ୍ଥାୟୀ ରଙ୍ଗମଞ୍ଚ, ନୟାଗଡ଼ ସଂସ୍କୃତି ସଂସଦ ରଙ୍ଗମଞ୍ଚ, ନୟାଗଡ଼ ମିଳନୀ କ୍ଲବ୍‌ର ରଙ୍ଗମଞ୍ଚରେ ତାଙ୍କର ସଂଗୀତ ସଂଯୋଜନା ଦର୍ଶକଙ୍କୁ ବିମୋହିତ କରିଦିଏ ।



ପ୍ରଫୁଲ ଚନ୍ଦ୍ର ମହାନ୍ତିଙ୍କର ନିଜ ପ୍ରକୋଷ୍ଠ ସଂଗୀତ ସାଧନାର ପ୍ରକୋଷ୍ଠ ଥିଲା । ଏ ସାଧନା ପ୍ରକୋଷ୍ଠରେ ନିଜ ହାତରେ ସ୍ୱରଗନ୍ଧର୍ବ ନବକିଶୋର ମିଶ୍ର, ପ୍ରକାଶନନ୍ଦ, ଭାରତୀ ହୋତା, ଜ୍ୟୋସ୍ନାମୟୀ ପ୍ରଧାନ ବେତାର କଣ୍ଠଶିଳ୍ପୀଙ୍କୁ ଗଢ଼ିଥିଲେ । ସଂଗୀତ ତଥା ଓଡ଼ିଆ ଭାଷାର ପୂଜାରୀ ପ୍ରଫୁଲ ଚନ୍ଦ୍ର ମହାନ୍ତି ନୟାଗଡ଼ ଜଗନ୍ନାଥ ମନ୍ଦିର ସିଂହଦ୍ୱାରରେ କଳାତୀର୍ଥ ମଞ୍ଚ ନିର୍ମାଣ କରିଥିଲେ । ଏହି ମଞ୍ଚରେ ଝିଅମାନଙ୍କୁ ନେଇ ଗୀତିନାଟ୍ୟ, ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରାଉଥିଲେ । କଳାତୀର୍ଥ ମଞ୍ଚରେ ସଂଗୀତ କଳାର ସଂସ୍କୃତି ବିଷୟକ କଳାତୀର୍ଥ ସ୍ମରଣିକା ପ୍ରକାଶ କରୁଥିଲେ । କଳାତୀର୍ଥ ଆନୁକୂଲ୍ୟରେ ଓଡ଼ିଆ ସଂଗୀତକୁ ନିର୍ଭୁଲ୍ ରୂପାୟନ ଦେବା ତାଙ୍କର ମହାନ ପ୍ରୟାସ । କଳାତୀର୍ଥ ସ୍ମରଣିକା ୧ ଅପ୍ରେଲ ୧୯୯୧ରେ ପ୍ରକାଶ ପାଇଥିଲା । କଳାତୀର୍ଥ ସ୍ମରଣିକା ଏଗୁଣ୍ଡି ବନ୍ଧରେ ସଂପାଦକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି ପ୍ରକାଶ କରନ୍ତି- "ଇତିହାସ କହେ ଓଡ଼ିଆ ଜାତିର ସଂସ୍କୃତି ଅତୀତରେ ଖୁବ୍ ସମୃଦ୍ଧ ଥିଲା । ସାହିତ୍ୟ, ସଂଗୀତ, ନୃତ୍ୟ, ସ୍ଥାପତ୍ୟ, ଚିତ୍ରକଳାଠାରୁ କୃଷି ବାଣିଜ୍ୟ ଯାଏ ବହୁକ୍ଷେତ୍ରରେ ଓଡ଼ିଆ ପୁଏ ଏକଦା କୁଆଡ଼େ ଭାରତବର୍ଷରେ ଅଗ୍ରଣୀ ଥିଲେ । ଓଡ଼ିଶାର ବର୍ତ୍ତମାନ ଚିତ୍ର ଦେଖିଲେ କିଏ ବା କହିବ ଇତିହାସ ସତ କହୁଛି ବୋଲି ।

ଖାଲି ଯାହା ପଥରରେ ଖୋଦେଇ ଏ ଜାତିର ଇତିହାସ ଏଯାଏଁ ଲିଭିନି ବୋଲି ସିନା। କିନ୍ତୁ ଇତିହାସର ସେ ଓଡ଼ିଆ ପୁଅଙ୍କର ସ୍ୱାଭିମାନ ବୋଧ ଏବକାର ଓଡ଼ିଆ ପୁଅଙ୍କଠି ଦେଖିବାକୁ ମିଳୁନି। ନିଜର ମୌଳିକତାକୁ ଛୁଡ଼ି ଏବେ ଓଡ଼ିଆ ପୁଏ ଅନ୍ୟର ଅନ୍ଧ ଅନୁକରଣ କରିବାରେ ପରସ୍ପର ସହିତ ପ୍ରତିଯୋଗୀତା କରୁଛନ୍ତି। ଯିଏ ଯେତେ ଓଡ଼ିଆତ୍ୱ ଭୁଲିପାରୁଛି ସେ ସେତେ ନିଜକୁ ଆଧୁନିକ ବୋଲି ଜାହିର କରୁଛି। ଓଡ଼ିଶାରେ ଓଡ଼ିଶୀ ସଂଗୀତ ଚର୍ଚ୍ଚା କରିବା ଲାଗି ମଞ୍ଚର ଅଭାବ। ମଞ୍ଚ ଜବରଦଖଲ କରିନେଲାଣି ତଥାକଥିତ 'ପପ୍ କଲ୍‌ଚର' ମେଲୋଡ଼ି ବାଉଳି। କଥା କଥାକେ ଓଡ଼ିଆ ପୁଅ ହିନ୍ଦୀ, ଇଂରାଜୀ ଦି'ପଦ ନ ଫେଣ୍ଟି ନିରୁତା ଓଡ଼ିଆ କହିପାରୁ ନାହାନ୍ତି। ଓଡ଼ିଆ ସଂସ୍କୃତି ଓ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଓଡ଼ିଆ ପୁଅ ନ ଚାହିଁଲେ ପୁନରୁଦ୍ଧାର କରିବ କିଏ ?" ନିରୁତା ଓଡ଼ିଆ ଭାବ ପରିପ୍ରକାଶ ପାଇଁ ଏ ଥିଲା ତାଙ୍କର ଉତ୍ତର ପିଢ଼ିକୁ ଆହ୍ୱାନ।

'ଧରିତ୍ରୀ' ଖବରକାଗଜରେ ବେତାଳ ଶିରୋନାମାରେ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କର ଏକ ସମାଲୋଚନା ସ୍ତମ୍ଭ ପ୍ରକାଶ ପାଉଥିଲା। ସେ ଜଣେ ଖ୍ୟାତନାମା ଅନୁବାଦକ ଥିଲେ। ସେ ମାଲାୟାମ ଉପନ୍ୟାସ ପଡ଼ୋଶୀ ନାମରେ ଓଡ଼ିଆ ଭାଷାକୁ ରୂପାନ୍ତର କରିଥିଲେ। ପଦାତିକ ଓଡ଼ିଆ ଉପନ୍ୟାସକୁ ଇଂରାଜୀ ଭାଷାରେ ରୂପାନ୍ତର, ହରିହର ମିଶ୍ରଙ୍କର ନାଟକ 'ରାତିର ଦୁଇଟି ଡେଣା' ଏବଂ ଡକ୍ଟର ଗଣେଶ୍ୱର ମିଶ୍ରଙ୍କର ସକାଳର ମୁହଁ ଗଳ୍ପମାଳାକୁ ଇଂରାଜୀ ଭାଷାରେ ରୂପାନ୍ତର କରି ଗୋଟାଏ ଭାଷାକୁ ଅନ୍ୟ ଭାଷା ଦାଣ୍ଡରେ ଚଲାଇବାରେ କୁଶଳୀ ବିନ୍ଧାଣୀ ଥିଲେ। ସେ ହରିହର ମିଶ୍ରଙ୍କର ସୁଖବାସୀ ଚଳଚ୍ଚିତ୍ରରେ ସଂଗୀତ ସଂଯୋଜନା କରିଥିଲେ।

**ସରୋଜ ମିଶ୍ର (ଦଶପଲ୍ଲା):** ଦଶପଲ୍ଲା ସରୋଜ ମିଶ୍ରଙ୍କର କଣ୍ଠଦାନ ସଂଗୀତ ଦେଶ ବିଦେଶରେ ଆଦର ଲାଭ କରିଥିଲା। ଦୁଃଖ ଲାଗେ ଏତେ ସୁନ୍ଦର ସଂଗୀତ ଶିଳ୍ପୀଙ୍କର ଅକାଳ ବିୟୋଗ ଘଟିଥିଲା। ଅଧୁନା ଶରତ ସାହୁ ଦଶପଲ୍ଲାରେ ସଂଗୀତ ବଞ୍ଚାଇ ରଖିଛନ୍ତି। ଖଣ୍ଡପଡ଼ା ଜୁମ୍ପା ସଂଗୀତକଳାର ସ୍ଥାନ। ଭିକାରୀ ମହମ୍ମଦଙ୍କ ସଂଗୀତ କଣ୍ଠଦାନ ଚମତ୍କାର ଥିଲା।

**ଥିଏଟର ମଞ୍ଚ / ଏକମୁଖୀ ମଞ୍ଚ :** ଥିଏଟର ମଞ୍ଚର ଦର୍ଶକଙ୍କୁ ସାମ୍ନା କରୁଥିବା ମୁଖ୍ୟ ପାର୍ଶ୍ୱ ଖୋଲା। ମଞ୍ଚର ଅନ୍ୟ ତିନି ପାର୍ଶ୍ୱ ନାଟ୍ୟପରଦା ଦ୍ୱାରା ଆବଦ୍ଧ ରହି ରଙ୍ଗଶାଳାକୁ ସୁସଜ୍ଜିତ କରିଥାଏ। ମଞ୍ଚର ବାମ ଡାହାଣ ପାର୍ଶ୍ୱର ଉଇନ୍‌ସ ମଧ୍ୟରୁ ଚରିତ୍ରମାନେ ବାହାରି ମଞ୍ଚରେ ଅଭିନୟ କରିଥାନ୍ତି। ରଙ୍ଗଶାଳାର ସମ୍ମୁଖରୁ ଦୂରକୁ ଲମ୍ବି ରହିଥିବା ଦର୍ଶକ ମଞ୍ଚକୁ ସାମ୍ନାକରି ବସିଥାନ୍ତି। ମଞ୍ଚର ଗର୍ଭ ଥିଏଟର ନିୟମର ନିର୍ଦ୍ଦିଷ୍ଟ ମାପର କ୍ଷେତ୍ର। ନାଟ୍ୟଶାସ୍ତ୍ର ସୂତ୍ରକୁ ନେଇ ଥିଏଟର ମଞ୍ଚ ନିର୍ମିତ। ମଞ୍ଚର ସମ୍ମୁଖ ଭାଗରେ ମଞ୍ଚର ଦକ୍ଷିଣ ପାର୍ଶ୍ୱରେ ଆଉ ବାମପାର୍ଶ୍ୱରେ ମୃଦଙ୍ଗ ବାଦନ

କରୁଥିବା ଦୁଇ ନୃତ୍ୟ ନାୟିକାର ପରଦା ମଞ୍ଚର ଉପର ସୀମା ପାର୍ଶ୍ୱରୁ ମଞ୍ଚର ତଳ ଭାଗକୁ ଝୁଲା ଯାଇଥାଏ। ମଞ୍ଚର ଉପର ଭାଗ ଅର୍ଥାତ୍ କପାଳ ଭାଗରେ ଏବଂ ମଞ୍ଚର ପାଦଭାଗରେ ମଞ୍ଚର ଦୁଇ ପାର୍ଶ୍ୱରେ ବନ୍ଧାଯାଇଥିବା ଫ୍ରଣ୍ଟ ଉଇନ୍‌ସର ଉପର ତଳ ଶୀର୍ଷପାର୍ଶ୍ୱକୁ ଘୋଡ଼ାଇ ଉପର ଫ୍ରଣ୍ଟପିସ୍ ତଳ ଫ୍ରଣ୍ଟପିସ୍ ମଞ୍ଚର ଦକ୍ଷିଣରୁ ବାମପାର୍ଶ୍ୱକୁ ବନ୍ଧାଯାଇଥାଏ। ମଞ୍ଚର ପ୍ରଥମ ପରଦା ଦର୍ଶକଙ୍କ ସାମ୍ନାକୁ ଡ୍ରପ୍‌ସିନ୍ ବନ୍ଧାଯାଏ। ଏହି ସିନ୍‌ର ମଧ୍ୟଭାଗରେ ଦିପାଳୀ ଧରିଥିବା ନାୟିକାର ବନ୍ଦନା ଚିତ୍ର ଅଙ୍କାଯାଇଥାଏ। ଡ୍ରପ୍‌ସିନ୍‌ର ପଛକୁ ପଛକୁ ନାଟ୍ୟ କାହାଣୀ ସହିତ ସଂଯୋଜିତ ଦୃଶ୍ୟ ପରଦା, ପରଦାଠାରୁ ପରଦା ସମଦୂରତା ରଖି ଝୁଲା ଯାଇଥାଏ। ମଞ୍ଚ ଗର୍ଭର ଶେଷଭାଗରେ ସାଇକ୍ଲୋମା ପରଦା ଝୁଲା ଯାଇଥାଏ। ମଞ୍ଚର ଦକ୍ଷିଣ ପାର୍ଶ୍ୱରେ ଉଇନ୍‌ସ ବନ୍ଧା ଯାଇଥାଏ। ଆକାଶକୁ ଘୋଡ଼ାଇବା ପାଇଁ ପ୍ରତି ଦୃଶ୍ୟ ପରଦା ମଧ୍ୟରେ ପ୍ଲେନ୍ ରଙ୍ଗର ଝାଲର ଉପରିଭାଗରେ ଦେଢ଼ଫୁଟ ଓସାର ଦକ୍ଷିଣକୁ ବାମପାର୍ଶ୍ୱରେ ଖଞ୍ଜା ଯାଇଥାଏ। ମଞ୍ଚର ସମ୍ମୁଖଭାଗରେ ସ୍କ୍ରିନ୍ ବନ୍ଧାଯାଇଥାଏ। ନାଟକ ଆରମ୍ଭ ହେଲେ ସ୍କ୍ରିନ୍ ଖୋଲେ ମଞ୍ଚର ଶୋଭା ଦେଖାଯାଏ। କାହାଣୀ ସହିତ ଜଡ଼ିତ ଡ୍ରପ୍‌ସିନ୍ ଉଠିଲା ପରେ ନାଟକର ଗୋଟାଏ ପରେ ଗୋଟାଏ ଦୃଶ୍ୟ ଦର୍ଶକଙ୍କୁ ବିମୋହିତ କରେ। ନାଟକର ଅଙ୍କ ପରେ ଡ୍ରପ୍ ସିନ୍ ପଡ଼େ। ଡ୍ରପ୍ ସିନ୍ ପଡ଼ିଥିବା ମଧ୍ୟରେ ନାଟକ ଦୃଶ୍ୟରେ ଥିବା ସାଜସଜ୍ଜା ଦ୍ରୁତବେଗରେ ଚାଲେ। ଇତିମଧ୍ୟରେ ମଞ୍ଚର ସଂଗୀତ ପ୍ରଯୋଜନା ଦର୍ଶକଙ୍କୁ ବାନ୍ଧିରଖେ। ସଂଗୀତ ନାଟକର ପ୍ରାଣ। ସଂଗୀତ ନାଟକର ଦର୍ଶନକୁ ଦର୍ଶକ ଚିତ୍ତରେ ବିଷାଦ, ଆନନ୍ଦର ପୁଲକ ସଂଚାର କରାଏ।

ମଞ୍ଚର ଶେଷ ପରଦା ସାଇକ୍ଲୋମା ପରଦା ଯେଉଁଠି କାହାଣୀ ସହିତ ଜଡ଼ିତ ଭିନ୍ନ ଭିନ୍ନ ଆକସ୍ମିକ ଦୃଶ୍ୟ ପ୍ରତିଫଳିତ ହୁଏ ଯଥା- ନଦୀ, ସମୁଦ୍ର, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ଜହ୍ନରାତି, ଝଡ଼ ତୋଫାନ ଦୃଶ୍ୟ ଦେଖାଯାଏ। ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକଙ୍କ ଚିତ୍ରାଳୟ ବାଇଗୁଣିଆ, ଭୂବନ ଚିତ୍ରାଳୟ, ଇଟାମାଟି ଥିଏଟର ମଞ୍ଚକୁ ନାଟ୍ୟକାହାଣୀର ଆବଶ୍ୟକତାକୁ ନେଇ ନିଖୁଣ ମଞ୍ଚ ନିର୍ମାଣ କରିବାରେ ପାରିବାର ଥିଲେ।

<u>ନାଟକ ଏବଂ ମଞ୍ଚ ବ୍ୟବସ୍ଥା :</u> ଥିଏଟର ନାଟ୍ୟକଳା ଆରମ୍ଭ ସମୟରେ ନାଟ୍ୟ କାହାଣୀ ବହୁତ ଦୀର୍ଘ ଥିଲା। ନାଟକଗୁଡ଼ିକ ବହୁ ଅଙ୍କରେ ବିଭାଜିତ ଥିଲା। ପ୍ରତ୍ୟେକ ଅଙ୍କରେ ବିଭାଜିତ ଦୃଶ୍ୟ ଥିଲା। ନାଟକର ଆରମ୍ଭ, ନାଟ୍ୟପ୍ରବାହ, ନାଟକର ଚରମସୀମା ଉତ୍ତୀର୍ଣ୍ଣ, ନାଟକର ନିମ୍ନମୁଖରେ ନାଟକରସମସ୍ୟା ମୀମାଂସାକୁ ନେଇ ଅଙ୍କ ବିଭାଜନ, ସେହି ପର୍ଯ୍ୟାୟରେ ସଂଗୀତ ସଂଯୋଜିତ। କାହାଣୀ ପ୍ରବାହର ଅଙ୍କ ଦୃଶ୍ୟ ସରିଗଲେ ଡ୍ରପ୍‌ସିନ୍ ପଡ଼େ। ମଞ୍ଚରେ ଡ୍ରପ୍‌ସିନ୍ ପଡ଼ିଥିବା ସମୟରେ

ପରବର୍ତ୍ତୀ ଅଙ୍କର ଦୃଶ୍ୟ ସାମଗ୍ରୀ ମଞ୍ଚରେ ସଜ୍ଜା ଯାଉଥିଲା। ପରବର୍ତ୍ତୀ ସମୟରେ ନାଟକକୁ କ୍ଷୁଦ୍ର କରାଯାଇ ଦୁଇ ଅଙ୍କ ବିଶିଷ୍ଟ କରାଗଲା। ଏହାର ପରବର୍ତ୍ତୀ ପରିବର୍ତ୍ତନରେ ନାଟକକୁ ଓ୍ୱାନ୍ ସେଟ୍ ଡ୍ରାମାମଞ୍ଚରେ ପ୍ରଦର୍ଶନ କରାଗଲା। ଏହି ସମୟ ମଞ୍ଚ ପରିକଳ୍ପନା ପୁରାତନ ବାଡ଼ ଭାଙ୍ଗି ସାଂପ୍ରତିକ ମଞ୍ଚ ଶୈଳୀରେ ପ୍ରଦର୍ଶିତ ହେଲା। ଡ୍ରାମା ମଞ୍ଚରେ ଟଣା ସ୍କ୍ରିନ୍ ଝୁଲା ନଯାଇ ଉର୍ଦ୍ଧ୍ୱ ଉତ୍ତୋଳନର ସ୍କ୍ରିନ୍ ଝୁଲାଗଲା। ମଞ୍ଚଗର୍ଭ ଶେଷ ପାର୍ଶ୍ୱରେ କଳା ପରଦା କିମ୍ବା ଧଳା ପରଦା ଟଣାଯାଇ ମଞ୍ଚର ଦକ୍ଷିଣ ଓ ବାମ ପାର୍ଶ୍ୱରେ କଳା ପରଦାର ଉଇଙ୍ଗ୍ସ ଟଣାଗଲା। ନାଟ୍ୟ କାହାଣୀକୁ ସେଟିଂ ଦ୍ୱାରା ଚମତ୍କୃତ କରାଗଲା। ନାଟ୍ୟ ମଞ୍ଚର ବାମପାର୍ଶ୍ୱ ଗୃହ ଭିତର ଏବଂ ଦକ୍ଷିଣ ପାର୍ଶ୍ୱ ଚରିତ୍ରର ବାହାରୁ ପ୍ରବେଶ ସୂଚନା ଦେଉଥିଲା। କିନ୍ତୁ ଓ୍ୱାନ୍‌ସେଟ୍ ମଞ୍ଚରେ ସେ ନିୟମ ନରହି ମଞ୍ଚକୁ ସଂପୂର୍ଣ୍ଣ ମୁକ୍ତ କରାଗଲା।

<u>ନୟାଗଡ଼ ଥିଏଟର ମଞ୍ଚ - ସ୍ମୃତିତୀର୍ଥର ପୂଜାରୀ ଫକୀର ଚରଣ ପଟ୍ଟନାୟକ :</u> ନୟାଗଡ଼ ଥିଏଟର ନାଟକର ମଞ୍ଚସ୍ଥ ସ୍ୱାଧୀନତା ପୂର୍ବ ସମୟର। ୧ ଅପ୍ରିଲ ୧୯୯୧ ଇଂରାଜୀ ପ୍ରାଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କ ସଂପାଦନାରେ ସ୍ମରଣିକା କଳାତୀର୍ଥ ପତ୍ରିକାରେ ନୟାଗଡ଼ ବ୍ରଜେନ୍ଦ୍ର ଉଚ୍ଚବିଦ୍ୟାଳୟରୁ ଅବସରପ୍ରାପ୍ତ ଫକୀର ଚରଣ ପଟ୍ଟନାୟକଙ୍କ 'ସ୍ମୃତିତୀର୍ଥର ପୂଜାରୀ' ପ୍ରବନ୍ଧରେ ଲିଖିତ- "ସ୍ୱାଧୀନତା ପ୍ରାପ୍ତିର ଦଶବର୍ଷ ପୂର୍ବର କଥା, ଇଂରେଜ ଶାସନର ଶେଷପାଦ। ନୟାଗଡ଼ ତତ୍କାଳୀନ ରାଜା କୃଷ୍ଣଚନ୍ଦ୍ର ସିଂହଙ୍କର ଶାସନକାଳ। ରାଜା କୃଷ୍ଣଚନ୍ଦ୍ର ଏକଧାରରେ ବିଦ୍ୟା, ସାହିତ୍ୟ ଚର୍ଚ୍ଚା, କ୍ରୀଡ଼ା ଏବଂ ବିଭିନ୍ନ ସୂକ୍ଷ୍ମ କଳାର ଏକ ଅନୁରାଗୀ ପୃଷ୍ଠପୋଷକ ଥିଲେ। ତତ୍କାଳୀନ ନୟାଗଡ଼କୁ ଏକ ସାଂସ୍କୃତିକ କ୍ଷେତ୍ରରେ ପରିଣତ କରିବାରେ ତାଙ୍କର ଅବଦାନ ଯଥାର୍ଥରେ ସ୍ମରଣୀୟ। ତାଙ୍କ ଶାସନ କାଳରେ ଅର୍ଣ୍ଣପୂର୍ଣ୍ଣା ଥିଏଟର ଏବଂ କାଳୀବାବୁଙ୍କ ଥିଏଟର ସେମାନଙ୍କ ପ୍ରାଥମିକ ଅବସ୍ଥାରେ ନୟାଗଡ଼ ରାଜ ପୃଷ୍ଠପୋଷକତା ଲାଭ କରିଥିଲେ। ଏତଦ୍‌ବ୍ୟତୀତ ତତ୍କାଳୀନ ବହୁ ପ୍ରତିଷ୍ଠିତ ସୁନାମଧନ୍ୟ ଅପେରା ପାର୍ଟି ମଧ୍ୟ ଅନେକ ସମୟରେ ଏଠାକୁ ଆସୁଥିଲେ। ରାଜ ପୃଷ୍ଠପୋଷକତା ଲାଭ କରିବା ସଂଗେ ସଂଗେ ଏମାନେ ପ୍ରତିଦାନରେ ଏକ କଳାତ୍ମକ ପରିବେଶ ସୃଷ୍ଟି କରୁଥିଲେ।

୧୯୩୭ ମସିହାରେ ରାଜ ପୃଷ୍ଠପୋଷକତାରେ ବ୍ରଜେନ୍ଦ୍ର ହାଇସ୍କୁଲ ଶୁଭ ଉଦ୍‌ଘାଟନ ନୟାଗଡ଼ ଶିକ୍ଷା କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ। ବିଶେଷତଃ ବିଲାତରେ ଉଚ୍ଚଶିକ୍ଷା ଲାଭକରି ସଦ୍ୟ ଫେରିଥିବା ସୁଯୋଗ୍ୟ ପ୍ରଧାନ ଶିକ୍ଷକ ବସନ୍ତ କୃଷ୍ଣ ଦାଶଙ୍କର ନିଯୁକ୍ତି ଶିକ୍ଷା କ୍ଷେତ୍ରରେ ଏକ ନୂତନ ଦିଗନ୍ତର ସୂଚନା ଦେଇଥିଲା। ବ୍ରଜେନ୍ଦ୍ର ହାଇସ୍କୁଲର ତତ୍କାଳୀନ ଶିକ୍ଷା କେବଳ ସାକ୍ଷରତା କିମ୍ବା ଶ୍ରେଣୀ ପ୍ରକୋଷ୍ଠରେ ଆବଦ୍ଧ ନହୋଇ ଛାତ୍ରର ପରିପୂର୍ଣ୍ଣ ବିକାଶରେ ସହାୟକ

ହୋଇଥିଲା। ଉନ୍ନତ ପଦ୍ଧତିରେ ଶିକ୍ଷାଦାନ କ୍ରୀଡ଼ା, ସାହିତ୍ୟ, ନାଟକ ଅଭିନୟ, ସଂଗୀତ ଚର୍ଚ୍ଚା ଓ ହସ୍ତକର୍ମ ପ୍ରଭୃତି ବ୍ୟକ୍ତିର ବିକାଶରେ ସହାୟକ ହେଉଥିଲା। ବିଦ୍ୟାଳୟ ମୁଖପତ୍ର 'ବାସନ୍ତି'ର ମୁଦ୍ରଣ ପ୍ରାୟ ୧୯୩୮ ମସିହା ବେଳକୁ ସମ୍ଭବ ହୋଇଥିବାର ଲେଖକଙ୍କର ସ୍ମରଣରେ ଆସୁଛି। ଏହି ପତ୍ରିକା ସେତେବେଳେ ଛାତ୍ର ଶିକ୍ଷକ ଓ ରାଜ୍ୟର ବହୁଗୁଣୀ ବିଦ୍ୱାନଙ୍କର ସାହିତ୍ୟ ଚର୍ଚ୍ଚାର ମାଧ୍ୟମ ହୋଇଥିଲା।

ନାଟକ ଅଭିନୟ କ୍ଷେତ୍ରରେ ତତ୍କାଳୀନ ବ୍ରଜେନ୍ଦ୍ର ହାଇସ୍କୁଲର 'ବାସନ୍ତି ନାଟ୍ୟ ସଂସଦ' (Basanti Dramatic Club) ଅନ୍ୟ ଏକ ସୃଜନମୂଳକ ପଦକ୍ଷେପ। ଏହି ନାଟ୍ୟ ସଂସଦ ଆନୁକୂଲ୍ୟରେ ପ୍ରତିବର୍ଷ ଶିକ୍ଷାବର୍ଷ ଆରମ୍ଭରେ ଏକ ପୂର୍ଣ୍ଣାଙ୍ଗ ନାଟକ ମଞ୍ଚସ୍ଥ କରିବାର ବ୍ୟବସ୍ଥା କରାଯାଉଥିଲା। ଏଥିପାଇଁ ତତ୍କାଳୀନ ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ କଳାକାର ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ବସୁ ଓ କାର୍ତ୍ତିକ କୁମାର ଘୋଷଙ୍କୁ ରାଜଦରବାର ପକ୍ଷରୁ ନିମନ୍ତ୍ରଣ କରାଯାଇ ବିଦ୍ୟାଳୟର ଛାତ୍ରମାନଙ୍କୁ ଅଭିନୟ କଳା ସଂଗୀତ ଓ ନୃତ୍ୟ କ୍ଷେତ୍ରରେ ତାଲିମ୍ ଦେବାର ବ୍ୟବସ୍ଥା ହେଉଥିଲା। କବିମଞ୍ଜୁଳ କୃଷ୍ଣଚନ୍ଦ୍ର ବସୁଙ୍କ ନିର୍ଦ୍ଦେଶିତ 'ରୋସେନା ଓସମାନ' ବିଦ୍ୟାଳୟର ପ୍ରଥମ ପରିବେଷିତ ପୂର୍ଣ୍ଣାଙ୍ଗ ନାଟକ। ପରବର୍ତ୍ତୀ ବର୍ଷମାନଙ୍କରେ ନାଟ୍ୟକାର କାର୍ତ୍ତିକ ଘୋଷଙ୍କର ନିର୍ଦ୍ଦେଶିତ ନାଟକ 'କାର୍ତ୍ତବୀର୍ଯ୍ୟ' ଓ 'ସମନ ସହଚର' ବିଦ୍ୟାଳୟର ଅସ୍ଥାୟୀ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା। ପ୍ରକାଶଥାଉକି 'ସମନ ସହଚର' କାର୍ତ୍ତିକ ଘୋଷଙ୍କର ଦ୍ୱିତୀୟ ମହାଯୁଦ୍ଧରେ ମିତ୍ର ଶକ୍ତିର ବିଜୟ ଉପରେ ଆଧାରିତ ଏକ ଛୋଟ ନାଟକ।

ବିଦ୍ୟାଳୟର 'ବାସନ୍ତୀ ନାଟ୍ୟ ସଂସ୍ଥା' ପରି ୧୯୪୬ ମସିହା ବେଳକୁ ନୟାଗଡ଼ ଟାଉନ୍‌ରେ ଯୁବନାଟ୍ୟ ସଂଘ 'ଜୁଭେନାଇଲ୍ ଡ୍ରାମାଟିକ୍ ଆସୋସିଏସନ୍'ର ସୃଷ୍ଟି ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା ସେତେବେଳକୁ ଲେଖକ ଓ ତା'ର ଅଳ୍ପ କେତେକ ସହପାଠୀ କଲେଜରେ ପଢ଼ିବାକୁ ନୟାଗଡ଼ ଛାଡ଼ି ସାରିଥିଲେ। ଗ୍ରୀଷ୍ମାବକାଶରେ ସେମାନେ ନୟାଗଡ଼ ଫେରିବା ପରେ ନୟାଗଡ଼ରେ ରହୁଥିବା ସଦସ୍ୟମାନେ ନାଟକ ଅଭିନୟ ପାଇଁ ଆବଶ୍ୟକ କାର୍ଯ୍ୟପନ୍ଥା ଗ୍ରହଣ କରୁଥିଲେ। ଯେଉଁ କେତେକ ନାଟକ ଏହି ନାଟ୍ୟ ସଂସ୍ଥା ଅଭିନୟ କରିଥିଲେ ସେଗୁଡ଼ିକ ହେଲା ଭାତ, ମୂଲିଆ, ଜହର, ଘରସଂସାର, ପହିଲି ରଜ ଇତ୍ୟାଦି।

ଯେତେଦୂର ମନେହୁଏ ଭାତ, ମୂଲିଆ ନାଟକ ୧୯୪୬ ମସିହା ଗ୍ରୀଷ୍ମାବକାଶରେ ଅଭିନୀତ ହୋଇଥିଲା। ମୂଲିଆ ନାଟକ ଅଭିନୟ ସମୟରେ ଏହାର ଲବ୍ଧ ପ୍ରତିଷ୍ଠିତ ଲେଖକ ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ର ଦଶପଲ୍ଲା ଖଣ୍ଡପଡ଼ା ଷ୍ଟେଟରେ ଚାକିରି କରିଥିଲେ। ସେତେବେଳେ ଖଣ୍ଡପଡ଼ା ନୟାଗଡ଼ ମଧ୍ୟରେ ବସ୍ ଚଳାଚଳ ପ୍ରଚଳନ ହୋଇ ନଥିଲା। ଖଣ୍ଡପଡ଼ାରେ ନିଜର ଚାକିରି କାର୍ଯ୍ୟ ସାରି ଶ୍ରୀଯୁକ୍ତ ମିଶ୍ର

ସାଇକେଲ୍‌ରେ ଅନେକ ସନ୍ଧ୍ୟାରେ ନୟାଗଡ଼ ଟାଉନ୍‌ରେ ମୂଲିଆ ନାଟକ ମଞ୍ଚସ୍ଥ ହେବାପାଇଁ ଚାଲିଥିବା ରିହରସାଲ୍‌ରେ ଯୋଗଦେଇଥିଲେ। ଏ ନାଟକ ସଫଳ ଭାବରେ ମଞ୍ଚସ୍ଥ ହେବାପରେ ସେ ମନ୍ତବ୍ୟ ଦେଇଥିଲେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚର ପେଷାଦାର ଅଭିନୟ ଅପେକ୍ଷା ନୟାଗଡ଼ର କିଶୋର କଳାକାରମାନଙ୍କର ଅଭିନୟ କୌଣସି ଗୁଣରେ କମ୍ ନୁହେଁ। ଏଠାରେ ଉଲ୍ଲେଖଯୋଗ୍ୟ ଏହି ଯେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ସ୍ତ୍ରୀ ଭୂମିକାରେ ସ୍ତ୍ରୀଲୋକମାନେ ଅଭିନୟ କଲାବେଳେ ନୟାଗଡ଼ ଟାଉନ୍‌ରେ ଅସ୍ଥାୟୀ ରଙ୍ଗମଞ୍ଚରେ କିଶୋର କଳାକାରମାନେ ସ୍ତ୍ରୀ ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ। ଲେଖକଙ୍କର ମନେଅଛି ଦୁଇଦିନ ଧରି ମୂଲିଆ ବର୍ତ୍ତମାନ ପୁରୁଣା ଟାଉନ୍‌ର ମଣ୍ଡାବାଗନର ପୂର୍ଣ୍ଣ ପ୍ରେକ୍ଷାଳୟରେ ଅଭିନୀତ ହୋଇଥିଲା ଏବଂ କେବଳ ନୟାଗଡ଼ ନୁହେଁ ବହିରାଗତ ବହୁ ଦର୍ଶକଙ୍କର ଏହା ପ୍ରଶଂସା ଭାଜନ ହୋଇଥିଲା। ଯୁବନାଟକ ସଂସ୍ଥାର ସମସ୍ତ ନାଟକର ଟିକେଟ ବ୍ୟବସ୍ଥା ହେଉଥିଲା। ଟିକେଟ ଲବ୍ଧ ଧନରେ ଏହି ସଂସ୍ଥାର ଅନେକ ସ୍ଥାୟୀ ସିନ୍ ଓ ଉଇଙ୍ଗସ୍ ସ୍ଥାନୀୟ କଳାକାର କ୍ଷେତ୍ରମୋହନ ଦାସ ସ୍ୱହସ୍ତରେ ଆଙ୍କିଥିଲେ ଓ ବହୁଦିନ ଯାଏ ସେଗୁଡ଼ିକ ମଞ୍ଚରେ ବ୍ୟବହୃତ ହେଉଥିଲା। ଲେଖିଲାବେଳେ ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ପ୍ରଣାମ ଜଣାଉଛି।

ଜୁଭେନାଇଲ୍ ଡ୍ରାମାଟିକ କ୍ଲବ୍‌ର ଜଣେ ଅଭିନେତା ଗୌରହରି ମିଶ୍ର (ନୟାଗଡ଼ ବ୍ରାହ୍ମଣ ସାହି) କୁହନ୍ତି- ଜେ.ଡ଼ି.ସି.ର ଜନ୍ମ ୧୯୫୦ ମସିହା ପୂର୍ବର କଥା। ଏହି କ୍ଲବ ରାଜା ସାହେବ କୃଷ୍ଣଚନ୍ଦ୍ର ସିଂ ମାନ୍ଧାତାଙ୍କର ପୃଷ୍ଟପୋଷକତାରେ ପରିଚାଳିତ ହେଉଥିଲା। କ୍ଲବ୍‌ର ସଂପାଦକ ଥିଲେ ନୟାଗଡ଼ ଡାକ୍ତରଖାନାର ତତ୍କାଳୀନ କିରାଣୀ ଲଡୁକିଶୋର ନନ୍ଦ (ବରଢ଼ିହି ଶାସନ)। ଜେ.ଡ଼ି.ସି. ସଫଳତା ସହ ମଞ୍ଚସ୍ଥ କରିଥିବା ନାଟକଗୁଡ଼ିକ ହେଲା, ଶିବାଜୀ, ଘରସଂସାର, ଭାଇ ଭାଉଜ, ମୂଲିଆ, ଭାତ, ଭୀଷ୍ମ ଅର୍ଜୁନ, ଖାରବେଳ, ବକ୍‌ସି ଜଗବନ୍ଧୁ, ସମ୍ରାଟ ଚନ୍ଦ୍ରଗୁପ୍ତ ଇତ୍ୟାଦି। ଏହି ନାଟକଗୁଡ଼ିକର ରିହରସାଲ କୃଷ୍ଣଚନ୍ଦ୍ର କ୍ଲବ୍‌ରେ କରାଯାଉଥିଲା। ସ୍ଥାୟୀ ରଙ୍ଗମଞ୍ଚ ନଥିବାରୁ ନାଟକଗୁଡ଼ିକ ନୟାଗଡ଼ ଡାକ୍ତରଖାନା ପଡ଼ିଆ ଓ ମଣ୍ଡା ବାଗାନ ପଡ଼ିଆରେ ମଞ୍ଚସ୍ଥ କରାଯାଉଥିଲା। ନାଟକଗୁଡ଼ିକୁ ବିଭିନ୍ନ ସମୟରେ ନିର୍ଦ୍ଦେଶନା ଦେଇଥିଲେ ଲଡୁକିଶୋର ନନ୍ଦ (ବରଢ଼ି ଶାସନ)। ଡାକ୍ତର ରାଧାନାଥ ରଥ (ଆଠଗଡ଼) ଆଡ଼ଭୋକେଟ ଗଦାଧର ପଟ୍ଟନାୟକ। ସଂଗୀତ ସଂଯୋଜନା କରୁଥିଲେ ରୁବେନ୍ ସିଂ ଓ ସ୍ଥାନୀୟ ବାଞ୍ଛାନିଧି ପଟ୍ଟନାୟକ। ଜେ.ଡ଼ି.ସି.ର ନାଟକଗୁଡ଼ିକ ମୁଖ୍ୟତଃ ଦୁଇ ରାତି ପାଇଁ ଅଭିନୀତ ହୁଏ। ନାରୀ ଭୂମିକାରେ ପୁରୁଷମାନେ ଅଭିନୟ କରୁଥିଲେ। ଏହି ନାଟକଗୁଡ଼ିକର ରୂପସଜ୍ଜା ତଥା ମଞ୍ଚ ଉପଯୋଗୀ ସିନ୍ ସିନେରୀ କ୍ଷେତ୍ରମୋହନ ଦାସ (ନୟାଗଡ଼ ଦାଣ୍ଡସାହି) ଓ ଜଗନ୍ନାଥ ବେହେରା କରୁଥିଲେ।

ଏବେକାର ଆଲୋକ ସଜ୍ଜା ଭଳି ସେ ସମୟରେ ବିଦ୍ୟୁତ୍ ଯୋଗାଯୋଗ ନଥିବାରୁ ଡେ ଲାଇଟ୍ ମାଧ୍ୟମରେ ନାଟକଗୁଡ଼ିକର ମଞ୍ଚ ସଜ୍ଜା ହେଉଥିଲା । ଗୌରହରି ମିଶ୍ର କୁହନ୍ତି- ୧୯୪୦, ୧୯୪୧ ମସିହା ବେଳରୁ ରାଜକର୍ମଚାରୀ ରାଜବଗିଚା ମଧ୍ୟରେ ଥିବା କ୍ଲବ୍‌ରେ ମଞ୍ଚକଳା ପରିବେଷଣ କରୁଥିଲେ । ଉମା ପଟ୍ଟନାୟକ, ଗୌରହରି ମିଶ୍ର, ପୂର୍ଣ୍ଣ ପଟ୍ଟନାୟକ, ଫକୀର ଚରଣ ପଟ୍ଟନାୟକ, କିଶୋର ପଟ୍ଟନାୟକ, ଶ୍ରୀମନ୍ତ ଦାସ, ରଘୁନାଥ ଦାସ ସୌଖୀନ କଳାକାରମାନେ ଜେ.ଡ଼ି.ସି. କ୍ଲବ୍‌ର ନାଟକଗୁଡ଼ିକରେ ଅଭିନୟ କରୁଥିଲେ । ନୟାଗଡ଼ ମଞ୍ଚକଳା ଏବର ନୁହେଁ । ଏହାର ଅଭିନୟ ଇତିହାସ ବହୁଦିନର ପୁରୁଣା ।

ଯଦୁମଣି କଳାକେନ୍ଦ୍ର : ଯଦୁମଣି କଳାକେନ୍ଦ୍ର ପୋଲିସ୍ ପଡ଼ିଆ ନିକଟରେ ସ୍ଥାପନ କରାଯାଇଥିଲା । ଏହି କେନ୍ଦ୍ରରେ ସଙ୍ଗୀତ ଅଧ୍ୟାପନା ଦେବା ସଙ୍ଗେ ସଙ୍ଗେ ମଞ୍ଚଧର୍ମୀ ନାଟକମାନ ଅଭିନୀତ ହେଉଥିଲା । ସମାଧି, ମୋତିମହଲ (ଡିଟେକ୍ଟିଭ ନାଟକ) ମଲାଜହ୍ନ, କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର ଗୀତିନାଟ୍ୟ ରୂପ, ମାନଭଞ୍ଜନ (ସଙ୍ଗୀତଧର୍ମୀ ଗୀତିନାଟ୍ୟ) କଳାକେନ୍ଦ୍ର ମଞ୍ଚରେ ସଫଳ ମଞ୍ଚ ରୂପ ନେଇଥିଲା । ମନମୋହନ ରାୟ, ଗଦାଧର ପଟ୍ଟନାୟକ, ନିମାଇଁ ପଟ୍ଟନାୟକ (ଓଡ଼ିଆ ଅଧ୍ୟାପକ ନୟାଗଡ଼ କଲେଜ) ଏ ନାଟକଗୁଡ଼ିକର ନିର୍ଦ୍ଦେଶନା ଦେଇ ଦର୍ଶକଙ୍କର ପ୍ରିୟଭାଜନ ହୋଇଥିଲେ । ଅଧ୍ୟାପକ ନିମାଇଁ ପଟ୍ଟନାୟକଙ୍କର ଯଦୁମଣି କଳାକେନ୍ଦ୍ରରେ ୧୯୬୧ ମସିହାରୁ ସଂପୃକ୍ତି ରହେ । ସେ କଳାକେନ୍ଦ୍ରର ସଂପାଦକ ଥିଲେ । ତାଙ୍କର ସଂପୃକ୍ତି କାଳରେ ନାଟକଗୁଡ଼ିକ ସଫଳତାର ସହିତ ମଞ୍ଚସ୍ଥ ହୋଇଥିଲା । ନୟାଗଡ଼ର ଝିଅମାନଙ୍କୁ ମଞ୍ଚ ଉପରକୁ ଆଣିବା ଶ୍ରୀଯୁକ୍ତ ପଟ୍ଟନାୟକଙ୍କର ପାରିବାପଣିଆ । କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର ଗୀତିନାଟ୍ୟ ରୂପାୟନ କେବଳ କିଶୋରୀମାନଙ୍କ ଦ୍ୱାରା ଅଭିନୀତ । ଏହି ନାଟକରେ ଯମୁନା ନଦୀ, ନୀଳ ଆକାଶ, ପୂର୍ଣ୍ଣମୀର ଜହ୍ନ, ନଈକୂଳରେ କଦମ୍ବ ଗଛ ଜନିତ ଦୃଶ୍ୟକୁ ମଞ୍ଚ ଉପରେ ଅବତାରଣା ବେଶ୍ ଆକର୍ଷଣୀୟ ହୋଇଥିଲା କହି ଶ୍ରୀଯୁକ୍ତ ପଟ୍ଟନାୟକ ଉତ୍ତର ବୟସରେ ପୁଲକିତ ହୋଇଉଠନ୍ତି ।

ସଂସ୍କୃତି ସଂସଦ : ୧୯୬୪ ମସିହାରେ ନୟାଗଡ଼ରେ ସଂସ୍କୃତି ସଂସଦ ଜନ୍ମଲାଭ କଲା । ସଂସ୍କୃତି ସଂସଦର ମଞ୍ଚମାୟା ଓଡ଼ିଶାର ନାଟ୍ୟ ସଂପୃକ୍ତି ଅନୁଷ୍ଠାନ ତଥା ମଞ୍ଚ ଶିଳ୍ପୀମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସା ଅର୍ଜନ କରିଥିଲା । ସଂସଦର ନାଟକଗୁଡ଼ିକ ପ୍ରାୟତଃ ଗୋପୀନାଥ ସାମନ୍ତରାୟଙ୍କ କମଳା ଟକିଜ୍ ମଞ୍ଚରେ ମଞ୍ଚସ୍ଥ କରାଯାଉଥିଲା । ନାଟକ ମଞ୍ଚସ୍ଥ ପାଇଁ ଶ୍ରୀଯୁକ୍ତ ସାମନ୍ତରାୟଙ୍କ ସିନେମା ଗୃହଟି ତିନିଦିନ ପର୍ଯ୍ୟନ୍ତ ବନ୍ଦ ରହେ । ଏଣୁ ଶ୍ରୀଯୁକ୍ତ ଗୋପୀନାଥ ସାମନ୍ତରାୟଙ୍କର ନୟାଗଡ଼ ମଞ୍ଚନାଟକ ପ୍ରତି ଅତୁଳନୀୟ ଦାନ । 'ଶୂନ୍ୟଗର୍ଭା'ରୁ ପ୍ରକାଶଥାଏକି- " ୧୯୬୪ରେ ୰ଗୋପୀନାଥ ସାମନ୍ତରାୟଙ୍କ ପୃଷ୍ଠପୋଷକତାରେ ତଥା ୰ ପୂର୍ଣ୍ଣଚନ୍ଦ୍ର ମିଶ୍ର,

୰କିଶୋର ପଟ୍ଟନାୟକ (ପୂର୍ଣ୍ଣନା), ୰ ଶ୍ରୀଚରଣ ସାହୁଙ୍କ ସହାୟତାରେ ବିଧିବଦ୍ଧ ଭାବରେ ସଂସ୍କୃତି ସଂସଦ ଗଢ଼ାହେବା କଥା ଆମେ ଜାଣିବାକୁ ପାଉ ଭଗବତୀ ବାବୁଙ୍କ ସୌଜନ୍ୟରୁ।"

ସଂସ୍କୃତି ସଂସଦ କଥା ଉଠିଲେ ସାର୍ବଜନୀନ ମତରେ ଭଗବତୀ ଚରଣ ପଟ୍ଟନାୟକ ଚର୍ଚ୍ଚାକୁ ଆସୁଥିଲେ। ସେ ସଂସଦର ଏକାଧାରରେ ଆଗୁଆ କର୍ମୀ, ସଫଳ ଅଭିନେତା, ନାଟକ ନିର୍ଦ୍ଦେଶକ ଓ ନାଟକର ସଙ୍ଗୀତ ନିର୍ଦ୍ଦେଶକ ଥିଲେ। ତାଙ୍କର ମାମୁଁ କାଳିଚରଣ ପଟ୍ଟନାୟକଙ୍କର ନାଟ୍ୟ ପ୍ରତିଭା ତାଙ୍କ ଉପରେ ପ୍ରଚ୍ଛନ୍ନ ପ୍ରଭାବ ବିସ୍ତାର କରିଥିଲା। ସଂସ୍କୃତି ସଂସଦ ମଞ୍ଚରେ ୧୯୬୪ରୁ ୨୦୦୪ ମଧ୍ୟରେ ମଞ୍ଚସ୍ଥ ହୋଇଥିବା ନାଟକଗୁଡ଼ିକ ପରିଶୋଧ, କଂସାକବାଟ, ଖଇକଉଡ଼ି, ବାଡୁଅଝିଅ, ଭାନୁମତିର ଖେଳ, ନରୋତ୍ତମ ଦାସ କୁହେ, ବସନ୍ତ ଝଡ଼, ଅପରାଧି କିଏ, ତାମ୍ରଫଳକ, ଶେଷ କେଉଁଠି, ଭାଇ ଭାଉଜ, କାଗଜ ଡଙ୍ଗା, ମଧୁଲିତା, ସେଇ ବଂଶୀ ସେଇ ସ୍ୱନ, ଅଭିଶପ୍ତ ଘୁଙ୍ଗୁର, ଫୁଲଶେଯର ମଲାହଂସ।

ସଂସ୍କୃତି ସଂସଦର ମଞ୍ଚ ଶୈଳୀ ସମସାମୟିକ ସମାଜର ଆଧୁନିକତାକୁ ନେଇ ନିର୍ମାଣ କରାଯାଉଥିଲା। ମଞ୍ଚର ଦୃଶ୍ୟଗୁଡ଼ିକ କାହାଣୀ ଚାହୁଁଥିବା ସ୍ଥାନ, କାଳ ପାତ୍ରକୁ ନେଇ ମଞ୍ଚ ମଧ୍ୟରେ ଗଢ଼ା ଯାଇଥିଲା। ପ୍ରଥମରୁ କଟକର ଶ୍ରୀକୃଷ୍ଣ ଚିତ୍ରାଳୟ ଦ୍ୱାରା କେତେକ ନାଟକର ମଞ୍ଚ ନିର୍ମାଣ ହୋଇଥିଲାବେଳେ ପରବର୍ତ୍ତୀ ନାଟକର ମଞ୍ଚ ସ୍ଥାନୀୟ ଚିତ୍ରାଳୟ ବାଇଗଣିଆ, ପୂର୍ଣ୍ଣ ପଟ୍ଟନାୟକ ଦ୍ୱାରା ଭୁବନ ଚିତ୍ରାଳୟ ଇଟାମାଟିଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା। ଶେଷ ସମୟର ଅନେକ ନାଟକର ମଞ୍ଚ ଭୁବନ ଚିତ୍ରାଳୟ, ଇଟାମାଟି ନିର୍ମାଣ କରିଥିଲା। ସଂସଦର ମଞ୍ଚ ଦୃଶ୍ୟଗୁଡ଼ିକ ସଂପୂର୍ଣ୍ଣ ବାସ୍ତବ ରୂପ ବହନ କରିଥିବାର ଦର୍ଶକ ମହଲରେ ଚର୍ଚ୍ଚିତ।

ସଂସ୍କୃତି ସଂସଦ ନାଟକଗୁଡ଼ିକ ନିର୍ଦ୍ଦେଶନା ଦେଇଥିଲେ ଆଡ଼ଭୋକେଟ ଗଦାଧର ପଟ୍ଟନାୟକ (ନୟାଗଡ଼), ଭଗବତୀ ଚରଣ ପଟ୍ଟନାୟକ, ହରିହର ମିଶ୍ର (ଓଡ଼ିଆ ଅଧ୍ୟାପକ ନୟାଗଡ଼ କଲେଜ) ନାଟକଗୁଡ଼ିକରେ ସଙ୍ଗୀତ ସଂଯୋଜନା କରୁଥିଲେ ଭଗବତୀ ଚରଣ ପଟ୍ଟନାୟକ ଓ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ଅଧ୍ୟାପକ ନୟାଗଡ଼ କଲେଜ)। ସଂସଦ ମଞ୍ଚର ସଂଗୀତ ଏ ପର୍ଯ୍ୟନ୍ତ କେତେକ ଦର୍ଶକଙ୍କ ବୃଦ୍ଧ ପ୍ରାଣରେ ଅନୁରଣିତ ହେବାର ଶୁଣିବାକୁ ମିଳେ। କେତେକ ସଂଗୀତ ଆସରରେ ନୟାଗଡ଼ର କୋକିଳ ସ୍ୱର ଗନ୍ଧର୍ବ ନବ ମିଶ୍ରଙ୍କର କଣ୍ଠରେ ସଂସଦର ମଞ୍ଚରେ ସଂଯୋଜିତ ଗୀତ ଅବିକଳ ଶୁଣିବାକୁ ମିଳେ।

ମଞ୍ଚ ନାଟକ ବ୍ୟୟବହୁଳ ନାଟକ। ନୟାଗଡ଼ର ପ୍ରଥମ ଅବସ୍ଥାର ମଞ୍ଚ ନାଟକଗୁଡ଼ିକ ରାଜପୃଷ୍ଠପୋଷକତାରେ ମଞ୍ଚସ୍ଥ ହେଉଥିଲା। ସେହିପରି ସଂସଦର ମଞ୍ଚ ନାଟକଗୁଡ଼ିକ ନୟାଗଡ଼ ପ୍ରଶାସନ ସହଯୋଗରୁ ସଫଳ ମଞ୍ଚ ରୂପାୟନ

ନେଉଥିଲା । ସଂସଦ ନାଟକଗୁଡ଼ିକ ଦର୍ଶକଙ୍କର ଏତେଟା ନିକଟତର ହେଉଥିଲା ଯେ ଆଗାମୀ ଶୀତରେ କେଉଁ ଶୈଳୀର ନାଟକ ଉପସ୍ଥାପନା ହେବ ଦର୍ଶକ ଚାହିଁ ରହୁଥିଲେ ।

ସଂସ୍କୃତି ସଂସଦର ନାଟକ ଉତ୍ସବ ଶୀତଋତୁରେ ତିନିଦିନ ଧରି ଅନୁଷ୍ଠିତ ହୁଏ । ସଂସଦର ନାଟକଗୁଡ଼ିକ ନିର୍ଦ୍ଦିଷ୍ଟ ସମୟରେ ଆରମ୍ଭ ହୋଇ ନିର୍ଦ୍ଦିଷ୍ଟ ସମୟରେ ସମାପ୍ତି ହୁଏ । ନାଟକ ସନ୍ଧ୍ୟା ୭ଟା ସମୟରେ ଆରମ୍ଭ ହୋଇ ରାତ୍ର ୧୦ଟାରେ ସରିଯାଏ । ଘଣ୍ଟା ବାଜିଲେ ନାଟକ ଆରମ୍ଭ ହେବ ଦର୍ଶକମାନଙ୍କ ପାଇଁ ସତର୍କ ସଂକେତ । ସଂସଦର ନାଟକ ଆରମ୍ଭ ପୂର୍ବରୁ ତିନିଥର ଘଣ୍ଟା ପିଟାଯାଏ । ପ୍ରଥମ ଘଣ୍ଟି ବାଜିଲେ ମଞ୍ଚର ଅନ୍ତରାଳରେ ପୂର୍ବ ନାଟକର ସଙ୍ଗୀତ ପରିବେଷଣ ହୁଏ । ଏ ସଂଗୀତ ୨ୟ ଘଣ୍ଟା ବାଜିବା ପରକୁ ଅତିକ୍ରମ କରେ । ତା'ପରେ ଘୋଷଣା କରାଯାଏ କି "ଆପଣମାନେ ଘଣ୍ଟାକଣ୍ଟା ମେଳେଇ ନିଅନ୍ତୁ, ସମୟ ସଂଧ୍ୟା ୭ଟା" ତୃତୀୟ ଘଣ୍ଟା ବାଜେ, ମଞ୍ଚ ଖୋଲେ, ନାଟକର ପ୍ରଥମ ଦୃଶ୍ୟ ଦେଖାଯାଏ । ଆଗକୁ ଆଗକୁ ନାଟକ ଦୃଶ୍ୟ ପରେ ଦୃଶ୍ୟ ଗଡ଼ିଚାଲେ । ନାଟକର ଆରମ୍ଭ ପୂର୍ବରୁ ଏ ଘୋଷଣା ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ଇଂରାଜୀ ଅଧ୍ୟାପକ, ନୟାଗଡ଼ କଲେଜ) ଦର୍ଶକଙ୍କୁ ଏକାଗ୍ର କରିବା ଶୈଳୀରେ ଘୋଷଣା କରିଥାନ୍ତି । ଏଣୁ ସଂସ୍କୃତି ସଂସଦ ମଞ୍ଚର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କୁ ମୁଖବନ୍ଧ କହିଲେ ଅତ୍ୟୁକ୍ତି ହେବ ନାହିଁ । ସଂସଦର ନାଟକଗୁଡ଼ିକ ୨୦୦୦ ମସିହା ପର୍ଯ୍ୟନ୍ତ ପୂର୍ଣ୍ଣ ଦମ୍‌ରେ ମଞ୍ଚସ୍ଥ ହୋଇ କ୍ରମଶଃ ଶିଥିଳ ହୋଇ ପଡ଼ିଥିଲା ।

<u>ନୟାଗଡ଼ ମହାବିଦ୍ୟାଳୟର ନାଟ୍ୟ ସଂସଦ :</u> ୧୯୬୧ରେ ନୟାଗଡ଼ ମହାବିଦ୍ୟାଳୟ ପ୍ରତିଷ୍ଠା ପରେ ୧୯୬୩ ଠାରୁ ମହାବିଦ୍ୟାଳୟ ନାଟ୍ୟ ସଂସଦ ଓଡ଼ିଆ ଅଧ୍ୟାପକ ନିମାଇଁ ପଟ୍ଟନାୟକଙ୍କ ଦାୟିତ୍ୱରେ ପ୍ରତିଷ୍ଠା ଲାଭକରେ । ମହାବିଦ୍ୟାଳୟର ନାଟ୍ୟସଂସଦ ଓଡ଼ିଶାର ନବନାଟ୍ୟ ଆନ୍ଦୋଳନର ନୂତନ ଚେତନାର ନାଟକମାନ ମହାବିଦ୍ୟାଳୟର ପ୍ରେକ୍ଷାଳୟରେ ମଞ୍ଚସ୍ଥ କରିଥିବାର ଲକ୍ଷ୍ୟ କରାଯାଏ । ଶୀତ ସମୟରେ ନାଟକଗୁଡ଼ିକ ଦୁଇଦିନ ଧରି ପୂର୍ଣ୍ଣ ପ୍ରେକ୍ଷାଳୟରେ ମଞ୍ଚସ୍ଥ ହୁଏ । ନୟାଗଡ଼ ଅଞ୍ଚଳର ଦର୍ଶକମାନେ ବହୁଳମାତ୍ରାରେ ନାଟକ ଦେଖିବାକୁ ସମାବେଶ ହୋଇଥାନ୍ତି । ମହାବିଦ୍ୟାଳୟର ମଞ୍ଚ ମାୟା ନୂତନ ଆକର୍ଷଣ ନେଇ ଉପସ୍ଥାପିତ ହୁଏ । ମହାବିଦ୍ୟାଳୟ ମଞ୍ଚରେ ଅଧ୍ୟାପକ ନିମାଇଁ ପଟ୍ଟନାୟକଙ୍କ ଦ୍ୱାରା ନିର୍ଦ୍ଦେଶିତ ନାଟକଗୁଡ଼ିକ- ବନ୍ଦିତା, ଅଶାନ୍ତ ଗ୍ରହ, ବିଷ ପିୟୂଷ, ପ୍ରତୀକ୍ଷା, ତିନି ପାହାଚ, ଅସତ୍ୟ ସହର, ଦୁଇଟି ରକ୍ତଗୋଲାପ, ଶାସ୍ତି ଏବଂ କେବଳ ଝିଅମାନଙ୍କ ଦ୍ୱାରା ଅଭିନୀତ, ମୋନାଲିସାର ହସ, ଝରାବଉଳ ଦର୍ଶକ ମହଲରେ ବହୁ ଚର୍ଚ୍ଚିତ ଓ ସ୍ମରଣୀୟ ।

କବି, ନାଟ୍ୟକାର ଅଧ୍ୟାପକ ହରିହର ମିଶ୍ରଙ୍କର ନିର୍ଦ୍ଦେଶିତ ମଞ୍ଚକଳା ନୟାଗଡ଼ ମଞ୍ଚକଳାର ଦିଗ ପରିବର୍ତ୍ତନ କରି ନୂତନ ଶୈଳୀରେ ଅଭିନୟ ଦର୍ଶକ ମହଲରେ ବହୁଳ ଚର୍ଚ୍ଚା ହେବା ସଙ୍ଗେ ସଙ୍ଗେ ଦର୍ଶକମାନଙ୍କ ଦ୍ୱାରା ଅଧିକ ଗ୍ରହଣୀୟ ହେଲା। ଇଂରାଜୀ ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି, ଉଦ୍ଭିଦବିଜ୍ଞାନ ଅଧ୍ୟାପକ ଗୌର ପଟ୍ଟନାୟକ, ଓଡ଼ିଆ ଅଧ୍ୟାପକ ହରିହର ମିଶ୍ର, ନୟାଗଡ଼ ମହାବିଦ୍ୟାଳୟ ମଞ୍ଚକଳାର ତ୍ରିଧାରା। ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କର ସଂଗୀତ, ମହାବିଦ୍ୟାଳୟର କିରାଣୀ ନବକିଶୋର ମିଶ୍ର ଓ ସଂସ୍କୃତ ଅଧ୍ୟାପିକା ଶୈଳବାଳାଙ୍କର କଣ୍ଠଦାନରେ ନାଟକଗୁଡ଼ିକ ଜୀବନ୍ତ ହୋଇଉଠେ। ଅଧ୍ୟାପକ ହରିହର ମିଶ୍ରଙ୍କ ଦ୍ୱାରା ନିର୍ଦ୍ଦେଶିତ ନାଟକ-ମୁଠାଏ ମାଟି, ଜ୍ୱାଳା, ଧର୍ମାର ଅଭିଶାପ, ହଂସଧ୍ୱନି, କାଚଘର, ନିନ୍ଦିତ ଗଜପତି ନାଟକଗୁଡ଼ିକ ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କର ସଙ୍ଗୀତ ସଂଯୋଜନାରେ ସଫଳ ମଞ୍ଚ ରୂପ ନେଇ ଦର୍ଶକ ମହଲରେ ହଇଚଇ ସୃଷ୍ଟି କରିଥିଲା। ଏ ନାଟକଗୁଡ଼ିକର ସଂଗୀତ ସ୍ୱର ଏଯାବତ୍ ସହରର କେତେକ ସଂଗୀତ ପ୍ରିୟଙ୍କର କଣ୍ଠରୁ ଶୁଣାଯାଏ। ୱାନ୍ ସେଟ୍ ପ୍ରଦର୍ଶିତ ମଞ୍ଚଶୈଳୀ ପ୍ରଥମେ ନୟାଗଡ଼ ମଞ୍ଚକୁ ଆଣିଥିଲେ ଶ୍ରୀଯୁକ୍ତ ମିଶ୍ର, ହଂସଧ୍ୱନି, ଏବେ ନୁହେଁ ତ କେବେ ନୁହେଁ । ୱାନ୍ ସେଟ୍‌ରେ ଅଭିନୀତ ନାଟକ ତାଙ୍କ ନିର୍ଦ୍ଦେଶନାର ସଫଳ କୃତିତ୍ୱ। ଶ୍ରୀଯୁକ୍ତ ମିଶ୍ରଙ୍କର ନୂତନ ଶୈଳୀର ମଞ୍ଚ ସଜ୍ଜା ନୟାଗଡ଼ ମଞ୍ଚକଳାକୁ ପ୍ରଭାବିତ କରିଥିବାର ଅନୁଭବ ହୁଏ। ତାଙ୍କର ମଞ୍ଚ ସଜ୍ଜା ଅଭିନୟ ଶୈଳୀ ସହିତ ସଙ୍ଗୀତର ସଂଯୋଗ ଦର୍ଶକଙ୍କୁ ପୂର୍ଣ୍ଣ ଆକର୍ଷଣ କରିବା ସଙ୍ଗେ ସଙ୍ଗେ ବୌଦ୍ଧିକ ଚିନ୍ତାର ଅଙ୍କକଷା ଅନ୍ତରକୁ ଆନ୍ଦୋଳିତ କରେ। ଶ୍ରୀଯୁକ୍ତ ମିଶ୍ରଙ୍କର ନାଟ୍ୟ ନିର୍ଦ୍ଦେଶନା ନୟାଗଡ଼ ମଞ୍ଚକଳାର ନୂତନ ବାଟ ଦେଖାଇବାର ମନେହୁଏ। ନୟାଗଡ଼ ମହାବିଦ୍ୟାଳୟ ପ୍ରେରଣାରେ ଭୁବନ ଚିତ୍ରାଳୟ (ଇଟାମାଟି)ର ମଞ୍ଚସଜ୍ଜା ଶୈଳୀ ଓଡ଼ିଶାର ପ୍ରତିଯୋଗୀ ସ୍ତରକୁ ପହଞ୍ଚି ଯାଇଥିବାର ଅନ୍ୱେଷଣରୁ ମିଳେ।

ପରବର୍ତ୍ତୀ ସମୟରେ ନୟାଗଡ଼ ମହାବିଦ୍ୟାଳୟରେ ନୂଆଧାରା ନାଟକ ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର (ଅର୍ଥନୀତି ବିଭାଗ) ଡକ୍ଟର ବିଜୟ କୁମାର ଚୌଧୁରୀଙ୍କର ନିର୍ଦ୍ଦେଶନାରେ ସଫଳ ମଞ୍ଚରୂପ ନେଇଛି। ନିର୍ଦ୍ଦେଶିତ ନାଟକଗୁଡ଼ିକ ହେଲା-ଚକ୍ରବିଚିତ୍ର, ଏଇ ଯେ ସୂର୍ଯ୍ୟ ଉଏଁ, ମରୁ ମନ୍ଥନ, ଶୁଣ ସୁଜନେ, ମୁଁ ଆମ୍ଭେ ଆମ୍ଭେମାନେ, ରାଜହଂସ, କମଳପୁରର ଡାକଘର।

<u>ମିଳନୀ :</u> ମିଳନୀ କ୍ଲବ୍ ୧୯୬୭ରେ ଆଡ଼ଭୋକେଟ୍ ଗଦାଧର ପଟ୍ଟନାୟକଙ୍କ ଉଦ୍ୟମରେ ପ୍ରତିଷ୍ଠା ଲାଭ କରିଥିଲା। ତତ୍କାଳୀନ ଓଭରସିଅର ଆଶୁତୋଷ ମିଶ୍ର, ଗଙ୍ଗାଧର ପରିଡ଼ା (ବ୍ୟାଙ୍କ କର୍ମଚାରୀ) ବାଳକୃଷ୍ଣ ପଟ୍ଟନାୟକ (ଶିକ୍ଷାବିଭାଗୀୟ କର୍ମଚାରୀ) ବ୍ରଜବନ୍ଧୁ ବେହେରା, ରବି ନାରାୟଣ ମହାପାତ୍ର, କୈଳାଶ ମହାପାତ୍ର

ମିଳନୀର ପୃଷ୍ଠପୋଷକ ଥିଲେ। ଅମଲାପଡ଼ା ସାହି ମଧ୍ୟରେ ମିଳନୀ ରଙ୍ଗମଞ୍ଚରୁ ଆଡ଼ଭୋକେଟ ଗଦାଧର ପଟ୍ଟନାୟକଙ୍କ ନିର୍ଦ୍ଦେଶନାରେ ନାଟକଗୁଡ଼ିକ, ଶେଷ ଶ୍ରାବଣ, ଲୁହାସିକୁଳି, ତୋଳାକନ୍ୟା, କଂସାକବାଟ ସଫଳ ଅଭିନୀତ ହୋଇଥିବାର ଜନଶ୍ରୁତି ମିଳେ। କିଛିକାଳ ମିଳନୀ ନିରବ ରହିବାରୁ ଏହାର ପୃଷ୍ଠଭୂମି ଉପରେ ଡକ୍ଟର ବିଜୟ କୁମାର ଚୌଧୁରୀଙ୍କ ନେତୃତ୍ୱରେ ପୁନଃ ଯୁବମିଳନୀ କ୍ଲବ୍ ୧୯୮୦ରେ ପ୍ରତିଷ୍ଠା ଲାଭକଲା। ଯୁବମିଳନୀର ସଭ୍ୟମାନେ ସହର ମଧ୍ୟରୁ ଅର୍ଥ ସଂଗ୍ରହ କରି ଅନେକ ସଫଳ ନାଟକ ଏଯାବତ୍ ମଞ୍ଚସ୍ଥ କରିଆସୁଛନ୍ତି। ଯୁବ ମିଳନୀର ପ୍ରତ୍ୟେକ ନାଟକର ନିର୍ଦ୍ଦେଶକ ଥିଲେ ଡକ୍ଟର ଚୌଧୁରୀ। ତାଙ୍କର ନିର୍ଦ୍ଦେଶିତ ନାଟକଗୁଡ଼ିକ ହେଲା- ଦୁଇଟି ରକ୍ତ ଗୋଲାପ, ଅମାବାସ୍ୟାର ଚନ୍ଦ୍ର, ବିନ୍ଦୁବଳୟ, ଅଗ୍ନି ତପସ୍ୟା, ଉଆଁସୀ କନ୍ୟା, ଶୂନ୍ୟଚକ୍ରକ, ଅଥଚ ଚାଣକ୍ୟ, ପକା କମ୍ବଳ ପୋତ ଛତା, ତିମିରତୀର୍ଥ, ଶେଷ ଅଶ୍ରୁ, ସନ୍ଧ୍ୟାତାରା, ମ୍ଳାନଶର୍ବରୀ, ଫୁଲଶଯ୍ୟା, ତିମିରତୀର୍ଥର ମଞ୍ଚମାୟା ଦର୍ଶକ ହୃଦୟରେ ଚମକ ସୃଷ୍ଟି କରିଥିଲା। ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି ନାଟକଗୁଡ଼ିକର ସଙ୍ଗୀତ ସଂଯୋଜନା କରିଥିଲେ। ଭୂବନ ଚିତ୍ରାଳୟ ଇଟାମାଟି ଏହାର ମଞ୍ଚ ନିର୍ମାଣ କରୁଥିଲା। ମଞ୍ଚ ନିର୍ମାଣ ପ୍ରଣାଳୀ ଖାସ୍ ଆଧୁନିକ ଶୈଳୀର ଥିଲା।

ମିଳନୀ ଓ ଯୁବମିଳନୀ ସନ୍ଧିକ୍ଷଣ ସମୟରେ ନୟାଗଡ଼ର ପ୍ରତ୍ୟେକ ସାହିରେ ମଞ୍ଚଡ୍ରାମା ମଞ୍ଚସ୍ଥ ହୋଇଥିବାର ଲକ୍ଷ୍ୟ କରାଯାଏ। ବାଳକୃଷ୍ଣ ମିଶ୍ର (ପ୍ରଧାନ ଶିକ୍ଷକ, ବ୍ରଜେନ୍ଦ୍ର ଉଚ୍ଚ ବିଦ୍ୟାଳୟ)ଙ୍କ ଉଦ୍ୟମରେ ପାଟଚଣ୍ଡୀ କ୍ଲବ୍ ଗଢ଼ି ଉଠିଥିଲା। ଏହି କ୍ଲବ୍ ମାଧମରେ କେତୋଟି ନାଟକ ମଞ୍ଚସ୍ଥ ହୋଇଥିବାର ଜଣାଯାଏ। ୧୯୭୪/ ୧୯୭୫ରେ ଷ୍ଟାର୍ କ୍ଲବ୍‌ର ଜନ୍ମ। ଏହି କ୍ଲବ୍ ସଂସ୍କୃତି ସଂସଦର ଏକ ଅନୁବନ୍ଧି କ୍ଲବ୍। ଏହି କ୍ଲବ୍‌ରୁ ଉତ୍ତୀର୍ଣ୍ଣ ସଫଳ ଅଭିନେତାମାନଙ୍କୁ ସଂସ୍କୃତି ସଂସଦରେ ଅଭିନୟ କରିବାର ସୁଯୋଗ ଦିଆଯାଉଥିଲା ଅର୍ଥାତ୍ ଷ୍ଟାର୍ କ୍ଲବ୍‌କୁ ସଂସଦର ଜୁନିୟର ଦଳ କୁହାଯାଇପାରେ। ପୂର୍ଣ୍ଣ ମିଶ୍ର, ପୂର୍ଣ୍ଣ ପଟ୍ଟନାୟକ, ଚରଣ ସାହୁ ଏହାର ପୃଷ୍ଠପୋଷକ ଥିଲେ। ଷ୍ଟାର୍ କ୍ଲବ୍ ଦ୍ୱାରା ମଞ୍ଚସ୍ଥ ନାଟକଗୁଡ଼ିକ- କିସ ପୁଣି ଦେଖାଯାଏ, ଅପରାଧି କିଏ, କାହାକୁ କରିବି ପର। ଷ୍ଟାର୍ କ୍ଲବ୍‌ର ମଞ୍ଚସ୍ଥ ହୋଇଥିବା ନାଟକଗୁଡ଼ିକର ନିର୍ଦ୍ଦେଶକ ଥିଲେ ଭଗବତୀ ଚରଣ ପଟ୍ଟନାୟକ ଓ କୃଷ୍ଣମୋହନ ରେଡ୍ଡି। ଓକିଲ ସଂଘ ଦ୍ୱାରା କୃଷ୍ଣଚୂଡ଼ାର ହସ ଓ ଦେବଦାସୀ ନାଟକର ସଫଳ ମଞ୍ଚ ରୂପାୟନ ହୋଇ ପରବର୍ତ୍ତୀ କାଳରେ ନିରବୀ ଯାଇଥିଲା।

<u>ତ୍ରିମୁଖୀ ରଙ୍ଗମଞ୍ଚ :</u> ନୟାଗଡ଼ ଶିକ୍ଷା ଜିଲ୍ଲା ନିରୀକ୍ଷକ ଲକ୍ଷ୍ମୀଧର ଶତପଥୀଙ୍କ ସମୟରେ ବେଣିବନ୍ଧନ (ପୌରାଣିକ ନାଟକ) ତ୍ରିମୁଖୀ ରଙ୍ଗମଞ୍ଚରେ ମଞ୍ଚସ୍ଥ ହୋଇଥିଲା। ତ୍ରିମୁଖୀ ମଞ୍ଚର ପରିକଳ୍ପନା କରିଥିଲେ ତତ୍କାଳୀନ ଶିକ୍ଷକ କବିର

ପଲ୍ଲେଇ (କେନ୍ଦୁଝିପି) ତ୍ରିମୁଖୀ ମଞ୍ଚର ମଞ୍ଚମାୟା ଏଯାବତ୍ ଦୃଶ୍ୟ ହୋଇଥିବା ମଞ୍ଚଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର । ଏ ମଞ୍ଚକୁ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ (ବାଇଗୁଣିଆ) ନିର୍ମାଣ କରିଥିଲେ । ସମୟେ ସମୟେ ଦର୍ଶକ ତିନୋଟି ଯାକ ମଞ୍ଚକୁ ଏକ ସମୟରେ ଦେଖୁଥିଲେ । ଏ ମଞ୍ଚର ଆଲୋକ ସଜ୍ଜା ପୁଷ୍ଟି ଇଲେକ୍ଟ୍ରିକାଲ୍ସ, ଓଡ଼ଗାଁ କରିଥିଲେ । ନାଟକର ଦୃଶ୍ୟରେ ଚକ୍ରଛାୟା ଦେଖାଯିବ ହିଁ ଦେଖାଯିବ, ରକ୍ତନଦୀ ହିଁ ରକ୍ତନଦୀ । ଶିକ୍ଷା ଜିଲ୍ଲାର ବଛାବଛା କଳାକାରଙ୍କୁ ନେଇ ଏ ନାଟକ ଅଭିନୀତ ହୋଇଥିଲା ନିଉ ଟାଉନ୍ ସ୍କୁଲ ହତା ମଧ୍ୟରେ ।

<u>ନେପଥ୍ୟେ ନାଟ୍ୟ ସଂସ୍ଥା ନୟାଗଡ଼ :</u> ନୟାଗଡ଼ ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ହରିହର ମିଶ୍ରଙ୍କର ସଭାପତିତ୍ୱରେ, ଅନ୍ନଦା ମିଶ୍ର (ସଂପାଦକ), ସୁରେଶ ଚନ୍ଦ୍ର ମିଶ୍ର, ପାଣ୍ଡବ ନାୟକ, କମଳ ଦାସ, ନିର୍ମଳ ଶୂରଦେଓ, ଅମୂଲ୍ୟ ଚନ୍ଦ୍ର ସ୍ୱାଇଁ, ସୁଦର୍ଶନ ରାଉତଙ୍କ ସହଯୋଗରେ ଆଞ୍ଚଳିକ ସାହିତ୍ୟ ସମାଜ ଗଢ଼ି ଉଠିଥିଲା । ଆଞ୍ଚଳିକ ସାହିତ୍ୟ ସମାଜ 'ନେପଥ୍ୟେ ନାଟ୍ୟ ସଂସ୍ଥା' ଗଠନ କରିଥିଲା । ନେପଥ୍ୟେ ନାଟ୍ୟ ସଂସ୍ଥା ତରଫରୁ କବି, ନାଟ୍ୟକାର ହରିହର ମିଶ୍ରଙ୍କ ନିର୍ଦ୍ଦେଶନାରେ ତାଙ୍କର ରଚିତ ନାଟକ 'ଏବେ ନୁହେଁ ତ କେବେ ନୁହେଁ' ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀର ଅଷ୍ଟାଦଶ ନାଟକୋତ୍ସବ ୧୯୮୯ ମସିହାରେ ଜିଲ୍ଲା ପରିଷଦ ପ୍ରେକ୍ଷାଳୟ, ଢେଙ୍କାନାଳଠାରେ ଅଭିନୀତ ହୋଇଥିଲା । ଏ ନାଟକର ଓ୍ୱାନ୍ ସେଟ୍ ସେଟିଂ ଦର୍ଶକଙ୍କୁ ଅଭିଭୂତ କରିଥିଲା । ଅଧ୍ୟାପକ ହରିହର ମିଶ୍ରଙ୍କର ପ୍ରେରଣାରେ ଏ ନାଟ୍ୟ ସଂସ୍ଥା ସ୍ଥାନୀୟ ଝିଅଙ୍କୁ ଅଭିନେତ୍ରୀ ସଜାଇ ମଞ୍ଚ ନାଟକକୁ ନୂତନ ସରଳ ବାଟ ଦେଖାଇଲା । ସ୍ଥାନୀୟ ଝିଅ ରୀତିମୁକ୍ତା ମିଶ୍ର, ମମତା ପଟ୍ଟନାୟକ 'ଏବେ ନୁହେଁ ତ କେବେ ନୁହେଁ', 'ସୁଖବାସୀ' ନାଟକରେ ଅଭିନୟ କରି ପ୍ରଶଂସା ଅର୍ଜନ କରିଥିଲେ । 'ନେପଥ୍ୟେ ନାଟ୍ୟସଂସ୍ଥା' ନୟାଗଡ଼ର ଟାଉନ୍‌ହଲ୍ (ବିନାୟକ ଭବନ)ରେ ପରୀକ୍ଷାମୂଳକ ଲାବୋରେଟୋରୀ ଡ୍ରାମା ଭିତ୍ତିରେ ଭଙ୍ଗାସିଡ଼ି, ଛକ, ବୁଦ୍ଧ ଭଳି କ୍ଷୁଦ୍ର ନାଟକ ପରିବେଷଣ କରି ସଫଳତା ଅର୍ଜନ କରିଥିଲା । ଲାବୋରେଟୋରୀ ଡ୍ରାମାର ଉଦ୍ଦେଶ୍ୟ ନୂତନ ବାର୍ତ୍ତା ସମାଜକୁ ଦେବା ସଙ୍ଗେ ସଙ୍ଗେ ଉପଯୁକ୍ତ କଳାକାର ସୃଷ୍ଟି କରିବା । ଏ ନାଟକ ସଂସ୍ଥା 'ଏବେ ନୁହେଁ ତ କେବେ ନୁହେଁ' ନାଟକକୁ 'ସୁଖବାସୀ' ନାମରେ ନାମକରଣ କରି ରେଜିଷ୍ଟାର କ୍ଲବ୍ ନୟାଗଡ଼ ସଙ୍ଗୀତାୟନ ମାଧ୍ୟମରେ ସେହି କଳାକାରମାନଙ୍କୁ ନେଇ ଓଡ଼ିଶା ଦୂରଦର୍ଶନରେ ଅଭିନୀତ ହୋଇଥିଲା । ପରବର୍ତ୍ତୀ କାଳରେ ନେପଥ୍ୟେ ନାଟ୍ୟ ସଂସ୍ଥା ନୀରବ ହୋଇଥିଲା ।

<u>ଚମତ୍କାର ନାଟ୍ୟ ସଂସଦ:</u> ଚମତ୍କାର ନାଟ୍ୟ ସଂସଦ ୨୦୦୬ରେ ବ୍ୟଙ୍ଗକବି ସତ୍ୟାନାଶ, ଗାଳ୍ପିକ ତପନ କୁମାର ମହାପାତ୍ର, ଶରତ ଚନ୍ଦ୍ର ଆଚାର୍ଯ୍ୟ,

ପାଣ୍ଡବ ନାୟକ, ପ୍ରଭାତ ମିଶ୍ର, ସୁରେନ୍ଦ୍ର ସାହୁ, ଗୁନା ଭାଇ, ଗଦାଧର ନନ୍ଦ, ପ୍ରଦୀପ ଡାକୁଆ, ଲକ୍ଷ୍ମୀଧର ମହାପାତ୍ର (ମି. କାଳିଆ)ଙ୍କ ନେତୃତ୍ୱରେ ଚମତ୍କାର ନାଟ୍ୟ ସଂସଦ ଗଠନ କରାଗଲା । ଏସ୍.ପି. ଅଫିସ୍‌ର ଏକାଉଣ୍ଟାଣ୍ଟ ଶରତ ମାଝି (ଢେଙ୍କାନାଳ)ଙ୍କ ନିର୍ଦ୍ଦେଶନାରେ ନାଟକ 'ଗୋଇଠା ବାବା', 'ସର୍ପଯଜ୍ଞ' ଦର୍ଶକଙ୍କର ପ୍ରିୟଭାଜନ ହୋଇପାରିଥିଲା । ଶରତ ମାଝିଙ୍କ ନେତୃତ୍ୱରେ ଅନ୍ତଃରାଜ୍ୟ ନାଟକ ପ୍ରତିଯୋଗିତା କାନପୁର (ଉତ୍ତରପ୍ରଦେଶ) ମଞ୍ଚରେ ନୟାଗଡ଼ର ଚମତ୍କାର ନାଟ୍ୟସଂସଦ ଯୋଗଦାନ କରିଥିଲା । ୨୦୦୮ ଏ ସଂସଦ ବିଜୟ କୁମାର ଚୌଧୁରୀଙ୍କ ନିର୍ଦ୍ଦେଶନାରେ 'ଡାଆଣୀ' ନାଟକ ପଠାଣି ସାମନ୍ତ ଅଡ଼ିଟୋରିୟମରେ ମଞ୍ଚସ୍ଥ କରିଥିଲା । ଲକ୍ଷ୍ମୀଧର ମହାପାତ୍ର (ମି. କାଳିଆ) ନୟାଗଡ଼ଙ୍କର ଆପ୍ରାଣ ପ୍ରଚେଷ୍ଟାରେ ଏ ନାଟ୍ୟସଂସ୍ଥା ଏଯାବତ୍ ନାଟକ ମଞ୍ଚସ୍ଥ କରିଆସୁଛି । ଚମତ୍କାର ନାଟ୍ୟ ସଂସଦର ଉଦ୍ଦେଶ୍ୟ ନୂତନ ପୀଢ଼ିର କଳାକାର ସୃଷ୍ଟି କରିବା । ଚମତ୍କାର ନାଟ୍ୟ ସଂସଦ ନିଜର ଘରଝିଅଙ୍କୁ ଅଭିନେତ୍ରୀ ସଜାଇ ନାଟକ ମଞ୍ଚସ୍ଥ କରିବା ପଥକୁ ସରଳ ସୁଗମ କରିପାରିଲା । କ୍ଷୀରାବ୍ଧି ତନୟା (ଲିଶା), ସର୍ପଯଜ୍ଞ, ଗୋଇଠା ବାବା, ପର୍ଶୁରାମ, ଡାଆଣୀ ନାଟକରେ ଅଭିନୟ କରି ସଫଳ ଅଭିନୟ କରିଥିବାର ଦେଖାଯାଏ । ଓଡ଼ିଶା ସଙ୍ଗୀତ ନାଟକ ପ୍ରଯୋଜନାରେ ଚମତ୍କାର ନାଟ୍ୟ ସଂସଦ, ବ୍ରଜେନ୍ଦ୍ର ଉଚ୍ଚବିଦ୍ୟାଳୟ ପରିସର ମଧ୍ୟରେ ଏକମାସ ଧରି କଳାକାର ପ୍ରଶିକ୍ଷଣ ଶିବିର ସ୍ଥାପନ କରିଥିଲା । ଏ ପ୍ରଶିକ୍ଷଣ ଶିବିରରେ ଅଧ୍ୟାପକ ନବୀନ ପରିଡ଼ା ବିଦ୍ୟାର୍ଥୀମାନଙ୍କୁ ଶିକ୍ଷାଦାନ କରୁଥିଲେ । ଶିକ୍ଷା ଶିବିରର ଉଦ୍‌ଯାପନ ଉତ୍ସବରେ ୧୨.୬.୨୦୦୭ରୁ ୧୫.୬.୨୦୦୭ରିଖ ମଧ୍ୟରେ ନାଟ୍ୟ ସଂସଦ ନୟାଗଡ଼ର ନାଟକ ଉତ୍ସବ କରିଥିଲେ । ଏହି ଉତ୍ସବରେ, 'ଆଦ୍ୟ-ଅଧୁନା-ଭବିତବ୍ୟ' ନୟାଗଡ଼ ଶିକ୍ଷାଶିବିର ବିଦ୍ୟାର୍ଥୀଙ୍କ ଦ୍ୱାରା, 'ସର୍ପଯଜ୍ଞ' ଚମତ୍କାର ନାଟ୍ୟ ସଂସଦ ଦ୍ୱାରା 'ବାଉଁଶ ଠେଙ୍ଗାରେ ସ୍ୱାଧୀନତା' କଳାପରିଷଦ ଢେଙ୍କାନାଳ ଦ୍ୱାରା, 'କାୟାକଳ୍ପ' ରଙ୍ଗଶାଳା ପୁରୀ ଦ୍ୱାରା ମଞ୍ଚସ୍ଥ ହୋଇଥିଲା । ଏହି ନାଟକ ଉତ୍ସବ ଶରତ ମାଝି (ଢେଙ୍କାନାଳ)ଙ୍କ ପରିକଳ୍ପନାରୁ ପରିବେଷିତ । ଏହି ଉତ୍ସବର ପ୍ରତିଯୋଗୀ ନାଟକଗୁଡ଼ିକ, ମଞ୍ଚ ନାଟକର ଆଧୁନିକୀକରଣ ଭଳି ମନେହୁଏ । ଶରତ ମାଝି (ଢେଙ୍କାନାଳ)ଙ୍କ ନାଟ୍ୟ ସଂପୃକ୍ତିକୁ ଚମତ୍କାର ନାଟ୍ୟ ସଂସଦ କେବେ ଭୁଲିବ ନାହିଁ ।

**କେ.ସି. କ୍ଲବ୍, ନୟାଗଡ଼ :** କେ.ସି. କ୍ଲବ୍ ରାଜରାଜୁଡ଼ା ଅମଳରୁ ଏକ ପୁରୁଣା କ୍ଲବ୍ । ରାଜାସାହେବ କୃଷ୍ଣଚନ୍ଦ୍ର ସିଂ ମାନଧାତାଙ୍କ ନାମରେ ଏହି କ୍ଲବ୍ ନାମିତ । ଆନ୍ତଃରାଜ୍ୟ କ୍ଲବ୍‌ମାନଙ୍କ ମଧ୍ୟରେ ଏହି କ୍ଲବ୍‌ର ବେଶ୍ ଖାତିର ରହିଛି । ପୁରୁଣା ଦିନରେ ରାଜ ପୃଷ୍ଠପୋଷକତାରେ ନୟାଗଡ଼ ମଞ୍ଚକଳାର ଆଦର ବଢ଼ିଥିଲା । ପ୍ରଥମେ ଏହି କ୍ଲବ୍‌ରେ ନାଟକ ରିହରସାଲ କରାଯାଉଥିଲା । କ୍ଲବ୍‌ର ଆଧୁନିକୀକରଣ

କାଳରୁ କୌଣସି ମଞ୍ଚନାଟକ ମଞ୍ଚସ୍ଥ ହୋଇନଥିଲା। ୨୦୦୩ରୁ କେ.ସି. କ୍ଲବ୍‌ର ପ୍ରଯୋଜନାରେ ମଞ୍ଚ ନାଟକ ମଞ୍ଚସ୍ଥ ହୋଇଆସୁଛି। ଏହି କ୍ଲବ୍‌ର ପ୍ରଥମ ମଞ୍ଚ ନାଟକ 'ବକ୍ସି ଜଗବନ୍ଧୁ' ଅସୀମ ବସୁଙ୍କ ମଞ୍ଚ ସଜ୍ଜାରେ ବେଶ୍ ସଫଳତା ଅର୍ଜନ କରିଥିଲା। ଦ୍ୱିତୀୟ ନାଟକ ନାଟ୍ୟକାର ଅମୂଲ୍ୟ ଚନ୍ଦ୍ର ସ୍ୱାଇଁଙ୍କର 'ଜହ୍ନ ଆଲୁଅର ଛାଇ' ରମାକାନ୍ତ ମହାପାତ୍ର (ଆଇ.ଓ.ବି., ବି.ଏମ୍.)ଙ୍କ ନିର୍ଦ୍ଦେଶନାରେ ଦର୍ଶକଙ୍କ ପ୍ରିୟଭାଜନ ହୋଇପାରିଥିଲା। ଡକ୍ଟର ବିଜୟ କୁମାର ଚୌଧୁରୀଙ୍କ ଦ୍ୱାରା ନିର୍ଦ୍ଦେଶିତ ତୃତୀୟ ନାଟକ 'ତିମିର ତୀର୍ଥ' ସଫଳତା ଅର୍ଜନ କରିଅଛି।

ନୟାଗଡ଼ ମଞ୍ଚକଳା କ୍ରମଶଃ ବୁଡ଼ି ଆସୁଥିବାବେଳେ ଅଧୁନା କେ.ସି. କ୍ଲବ୍ ମଞ୍ଚ ନାଟକ ମଞ୍ଚସ୍ଥ କରିବା ନୟାଗଡ଼ ଜିଲ୍ଲାର ଗୌରବ। ମଞ୍ଚକଳା ଗୋଟାଏ ଜାତି, ସଭ୍ୟତାର ପ୍ରତିଫଳନ ଓ ସଭ୍ୟତାର ମୋଡ଼ ବଦଳାଇବାର ଏକ ମାଧ୍ୟମ। ଐତିହାସିକ ନାଟକ 'ବକ୍ସି ଜଗବନ୍ଧୁ'ର ମଞ୍ଚ ରୂପାୟନ ମାୟା ଦର୍ଶକଙ୍କ ମନ ମଧ୍ୟରେ ଗଭୀର ଜାତୀୟତା ଭାବ ସୃଷ୍ଟି କରିଥିଲା। ଏ କ୍ଲବ୍‌ର ସଭ୍ୟମାନଙ୍କ ଭିତରେ ନାଟକ ମଞ୍ଚସ୍ଥ କରିବାର ଗୁଞ୍ଜରଣ ଶ୍ରୁତିପଥରେ ପଡ଼େ।

ନୟାଗଡ଼ ମଞ୍ଚକଳାର ନିୟମିତ ଦର୍ଶକ ଭାବରେ ସଂସ୍କୃତି ସଂସଦର- ଖଇକଉଡ଼ି, ଅଭିଶପ୍ତ ଘୁଙ୍ଗୁର, ସେଇ ବଂଶୀ ସେଇ ସ୍ୱନ, ମହାବିଦ୍ୟାଳୟ ନାଟ୍ୟ ସଂସଦର- ବିଷପୀୟୂଷ, ଅଶାନ୍ତ ଗ୍ରହ, ଧର୍ମାର ଅଭିଶାପ, କାଚଘର, ହଂସଧ୍ୱନୀ, ମୁଠାଏ ମାଟି, ଯୁବ ମିଳନୀର- ଅଥଚ ଚାଣକ୍ୟ, ପକା କମ୍ବଳ ପୋତ ଛତା, ଶିକ୍ଷା ଜିଲ୍ଲା ନିରୀକ୍ଷକଙ୍କ ତରଫରୁ ମଞ୍ଚସ୍ଥ ବେଣୀବନ୍ଧନ, କେ.ସି. କ୍ଲବ୍‌ର ବକ୍ସି ଜଗବନ୍ଧୁ ନାଟକର ମଞ୍ଚସଜ୍ଜା ଖାସ୍ ଉଚ୍ଚକୋଟିର। ଏ ମଞ୍ଚଗୁଡ଼ିକର ସ୍ଥାନ, କାଳ, ପାତ୍ର ଏକତ୍ର ତ୍ରୟୀ ଅଟନ୍ତି। ଏ ନାଟକଗୁଡ଼ିକର ମଞ୍ଚମାୟା ଦର୍ଶକଙ୍କୁ ଜବରଦସ୍ତ ବାନ୍ଧି ରଖିବାର ଲକ୍ଷ୍ୟ କରାଯାଇଛି। ଏଣୁ ଓଡ଼ିଶାରେ ନୟାଗଡ଼ ମଞ୍ଚ କଳାର ସ୍ୱତନ୍ତ୍ରତା ରହିଛି।

ନୟାଗଡ଼ର ସ୍ଥାୟୀ ହୁଅନ୍ତୁ ବା ଅସ୍ଥାୟୀ ହୁଅନ୍ତୁ କ୍ଲବ୍‌ଗୁଡ଼ିକ ବିଭିନ୍ନ ସମୟରେ ଭିନ୍ନଧର୍ମୀ ନାଟକ ମଞ୍ଚସ୍ଥ କରିଛନ୍ତି। କିନ୍ତୁ ନୟାଗଡ଼ରେ ସ୍ଥାୟୀ ରଙ୍ଗମଞ୍ଚ ନଥିଲା। ତତ୍କାଳୀନ ନାଟ୍ୟ ପ୍ରଯୋଜକ କିଶୋର ପଟ୍ଟନାୟକ (ପୂର୍ଣ୍ଣ ନା)ଙ୍କୁ ପ୍ରଶ୍ନ କରାଯାଇଥିଲା। ଆପଣଙ୍କ ପରେ କ'ଣ ନୟାଗଡ଼ର ମଞ୍ଚକଳା ବୁଡ଼ିଯିବ? ନୟାଗଡ଼ରେ ସ୍ଥାୟୀ ମଞ୍ଚ କାହିଁ? ବର୍ତ୍ତମାନର ବିଶିଷ୍ଟ ପୁରୁଖା ଅଭିନେତା ମନୋରଞ୍ଜନ ମହାପାତ୍ର (ଜୁଜୁ) ଆଳାପ ମାଧ୍ୟମରେ କହିଥିଲେ ପଠାଣି ସାମନ୍ତ ଅଡ଼ିଟୋରିୟମ କିଶୋର ପଟ୍ଟନାୟକ (ପୂର୍ଣ୍ଣ ନା) ପ୍ରମୋଦ ପଟ୍ଟନାୟକ (ବନ୍ଟୁ)ଙ୍କର ମାନସସନ୍ତାନ। ଯାହାହେଉ ବର୍ତ୍ତମାନ ନୟାଗଡ଼ରେ ତିନୋଟି ସ୍ଥାୟୀ ମଞ୍ଚ ଦେଖାଯାଏ। ମହାବିଦ୍ୟାଳୟ ମଞ୍ଚ, ପଠାଣି ସାମନ୍ତ ଅଡ଼ିଟୋରିୟମ୍ ଓ କେ.ସି.

କ୍ଲବ୍‌ର ମଞ୍ଚ। ଏହି ତିନୋଟି ମଞ୍ଚରେ ଅଦ୍ୟାବଧି ନାଟକ ମଞ୍ଚସ୍ଥ ହେଉଅଛି। ଆଡ଼ଭୋକେଟ ମନୋରଞ୍ଜନ ମହାପାତ୍ର କୁହନ୍ତି ସଂସଦର ନାଟକରେ ଏକ ଟ୍ରେନ୍ ଦୁର୍ଘଟଣା ଦୃଶ୍ୟ ଶବ୍ଦ ଓ ଆଲୋକର ଯାଦୁମାୟାରେ ଯେତିକି ଚମତ୍କାର ସେତିକି ଭୟଙ୍କର ହୋଇଥିଲା। ଅନେକ ନାଟକ ଦେଖିଛି, ହେଲେ ସେ ଦୃଶ୍ୟ ଏଯାଏ ମନରୁ ଭୁଲି ହେଉନି। ବିଶିଷ୍ଟ ଅଭିନେତା, ସଙ୍ଗୀତଜ୍ଞ, ନାଟ୍ୟ ନିର୍ଦ୍ଦେଶକ ଭଗବତୀ ଚରଣ ପଟ୍ଟନାୟକ କୁହନ୍ତି, "ଅନେକ ରଙ୍ଗମଞ୍ଚ ଦେଖିଛି ହେଲେ ସଂସ୍କୃତି ସଂସଦ ମଞ୍ଚର ସମୟାନୁବର୍ତ୍ତିତା କେଉଁଠାରେ ପରିଲକ୍ଷିତ ହୁଏ ନାହିଁ। ଏହାହିଁ ସଂସ୍କୃତି ସଂସଦର ସ୍ୱତନ୍ତତା।" ନୟାଗଡ଼ ମଞ୍ଚକଳାର ପ୍ରାଧାନ୍ୟ ଉପରେ ନାଟକ ନିର୍ଦ୍ଦେଶକ ନାଟ୍ୟଭୂଷଣ, ଡକ୍ଟର ବିଜୟ କୁମାର ଚୌଧୁରୀ କୁହନ୍ତି- 'ଓଡ଼ିଶାର ରଙ୍ଗମଞ୍ଚ ସହିତ ନୟାଗଡ଼ର ମଞ୍ଚକଳା ସମତାଳରେ ଗତି କରିଆସିଛି ଏବଂ ମୋ ନିର୍ଦ୍ଦେଶିତ ପ୍ରତ୍ୟେକ ନାଟକରେ କିଛିନା କିଛି ପରୀକ୍ଷା ତଥା ପ୍ରୟୋଗ କରିଆସିଛି। ସେ ପରୀକ୍ଷା କାହାଣୀରେ, ମଞ୍ଚରେ, ରୂପସଜ୍ଜା ଓ ବେଶ ସଜ୍ଜାରେ ଆଲୋକ ଓ ଶବ୍ଦ ମାଧ୍ୟମରେ ଦର୍ଶକ ସମ୍ମୁଖରେ ଉପସ୍ଥାପିତ ହୋଇଛି ଯାହାକି ପରବର୍ତ୍ତୀ ସମୟରେ ନାଟ୍ୟ ଗବେଷଣା କାଳରେ ପ୍ରତିଫଳିତ ହୋଇଛି। ତେଣୁ ଏହା ନିର୍ଦ୍ଦେଶକର ନୂଆ କିଛି କରିବାର ମାନସିକତାକୁ ସୂଚାଇଥାଏ। କାହାଣୀ ଭିତରେ ନାଟ୍ୟକାର ନିଜର ବକ୍ତବ୍ୟ କହିଲା ଭଳି ଦର୍ଶକ ସମ୍ମୁଖରେ ମୁଁ ମଧ ନିର୍ଦ୍ଦେଶକର ବକ୍ତବ୍ୟ ପ୍ରଦାନ କରିଛି।"

ବର୍ତ୍ତମାନ ପଠାଣି ସାମନ୍ତ ଅଡ଼ିଟୋରିୟମ ନାଟ୍ୟ ଅନୁଷ୍ଠାନମାନଙ୍କ ପାରିବାରିକ ନାଟକ ସାଂପ୍ରତିକ ଜୀବନଧର୍ମୀ ନାଟକ ପରିବେଷଣ ଦ୍ୱାରା ବର୍ଷତମାମ ଚଳଚଞ୍ଚଳ। ପ୍ରାୟ ସବୁଦିନେ ଏ ପ୍ରେକ୍ଷାଳୟରେ ସଭାସମିତିର କିଛିନାକିଛି କାର୍ଯ୍ୟକ୍ରମ ଥାଏ।

**ନାଟ୍ୟପ୍ରାଣ ବଳିଷ୍ଠ ସଂଗଠକ ଲକ୍ଷ୍ମୀଧର ମହାପାତ୍ର (ମି. କାଳିଆ) :** ଲକ୍ଷ୍ମୀଧର ମହାପାତ୍ର ନୟାଗଡ଼ ପୁରୁଣା ସହରର ଜଗନ୍ନାଥ ମନ୍ଦିର ପଶ୍ଚାତ ଶଗଡ଼ିଆ ସାହିର ଏକ ଜଣାଶୁଣା ବାସିନ୍ଦା। ସ୍ଥାୟୀ ନାଟ୍ୟ ଅନୁଷ୍ଠାନ 'ଚମତ୍କାର' ନାଟ୍ୟ ସଂସଦର ପ୍ରଯୋଜକ। ତାଙ୍କରି ବଳିଷ୍ଠ ସଂଗଠନରେ ୨୦୦୬ ମସିହାରୁ ଏଯାବତ୍ କ୍ରମାଗତ ଭାବେ ନାଟକ ମଞ୍ଚସ୍ଥ କରିଆସୁଛନ୍ତି। ତାଙ୍କର ପ୍ରଯୋଜନାରେ ନାଟକରେ ସ୍ଥାନୀୟ ଝିଅମାନଙ୍କୁ ଅଭିନୟ କରିବାରେ ସୁଯୋଗ ଦେଉଛନ୍ତି। ଏତେଟା ନାଟକପ୍ରେମୀ ସେ ଯେ ଚମତ୍କାର ନାଟ୍ୟ ସଂସଦ ପାଇଁ ସ୍ୱ ପରଦା ଏବଂ ନାଟକ ଉପଯୋଗୀ ଉପକରଣ ସାଇତି ରଖିଛନ୍ତି। ନାଟକ କଳାକାରଙ୍କର ପ୍ରମୋଦ କଳା। ମଞ୍ଚ ନାଟକର ମୁଖ୍ୟ ଭୂମିକା ରିହଲସାଲ ପ୍ରକୋଷ୍ଠ। ନାଟକ ରିହରସାଲରେ କଳାକାରମାନଙ୍କ ପାଇଁ ପ୍ରତିଦିନ ଉଚ୍ଚମାନର ଖାଦ୍ୟ ସେ ନିଜେ ରନ୍ଧନ କରି ଯୋଗାଇଥାନ୍ତି। ନିଜେ ଲେଖକ ପାଣ୍ଡବ ନାୟକ ଚମତ୍କାର ନାଟ୍ୟ ସଂଘର ଜଣେ

ବରିଷ୍ଠ କଳାକାର ତଥା ଉପଦେଷ୍ଟା ଅଟନ୍ତି। ଚମତ୍କାର ନାଟ୍ୟ ସଂସଦର ସ୍ଥାୟୀ ନିର୍ଦ୍ଦେଶକ ହେଉଛନ୍ତି ନାଟ୍ୟଭୂଷଣ ବିଜୟ କୁମାର ଚୌଧୁରୀ। ନବଗଠିତ ଜିଲ୍ଲା ସଂସ୍କୃତି ପରିଷଦ ଓ ନାଟ୍ୟଧାରା ନୟାଗଡ଼ର ସଭାପତି ପ୍ରମୋଦ ପଟ୍ଟନାୟକ (ନୟାଗଡ଼ ପୁରୁଣା ସହର) ସଂପାଦକ ଲକ୍ଷ୍ମୀଧର ମହାପାତ୍ର (ମି. କାଳିଆ) ନାଟ୍ୟଭୂଷଣ ବିଜୟ କୁମାର ଚୌଧୁରୀଙ୍କ ତତ୍ତ୍ୱାବଧାନରେ ଓଡ଼ିଶାର ଖ୍ୟାତନାମା ନାଟ୍ୟଦଳଙ୍କୁ ଆମନ୍ତ୍ରଣ କରି ବର୍ଷର ଆରମ୍ଭରେ ପଠାଣି ସାମନ୍ତ ଅଡ଼ିଟୋରିୟମରେ ସାଂପ୍ରତିକ ନୂତନ ସ୍ୱାଦର ନାଟକମାନ ୨୦୨୦ ମସିହାରୁ ମଞ୍ଚସ୍ଥ କରିଆସୁଛନ୍ତି।

<u>ନାଟ୍ୟ ସଂଘ ସିରିୟସ ଜୋନ୍ :</u> ଆଶୁତୋଷ ମିଶ୍ର, କାମିନୀକାନ୍ତ ମିଶ୍ର, ଦେବୀପ୍ରସାଦ ମିଶ୍ର, କୁସୁନ୍ ଦାଶ, କବି ସୁଦର୍ଶନ ରାଉତ, କବି କମଳ ଦାଶ, ଗାଳ୍ପିକ ତପନ ମହାପାତ୍ରଙ୍କ ସହଯୋଗରେ ସିରିୟସ ଜୋନ୍ ନାଟ୍ୟ ସଂଘ ପ୍ରତିଷ୍ଠା ଲାଭକରିଛି। ଏ ନାଟ୍ୟ ସଂସ୍ଥା ପ୍ରତିବର୍ଷ ପଠାଣି ସାମନ୍ତ ଅଡ଼ିଟୋରିୟମରେ ସାଂପ୍ରତିକ ଜୀବନଧର୍ମୀ ନାଟକ ମଞ୍ଚସ୍ଥ କରନ୍ତି। ସିରିୟସ ଜୋନ୍‌ର ସ୍ଥାୟୀ ନିର୍ଦ୍ଦେଶକ ଗୋପାଳ ଦେ ଜଟଣୀ। ତାଙ୍କ ନିର୍ଦ୍ଦେଶନାରେ ସ୍ୱତନ୍ତ୍ରତା ଉପଲବ୍ଧି ହୁଏ।

<u>ପଠାଣି ସାମନ୍ତ ଅଡ଼ିଟୋରିୟମ୍‌ରେ ନବନାଟ୍ୟ ଆନ୍ଦୋଳନ ଆଣିଥିବା ଖ୍ୟାତନାମା ସାହିତ୍ୟିକ ଶରତ ଚନ୍ଦ୍ର ଆଚାର୍ଯ୍ୟ :</u> ଶରତ ଚନ୍ଦ୍ର ଆଚାର୍ଯ୍ୟଙ୍କର ଗୋଡିସାହି ପଞ୍ଚାୟତ କଣ୍ଟାବଣିଆ ବ୍ରାହ୍ମଣ ଶାସନରେ ଜନ୍ମସ୍ଥାନ। ଶରତ ଚନ୍ଦ୍ର ଆଚାର୍ଯ୍ୟ ଏକାଧାରରେ କବି, ଗାଳ୍ପିକ, ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ, ହିନ୍ଦୀ ସାହିତ୍ୟର ଅନୁବାଦକ। ତାଙ୍କର ପ୍ରଥମ କବିତା ସଂକଳନ ବଢ଼ିଲା ଝିଅ, ଗଳ୍ପ ସଂକଳନ 'ଦୃଶ୍ୟଙ୍କ ଖେଳ' ଅନୁବାଦ ଗଳ୍ପ ସଂକଳନ। ତାଙ୍କର ନାଟକ 'ପଥର' ଓଡ଼ିଶାରେ ପ୍ରତିଷ୍ଠା ଲାଭ କରିଥିବା ମଞ୍ଚମାନଙ୍କରେ ମଞ୍ଚସ୍ଥ ହୋଇ ଉଚ୍ଚ ପ୍ରଶଂସା ଲାଭ କରିଛି। ତାଙ୍କଦ୍ୱାରା ଗଢ଼ା 'ରାଗେଶ୍ରୀ ନିଳୟମ ଅନୁଷ୍ଠାନ' ସାଂପ୍ରତିକ ଜୀବନ ଯନ୍ତ୍ରଣା ଉପରେ ଆଧାରିତ ଭିନ୍ନ ରୁଚିର ନାଟକମାନ ମଞ୍ଚସ୍ଥ କରେ।

ଶରତ ଚନ୍ଦ୍ର ଆଚାର୍ଯ୍ୟଙ୍କର ସଂପୃକ୍ତି ନୟାଗଡ଼ ଜିଲ୍ଲାର ନାଟ୍ୟ ଅନୁଷ୍ଠାନ ସାହିତ୍ୟ ଅନୁଷ୍ଠାନ ସହିତ ରହିଛି। ନୟାଗଡ଼ ଜିଲ୍ଲା ମହୋତ୍ସବର ବିଭିନ୍ନ ମଞ୍ଚ ପରିଚାଳନାରେ ତାଙ୍କର ମୁଖ୍ୟ ଭୂମିକା ଥାଏ। ଜୀବନଯାତ୍ରାର ମଝି ରାସ୍ତାରେ ପହଞ୍ଚିଥିବା ଶରତ ଚନ୍ଦ୍ର ଆଚାର୍ଯ୍ୟଙ୍କର ସାଧନାର ବହୁ କଳ୍ପନା ବାକି ରହିଛି ତାକୁ ସଂପନ୍ନ କରିବାକୁ ସମୟର ଆହ୍ୱାନ ତାଙ୍କୁ ଅପେକ୍ଷା କରେ। ଶରତ ଆଚାର୍ଯ୍ୟ ମହୋଦୟ ଓଡ଼ିଶା ସାହିତ୍ୟ ଏକାଡ଼େମୀକୁ ନୟାଗଡ଼ରୁ ପ୍ରତିନିଧିତ୍ୱ କରିଥିଲେ। ତାଙ୍କର ପ୍ରତିନିଧିତ୍ୱ କାଳରେ ନୟାଗଡ଼ର ସାହିତ୍ୟ ସଭା ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିଲା।

<u>**ଛାୟାପଥର କବି, ନାଟ୍ୟକାର, ବିଶିଷ୍ଟ ସାହିତ୍ୟିକ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ସଭାପତି, ହରିହର ମିଶ୍ର :**</u> କବି ହରିହର ମିଶ୍ର ପୁରୀ ମାର୍କଣ୍ଡେଶ୍ୱର

ସାହିର ସେବତୀ ନିବାସରେ ପିତା ମଣିରାମ ମିଶ୍ର, ମାତା ସେବତୀ ଦେବୀଙ୍କର କୋଳମଣ୍ଡନ କରିଥିଲେ ୨୦.୦୧.୧୯୪୧ ମସିହାରେ। ୧୯୬୮ରୁ ୧୯୯୮ ଦୀର୍ଘ ୩୦ବର୍ଷ ସାହିତ୍ୟିକ ହରିହର ମିଶ୍ର ତାଙ୍କର କର୍ମମୟ ଜୀବନ ଅତିବାହିତ କରିଥିଲେ ନୟାଗଡ଼ ମହାବିଦ୍ୟାଳୟ ଓଡ଼ିଆ ଅଧ୍ୟାପକ ଭାବରେ। 'ମୋ କାବ୍ୟ ଚେତନା ନୟାଗଡ଼' ପ୍ରବନ୍ଧରେ ପ୍ରକାଶ କରନ୍ତି "ମୋର ଅତି ଆପଣାର ରଷୀ, ବଳରାମ, ଜଜାଙ୍ଗୀ, ବଲାଙ୍ଗା, ସାତକୋଶିଆ, ଲଡୁକେଶ୍ୱର, ବୁଢ଼ା ବୁଢ଼ୀଆଣୀ, ବୁଦ୍ଧଖୋଲ, ପଞ୍ଚଭୂତି, କୁସୁମୀ, ଡାହୁକା, ମହାନଦୀ ସର୍ବୋପରି ସହର ଓ କଲେଜ ପରିସର ଥିଲା ମୋ ସାହିତ୍ୟ ସାଧନର ଲାଳନଭୂମି। କବି ହରିହର ମିଶ୍ରଙ୍କର କାବ୍ୟକୁସୁମ ପାଖୁଡ଼ା ଖୋଲିଲେ ପାଖୁଡ଼ାର ରୂପ ରଙ୍ଗ ଗର୍ଭରୁ ଉତୁରି ଆସେ ନୟାଗଡ଼ର ଆରଣ୍ୟକ ସୁଷମା ଜଡ଼ିତ ଜୀବନ ଚେତନାର କଳାରାଗ। ସଚ୍ଚି ରାଉତରା ହରିହର ମିଶ୍ରଙ୍କୁ ନୟାଗଡ଼ର କବି ବୋଲି ଡାକନ୍ତି। 'ନୂଆଗଡ଼' ଶିରୋନାମାରେ କବିଙ୍କର ଦୀର୍ଘ କବିତା କେତେ ଆପଣାର ନୟାଗଡ଼ ତାଙ୍କର-

ନଈ ସେପାରିରୁ ଯେତେବେଳେ
ଦେଖୁଥିଲି ତତେ
ପ୍ରଣାମ କରୁଥିଲି ତୋର ନୀଳ ବିଗ୍ରହକୁ
ଯୁଗର ଅବସାନ ମନେକରି
        ସୂର୍ଯ୍ୟାସ୍ତର ଶେଷ ହସଟିକୁ।

X XX X

ସେଦିନଠୁ ଭୁଲିଗଲି ଅନ୍ୟସବୁ ସଂପର୍କ ମୋହର
ଯେଉଁଦିନ ପାଦ ଦେଲି ତୋ ମାଟିରେ
ହେ ମୋର ନୂଆଗଡ଼ ପ୍ରାଣର ସହର
ସମୁଦ୍ରର ଢେଉ ସବୁ ସ୍ଥିର ହେଲେ
ସ୍ତମ୍ଭୀଭୂତ ହୋଇ ଆକାଶରେ।

ନୟାଗଡ଼ରେ ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶୀତ, ବସନ୍ତ ଛଅ ଋତୁ ବର୍ଣ୍ଣନା ନୂଆଗଡ଼ କବିତାରେ ଅଛି। ଭଙ୍ଗା ରାଜବାଟୀ, ରଷୀ ଜଜାଙ୍ଗୀ ଉପରୁ ନୟାଗଡ଼ର ସଂଜ ସକାଳ ଦୃଶ୍ୟ ରହିଛି। କିନ୍ତୁ ଉଚ୍ଚତର ଚେତନା ପ୍ରତି ପ୍ରେରଣା ପାଇଛି ସେଇଠି-

ଦୁଇଟି ଭ୍ରୂଲତା ଭଳି ପାହାଡ଼ ମଝିରେ ରଖି
ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ
ଚାଲିବା ଶିଖିଛି ଏଠି ସ୍ଥିତପ୍ରଜ୍ଞ ଯୋଗୀଟିଏ
ପାଦତଳେ ଶୃଙ୍ଗତା'ର ଆଦିଖଣ୍ଡ ଦିଶେ ସମତଳ।

ଆସୁରି ଉର୍ଦ୍ଧ୍ୱକୁ ଉଠେ ଯେତେ ଏଠି
ବିଶ୍ୱ ଲାଗେ ସେତେ ଆପଣାର।

କେତେ ଆପଣାର ମୋର ନୟାଗଡ଼। ନୟାଗଡ଼ର ପ୍ରକୃତି ମୋତେ ଖୋଜେ। କେତେ ପୁରାଣ ଇତିହାସ କିମ୍ୱଦନ୍ତୀର ତା'ର ପାହାଡ଼ ଉପତ୍ୟକା। ରତ୍ନମାଳା ଭଣ୍ଡାର ପାହାଡ଼, କଟରାଝରି, ଶୂଳିଆ, ରାଜଗିରି, ବାଇଗୁଣିଆ, ଗୁଲାଲ ଦେଓ, ବାଣାସୁର ପ୍ରତ୍ନତତ୍ତ୍ୱ, ସାତକୋଶିଆ, ଓଡ଼ଗାଁ, କବିତାରେ ତାଙ୍କୁ ରୂପ ଦିଏ।

ସଦ୍ୟସ୍ନାତ ରଜବତୀ ନାରୀ ଭଳି ନୟାଗଡ଼
ମୁକୁଳା କେଶରୁ ତା'ର ଅନ୍ଧାରକୁ ଛାଟିଦେଇ
ହସିଦିଏ.. ବୁଲିଯାଏ ସାଧାସିଧା ବାସନ୍ତୀ ଶାଢ଼ିରେ
ପାଟେଳି ରଙ୍ଗର ପାଟ ଟାଙ୍ଗିଦେଇ
ଦିଗନ୍ତର ଅଳୁଗୁଣି ପରେ।

ଏ ରଙ୍ଗରେ କବି କୁହନ୍ତି- ହସ ଲୁହର ସଂପର୍କର ଦେଶରେ ନୟାଗଡ଼ ମୋ କାବ୍ୟ ସୁନ୍ଦରୀର ଗଣ୍ଡଦେଶରେ କଳାଜାଇଟିଏ। ପ୍ରକୃତିରାଣୀର ଅଭୁଲା, ଅପାସୋରା ମୋ ନୟାଗଡ଼। ନୟାଗଡ଼କୁ କବି ହରିହର କେତେଟା ନିଜର କରିପାରିଛନ୍ତି ସେ ତ ନୟାଗଡ଼ିଆ କବି। ଗାଇଛନ୍ତି-

ମୃତ ଘଟ ସମ ସେହି ନଦୀତୀରେ
        ବିଶ୍ୱାବସୁ ଗାଁ
ସେ ଘାଟରେ ଚାଲଯିବା ଲେଖିଦବା
        ଆମ ନାଁ ଗାଁ।

କବି ହରିହର ମିଶ୍ର ତାଙ୍କ ବାସଭବନୁ ଯିବାଆସିବା ପଥକୁ ଛାୟାପଥ ନାମକରଣ କରିଥିଲେ। ଛାୟାପଥ ନୟାଗଡ଼ ଠିକଣାରେ ସେ ଓଡ଼ିଆ ସାହିତ୍ୟରେ ପରିଚିତ। କବି ହରିହର ମିଶ୍ର ଅଧୁନା ପୁରୀରେ ଅବସ୍ଥାନ କରିଛନ୍ତି। ହେଲେ ଛାୟାପଥ ହରିହର ମିଶ୍ରଙ୍କୁ ସ୍ମରଣ କରି ପଡ଼ିରହିଛି। ହରିହର ମିଶ୍ର ଯେତେବେଳେ ଓଡ଼ିଆ ସାହିତ୍ୟ ଏକାଡ଼େମୀର ସଭାପତି ହେଲେ ନୟାଗଡ଼ବାସୀ ତାଙ୍କୁ ଆମନ୍ତ୍ରଣ କରି ସମ୍ବର୍ଦ୍ଧନା କରିଥିଲେ। କବିଙ୍କର ନୟାଗଡ଼ ସହିତ ଯେଉଁ ଅନ୍ତରଙ୍ଗ ମେଳାପ ତଥା ନୟାଗଡ଼ ଅନୁଷ୍ଠାନମାନଙ୍କ ସହିତ ତାଙ୍କର ଯେଉଁ ସଂପୃକ୍ତି ତାଙ୍କୁ ନୟାଗଡ଼ର ବୋଲି କେ ନ କହିବ। ସେ ନୟାଗଡ଼ର ଅନେକେ କବି, ଗାଳ୍ପିକ, ନାଟ୍ୟକାର, ସାହିତ୍ୟକାର ଗଢ଼ିଦେଇ ଯାଇଛନ୍ତି। ସେ ନୟାଗଡ଼ ମାଟି ପାଇଁ ଅଭୁଲା ମଣିଷ।

ସାହିତ୍ୟିକ ହରିହର ମିଶ୍ର ନୟାଗଡ଼ ମାଟିର ତାଙ୍କଦ୍ୱାରା ନାମିତ ଛାୟାପଥରେ ବିହାର କରି ସାହିତ୍ୟର ପ୍ରତ୍ୟେକ ଦିଗର ବିଭବକୁ ଉପଭୋଗ କରିସାରିଛନ୍ତି। ସେ ଛାୟାପଥର ଏକାଧାରରେ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ପ୍ରାବନ୍ଧିକ,

ବେତାରଶିଳ୍ପୀ, ନାଟ୍ୟ ନିର୍ଦ୍ଦେଶକ, ଚଳଚ୍ଚିତ୍ରର ସଂଯୋଜକ ଏବଂ ଗୀତିକାର।

ଯୁବକବି ଜ୍ଞାନୀ ଦେବାଶିଷ : ଜ୍ଞାନୀ ଦେବାଶିଷ ନୟାଗଡ଼ ପୁରୁଣାସହର ଇଂରାଜୀ ପ୍ରାଧ୍ୟାପକ ଶରତ ମିଶ୍ରଙ୍କର ସୁପୁତ୍ର। ସେ ଶାନ୍ତିନିକେତନର ଓଡ଼ିଆ ସ୍ନାତକୋତ୍ତର ଉପାଧି ଲାଭକରି ରେଭେନ୍ସା ସ୍ୱୟଂଶାସିତ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗର ଅଧ୍ୟାପକ। ସେ ମହୋଦୟ ତାଙ୍କର କବିତା ପୁସ୍ତକ 'ଦାଗ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ୨୦୧୭ ପାଇଁ ଯୁବକବି ପ୍ରତିଭା ସମ୍ମାନରେ ଭୂଷିତ ହୋଇଛନ୍ତି। ଏ ପ୍ରତିଭାବାନ୍ ଯୁବକବି ନୟାଗଡ଼ର ଗୌରବ। ନୟାଗଡ଼ ତାଙ୍କର ଉଜ୍ଜ୍ୱଳ ପ୍ରତିଭା ବିସ୍ତାରକୁ ଚାହିଁରହିଛି।

ଛନ୍ଦକବି ଗୋଦାବରୀଶ ମିଶ୍ର : ଛନ୍ଦ କବି ଗୋଦାବରୀଶ ମିଶ୍ରଙ୍କର ଜନ୍ମସ୍ଥାନ ବ୍ରଜବଲଭପୁର ଶାସନ, ନୟାଗଡ଼। ସେ ଜଣେ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ, ସୁଲେଖକ, ସାହିତ୍ୟିକ। ନୟାଗଡ଼ ପ୍ରତ୍ୟେକ ସାହିତ୍ୟ ଅନୁଷ୍ଠାନରେ ତାଙ୍କର ସଂପୃକ୍ତି ରହିଛି। ତାଙ୍କର ସାହିତ୍ୟିକ ଜୀବନ ପ୍ରାରମ୍ଭରେ 'ଆଜି' ନାମକ ସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ। ସେ ମହାଶୟ ଜଣେ ମହାନ ଗୀତିକାର। ତାଙ୍କର ଗୀତ, ସଂଗୀତ ନୟାଗଡ଼ବାସୀଙ୍କୁ ଖୁସି କରାଇ ଦେଇଥିଲା। ନୟାଗଡ଼ର ଜଣାଶୁଣା ଲୋକଙ୍କୁ ଖୋଜି ତାଙ୍କ ଲେଖନୀରେ ପ୍ରକାଶ କରିବା ତାଙ୍କର ଏକ ସାଧୁ ଉଦ୍ୟମ। କସ୍ତୁରୀ ତିଳକଂ, ବୈଦେହୀ କବିତା ପୁସ୍ତକ ତାଙ୍କର କାବ୍ୟକଳା।

ନୟାଗଡ଼ ଗ୍ରାମାଞ୍ଚଳରେ ମଞ୍ଚକଳା : ସ୍ୱାଧୀନତା ପରବର୍ତ୍ତୀ ସମୟ ୧୯୫୦ ମସିହା ପରଠାରୁ ଗ୍ରାମାଞ୍ଚଳରେ ଶିକ୍ଷିତ ଯୁବକମାନେ ସିନ୍ ପରଦା ବ୍ୟବହାରରେ ମଞ୍ଚନାଟକ ପରିବେଷଣ କରୁଥିଲେ। ଦଶପଲ୍ଲା ମଧ୍ୟଖଣ୍ଡ, ଖଣ୍ଡପଡ଼ା- କଣ୍ଟିଲୋ, ଫତେଗଡ଼, ବିଜିପୁର, ବାଇଗୁଣିଆ, ରଣପୁର, ରାଜସୁନାଖଳା, ଗୋପାଳପୁର, ମଧ୍ୟଖଣ୍ଡ, ନୟାଗଡ଼-ବରଢ଼ି-ଶାସନ, ବାଉଁଶିଆ, ଶରଣକୁଳ, ଗୋଡିସାହି, କଲ୍ୟାଣପୁର, ଗୋଡ଼ିପଡ଼ା, ବଉଳସାହି, ବଡ଼ ଗୋରଡ଼ା, ଅସୁରଢ଼ିପା, ନନ୍ଦିଘୋର, ଓଡ଼ଗାଁ, କୁରାଳ, ବାହାଡ଼ାଝୋଲା, ଇଟାମାଟି ଗ୍ରାମମାନଙ୍କରେ ସିନ୍ ପରଦା ଟଣା ମଞ୍ଚନାଟକ ବର୍ଷରେ ଥରେ ମଞ୍ଚସ୍ଥ ହେବାର ଜଣାଯାଏ। ଡ୍ରାମା ମଞ୍ଚରେ ହାରମୋନିୟମ, ବେହେଲା, ଖଞ୍ଜଣି, ବଂଶୀ ଆଦି ସୂକ୍ଷ୍ମ ସଂଗୀତ ଯନ୍ତ୍ର ବ୍ୟବହାର କରାଯାଉଥିଲା। ମାଟିର ମଣିଷ, ଭାତ, ମୂଲିଆ, ଭାଇ ଭଗାରୀ, ଭାଇ ଭାଉଜ, ଲୁହା ଶିକୁଳି, କଂସା କବାଟ, ଭଗାରୀ, ଉଆଁସୀକନ୍ୟା ନାଟକମାନ ଗ୍ରାମ୍ୟ ଅସ୍ଥାୟୀ ରଙ୍ଗମଞ୍ଚରେ ମଞ୍ଚସ୍ଥ ହେଉଥିଲା। ନାଟ୍ୟକାର ଭୁବନେଶ୍ୱର ମିଶ୍ର ଶିକ୍ଷକ ନାରାୟଣ ହାଇସ୍କୁଲ ବରଢ଼ି ଶାସନ ଗ୍ରାମରେ ରହଣି କାଳରେ ଆଞ୍ଚଳିକ ଡ୍ରାମା ମଞ୍ଚରେ ତାଙ୍କର ପ୍ରଭାବ ଥିଲା। ବରଢ଼ିରେ ଦକ୍ଷ କଳାକାରଙ୍କୁ ନେଇ ପ୍ରତିବର୍ଷ ଡ୍ରାମା ହୁଏ। ମଞ୍ଚରେ ବ୍ୟବହୃତ ସିନ୍ ପରଦା ଉଇଙ୍ଗ୍‌ସ ନିଜେ ଭୁବନେଶ୍ୱର ମିଶ୍ର ଆଙ୍କୁଥିଲେ।

ଗ୍ରାମାଞ୍ଚଳରେ ଡ୍ରାମା କରୁଥିବା କଳାକାରମାନେ ବରଢ଼ି ମଞ୍ଚ ପରଦାକୁ ଭଡ଼ା ସୂତ୍ରରେ ନେଇ ମଞ୍ଚରେ ବ୍ୟବହାର କରୁଥିଲେ। ସିନ୍ ଭଡ଼ାର ଲବ୍ଧ ଧନରେ ନୂଆ ସିନ୍ ଅଙ୍କାଯାଉଥିଲା।

ଲେଖକଙ୍କର ସର୍ବେକ୍ଷଣରେ ଗୋଡିସାହି ଗ୍ରାମର ପୁରୁଖା ମଞ୍ଚ କଳାକାର ତ୍ରିନାଥ ସ୍ୱାଇଁ କହନ୍ତି ୧୯୫୫ ମସିହା ସମସାମୟିକ ସମୟରେ ତତ୍କାଳୀନ ଅବିଭକ୍ତ ଗୋଡିସାହି ପଞ୍ଚାୟତର କଳାକାରଙ୍କୁ ନେଇ ଗୋଡିସାହି ପ୍ରାଥମିକ ବିଦ୍ୟାଳୟ ଖେଳ ପଡ଼ିଆରେ ଅସ୍ଥାୟୀ ମଞ୍ଚରେ ନାଟକ 'ମୂଲିଆ' ଅଭିନୀତ ହୋଇଥିଲା। ଏହି ମଞ୍ଚରେ ଗୋଡିସାହି ଗ୍ରାମର ତ୍ରିନାଥ ସ୍ୱାଇଁ, ମୃତ୍ୟୁଞ୍ଜୟ ନାୟକ, ଅଦ୍ୱୈତ ପରିଡ଼ା, କୁଳମଣି ନାୟକ, ରାମଚନ୍ଦ୍ର ନାୟକ, କଲ୍ୟାଣପୁର ଗ୍ରାମର ଲଡୁକିଶୋର ନାୟକ, ପ୍ରାଣନାଥ ମହାପାତ୍ର, ଶ୍ୟାମସୁନ୍ଦର ପ୍ରଧାନ, ବାଲିଆ ପ୍ରଧାନ, ଦୀନବନ୍ଧୁ ପାତ୍ର, ଜାମୁଝୋଲା ପବିତ୍ର ବିଶ୍ୱାଳ ଅଭିନୟ କରିଥିଲେ। ୧୯୭୫ ମସିହା ମଧ୍ୟରେ କଲ୍ୟାଣପୁରରେ ଲୁହାଶିକୁଳି ନାଟକ, ଗୋଡିସାହିରେ ରଘୁଅରକ୍ଷିତ ନାଟକ, ଭାଇ ଭଗାରୀ, ବିଷ ପୀୟୂଷ, ଜନନୀ, ଉଆଁସୀକନ୍ୟା ସୋଲପଟା ମଧ୍ୟଇଂରାଜୀ ବିଦ୍ୟାଳୟ ଅସ୍ଥାୟୀ ମଞ୍ଚରେ ଭାଇ ଭାଉଜ, ମାଟିର ମଣିଷ ନାଟକ ଦର୍ଶକଙ୍କୁ ବିମୋହିତ କରିଥିଲା।

ନାଟ୍ୟକାର, ନୃତ୍ୟନାଟିକା ଗୀତିକାର, ମଞ୍ଚ କଳାକାର ବ୍ରଜବନ୍ଧୁ ପ୍ରଧାନ ବଡ଼ଗୋରଡ଼ା ଗ୍ରାମ୍ୟ ମଞ୍ଚକଳାର ତଥ୍ୟ ଦିଅନ୍ତି- ୧୯୬୦ ମସିହା ପୂର୍ବ କିମ୍ବା ପର ହୋଇପାରେ ଆଞ୍ଚଳିକ ଡ୍ରାମା ମଞ୍ଚ ବଡ଼ଗୋରଡ଼ା ଗ୍ରାମର ଅସ୍ଥାୟୀ ମଞ୍ଚରେ ଘର ସଂସାର ନାଟକ ଟିକେଟ ସୋରେ ମଞ୍ଚସ୍ଥ ହୋଇଥିଲା। ତତ୍କାଳୀନ ଅବିଭକ୍ତ ଗୋଡ଼ିପଡ଼ା ପଞ୍ଚାୟତର ସରପଞ୍ଚ ଉଦୟନାଥ ପଟ୍ଟନାୟକ ତତ୍ତ୍ୱାବଧାନରେ। ଏହି ମଞ୍ଚର କଳାକାରମାନେ ବାଳକୃଷ୍ଣ ଦାଶ ଆଙ୍ଗିସଙ୍ଗି, ଗୋପାଳ ପଟ୍ଟନାୟକ ନୟାଗଡ଼ କଲେଜ ଅଧ୍ୟକ୍ଷ, ପ୍ରଫୁଲ୍ଲ ପଟ୍ଟନାୟକ, ଗଦାଧର ପଟ୍ଟନାୟକ ଗୁଞ୍ଜିବାରଣ, ଭବାନୀ ଚରଣ ପଟ୍ଟନାୟକ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କ ଭାଇ।

ବ୍ରଜବାବୁଙ୍କ ମୁହଁରୁ ଶୁଣେ- କେଶପାନିଆ ବିବେକାନନ୍ଦ କ୍ଲବ ୧୯୬୬ରୁ ୧୯୬୯ ମଞ୍ଚନାଟକ ପରିବେଷଣ କରୁଥିଲା। ବାଇଗୁଣିଆ ସିନ୍ ସିନେରୀ ଏହି ମଞ୍ଚରେ ବ୍ୟବହାର କରାଯାଇଥିଲା। କୃଷ୍ଣଚନ୍ଦ୍ର ଦୋରା ଭୁବନେଶ୍ୱର ଏ.ଜି. ୟୁନିୟନର ପ୍ରେସିଡେଣ୍ଟ ଯାହାଙ୍କ ପ୍ରଯୋଜନାରେ ମୋଗଲ ତାମସା ସାରା ଭାରତବର୍ଷରେ ମଞ୍ଚସ୍ଥ ହୋଇଥିଲା ବିବେକାନନ୍ଦ କ୍ଲବ୍ କେଶପାନିଆର ଶୁଭକାଂକ୍ଷୀ ଥିଲେ।

ବ୍ରଜବାବୁଙ୍କ ମୁହଁରୁ ଶୁଣେ- କଳକାଇ ପଲ୍ଲୀ ଉଚ୍ଚବିଦ୍ୟାଳୟ ପ୍ରଧାନ ଶିକ୍ଷକ ବାସୁଦେବ ପ୍ରଧାନଙ୍କ ତତ୍ତ୍ୱାବଧାନରେ ଛାତ୍ର ଶିକ୍ଷକ ମିଶି ଟିକେଟ ସୋ ମଞ୍ଚନାଟକ

ମଞ୍ଚସ୍ଥ ହେଉଥିଲା । ଏହି ମଞ୍ଚରେ ମାଣିକ ଯୋଡ଼ି, ଖଇକଉଡ଼ି, ଲକ୍ଷହୀରା, ଉଆଁସୀକନ୍ୟା, ଭରସା ନାଟକ ମଞ୍ଚସ୍ଥ ହୋଇଥିଲା ।

ଲେଖକଙ୍କର ନୟାଗଡ଼ କଲେଜ କ୍ୟାରିୟର ସାଙ୍ଗ ସୁବାଷ ପଣ୍ଡା ଢ଼ୋଲମରା ଖଣ୍ଡପଡ଼ାଙ୍କ ସହିତ ଆଳାପରେ ଢୋଲମରା, କୁମ୍ଭାରପଡ଼ା, ଗ୍ରାମ୍ୟ ମଞ୍ଚରେ ସୁବାଷ ପଣ୍ଡାଙ୍କ ବଡ଼ଭାଇ ଶଚିପଣ୍ଡା ଯେ କି ପ୍ୟାଶା ଚଳଚ୍ଚିତ୍ରର ନାୟକ ତାଙ୍କ ନିର୍ଦ୍ଦେଶନାରେ ଡ୍ରାମା ମଞ୍ଚରେ ନାଟକମାନ ମଞ୍ଚସ୍ଥ ହେଉଥିଲା ୧୯୬୦ରୁ ୧୯୭୦ ମସିହା ପର୍ଯ୍ୟନ୍ତ ।

ମାଳିସାହି ଗ୍ରାମର ସମାଜସେବୀ ସୁନାମଧନ୍ୟ ନାଟ୍ୟକାର ଔପନ୍ୟାସିକ, ଗାଳ୍ପିକ ବିଶ୍ୱନାଥ ମହାପାତ୍ରଙ୍କ ଗାଁ ଭଞ୍ଜ ଡ୍ରାମାଟିକ୍ କ୍ଲବ୍ ପ୍ରଯୋଜନାରେ ମଞ୍ଚସ୍ଥ ନାଟକ ୧୯୬୪ ମସିହା ପୂର୍ବରୁ ଓ ପରେ ସନ୍ଧ୍ୟାତାରା, କଂସାକବାଟ, ଘରସଂସାର, ବଜ୍ରକବାଟ, ପରିଶୋଧ, ମାଣିକ ଯୋଡ଼ି, କିଏ ଆପଣାର, ସ୍ୱାମୀ ସ୍ତ୍ରୀ, ଶେଷ ଅଶ୍ରୁ, ଜନନୀ, ମାଟିର ମଣିଷ, ସମ୍ରାଟ ଚନ୍ଦ୍ରଗୁପ୍ତ, ବେଣୀବନ୍ଧନ, ସଂପୂର୍ଣ୍ଣ ମହାଭାରତ, ରାମଦାଶ ତୁମେ ହାରିଗଲ ମଞ୍ଚସ୍ଥ କରାଯାଇଛି । ଏହି ମଞ୍ଚରେ ସାନପଦର ଆନନ୍ଦ ବାବୁଙ୍କ ସିନ୍ ପରଦା ବ୍ୟବହାର କରାଯାଉଥିଲା ।

୧୯୮୬ରୁ ୧୯୯୦ ମଧ୍ୟରେ ଏ ଗ୍ରନ୍ଥର ଲେଖକ ପାଣ୍ଡବ ନାୟକଙ୍କ ସଂଗଠନରେ ନୟାଗଡ଼ର ଯାତ୍ରା ସମ୍ରାଟ ଯୋଗେନ୍ଦ୍ର ବରାଡ଼ ସୋଲପଟାଙ୍କ ପ୍ରଯୋଜନାରେ ଆଞ୍ଚଳିକ କଳାକାରମାନଙ୍କୁ ନେଇ ଗୋଡିସାହି ପଞ୍ଚାୟତ ପଡ଼ିଆରେ ଚାରିଖଣ୍ଡ ନାଟକ, ସନ୍ଧ୍ୟାତାରା, ଶେଷଅଶ୍ରୁ, ମ୍ଳାନ ଶର୍ବରୀ, ତିମିରତୀର୍ଥ ମଞ୍ଚସ୍ଥ ହୋଇଥିଲା । ଭୁବନ ଚିତ୍ରାଳୟ ଇଟାମାଟି ଏହାର ମଞ୍ଚ ନିର୍ମାଣ କରିଥିଲେ । ନାଟ୍ୟକାର ହରିହର ମିଶ୍ର, ନାଟ୍ୟଭୂଷଣ ବିଜୟ କୁମାର ଚୌଧୁରୀ, ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କ ନିର୍ଦ୍ଦେଶନାରେ ଏ ମଞ୍ଚ ସଫଳ ରୂପାୟନ ନେଇଥିଲା । ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କ ସଂଗୀତ ସଂଯୋଜନାରେ ବେତାର କଣ୍ଠଶିଳ୍ପୀ ସ୍ୱର ଗନ୍ଧର୍ବ ନବକିଶୋର ମିଶ୍ର, ଭାରତୀ ହୋତା, ଜ୍ୟୋସ୍ନାମୟୀ ପ୍ରଧାନ ନାଟକଗୁଡ଼ିକରେ କଣ୍ଠଦାନ କରିଥିଲେ । ନାରୀ ଭୂମିକାରେ ଝିଅ କଳାକାରମାନେ ଅଭିନୟ କରିଥିଲେ ।

<u>ନାଟ୍ୟକାର ରାମଚନ୍ଦ୍ର ମିଶ୍ର - ଦଶପଲ୍ଲାଙ୍କ ନାଟ୍ୟବଳୟ :</u> ପ୍ରଥିତଯଶା କବି, ଗାଳ୍ପିକ, ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଦଶପଲ୍ଲା କୁଞ୍ଜବନ ଗଡ଼ରେ ପିତା ବିଦ୍ୟାଧର ମିଶ୍ର ମାତା ରାଧାରାଣୀଙ୍କ କୋଳରେ ୧୨ ଅକ୍ଟୋବର ୧୯୨୦ ମସିହାରେ ଜନ୍ମଗ୍ରହଣ କରିଥିଲେ । ପ୍ରଥମେ କବି, ଗାଳ୍ପିକ ପରେ ନାଟ୍ୟକାର ଭାବରେ ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କର କର୍ମମୟ ଜୀବନ ଥିଲା ଜଣେ ବିଶିଷ୍ଟ ଆଇନଜୀବୀ । ତାଙ୍କର ନାଟ୍ୟ ପରିସର ବିସ୍ତାର ବଳୟ ମଧ୍ୟରେ ତାଙ୍କର ନାଟକଗୁଡ଼ିକ- ଅଭିମାନ (୧୯୪୨), ମ୍ୟାନେଜର (୧୯୪୩), ମୂଳିଆ



(୧୯୪୫), କବିସୂର୍ଯ୍ୟ (୧୯୪୬), ଘର ସଂସାର (୧୯୫୦), ମଉଡ଼ମଣି (୧୯୫୨), ସାଇପଡ଼ିଶା (୧୯୫୩), ନାଟକ ରୀତିମତ (୧୯୫୩), ଭାଇ ଭାଉଜ (୧୯୫୩), ଗୋଧୂଳି ଲଗ୍ନ / ଅସ୍ତରାଗ (୧୯୫୪), ସେବିକା (୧୯୫୫), ମମତା (୧୯୫୫), ଚାବୁକ (୧୯୫୭), ପୁଆଣି ଘର (୧୯୬୨), ପରପୁରୁଷ (୧୯୬୮), ନରୋତ୍ତମ ଦାଶ କହେ (୧୯୬୯), କିସ ପୁଣି ଦେଖା ନଯାଏ (୧୯୭୨), ମୃତ ଆସାମୀ (୧୯୮୧), ମନ୍ତ୍ରୀଯୁଗ (୧୯୯୧), ଅର୍ଥ ଅନର୍ଥ (୧୯୯୨), ତାଙ୍କର ଏକାଙ୍କିକା ପ୍ରତୀକ୍ଷା (୧୯୫୮), ପ୍ରବାସୀ (୧୯୫୯), ପଡ଼ୋଶୀ (୧୯୬୦), ଆବିଷ୍କାର (୧୯୭୦) ତାଙ୍କର ପାଣ୍ଡୁଲିପି ଅବିବାହିତା, କଳାପାହାଡ଼, ଘିଅମହୁର ସଂସାର, ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରେ। ରାମଚନ୍ଦ୍ର ମିଶ୍ରଙ୍କର ଏ ସାମାଜିକ ନାଟ୍ୟ ଦର୍ଶନ ଓଡ଼ିଶାର ବିଭିନ୍ନ ମଞ୍ଚମାନଙ୍କରେ ମଞ୍ଚସ୍ଥ ହୋଇ ଦର୍ଶକଙ୍କୁ ବିମୋହିତ କରିଛି। ସ୍ୱର୍ଗତ ରାମଚନ୍ଦ୍ର ମିଶ୍ର ନାଟ୍ୟକଳା ଜଗତର ଏକ ଦିଗବାରିଣୀ ନାଟ୍ୟକାର ଓଡ଼ିଶା ନାଟ୍ୟ ଆକାଶରେ ଧ୍ରୁବତାରା ପ୍ରତୀକର ଉଜ୍ଜ୍ୱଳ ପ୍ରତିଭା।

<u>ଅଧକ୍ଷ ରାମଚନ୍ଦ୍ର ମିଶ୍ର ଶୁକଳ ଗାଡ଼ିଆଙ୍କ ନାଟକ ବଳୟ :</u> ନାଟ୍ୟକାର ଅଧକ୍ଷ ରାମଚନ୍ଦ୍ର ମିଶ୍ର ଦଶପଲ୍ଲା ଗଡ଼ର ଆର୍ତ୍ତବନ୍ଧୁ ମିଶ୍ର ମାତା ଲାବଣ୍ୟଦେବୀଙ୍କ କୋଳରେ ୯ ଫେବୃୟାରୀ ୧୯୪୦ ମସିହାରେ ଜନ୍ମଗ୍ରହଣ କରିଥିଲେ। ନୟାଗଡ଼ ଶୁକଳଗାଡ଼ିଆ ଗ୍ରାମର ଭଗବାନ ମିଶ୍ର ଏବଂ ଜେମାମଣି ଦେବୀଙ୍କ ପୋଷ୍ୟପୁତ୍ର ଭାବେ ୧୯୪୭ ମସିହାର ଶୁକଳଗାଡ଼ିଆ ଗ୍ରାମରେ ରହି ଆସୁଛନ୍ତି। ରାମଚନ୍ଦ୍ର ମିଶ୍ର ସାଂପ୍ରତିକ ସମାଜରୁ ଜୀବନଧାରାର ଗତି ପ୍ରକୃତି ତା'ର ପରିଣତି ଉପରେ ନାଟକ ରଚନା କରି ଓଡ଼ିଆ ନାଟ୍ୟଧାରା ଉପରେ ସ୍ୱତନ୍ତ୍ର ସ୍ଥାନ ବଜାୟ ରଖିଛନ୍ତି। ତାଙ୍କର ନାଟକଗୁଡ଼ିକ ଶୋଣିତ ସ୍ୱାକ୍ଷର (୧୯୭୬), ଉପତ୍ୟକାର ହସ (୧୯୭୮), ଅନେକ ଛାଇ ଅସରନ୍ତି ଅନ୍ଧାର (୧୯୭୯), ଏକ ସୂର୍ଯ୍ୟ ଅନେକ ପୃଥିବୀ (୧୯୮୦), ମରୁମନ୍ଥନ (୧୯୮୦), ଏକାନ୍ତ ନିଜସ୍ୱ (୧୯୮୨), ବାଲ୍ମୀକି ଉବାଚ (୧୯୮୩), ନାୟିକା ନାଁ ଲୁସି (୧୯୮୪), ଏମିତି ଚାଲିଛି (୧୯୯୫), ମହିଷାସୁରର ଆତ୍ମହତ୍ୟା (୧୯୯୭), ବାପା (୨୦୦୬), ଅମୃତ ବଳୟ। ତାଙ୍କର କେତେକ ନାଟକ ସ୍ୱୟଂଶାସିତ ମହାବିଦ୍ୟାଳୟ ନୟାଗଡ଼ର ସ୍ଥାୟୀ ମଞ୍ଚରେ ମଞ୍ଚସ୍ଥ ହୋଇଛି କେତେକ ପଠାଣି ସାମନ୍ତ ଅଡ଼ିଟୋରିୟମରେ ମଞ୍ଚସ୍ଥ ହୋଇ ଦର୍ଶକଙ୍କର ଆଦର ଲାଭ କରିଛି। ନାଟ୍ୟକାର ରାମଚନ୍ଦ୍ର ମିଶ୍ର

ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ସମ୍ମାନୀତ ନୟାଗଡ଼ ଜିଲ୍ଲାର ଗୌରବ ।

ନାଟ୍ୟକାର ନୀଳକଣ୍ଠ ମିଶ୍ର : ନୀଳକଣ୍ଠ ମିଶ୍ର ୧୯୬୮ରେ ପୁରୀ ବିଶ୍ୱମ୍ଭର ବିଦ୍ୟାପୀଠରୁ ରଣପୁର ବି.ସି. ହାଇସ୍କୁଲକୁ ବଦଳିରେ ଆସିଲେ । ଏଠାକାର ଅଫିସର କ୍ଲବ ଦ୍ୱାରା ତାଙ୍କ ନାଟକଗୁଡ଼ିକ ରଣପୁର ମଞ୍ଚରେ ଅଭିନୀତ ହେଲା । ତାଙ୍କର ନାଟକଗୁଡ଼ିକ ଖଇକଉଡ଼ି, ଅମୃତ ଲଗ୍ନ, ଗୋଟିଏ ପଦ୍ମ ଅଜସ୍ର କୁହେଳି, ପାଷାଣ ଲୁହ ଝରେ, ନିଶାନ୍ତର ଅନ୍ଧକାର, ଶେଷ କେଉଁଠି, ଏବେ ବି ସେ ଅନ୍ଧକାର, ତାମ୍ରଫଳକ, ପଳାଶରୁ ବି ରଙ୍ଗ ଝରେ, ସେଇ ବଂଶୀ ସେଇ ସ୍ୱନ, ଭୁଆଁ, କାହାକୁ କରିବି ପର । ଏ ନାଟକ ମଧ୍ୟରୁ କେତେକ ନାଟକ ରଣପୁର, ଗୋପାଳପୁର ରଙ୍ଗମଞ୍ଚରେ ଅଭିନୀତ ହୋଇଛି କେତେକ ନୟାଗଡ଼ ସଂସ୍କୃତି ସଂସଦ ଦ୍ୱାରା ଅଭିନୀତ ହୋଇଛି ।

ଜନ ଜାଗରଣର ପୁରୁଷ ନାଟ୍ୟକାର ବିଶ୍ୱନାଥ ମହାପାତ୍ର : ଚାଷୀ ମୂଲିଆର ସାଥୀ କମ୍ୟୁନିଷ୍ଟ ଦଳର ତୁଙ୍ଗ ନେତା ବିଶ୍ୱନାଥ ମହାପାତ୍ର ମାଳିସାହି ଗ୍ରାମ ତଥା ମାଳିସାହି ପଞ୍ଚାୟତର ୨୫ବର୍ଷର ସରପଞ୍ଚ, ସ୍ୱାଧୀନତାସଂଗ୍ରାମୀ, ସମାଜସେବୀ ସ୍ୱର୍ଗତ କ୍ଷେତ୍ରବାସୀ ମହାପାତ୍ରଙ୍କର କନିଷ୍ଠ ପୁତ୍ର । ପିତାଙ୍କର ଉତ୍ତମ ଦାୟଦ । ସେ ଏକାଧାରରେ ଗାଳ୍ପିକ, ପ୍ରାବନ୍ଧିକ, ଔପନ୍ୟାସିକ, ନାଟ୍ୟକାର ଭାବେ ସୁପରିଚିତ । ତାଙ୍କର ଗଳ୍ପ ସଂକଳନ କଥାରେ କଥାରେ କେତେ କଥା, ଉପନ୍ୟାସ ଜାନକୀ, ଜାରା, ଲହୁରେ ଲାବଣ୍ୟବତୀ, ଅଥଚ ଆନନ୍ଦ, ଇତିବୃତ୍ତରେ ଅମର, ନାଟକ- ମାଟିର ମହାନାୟକ, ନିଆରା ନର୍କ, ମୌସୁମୀ ନିଖୋଜ, କୁଆଁରୀ କୋଠି, ନୀଳନାଗୁଣୀ, କନକତୃଷ୍ଣା, ମାୟାମନୀଷା, ଅନ୍ଧାରେ ଆସ । ତାଙ୍କର ନାଟକଗୁଡ଼ିକ ନୟାଗଡ଼ ସଂସ୍କୃତି ସଂସଦ ଦ୍ୱାରା ଅଭିନୀତ । ତାଙ୍କର ଲେଖା ପ୍ରସଙ୍ଗ ପାଠକ ଦର୍ଶକଙ୍କର ଆଦୃତି ଲାଭ କରିଛି ।

କବି ନାଟ୍ୟକାର ଅମୂଲ୍ୟ ଚନ୍ଦ୍ର ସ୍ୱାଇଁ : କବି ନାଟ୍ୟକାର ଅମୂଲ୍ୟ ଚନ୍ଦ୍ର ସ୍ୱାଇଁଙ୍କର ଜନ୍ମସ୍ଥାନ ରଣପୁର ଗୋପାଳପୁର ଗ୍ରାମରେ । ଅମୂଲ୍ୟ ଚନ୍ଦ୍ର ସ୍ୱାଇଁ ଜଣେ ଉଚ୍ଚକୋଟୀର ଅଭିନେତା ଓ ନାଟ୍ୟ ନିର୍ଦ୍ଦେଶକ । ତାଙ୍କ ପ୍ରଯୋଜନାରେ ଗୋପାଳପୁରରେ ଏକ ସ୍ଥାୟୀ ରଙ୍ଗମଞ୍ଚ ସ୍ଥାପିତ ହୋଇ ଅନେକ ନାଟକ ତାଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇଛି । ତାଙ୍କର ସ୍ୱରଚିତ ଡ୍ରାମାନାଟକ- ରଘୁଦିବାକର, ଜହ୍ନ ଆଲୁଅର ଛାଇ, ଧୃତରାଷ୍ଟ୍ର ଉବାଚ ପାଣ୍ଡୁଲିପି ରଣପୁର ଓ ନୟାଗଡ଼ ମଞ୍ଚରେ ମଞ୍ଚସ୍ଥ ହୋଇ ଉଚ୍ଚ ପ୍ରଶଂସିତ ।

ନାଟ୍ୟକାର ଗଦାଧର ନନ୍ଦ : ଗଦାଧର ନନ୍ଦଙ୍କର ବାସସ୍ଥାନ ଗୋଡିସାହି ପଞ୍ଚାୟତ ଅଧୀନସ୍ଥ କଣ୍ଟାବଣିଆ ଶାସନରେ । ସେ ମହାଶୟ ବ୍ୟଙ୍ଗକବି, ଗାଳ୍ପିକ ଓ ନାଟ୍ୟକାର ଭାବରେ ବେଶ୍ ପରିଚିତ । ତାଙ୍କର ନାଟକ ନିଜ ବିରୁଦ୍ଧରେ ବିଦ୍ରୋହ

ଏବଂ 'ସାଆନ୍ତେ ତୁମେ ତରିଗଲ' ରବୀନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ ହୋଇ ଦର୍ଶକଙ୍କୁ ମନୋରଞ୍ଜନ ଦେଇଛି ।

ନାଟ୍ୟାଭିମୁଖୀ ସ୍ମାରକ ବନ୍ଧୁ ଦ୍ୱୟ ଅଶୋକ ମଲ୍ଲ ଓ ପ୍ରଶାନ୍ତ କୁମାର ସାମନ୍ତରାୟ : ଅଶୋକ ମଲ୍ଲ କବି, ପ୍ରାବନ୍ଧିକ ଆଦର୍ଶ ଶିକ୍ଷକ ଭାବେ ସୁପରିଚିତ ଏବଂ ପ୍ରଶାନ୍ତ କୁମାର ସାମନ୍ତରାୟ ସ୍ୱର୍ଗତ ଗୋପୀନାଥ ସାମନ୍ତରାୟଙ୍କ ଜ୍ୟେଷ୍ଠପୁତ୍ର । ମଞ୍ଚର ପ୍ରଚ୍ଛଦରେ ରହି ଧୀର କୋମଳ ଭାବରେ ମଞ୍ଚରେ ଅଭିନୟ କରୁଥିବା ଚରିତ୍ରଙ୍କର ଶବ୍ଦ ପ୍ରଦାନ କରୁଥିଲେ ତା' ଦର୍ଶକଙ୍କ ପାଖକୁ କି ମାଇକ୍ରୋଫୋନ୍ ଟାଣି ନେଇପାରୁ ନଥିଲା । ନୟାଗଡ଼ରେ ଯେତେ ନାଟକ ହୁଏ ସେ ଦୁଇବନ୍ଧୁ ସ୍ମାରକ ଦାୟିତ୍ୱ ନେଇଥାନ୍ତି ।

ଏକକ ମଞ୍ଚକଳା

ଏକକ ନାଟ୍ୟକାର ସ୍ରଷ୍ଟା କଳାନିଧି ବାଞ୍ଛାନିଧି ଶତପଥି : କେବଳ ଜଣେ ମାତ୍ର ଅଭିନେତା ଏକ ସ୍ୱତନ୍ତ୍ର ନାଟ୍ୟ କାହାଣୀର ବିଭିନ୍ନ ଚରିତ୍ର ଭୂମିକାରେ ଅବତୀର୍ଣ୍ଣ ହୋଇ ମଞ୍ଚ ନାଟକ ଉନ୍ମୋଚନ ଗତିଶୀଳତା ଆତ୍ମପ୍ରକାଶ ମଞ୍ଚମାୟାରେ ଦର୍ଶକଙ୍କୁ ଧରିରଖି ନାଟକର ଯବନିକା ପକାଇବା ଏକକ ନାଟ୍ୟକଳା । ଏକକ ନାଟକ ପରିବେଷଣରେ ଗଙ୍ଗସାଗର ବାଞ୍ଛାନିଧି ଶତପଥି ଭାରତବର୍ଷରେ ବେଶ୍ ଜଣାଶୁଣା । ବାଞ୍ଛାନିଧି ଶତପଥି ଏକକ କଳାର ଏକମାତ୍ର ସ୍ରଷ୍ଟା । ତାଙ୍କର ଅଭିନୟ ନିଛକ ଅନୁକରଣ । ଏଣୁ ସେ 'ଭାରତୀଭୂଷଣ', 'କଳାନିଧି ଗଙ୍ଗସାଗର' ଉପାଧିରେ ଭୂଷିତ । ଏକକ କଳା କହିଲେ ବାଞ୍ଛାନିଧି ଶତପଥିଙ୍କୁ ବୁଝାଏ । ଗୋଟାଏ ଲୋକ ମଞ୍ଚରେ କେତେ ବେଶରେ କେତେ ରଙ୍ଗରେ ନାଟୁଆ ।



[illegible]

ବାଞ୍ଛାନିଧି ଶତପଥିଙ୍କର ସୁନ୍ଦର ବଳିଷ୍ଠ ଚେହେରା ଯେ କୌଣସି ଚରିତ୍ର ଅଭିନୟରେ ସାଲିସ୍ କରିଯାଏ । ନାରୀ ପୁରୁଷର ବଚନିକା ଓ ବିଭିନ୍ନ ପଶୁପକ୍ଷୀଙ୍କର ସ୍ୱର ଉଚ୍ଚାରଣରେ ସେ ସିଦ୍ଧସାଧକ । ସଂଗୀତ ବାଦ୍ୟଯନ୍ତ୍ର ବ୍ୟବହାର ନକରି ସେ ସଂଗୀତକାର । ଏକମୁଖୀ ଥିଏଟର ମଞ୍ଚରେ ଗୋଟିଏ ପରଦା ସାମ୍ନାରେ ପୂର୍ଣ୍ଣାଙ୍ଗ ନାଟକର ଭିନ୍ନ ଭିନ୍ନ ଦୃଶ୍ୟର ସ୍ଥାନ ସମୟ ଅବଗତ ପାଇଁ ପରଦା ଅନ୍ତରାଳେ କଣ୍ଠ, ଓଠ, ଆଙ୍ଗୁଳି ଚାଳନାରେ ସଂଗୀତ ସଂଯୋଜିତ ମଞ୍ଚମାୟା ଦର୍ଶକଙ୍କୁ ବଶକରି ଧରିରଖିବା ବାଞ୍ଛାନିଧି ଶତପଥିଙ୍କର ମଞ୍ଚ କୁହୁକ । ନିଜର ତୁରନ୍ତ ପ୍ରସ୍ତୁତି ମଞ୍ଚ

ବାନ୍ଧିବା, ବେଶ ହେବା, ବେଶ ବଦଳାଇବା, ତଦନୁସାରେ ସଂଗୀତ ଆଲୋକ ପରିଚାଳନା ଏକକ କଳାକାରର ଚେତନା ଚଞ୍ଚଳତା ଅଢ଼େଇ ଘଣ୍ଟାକାଳ ଦର୍ଶକଙ୍କୁ ମଞ୍ଚ ଆଡ଼କୁ ମଜାଇ ରଖିବା।

ତାଙ୍କ କୁହାରେ "ଅଭିନୟ କଷ୍ଟସାଧନ କଳା ରଜଘୋଷ ବିଦ୍ୟା। ଘରେ, ବାରିରେ, ରାସ୍ତାରେ, ତୋଟାରେ, ଠାକୁରାଣୀ ଅଗଣାରେ ମୋର ସାଧନା। ଏ ଶ୍ରମ ଅଭ୍ୟାସରେ ମୁଁ ରାଜଦରବାରରୁ, ମନ୍ତ୍ରୀମହଲରୁ, ଲୋକ ତୁଣ୍ଡରୁ ଉଚ୍ଚ ଉପାଧି ପ୍ରଶଂସା କମେଇଛି।"

ନାଟ୍ୟକଳା ଜଗତରେ ଖ୍ୟାତିସମ୍ପନ୍ନ ବ୍ୟକ୍ତିତ୍ୱ ବାଞ୍ଛାନିଧି ଶତପଥି ନୟାଗଡ଼ ଜିଲ୍ଲା ଓଡ଼ଗାଁ ନିକଟସ୍ଥ ରାବେରା ନରେନ୍ଦ୍ରପୁର ଶାସନର ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ୧୯୧୯ କାର୍ତ୍ତିକ ଶୁକ୍ଳ ଏକାଦଶୀ ମୁକୁନ୍ଦଦେବଙ୍କ ୫୨ ଅଙ୍କରେ। ତାଙ୍କର ପିତା ବାଇଧର ଶତପଥି ମା' ଅଗାଧେଇ। ଜନ୍ମମାଟି ନରେନ୍ଦ୍ରପୁର ଶାସନ ବାଞ୍ଛାନିଧିଙ୍କର ବିକଶିତ ଜୀବନ ମଉଳିବା ଯାଏ ସାଧନାଶ୍ରୟୀ କ୍ଷେତ୍ର ଥିଲା।

ବାଞ୍ଛାନିଧି ଶତପଥି ବାଉଁଶଗାଡ଼ିଆ ଶାସନରେ ମାମୁଁଘରେ ରହି ଶରଧାପୁର ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ଶିକ୍ଷାଲାଭ କରିଥିଲେ। ଅଧିକ ବିଦ୍ୟା ଅଧ୍ୟୟନର କୌଣସି ସୁବିଧା ସୁଯୋଗ ତାଙ୍କର ନଥିଲା। ପିତାଙ୍କ ସହିତ ଧନଞ୍ଜୟପୁର ଶାସନରେ ରହଣିକାଳରେ ଶାସନୀ ପଣ୍ଡିତ ପଠାଣି ହୋତା, ନୀଳ ସରସ୍ୱତୀ ମନ୍ତ୍ରସାଧନ କରିବା ପାଇଁ ବାଞ୍ଛାନିଧି ଶତପଥିଙ୍କୁ ପ୍ରେରଣା ଦେଇଥିଲେ। ବାଞ୍ଛାନିଧି ନିଜ ଗାଁ ମହାଦେବ ମଧୁକେଶଙ୍କ ପୀଠରେ ଏବଂ ଗର୍ଜନୀ ଗାଁ ଠାକୁରାଣୀ ପୀଠରେ ନୀଳ ସରସ୍ୱତୀ ମନ୍ତ୍ର ସିଦ୍ଧ କଲେ। ଫଳରେ ତାଙ୍କର ସ୍ମରଣଶକ୍ତି ଓ ବାକ୍‌ଶକ୍ତିର ଅଦ୍ଭୁତ ବିକାଶ ଘଟିଲା। କହିବା ଢଙ୍ଗ ତାଙ୍କର ବେଲୁଁବେଳ ରସଯୁକ୍ତ, ରଙ୍ଗମୟ, ଲାଳିତ୍ୟ କଳାପୂର୍ଣ୍ଣ ହୋଇଉଠିଲା। କହିବାର ନିରନ୍ତର ସ୍ରୋତ ଅଟକି ଯାଉନଥିଲା।

ପୁରାଣ ପଣ୍ଡାରୁ ବାଞ୍ଛାନିଧିଙ୍କର କଳାକାର ଜୀବନ ଆରମ୍ଭ। କିଶୋର ବୟସ ସୁଠାମ ଶରୀର ମଧୁରସ୍ୱର ପୁରାଣକୁ ବିଭିନ୍ନ ରାଗରାଗିଣୀରେ ଗାୟନ କରି ଶ୍ରୋତାଙ୍କୁ ମୁଗ୍ଧ କରିଦିଅନ୍ତି। ପୁରାଣ ପଢ଼ାରୁ ଯାହାଟା ରୋଜଗାର ସେଥିରେ ସେ ପରିବାର ଚଳାଇ ନିଅନ୍ତି। ପୁରାଣପଢ଼ାରୁ ତାଙ୍କର କଳାକାର ଜୀବନ ପାହାଚ ଚଢ଼ା କେବେ ସେ ପାହାଚ ଚଢ଼ାରେ ଥକିପଡ଼ି ନାହାନ୍ତି।

ନିଜ ଗ୍ରାମ ରାବେରା ଗୋପୀନାଥ ମିଶ୍ର ବାଞ୍ଛାନିଧିଙ୍କର ଗଛଗୁରୁ। ଗୋପୀନାଥ ମିଶ୍ରଙ୍କ କଥନ ଶୈଳୀରେ ସେ ମଜ୍ଜି ଯାଉଥିଲେ। ତାଙ୍କ କଥାରେ ଅଧିକ ରଙ୍ଗରସ ଦେଇ କହିବା ଶୈଳୀକୁ ରସାଳ କରିବାର ସାଧନା ଜାରି ରଖିଲେ। ଟୋକାବୟସ ସାଥୀ ମେଳରେ ନୂଆ ନୂଆ କଥା କହି ଚକିତ କରିଦେଉଥିଲେ। ତାଙ୍କର ଆଉ

ଜଣେ ଗୁରୁ ଶ୍ରୀହଟ ମହାପାତ୍ର ରଜାପୁଅ ରଜାଝିଅ କଥା, ସାଧବପୁଅ ସାଧବ ବୋହୂ କଥା ଲେଖିଦେଉଥିଲେ। ସେ ଗପଗୁଡ଼ିକୁ ବିଭିନ୍ନ ଭଙ୍ଗୀରେ ସ୍ଥାନ-କାଳ-ପାତ୍ରର ସମନ୍ୱୟ ରକ୍ଷାକରି ଭାବ ଅନୁଭାବକୁ ଏପରି ପ୍ରକାଶ କରୁଥିଲେ ଯେ ଶ୍ରୋତା ନୀରବରେ ଗପରେ ମଜୁଥିଲେ।

ସେ ସମୟରେ ସମାଜରେ ବାଲ୍ୟବିବାହ ପ୍ରଥା ଥିଲା। ବାଞ୍ଛାନିଧି ଶତପଥି ୧୪ବର୍ଷ ବୟସରେ ବାଉଁଶଗାଡ଼ିଆ ଶାସନର ଶ୍ରୀଯୁକ୍ତ ହରିହର ରଥଙ୍କ କନ୍ୟା ତିଳୋତ୍ତମାଙ୍କୁ ବିବାହ କରିଥିଲେ। ସେତେବେଳକୁ ତିଳୋତ୍ତମାଙ୍କର ବୟସ ୧୦ବର୍ଷ।

ଦାମ୍ପତ୍ୟ ଜୀବନର କୈଶୋର ପାଦରେ ଶରଣକୁଳ ନାରାୟଣ ଉଚ୍ଚବିଦ୍ୟାଳୟରେ ଛାତ୍ରମାନଙ୍କୁ ଗପ ଶୁଣାଇବା ପାଇଁ ପ୍ରଧାନଶିକ୍ଷକଙ୍କୁ ନିବେଦନ କଲେ। ନାରାୟଣ ଉଚ୍ଚବିଦ୍ୟାଳୟ ଥିଲା ଗଳ୍ପସାଗର ବାଞ୍ଛାନିଧି ଶତପଥିଙ୍କର ମନୋରଞ୍ଜନ କାର୍ଯ୍ୟକ୍ରମର ପ୍ରଥମ ସଭାମଞ୍ଚ। ସୁଲଳିତ ମଧୁର କଣ୍ଠରେ ଭଜନଟିଏ ଗାଇଲେ। ଛାତ୍ର ଶିକ୍ଷକବୃନ୍ଦ ନୀରବ। ସୁନ୍ଦର ସୁନ୍ଦର ଆଖ୍ୟାୟିକା ଦେଇ ଗପ ଶୁଣାଇବାର ପରିବେଶ ସୃଷ୍ଟି କରିବା ଭିତରେ ଗପ କହିଚାଲିଲେ। ଗଳ୍ପ କଥନ ରସରେ ଖୁସି ହୋଇଯାଉଥିଲେ ଛାତ୍ରଗଣ। ଶିକ୍ଷକମାନେ ପ୍ରଶଂସା କରିଥିଲେ-ଚମତ୍କାର ଗାଳ୍ପିକ। କିଶୋର କଞ୍ଚା ବୟସରେ ନାରାୟଣ ଉଚ୍ଚବିଦ୍ୟାଳୟ ଶିକ୍ଷକଙ୍କ ପ୍ରେରଣାରେ ବିଦ୍ୟାଳୟରୁ ବିଦ୍ୟାଳୟ, ଗ୍ରାମରୁ ଗ୍ରାମ ଭ୍ରମଣ କରି ଗଳ୍ପ କହିବା ତାଙ୍କର ଜୀବିକା କରିଦେଲେ। ଗାଁଗହଳରେ ସେ ପରିଚିତ 'ଗଳ୍ପସାଗର' ଭାବରେ।

ଦୁର୍ଦ୍ଦିନ କହିକରି ଆସେନି। ହଠାତ୍ ବାଇଧରଙ୍କ ପରିବାରରେ ଚଡ଼କ ପଡ଼ିଲା। ୧୯୪୫ ମସିହାରେ ରାବେରା ଗ୍ରାମରେ ହଇଜା ଲାଗିଲା। ସେତେବେଳକୁ ବାଞ୍ଛାନିଧିଙ୍କୁ ୨୬ବର୍ଷ ପତ୍ନୀ ତିଳୋତ୍ତମା କୋଳରେ ଛଅମାସର ଶିଶୁକନ୍ୟା। ହଇଜାରେ ବାଇଧର ଶତପଥିଙ୍କ ମୃତ୍ୟୁ ଘଟିଲା। ଆତଙ୍କରେ ରାବେରା ଗାଁ'ରେ ତାଟିକବାଟ ପଡ଼ିଗଲା। ଶବ ଉଠାଇବା ପାଇଁ କେହି ଆସିଲେନି। ଦୁଃଖକୁ ଛାତିରେ ଜାବୁଡ଼ି ଦୁର୍ଦ୍ଦଶସମ ପିତାଙ୍କ ଶବ କାନ୍ଧରେ ବହନ କରି ଶବ ସଂସ୍କାର କରି ଗୃହକୁ ଫେରି ଦେଖନ୍ତି ସ୍ତ୍ରୀ ତିଳୋତ୍ତମା ତାଙ୍କର ଶିଶୁକନ୍ୟା ମୃତ। କି କରିବେ ? ତାଙ୍କର ପଥର ଛାତିଟାରେ ସ୍ତ୍ରୀ କନ୍ୟାର ଶବ ଲଦି ପିତାଙ୍କ ଅହିରେ ପତ୍ନୀ ଓ କନ୍ୟାକୁ ପୋଡ଼ିଲେ। ହତବାକ୍ୟ ବାଞ୍ଛାନିଧି। ବାଡ଼ିବୁଢ଼ୀ ନିର୍ଦ୍ଦୟରେ ତାଙ୍କ ପରିବାରକୁ ସାଉଁଟି ନେଲା। ଭାଗ୍ୟର ଏ ନିଷ୍ଠୁର ପ୍ରହାର ପଥର ଦେହକୁ ଭାଙ୍ଗିଦେଇ ନଥିଲା। ଜୀବନର ଚଲାପଥରେ ଅଟକି ଯାଇନଥିଲେ।

ଗଳ୍ପ କଥନକୁ ରଙ୍ଗିନ କରାଇବାରେ ବାଞ୍ଛାନିଧି କାଉ, ବଣି, ଶୁଆଶାରୀ, କୋଇଲି, କୁକୁର, ବିଲେଇ, ନେଉଳ, ବ୍ୟାଘ୍ର, ସିଂହ ପଶୁପକ୍ଷୀଙ୍କର ଅବିକଳ ସ୍ୱର ଅନୁକରଣ କରିବା ଅଭ୍ୟାସ ସାଧନ କଲେ। ତାଙ୍କର ଗଳ୍ପ କଥନ ଓ ମଞ୍ଚ

ନାଟକରେ ୩୨ ସ୍ୱର ପ୍ରୟୋଗ କରିବା ତାଙ୍କର ଆକ୍ଷେପ ବଚନୀକାମାନ ତୁରନ୍ତ ବୟାନ କରି ହାସ୍ୟରସରେ ଶ୍ରୋତା ଦର୍ଶକଙ୍କୁ ବଶ କରିଦେଉଥିଲେ ।

ଦୁର୍ଭାଗ୍ୟ ସଦାବେଳେ ନଥାଏ । ଜୀବନ କେତେ ମୋଡ଼ରେ ମୋଡ଼ ଭାଙ୍ଗି ଚାଲିଥାଏ । ପୁନଶ୍ଚ ବାଞ୍ଛାନିଧି ଶତପଥି କୁରାଳ ନିବାସୀ ବାଇଧର ତ୍ରିପାଠୀଙ୍କ କନ୍ୟା ସତ୍ୟଭାମାଙ୍କୁ ଦ୍ୱିତୀୟ ବିବାହ କଲେ । ଭାଗ୍ୟଲକ୍ଷ୍ମୀ ସଦୟ ହେଲେ । ରୋଜଗାର ବଢ଼ାଇବା ପାଇଁ ସେ ତାଙ୍କର କଥନ କଳାକୁ ଅଧିକ ଶାଣିତ କରିବାକୁ ଲାଗିଲେ ।

ବରଦା ଗୁଣୀର ଗୁଣ ପ୍ରଶୀରର ବାଟ କଢ଼ାଇ ନିଅନ୍ତି । ଠିକ୍ ସେଇୟା ଘଟିଲା । ଉଚ୍ଚାଭିଳାସୀ ବାଞ୍ଛାନିଧି ଶତପଥିଙ୍କ ଜୀବନରେ ଯାହାକି ତାଙ୍କ କଥାକାର ଜୀବନର ମୋଡ଼ ବଦଳାଇ ଦେଇଥିଲା । ଏକଦା ସେ ନୟାଗଡ଼ ରାଜପରିବାରଙ୍କୁ ଗଳ୍ପ ଶୁଣାଇ ରାଜକୃପା ଲାଭ କରିବାକୁ ପ୍ରୟାସ କଲେ । ସୁନ୍ଦର, ସୁଦୀର୍ଘ ଶରୀରରେ ଶୁକ୍ଳବସ୍ତ୍ର ପରିଧାନ, କପାଳରେ ବାଗ୍‌ଦେବୀ ଚନ୍ଦନ ସିନ୍ଦୂର ଟିପା, ରାଜକୀୟ ଶୈଳୀରେ ମସ୍ତକର କେଶ ଛଟା, ବିଦୂଷକ ଠାଣିରେ ସେ ରାଜଦ୍ୱାରରେ ଉପବିଷ୍ଟ ହୋଇ ରାଜାଙ୍କୁ ଦର୍ଶନ କରିବାକୁ ଦରୱାନକୁ କହିଲେ । ନୟାଗଡ଼ର ଶେଷ ରାଜା କୃଷ୍ଣଚନ୍ଦ୍ର ସିଂହ ମାନଧାତା ବାଞ୍ଛାନିଧିଙ୍କୁ ସାକ୍ଷାତ କରିବାର ଅନୁମତି ଦେଲେ । ରାଜ ପରିବାରକୁ ବାଞ୍ଛାନିଧି ଶତପଥି ଗପ ଶୁଣାଇଲେ ।

ଆଗରେ ରାଜାଙ୍କ ରାଜପରିବାରବର୍ଗ । ଶତପଥି ଗପ କହିବା ଆରମ୍ଭ କଲେ । ସୁନ୍ଦର ମଧୁର ଭାଷାରେ ଉତ୍‌ଥାନ ପତନର ଲଳିତ ବଚନ ରଙ୍ଗରସରେ ମଜେଇ ରାଜପରିବାରଙ୍କୁ ମନ୍ତ୍ରମୁଗ୍ଧ କରି ବସାଇଥିଲେ । ମଝିରେ ମଝିରେ ବଚନିକା ବିଦୂଷକ ଠାଣିରେ ଉପସ୍ଥାପନା କରି ତଟସ୍ଥ କରୁଥିଲେ ତ ହସାଉଥିଲେ । ଯଥା...

"ନୟାଗଡ଼ ସଂସ୍କୃତି, ଖଣ୍ଡପଡ଼ା ଗଣିତ, ଘୁମୁସର ସାହିତ୍ୟ, ପାରଳାଖେମୁଣ୍ଡି ସଙ୍ଗୀତ, ଧରାକୋଟ ରାଜନୀତି, କଟକ ସଂସ୍କୃତି, ପଞ୍ଚଭୂତିର ଜଡ଼ା, ଘୁମୁସର ତୁହୁଡ଼ହାର ଖଡ଼ା, ବାଲେଶ୍ୱରିଆ ମଶା, ଖଲିକୋଟିଆ ଭାଷା, ଖୋରଧା ଓଡ଼ିଆ ଭାଷା, ବୌଦ୍ଧ ସୋନପୁରିଆ ମାଈଙ୍କର କାନମୂଳିଆ ଖୋସା, ସମ୍ବଲପୁରିଆ ମାଈ, ଯାଜପୁରିଆ ଭାଇ, ଭଦ୍ରକର ଗାଈ, ଆଠଗଡ଼ ଦହି, ଭୁବନେଶ୍ୱର ଖଇ, ଢେଙ୍କାନାଳର ଭେଣ୍ଡି, ଜଗତସିଂହପୁର ଫାଣ୍ଡି, ଗଞ୍ଜାମ ପାଣ୍ଡିଆ ସୁବୁଧି ଗୁଣ୍ଡି, ପୁରୀରେ ଠୁଳ କାର୍ତ୍ତିକ ମାସରେ ରାଣ୍ଡି ।"

କଥା ଛଳରେ ହାସ୍ୟ ଭଙ୍ଗୀରେ- "ଚବିଶି ଅଙ୍କରେ ଚଉଦ ତାରିଖରେ ଚିକିଟି ଗଡ଼ରେ ଚନ୍ଦିନୀ ରାତିରେ ଚଡୁଆରେ ଚୁଡ଼ା ଚିନି ଚହ୍ଲା ଚକଟି ଚାକଟି ଚାରିଗୁଣ୍ଡା କରି ଚବ୍ୟ କରୁ କରୁ ଚଟାଣ ଉପରେ ଚିରିକି ପକାଇ ଚାଲିଗଲେ ଚନ୍ଦ୍ରମଣି ଚମ୍ପତିରାୟ ଚେୟାରମ୍ୟାନ୍ ।"

କହିବାର କଥାଭଙ୍ଗୀ ବଦଳାଇ – "ଘରଭଙ୍ଗା ମନ, ଦୋକାନ ଭଙ୍ଗା ପାନ,

ହୋଟେଲ ଅନ୍ନ, ବେଶ୍ୟାର ପ୍ରେମ ଏଥିରେ ଥାଏକି ମର୍ମ କହିଲେ ଲାଗଇ ସର୍ମ।"

ଚତୁରତାର ଏ କହିବା ଭେଳିକି ବାଞ୍ଛାନିଧିଙ୍କର ନିଜସ୍ୱ ସାଧନା ଉପସ୍ଥାପନା। ଏହାକୁ କ୍ଷୀପ୍ରବେଗରେ ତୁରନ୍ତ ତୁରନ୍ତ ଏକାରାହାରେ ଡଗଡଗ କହିଯିବା ଏ ହେଉଛି ତାଙ୍କର କହିବା ଚାତୁରୀର ଯାଦୁକରୀ।

ରାଜା କୃଷ୍ଣଚନ୍ଦ୍ର ସିଂହ ମାନଧାତା ଗପ ଶୁଣି ଖୁସି ହୋଇଯାଇଥିଲେ। କହିଥିଲେ ମୋ ରାଜ୍ୟରେ ଏପରି ଗୁଣୀ ବିଦୂଷକ ଅଛନ୍ତି। ରାଜ ପ୍ରଶଂସା ପ୍ରାପ୍ତ ହେଲେ ବାଞ୍ଛାନିଧି ଶତପଥି। ସେଦିନ ରାଜା ତାଙ୍କୁ 'ଗଳ୍ପସାଗର' ଉପାଧିରେ ଭୂଷିତ କରିଥିଲେ। ରାଜା ତାଙ୍କୁ କର୍ଣ୍ଣକୁଣ୍ଡଳ ଓ ପାଟବସ୍ତ୍ର ପ୍ରଦାନ କଲେ।

ବାଞ୍ଛାନିଧି ଶତପଥି ଗଳ୍ପ କହିଲାବେଳେ ଗଳ୍ପରେ ଥିବା ବିଭିନ୍ନ ଚରିତ୍ରମାନଙ୍କର ତୁଣ୍ଡ କଥାକୁ ବଦଳାଇ ବଦଳାଇ କହିବାର ସ୍ୱରସାଧକ। ସେ ଅନୁଭବ କଲେ ଗଳ୍ପରେ ଥିବା ଚରିତ୍ରମାନଙ୍କୁ ଅଭିନୟ ଭଙ୍ଗୀରେ କହିଲାବେଳେ ଶ୍ରୋତା ଯଦି ଏତେ ପ୍ରିୟ ଏହାକୁ ମଞ୍ଚ ଉପରେ ଅଭିନୟ କରି ପ୍ରକାଶ କଲେ ଦର୍ଶକ କାହିଁକି ପ୍ରିୟ ନହେବେ.. ଶ୍ରୋତାଙ୍କୁ ଦର୍ଶକରେ ବଦଳାଇଦେବା ପାଇଁ ତାଙ୍କର ମନ ମନ୍ଥନ। କାହାଣୀକୁ ନାଟକ ଆକାରରେ ଚରିତ୍ରମାନଙ୍କର ଅଭିନୟ ନାଟକୀୟ ଛଟାରେ ଦର୍ଶକଙ୍କର ମନ ମୋହିବା କଳା କୌଶଳ ସାଧନାରେ ରତ ରହିଲେ। ବାଞ୍ଛାନିଧି ନିଜ କଳ୍ପନାର ମଞ୍ଚ ପ୍ରସ୍ତୁତି କଲେ। ଗୋଟିଏ କଳାକାର କେତେ ଦୈର୍ଘ୍ୟ ସ୍ଥାନ ଉପରେ ବିଚରଣ କରି ନିଜ ଅଭିନୟକୁ ଦର୍ଶକ ପାଖରେ ପହଞ୍ଚାଇ ନାଟକର ସଫଳତା ଆଣିପାରିବ କେବଳ ଜଣେ ଅଭିନେତା ନାଟକର ଅନ୍ୟ ଚରିତ୍ରମାନଙ୍କ ଅଭିନୟ ସଂଯୋଗ ସ୍ଥାପନ କରିବନା। ଏହାକୁ ବାହାରେ ମଞ୍ଚସ୍ଥ କରିବା ପୂର୍ବରୁ ନିଜ ଗୃହର କ୍ଷୁଦ୍ର ସରହଦ ଉପରେ ପାଦଚାଳନାର ମାପରେ ନାଟୁଆ ଭାବ ଅଭ୍ୟାସ ସାଧନ କଲେ। ଏ ନୂତନ ମଞ୍ଚ କଳ୍ପନାର ପୂର୍ଣ୍ଣତା ଅନୁଭବ ପରେ ବାଞ୍ଛାନିଧି ଶତପଥି ଅନୁରୂପ ମଞ୍ଚ ଗ୍ରାମମାନଙ୍କରେ ଝୁଲାଇ ପୂର୍ଣ୍ଣାଙ୍ଗ ନାଟକ ମଞ୍ଚସ୍ଥ କରିବାରେ ସଫଳତା ପାଇଥିଲେ।

ବାଞ୍ଛାନିଧି ଶତପଥି ଏକକ ନାଟକ ମଞ୍ଚର ନିର୍ମାଣକାରୀ। ତାଙ୍କର କଳ୍ପିତ ପରଦା ମଞ୍ଚ ଉପରେ ପୂର୍ଣ୍ଣାଙ୍ଗ ନାଟକ ମଞ୍ଚସ୍ଥ କରି ଦର୍ଶକଙ୍କ ଦ୍ୱାରା ପ୍ରଶଂସିତ ହେଲେ। ସବୁଠାରୁ ଚମତ୍କାର ସେ ମଞ୍ଚ ପରଦା ଏବଂ ମଞ୍ଚ ସରଞ୍ଜାମ ଗଣ୍ଠିଲିରେ ବାନ୍ଧି କାଖରେ ଯାକି ଗାଁ ଗାଁ'ରେ ନାଟକ ପରିବେଷଣ କଲେ। ଏକକ କଳାର କାହାଣୀ କ୍ଷୁଦ୍ର ହେଲେ ହେଁ କାହାଣୀର ପୂର୍ଣ୍ଣତା ରକ୍ଷାକରେ। ତାଙ୍କର ସୁଚିନ୍ତିତ ନାଟକଗୁଡ଼ିକ ହେଲା- ବିଲ୍ୱମଙ୍ଗଳ, ଜୟଦେବ, ଭକ୍ତର ଭଗବାନ, ଦାରିଦ୍ର୍ୟ ଭଞ୍ଜନ। ଏ ନାଟକଗୁଡ଼ିକ ଗାଁଗହଳରେ ବିଦ୍ୟାଳୟମାନଙ୍କରେ ପୁନଃପୁନ ମଞ୍ଚସ୍ଥ ହୋଇଥିବାର ଜଣାଯାଏ। ବାଞ୍ଛାନିଧି ଶତପଥି ଯେଉଁ ଗାଁ'କୁ ଯାଉଥିଲେ ସେ

ଗାଁ'ଲୋକେ କହୁଥିଲେ ଆଜି ଗନ୍ଧସାଗରଙ୍କ ନାଟକ ଦେଖିବା।

ନାଟକ ପରିବେଷଣରେ ବାଞ୍ଛାନିଧି ଏକା ନିଜେ ନିଜର ସହକର୍ମୀ ବନ୍ଧୁ। ନିଜେ ମଞ୍ଚ ବାନ୍ଧନ୍ତି ମଞ୍ଚ ପରିଚାଳନା କରନ୍ତି, ଗୋଟାଏ ପରେ ଗୋଟାଏ ବେଶ ହୁଅନ୍ତି। ନାଟକ ସହ ସଂପର୍କ ଗୀତ ସଂଗୀତ କରନ୍ତି। ଏକକ କଳାର ମଞ୍ଚର ଉଚ୍ଚତା ୧୦ଫୁଟ ଓସାର ୧୨ଫୁଟ ମଞ୍ଚର ଗର୍ଭ ୪ଫୁଟ। ୪ଫୁଟ ପଛରେ ଧଳାପରଦା, ମଞ୍ଚର ଫ୍ରଣ୍ଟରେ ସ୍କ୍ରିନ୍ ନଥାଏ। ମଞ୍ଚ ଉପର ଭାଗରେ ୧୨ଫୁଟ ଲମ୍ବର ଝାଲର, ତଳେ ୧୨ଫୁଟ ଲମ୍ବର ଝାଲର, ମଞ୍ଚର ଡାହାଣ ପଟରେ ଉଇନ୍ସ, ବାମପଟରେ ଉଇନ୍ସ। ମଞ୍ଚର ଡାହାଣ ଉଇନ୍ସ ଦେଇ ଚରିତ୍ରର ଯିବାଆସିବା ବାମପାର୍ଶ୍ୱ ଉଇନ୍ସ ଦେଇ ଭିତରକୁ ଯିବାଆସିବା ହୁଏ। ମୁଖ୍ୟ ପରଦାର ପଛପାର୍ଶ୍ୱରେ ନାଟୁଆର ବେଶସଜ୍ଜା ଯାଗା ଅର୍ଥାତ୍ ପ୍ରେକ୍ଷାଗୃହ। ଏହି ପ୍ରେକ୍ଷାଗୃହ ଅନ୍ତରାଳରେ ନାଟକ ସଂପର୍କୀତ ଚରିତ୍ରର ବେଶବଦଳା ଏବଂ ନାଟକର ପ୍ରାଣ ସଂଗୀତ ସଂଯୋଜନା କରନ୍ତି।

ବାଞ୍ଛାନିଧି ଶତପଥି ନାଟକ ଆରମ୍ଭ ପୂର୍ବରୁ ପଲ୍ଲୀ ଭଜନ ଗୀତଟିଏ ଗାଆନ୍ତି। ତା'ପରେ ନିଜର ସାଧାରଣ ବେଶରେ ମଞ୍ଚ ଉପରେ ଦଣ୍ଡାୟମାନ ହୋଇ ଦର୍ଶକଙ୍କୁ ନିବେଦନ କରନ୍ତି, ମୋର ସୌଭାଗ୍ୟ ଆପଣଙ୍କ ଗାଁ'ରେ ଅଭିନୟ କରିବି, ଆପଣମାନଙ୍କ ପାଇଁ ଆଜିର ମଞ୍ଚ ନାଟକ ବିଲ୍ୱମଙ୍ଗଳ। ହଠାତ୍ ମଞ୍ଚରୁ ଅପସରିଯାଇ ତତ୍କ୍ଷଣାତ୍ ଅନ୍ତରାଳରୁ ସଂଗୀତ ଗୁଞ୍ଜରିତ ହୁଏ। ମଞ୍ଚରେ ପ୍ରବେଶ ବିଲ୍ୱମଙ୍ଗଳ ଧୋତି ବେଢ଼ାଣ ପିନ୍ଧା ବେଶରେ ହସ୍ତରେ ମୂଲ୍ୟବାନ ଅଳଙ୍କାର ନେଇ ଚିନ୍ତାମଣି ବେଶ୍ୟା ଦ୍ୱାରରେ। ମୁଖ୍ୟ ମଞ୍ଚରେ ସେ ବିଲ୍ୱମଙ୍ଗଳ ବାମ ଉନ୍ସ ଭିତରେ ସେ ଚିନ୍ତାମଣି, ଉଭୟଙ୍କ ମଧ୍ୟରେ ପ୍ରୀତି ଆଳାପର ରତି ପ୍ରମୋଦ। କଳାକାରର ଅବିକଳ ପରିବେଷଣ ସେ ଏକା ବିଲ୍ୱମଙ୍ଗଳ ଚରିତ୍ରରେ ଏବଂ ଚିନ୍ତାମଣି ଚରିତ୍ରରେ।

ବିଲ୍ୱମଙ୍ଗଳ ନାଟକର ଚରିତ୍ରମାନେ ବିଲ୍ୱମଙ୍ଗଳ, ତାଙ୍କ ସ୍ତ୍ରୀ, କଲ୍ୟାଣୀ, ଘରର ହଳିଆ ନଟିଆ, ଚିନ୍ତାମଣି। ନାଟକର ପ୍ରବେଶ, ଉତ୍କଣ୍ଠା, ଦ୍ୱନ୍ଦ୍ୱ ଶୀର୍ଷ ଆରୋହଣରେ ଚରିତ୍ରମାନେ ବେଶ୍ ଗତିଶୀଳ କ୍ରିୟାଶୀଳ। ନାଟକର ଏସବୁ ଚରିତ୍ରରେ ବାଞ୍ଛାନିଧି ଶତପଥି ପୁରୁଷ ଭୂମିକାରେ ନାରୀ ଭୂମିକାରେ କାହାଣୀକୁ ଗତିଶୀଳ କରାଇ ମଞ୍ଚର ଯବନିକା ପକାନ୍ତି। ନାଟ୍ୟଧାରାରୁ କେବେ ଗତିଚ୍ୟୁତ ହୁଅନ୍ତି ନାହିଁ। ମୁଖ୍ୟ ନାଟକକୁ ଅଧିକ ମନୋରଞ୍ଜନ କରିବା ପାଇଁ ବାଞ୍ଛାନିଧି ଶତପଥି କେତୋଟି ପାର୍ଶ୍ୱ ଦୃଶ୍ୟ ନାଟକ ସହିତ ଯୋଡ଼ିଥାନ୍ତି। ଯଥା- ଅଖା ବାୟାଣୀ, ଶବରର ବାଘ ଶିକାର। ସବୁଠାରୁ ଚମକପ୍ରଦ ଦୃଶ୍ୟ ପରଦା ଅନ୍ତରାଳରେ ନେଉଳ ମାର୍ଜ୍ୟାର କଳହ। ଅବିକଳ ନେଉଳ ବିରାଡ଼ିର ଶବ୍ଦ। ସତେ ଯେପରି ନେଉଳ ବିରାଡ଼ି ଦୁଇଟା କଳହ କରୁଛନ୍ତି। ନାଟକର ମଧ୍ୟାନ୍ତରରେ ଗନ୍ଧସାଗର ବାଞ୍ଛାନିଧି ଶତପଥି ଚୌକିରେ

ବସି ଗଳ୍ପ କୁହନ୍ତି। ତାଙ୍କର କଥନଶୈଳୀ ପ୍ରବାହ ଶବ୍ଦଚାତୁରୀ, ଆଖିର ଚୁମ୍ବକ, ଓଠର କମ୍ପନ ଶ୍ରୋତାଙ୍କୁ ବିବଶ କରିଦିଏ।

ବାଞ୍ଛାନିଧି ଶତପଥି ସ୍ଥାନକାଳ ପାତ୍ରର ସମନ୍ୱୟ ରଖି ନାଟକ ପରିଚାଳନା କରନ୍ତି। ଚରିତ୍ରଟିଏ ରେଳ ଷ୍ଟେସନରେ ଅପେକ୍ଷା କରିଛି। ରେଳ ଷ୍ଟେସନ ପରିବେଶକୁ ସୁନ୍ଦର ଭାବରେ ମଞ୍ଚ ସହିତ ସଂଯୋଗ କରିଥାନ୍ତି। ଗତିଶୀଳ ଟ୍ରେନ୍‌ର ଶବ୍ଦ ଚା' ବିକାଳିର ଡାକରା ଶବ୍ଦ, ପାମ୍ପଡ଼ ବିକାଳିର ଶବ୍ଦ ଅବିକଳ ତାଙ୍କ କଣ୍ଠନିସୃତ ଶବ୍ଦ। ମଞ୍ଚରେ ପଶୁପକ୍ଷୀଙ୍କର ଶବ୍ଦ ଆବଶ୍ୟକସ୍ଥଳେ ପ୍ରୟୋଗ। ବଡ଼ଦାଣ୍ଡରେ ଅନ୍ଧ ଭିକାରୀର ଦୃଶ୍ୟ, କୁଷ୍ଠରୋଗୀର ଅଭିନୟ, ଶବର ବାଘ ଲଢ଼େଇର ଦୃଶ୍ୟରେ ଦର୍ଶକ କଳାକାରଙ୍କୁ ବାହାବାହା କରନ୍ତି।

ବାଞ୍ଛାନିଧି ଶତପଥିଙ୍କ ମଞ୍ଚସ୍ଥ ନାଟକଟିରେ ଯେତେ ଚରିତ୍ର ରହିଥାନ୍ତି ସେ ନିଜେ କେବଳ ନାୟକ ଚରିତ୍ରରେ ଦର୍ଶକଙ୍କର ସାମ୍ନା କରନ୍ତି। ନାଟକରେ ଥିବା ଅନ୍ୟ ଚରିତ୍ରମାନଙ୍କ ଅଭିନୟ ଉଇଙ୍ଗ୍‌ସି ପାଖରେ ପରଦାର ଅନ୍ତରାଳେ ପରିବେଷଣ ହେଉଥିଲେ ହେଁ ସାମ୍ନାରେ ପରିପ୍ରକାଶ ହେଲାପରି ଦର୍ଶକ ଅନୁଭବ କରେ ସେ ନାୟିକା ହେଉ ଅବା ପାର୍ଶ୍ୱନାରୀ ଚରିତ୍ର ହେଉ, ଚାକର ହେଉ ବା ଅନ୍ୟ ପୁରୁଷ ଚରିତ୍ର ହେଉ ବିଲ୍ୱମଙ୍ଗଳ ନାଟକରେ ନିଜର ପତ୍ନୀ କଲ୍ୟାଣୀ କି ଗଣିକା ଚିନ୍ତାମଣି ହେଉ, ଜୟଦେବ ନାଟକରେ ଜୟଦେବ ଓ ପତ୍ନୀ ପଦ୍ମାବତୀ, ସୁଦାମା ନାଟକରେ ସୁଦାମା ପତ୍ନୀ ସୁମତି ସହିତ ପତିପତ୍ନୀର ଆଳାପ ଦର୍ଶକ ବେଶ୍ ଅନୁଭବ କରେ। ନାଟକ ସହିତ ସାମିଲ କରୁଥିବା ଝଡ଼ବର୍ଷାର ରାତି, ଦ୍ୱାରକାରେ କୃଷ୍ଣଙ୍କୁ ଭେଟିବାର ପଥ, ସଂଗୀତ ବଂଶୀ ସ୍ୱନ ଗୀତଗୋବିନ୍ଦ ଲେଖିଲାବେଳେ ବଂଶୀ ସ୍ୱନ ନାଟକର ସାଙ୍ଗିତିକତା ରଖିବାରେ ତାଙ୍କର ସୁନ୍ଦର ରୂପାୟନ। ନାଟୁଆର ରଙ୍ଗରସ ପରିବେଷଣରେ ତାଜୁବ ଦର୍ଶକ।

ଏକକ କଳାକୁ ଅଧିକ ରଙ୍ଗରସ ଦେବାରେ ତତ୍‌କାଳ ଥିଏଟର ଦ୍ୱାରା ବିଶେଷ ପ୍ରଭାବିତ। ସେ ଗଣକବି ବୈଷ୍ଣବ ପାଣିଙ୍କ ନାଟକ ଓଡ଼ଗାଁରେ, ମୋହନ ଗୋସ୍ୱାମୀଙ୍କ ନାଟକ ସୋରଡ଼ାରେ, ଗୋବିନ୍ଦ ସୁରଦେଓଙ୍କ ନାଟକ, ଶରଣକୁଳରେ କାଳୀଚରଣ ପଟ୍ଟନାୟକଙ୍କ ନାଟକ, କଟକ ବାଙ୍କାବଜାରରେ ଓ ସୋମନାଥଙ୍କ ଦ୍ୱାରା ପ୍ରତିଷ୍ଠିତ ଅନ୍ନପୂର୍ଣ୍ଣା ବି ଗ୍ରୁପ୍‌ର ମଞ୍ଚ ଅଭିନୟ ଦ୍ୱାରା ପ୍ରଭାବିତ ହୋଇଥିଲେ। କଟକରେ କବିରାଜ ଲକ୍ଷ୍ମୀନାରାୟଣଙ୍କ ସହାୟତାରେ ଦଶହରା ଉପଲକ୍ଷେ ବିନୋଦ ବିହାରୀ ପଡ଼ିଆରେ ନିଜ ନିର୍ମିତ ମଞ୍ଚରେ ଏକକ ନାଟକ ମଞ୍ଚସ୍ଥ କରାଇ ଦର୍ଶକଙ୍କର ପ୍ରିୟଭାଜନ ହୋଇଥିଲେ। କଳାକାରର ସାର୍ଥକ ଜୀବନ ଦର୍ଶକଙ୍କ ପ୍ରଶଂସାରେ। ତାଙ୍କର ଏକକ ନାଟକର ଚୁମ୍ବକୀୟ ଆକର୍ଷଣରେ ଦର୍ଶକ ବାନ୍ଧିହୋଇ ରହିଥିଲେ।

ବାଞ୍ଛାନିଧି ଶତପଥି ଓଡ଼ିଶା, ଓଡ଼ିଶା ବାହାର ରାଜ୍ୟରେ ଏକକ କଳା ପରିବେଷଣ କରି ପ୍ରଶଂସା, ପ୍ରଶଂସାପତ୍ର, ପଦକ ପାଇ ସମ୍ମାନୀତ। ପୁରୀ ଗଜପତି ରାମଚନ୍ଦ୍ର

ଦେବ ତାଙ୍କୁ 'ଭାରତୀ ଭୂଷଣ' ଉପାଧିରେ ଭୂଷିତ କରି ଦିବ୍ୟ ପାଟବସ୍ତ୍ର ପ୍ରଦାନ କରି ଏକଶତ ମୁଦ୍ରା ପ୍ରଦାନ କରିଥିଲେ। ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକ, ନନ୍ଦିନୀ ଶତପଥି, ହରେକୃଷ୍ଣ ମହତାବ, ସଦାଶିବ ତ୍ରିପାଠୀ, ରାଜେନ୍ଦ୍ର ନାରାୟଣ ସିଂହଦେଓ ପ୍ରଶଂସାପତ୍ର ସହ ସମ୍ମାନୀତ କରିଥିଲେ। ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶ ତାଙ୍କୁ କଳାନିଧି ଭୂଷଣରେ ଭୂଷିତ କରି ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲେ। ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଏନ୍.ଟି. ରାମରାଓ ତାଙ୍କୁ ପ୍ରଶଂସାପତ୍ର ସହ ଅର୍ଥ ପ୍ରଦାନ କରିଥିଲେ। ବହୁ ସମ୍ମାନର ଅଧିକାରୀ ଏକକ କଳା ଅଭିନୟୀ ବାଞ୍ଛାନିଧି ଶତପଥି କଳା ଜଗତରେ ଜଣେ ଉଜ୍ଜ୍ୱଳତମ ତାରକା।

ବାଞ୍ଛାନିଧି ଶତପଥି ଏକକ କଳାକାର ଭାବେ ଯେ ଖ୍ୟାତନାମା କଳାକାର ସେଇଠି ଅଟକି ହୁଏନି। ସେ ଚଳଚ୍ଚିତ୍ରମାନଙ୍କରେ ଅଭିନୟ କରି ଖ୍ୟାତି ଅର୍ଜନ କରିଛନ୍ତି। ମହାଲକ୍ଷ୍ମୀ ପୂଜା ଶ୍ରୀ ଲୋକନାଥ, ନବଜନ୍ମ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦସ୍ୟୁ ରତ୍ନାକର, ଚଳଚ୍ଚିତ୍ରର ଜଣେ ସଫଳ କଳାକାର। ୧୯୮୧ ମସିହାରେ ଦୂରଦର୍ଶନ ପରଦାରେ ଆସି ସେ ଦର୍ଶକଙ୍କର ପ୍ରିୟ କଳାକାର।

ବାଞ୍ଛାନିଧି ଶତପଥି ଗ୍ରାମ ରାବେରା ନରେନ୍ଦ୍ରପୁର ନୟାଗଡ଼ ଜିଲ୍ଲାର ଏକକ କଳାର ସ୍ରଷ୍ଟା ଓ ଏକକ କଳାନାଟକର ମଞ୍ଚ ପରିଚାଳନା ତାଙ୍କର ନିଜସ୍ୱ। ସେ ନିଜେ ଏକକ ନାଟକର ରଚୟିତା, ଅଭିନେତା, ସ୍ମାରକ, ନିର୍ଦ୍ଦେଶକ, ଉପଦେଷ୍ଟା, ସଂଗଠକ, ପ୍ରଯୋଜକ, ମଞ୍ଚର ନୂତନ କଳାକୌଶଳ, ପରୀକ୍ଷା ପ୍ରୟୋଗ ଥିଲା ତାଙ୍କ ଅସାଧାରଣ ପ୍ରତିଭା। ତାଙ୍କଦ୍ୱାରା ପ୍ରଯୋଜିତ ଏକକ ନାଟକ ମଞ୍ଚ ଓଡ଼ିଶାର ସ୍ୱତନ୍ତ୍ର ନାଟ୍ୟକଳା। ତାଙ୍କ ପରେ ଏକକ ନାଟକ ହେଉଥିଲେ ହେଁ ତାହା ସେଭଳି ହୁଏନା।

ବ୍ରହ୍ମପୁର ଟାଉନ୍ କ୍ଲବ୍ ବାଞ୍ଛାନିଧିଙ୍କର ଶେଷ ରଙ୍ଗମଞ୍ଚ। ସେତେବେଳକୁ ତାଙ୍କୁ ୬୫ବର୍ଷ। ଦୀର୍ଘ ୪୦ବର୍ଷ ରାଜ୍ୟର ଗାଁ'ରେ ଗାଁ'ରେ ରାଜ୍ୟ ବାହାରେ ଏକକ ଅଭିନୟ ପ୍ରଦର୍ଶନ କରି ଗନ୍ଧସାଗର ଭାରତୀ ଭୂଷଣ, କଳାନିଧି ଉପାଧିରେ ଭୂଷିତ ହୋଇ ସେ ପୁଣ୍ୟ ଜନ୍ମମାଟି ରାବେରା ଶାସନ ଗ୍ରାମରେ ଶେଷ ବୟସ କଟାଇଛନ୍ତି। ସେ କୁହନ୍ତି- "ଏ ନାଟକ ଭାରତରେ କେଉଁଠାରେ ଥାଏ ବୋଲି ଖୋଜିଛି ପାଇନି।" ଯେଉଁ ଘରେ ତାଙ୍କର ଏନ୍ତୁଡ଼ି ଲାଗିଥିଲା ସେହି ଘରେ ତାଙ୍କର ଜୀବନ ଦୀପ ଲିଭିଥିଲା। ହେଲେ ସେ ଏ ମରଭୂଇଁରେ ନାହାନ୍ତି ସତ ହେଲେ ସେ ଅଭୁଲା ମହାନ୍ କଳାକାର ଇତିହାସ ଅମ୍ଳାନ ଅକ୍ଷରରେ ଜିଇଁଥାଉ। ସେ କେବଳ ନୟାଗଡ଼ ଜିଲ୍ଲାର ଗର୍ବ ନୁହନ୍ତି ଓଡ଼ିଶାର ଗୌରବ ଉଜ୍ଜ୍ୱଳ ମଣିଟିଏ।

(ପ୍ରତ୍ୟକ୍ଷ ବାଞ୍ଛାନିଧି ଶତପଥିଙ୍କ ସହ ଆଳାପରୁ ସଂଗୃହୀତ। ସମାବେଶରେ ପ୍ରକାଶିତ ଏହା ଏକ ମାର୍ଜିତ ରୂପାୟନ।)



## ଅଷ୍ଟମ ଅଧ୍ୟାୟ

# କୁସୁମୀ ନଦୀକୂଳ ସମତଳ ଓ ତାର ପ୍ରତିଭୂ

ନୟାଗଡ଼ ଜିଲ୍ଲାର ଦକ୍ଷିଣ ପାର୍ଶ୍ୱରୁ ପୂର୍ବକୁ ସୁଦୀର୍ଘ ସମତଳଭୂମି । ଏହି ସମତଳରୁ କୁସୁମୀ ନଦୀ ପ୍ରବାହ ଆରମ୍ଭ ।

ଗୁମିମାଳର ଦକ୍ଷିଣ ପାଦଦେଶରୁ ହନୁମନ୍ତିଆ ପାହାଡ଼ର ପୂର୍ବକୁ ଗୟଳସିଂହ ପାହାଡ଼ ଓଡ଼ଗାଁର ପଶ୍ଚିମ ଶୂଳିଆପର୍ବତ କ୍ରୋଡର ମଧ୍ୟସ୍ଥ ପୁରାତନ ରଳବଗଡ଼ର ଏ ଅଞ୍ଚଳ ଏକ ବିକ୍ଷିପ୍ତ ସମତଳଭୂମି। ଏ ସମତଳ ଭୂମିରେ ବାହାଡ଼ାଝୋଲା, ସୁନାମୁହିଁ, ମଦନଗାଡ଼ିଆ, କୁରାଳଗଡ଼, ଦେଓଗାଁ, କୋମଣ୍ଡ, ରଙ୍ଗଣୀପାଟଣା ଗ୍ରାମାଞ୍ଚଳର ଉର୍ବରା ସମତଳଭୂମି। କୁରାଳ ପାଟରେ ଏହାର ପଶ୍ଚିମାଞ୍ଚଳ ଛୋଟ ଛୋଟ ନାଳ ଏକତ୍ର ହୋଇ କୁସୁମୀ ନଦୀଧାରର ଉତ୍ପତ୍ତି। ଏ ସମତଳରୁ ଧାନ, ମୁଗ, ବିରି, ସୋରିଷ ବିଭିନ୍ନ ପରିବା ଅମଳ ହୁଏ। ରଙ୍ଗଣୀ ପାଟଣା, ମଣାବାରୀ, କୈବଲ୍ୟପୁର ଋଷୀମାନେ କୋବି, ଟମାଟୋ, ବାଇଗଣ, ବିଲାତିଆଳୁ, ଦେଶୀଆଳୁ, କଦଳୀ, ପ୍ରଚୁର ପରିମାଣରେ ରାଜଧାନୀ ବଜାରକୁ ପଠାନ୍ତି।

**କୁରାଳ :** ଗୁପ୍ତ ସାମ୍ରାଜ୍ୟର ପରାକ୍ରମୀ ସମ୍ରାଟ ସମୁଦ୍ରଗୁପ୍ତ ଦକ୍ଷିଣପଥ ଅଭିଯାନ କାଳରେ କୌରାଳକ ମଣ୍ଟରାଜାକୁ ପରାସ୍ତ କରିଥିଲେ। ଏହା ତାଙ୍କର ଆଲାହାବାଦ ସ୍ତମ୍ଭଲେଖରୁ ପ୍ରକାଶ ପାଏ। ପରବର୍ତ୍ତୀ ସମୟରେ ଏହା ଘୁମୁସର ରାଜାଙ୍କ ଅଧୀନସ୍ଥ ହେଲା। ସତରଶହ ଖ୍ରୀଷ୍ଟାବ୍ଦ ଶେଷ ସମୟରେ ନୟାଗଡ଼ ରାଜା ରାମଚନ୍ଦ୍ର ସିଂହ ମାନଧାତା କୁରାଳ ଗଡ଼ ଜୟକରି ଘୁମୁସର ରାଜାଙ୍କଠାରୁ ଛଡ଼ାଇ ଆଣି ନୟାଗଡ଼ ରାଜ୍ୟରେ ମିଶାଇଥିଲେ। ସମୁଦ୍ରଗୁପ୍ତଙ୍କ ବିଜୟ ରାଜ୍ୟ କୌରାଳକ ନୟାଗଡ଼ ରାଜ୍ୟର କୁରାଳ। ବର୍ତ୍ତମାନ ନୟାଗଡ଼ ଜିଲ୍ଲାର ସବୁଠାରୁ ଜନବହୁଳ ବଡ଼ଗାଁ ହେଲା କୁରାଳ। ପୁରୁଣା ନାମରେ ପାଟଣୀ ସାହି, ଗଡ଼ସାହି ଏ ଗଡ଼ରେ ରହିଛି। ଏହି ଗ୍ରାମରେ ବିଭିନ୍ନ ବର୍ଗର ଲୋକମାନେ ବାସକରନ୍ତି। ବିଧାର ସଂଜ୍ଞାଧାରୀ ଖଣ୍ଡାୟତଙ୍କ ପ୍ରତିପତି ଏଠି ଅଧିକ ।

କୁରାଳ ଜଗନ୍ନାଥ ମନ୍ଦିର ନୟାଗଡ଼ରେ ପ୍ରସିଦ୍ଧ ମନ୍ଦିର। ଏହି ମନ୍ଦିରରେ କେବଳ ଜଗନ୍ନାଥ ପୂଜା ପାଆନ୍ତି। ଏହାର ପହିଲିଭୋଗ ବହୁ ଉଚ୍ଚମାନର। ଏଠାରେ ବହୁତ ପୁରୁଣା ଚଣ୍ଡେଶ୍ୱର ଶିବ ମନ୍ଦିର ରହିଛି।

**ବାଉଁଶରାଣୀ ଖେଳ :** କୁରାଳ ବାଉଁଶରାଣୀ ଖେଳ ଦେଶବିଦେଶରେ ଖ୍ୟାତି ଅର୍ଜନ କରିଅଛି। ଏହା ଏକ କ୍ଷୁଦ୍ର ସର୍କସ ଶୈଳୀର ପାଇକ ଖେଳ। ନୟାଗଡ଼ର କୁରାଳ ଗ୍ରାମ ବାଉଁଶରାଣୀ କ୍ରୀଡ଼ା କୌଶଳ ପାଇଁ ପ୍ରସିଦ୍ଧ।

**ତାନ୍ତ୍ରିକ ଜଗୁ ରାଉତ:** ଜଗୁରାଉତ ନୟାଗଡ଼ ଜିଲ୍ଲା କୁରାଳ ଗ୍ରାମରେ ଧନଶାଳୀ

କ୍ଷତ୍ରୀୟ ପରିବାରରେ ଜନ୍ମଲାଭ କରିଥିଲେ । ସେ ମା'ଦୁର୍ଗାଙ୍କୁ ଆରାଧନା କରି ତନ୍ତ୍ର ସାଧନାର ସଫଳତା ପାଇଥିଲେ । ସେ ବାନ୍ଧ ବାନ୍ଧ ଦଉଡ଼ି ପିଟ ପିଟ ଠେଙ୍ଗା କହିଲେ ଦଉଡ଼ି ବାନ୍ଧୁଥିଲା ଠେଙ୍ଗା ପିଟୁଥିଲା । ଏହା ଅଞ୍ଚଳର ବହୁଜନ ମୁଖରୁ ଶୁଣାଯାଏ । ନୟାଗଡ଼ ରାଜା ରଣପୁର ରାଜା ସୀମା ବିବାଦ ସମୟରେ ଦର୍ପନାରାୟଣପୁର ଆଗକୁ ସରହଦ ତାଳ ଧାଡ଼ିଠାରେ ତାଳଗଛକୁ ଓଲଟାଇ ଠିଆକରାଇ ଦେଇଥିଲେ । ସେଠି ସ୍ତ୍ରୀଲୋକ କହିଥିଲେ କିକଲା ଲୋ ମା ମୂଳଟାକୁ ଉପରେ ରଖିଦେଲା । କି କଲାମାରୁ ଏ ସରହଦ ନାମ କାକଲମା ରହିଛି । ଜଗୁରାଉତ ଉପରେ ନୟାଗଡ଼ ରାଜା ପ୍ରସନ୍ନ ହୋଇ ତା'ପାଇଁ ଏକ ସେର ଗୁଆଘିଅ ଖଂଜା ରଖିଥିଲେ ।

କୋମଣ୍ଡ : କୋମଣ୍ଡ ପ୍ରାଚୀନ ନାମ କରାଞ୍ଜାଡ୍ରୁ। ଏହା ଘୁମୁସର ରାଜାଙ୍କର ଅଧୀନସ୍ଥ ଗ୍ରାମ। କରଞ୍ଜାଡୁରୁ କୋମଣ୍ଡ ଅପଭ୍ରଂଶ ନାମ। ଏହା ମାଙ୍କଡ଼ା ପଥର ପାଇଁ ପ୍ରସିଦ୍ଧ। କୋମଣ୍ଡରେ ପ୍ରଥମେ ଆଇଟିଆଇ କଲେଜ ସ୍ଥାପିତ ହୋଇ ନୟାଗଡ଼ର ଶିକ୍ଷାପରିସର ବୃଦ୍ଧି କରାଇଛି।

ମାଣିକିପାଟଣା ହାଟ : ଏହି ସମତଳଭୂମିର ବାହାଡ଼ାଝୋଲାଠାରେ ମାଣିକିପାଟଣା ଗୋରୁହାଟ ଓଡ଼ିଶାରେ ଏକ ପ୍ରଧାନ ଜଣାଶୁଣା ହାଟ। ଏ ହାଟ ସପ୍ତାହର ଗୁରୁବାରରେ ବସେ। ଏ ହାଟରେ ପନିପରିବା, ବସ୍ତ୍ର, କୃଷି, ବ୍ୟବହାର୍ଯ୍ୟ ଉପକରଣ ପୋଢ଼, ମଇଁଷି, ଗୋରୁଗାଈ, ଛେଳିମେଣ୍ଢା ହାଟ ହୁଏ।

ଆବିର୍ଭୂତ ଶିବଲିଙ୍ଗ : ବାହାଡ଼ାଝୋଲାରେ ସ୍ୱୟଂ ଆବିର୍ଭୂତ ଫୁଟାଲିଙ୍ଗ ଫୁଲେଶ୍ୱର ଜୀଉ ମହାଦେବ ମନ୍ଦିର। ଜାମୁପାଟଣା ଗ୍ରାମର ଶୂଳିଆ ଅରଣ୍ୟର ଦକ୍ଷିଣ ଶେଷ ପାର୍ଶ୍ୱରେ ଓଡ଼ଗାଁର ପଶ୍ଚିମରେ ସ୍ୱୟଂ ଆବିର୍ଭୂତ ଫୁଟାଲିଙ୍ଗ ଦୂତୀକେଶ୍ୱର ମହାଦେବ ଜୀଉଙ୍କ ପ୍ରସିଦ୍ଧ ମନ୍ଦିର ବିଦ୍ୟମାନ।

ରଳବଗଡ଼ : ନୟାଗଡ଼ ରାଜ୍ୟରେ ଶାସନ କରୁଥିବା ବଘେଲ ବଂଶ ରାଜାମାନଙ୍କର ଦ୍ୱିତୀୟ ରାଜଧାନୀ ରଳବଗଡ଼। ସୂର୍ଯ୍ୟମଣିଙ୍କଠାରୁ ବାଘାସିଂହ ପର୍ଯ୍ୟନ୍ତ ରଳବଗଡ଼ ନୟାଗଡ଼ ରାଜ୍ୟର ରାଜଧାନୀ ଥିଲା। ରଳବର ପଶ୍ଚିମକୁ ୧୫କିଲୋମିଟର ଦୂରରେ ନୟାଗଡ଼ର ପ୍ରଥମ ଗଡ଼ ଥିଲା ଗୁନାମାଟି। ଗୁନାମାଟି ଗଡ଼ ସୂର୍ଯ୍ୟମଣି ଚନ୍ଦ୍ରମଣି ଦୁଇଭାଇ ପ୍ରଥମେ ସ୍ଥାପନ କରିଥିଲେ। ବାଘାସିଂହଙ୍କ ଦିଗ୍‌ବିଜୟ କାଳରେ ନୟାଗଡ଼ା ହେଲା ତୃତୀୟ ରାଜଧାନୀ। ଯେଉଁ ରାଜଧାନୀ ଭାରତ ସ୍ୱାଧୀନ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା। ରଳବଗଡ଼ ଶୂଳିଆ ପର୍ବତର ଦକ୍ଷିଣ କ୍ରୋଡରସ୍ଥିତ ମୂଲ୍ୟବାନ ବୃକ୍ଷଲତା ଆଚ୍ଛାଦିତ ସୁରମ୍ୟ ବନଥଳି। ରଳବଗଡ଼ର ଇଷ୍ଟଦେବୀ ହେଲେ ବାଉରୀ ଠାକୁରାଣୀ।

ବାଙ୍କତରା : ଦୂତିକେଶ୍ୱର ମହାଦେବ ପୀଠର ଦକ୍ଷିଣରେ ବାଙ୍କତରା ଗାଁ। ଏହି ସ୍ଥାନରୁ ତାରାଗୁଡ଼ିକ ବଙ୍କା ଦିଶୁଥିବାରୁ ଗ୍ରାମର ନାମ ବାଙ୍କତରା ହୋଇଛି।

କୁସୁମୀ ସମତଳଭୂମି : ଶୂଳିଆ ପର୍ବତ, ରତ୍ନମାଳା ପର୍ବତ ଏବଂ ଶୂକରମଲ୍ଲ ପର୍ବତର ମଧ୍ୟବର୍ତ୍ତୀ ସମତଳଭୂମି ହେଉଛି କୁସୁମୀ ସମତଳଭୂମି। ଏ ବିସ୍ତାର ସମତଳ ଦେଇ କୁସୁମୀ ନଦୀ ଓ ତା'ର ଉପନଦୀ ଦୁଆଣ୍ଟ ଓ ନାଗଝରକୁ ନେଇ ନୟାଗଡ଼ ତହସିଲ ଅତିକ୍ରମ କରି ଖେଡ଼ବାରଣାଠାରୁ ଖଣ୍ଡପଡ଼ା ତହସିଲ ଭେଦକରି କମେଇ ମୁହାଣରେ ମହାନଦୀକୁ ପ୍ରବେଶ କରିଅଛି। ଏହାର ଗତିପଥର ଉଭୟପାର୍ଶ୍ୱରେ ଚଉଡ଼ା ସମତଳଭୂମିର ଉର୍ବର ଶସ୍ୟ ଜମି ଥିବାରୁ କୁସୁମୀ ନଦୀ ବା ପୁଷ୍ପବତୀ କୁହନ୍ତି। ଏହାର ଅତିକାୟ ସମତଳଭୂମିକୁ ଭଣ୍ଡାର ପାହାଡ଼ ଏବଂ ବରଡ଼ା ପାହାଡ଼ ଦୁଇଟି ଗୋଟିକିଆ ପାହାଡ଼ ବିଭାଜନ କରୁଅଛି।

ଗୟଳ ସିଂହ ପର୍ବତ ଶୂଳିଆ ପର୍ବତ ଭଣ୍ଡାର ପାହାଡ଼ ମଧ୍ୟବର୍ତ୍ତୀ ସମତଳଭୂମି : ପଞ୍ଚରିଡ଼ା, ଗୌଡ଼ପୁଟ, ନନ୍ଦିଘୋର, ଓଡ଼ଗାଁ, ସାକେରି, ମଗରବନ୍ଧ, ଗୁଣ୍ଡୁରାବାରି ଏ ସମତଳ ଭୂମିକୁ ଘେରି ରହିଥିବା ଜନବସତି। ଏ ଜନବସତିର ସବୁଠାରୁ ବଡ଼ଗାଁ ନନ୍ଦିଘୋର। ସାବିଦେଇପୁର, ବିନାୟକପୁର, କରଡ଼ା, ରାବେରା, ବାଉଁଶଗାଡ଼ିଆ ଏ ଅଞ୍ଚଳର ବ୍ରାହ୍ମଣ ଶାସନ ଗାଁ। ପ୍ରଜାମଣ୍ଡଳ ଆନ୍ଦୋଳନର କର୍ଣ୍ଣଧାର ବାଞ୍ଛାନିଧି ସେନାପତି (ବାହାଡ଼ାଝୋଲା) ସମାଜସେବୀ ବୁଢ଼ାବୁଢ଼ିଆଣୀ ବନ୍ଧର ନିର୍ମାତା ଅଖାରିଆ ବାସୁଦେବ ମହାପାତ୍ର (କୁଜିଗାନ୍ଧି) ଓଡ଼ିଶା ସରକାରଙ୍କର ବିଧାୟକ ରମାକାନ୍ତ ମିଶ୍ର (କରଡ଼ା) ବିଧାୟକ ସତ୍ୟନାରାୟଣ ପ୍ରଧାନ (ମଗରବନ୍ଧ) ଭାରତବର୍ଷରେ ଏକକ କଳାର ଜନ୍ମଦାତା ବାଞ୍ଛାନିଧି ଶତପଥି (ରାବେରା) ଯୋଗଜନ୍ମା ପୁତ୍ରଙ୍କୁ ଜନ୍ମଦେଇ ଏ ମାଟି ଗର୍ବିତ।

ସୁବର୍ଣ୍ଣ କଳସର ମନ୍ଦିର ଓଡ଼ଗାଁ : ଗୟଳସିଂହ ପର୍ବତର କାଙ୍ଗୁଲପଦା ଗଡ଼ର ବସତି ଓଡ଼ଗାଁ। ଏ ପ୍ରସିଦ୍ଧ କ୍ଷେତ୍ର ଦ୍ୱିତୀୟ ଶ୍ରୀକ୍ଷେତ୍ର ନାମରେ ବିଦିତ। ଏ କ୍ଷେତ୍ର ରଘୁନାଥଙ୍କର ବିଜେସ୍ଥଳୀ। ରଘୁନାଥ ମନ୍ଦିର ନୟାଗଡ଼ ଜିଲ୍ଲାର ସବୁଠୁ ସୁନ୍ଦର ମନ୍ଦିର। ମନ୍ଦିରର ପୂର୍ବଦ୍ୱାରରେ ସିଂହଦ୍ୱାର ଉତ୍ତର ଦ୍ୱାର ହସ୍ତୀଦ୍ୱାର ପଶ୍ଚିମ ଦ୍ୱାର ଅଶ୍ୱଦ୍ୱାର ଏବଂ ଦକ୍ଷିଣଦ୍ୱାର ବ୍ୟାଘ୍ରଦ୍ୱାର। ଚରିଦ୍ୱାରର ମନୋହର ବେଢ଼ା ମଧ୍ୟରେ ରଘୁନାଥ ଜୀଉଙ୍କ ମନ୍ଦିର। ମନ୍ଦିର ପ୍ରବେଶଦ୍ୱାର, ମଧ୍ୟମନ୍ଦିର ଏବଂ ମୁଖ୍ୟ ମନ୍ଦିର ଚୂଡ଼ାରେ ତିନୋଟି ସୁବର୍ଣ୍ଣ କଳସ ଉପରେ ବୈଷ୍ଣବ ଚକ୍ରରେ ବାନା ଉଡୁଥାଏ। ରତ୍ନବେଦୀରେ ନିମ୍ବଦାରୁରେ ଗଢ଼ା ଆରଣ୍ୟକ ବେଶରେ କୋଦଣ୍ଡଧାରୀ ରାମ, ଲକ୍ଷ୍ମଣ ଓ ମାତା ସୀତାଙ୍କର ଅତୀବ କମନୀୟ ପୂର୍ଣ୍ଣାଙ୍ଗ ରୂପ ବିଗ୍ରହ ବିରାଜମାନ। ଠାକୁରଙ୍କୁ ଦର୍ଶନ କଲେ ଚିତ୍ତବୋଧ ହୋଇଯାଏ। ମନ୍ଦିରର ପାର୍ଶ୍ୱ ଦିଅଁମାନେ ଆରଣ୍ୟକ ଋଷିମାନେ। ମନ୍ଦିର ବେଢ଼ାରେ ସୁବଳୟା ପର୍ବତ ନିର୍ମାଣ କରାଯାଇଛି। ମନ୍ଦିର ପ୍ରାଙ୍ଗଣରେ ଉତ୍ତରପାର୍ଶ୍ୱରେ ଶ୍ରୀରାମ ବିହାରରେ ପୁରୁଷୋତ୍ତମ ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ରଙ୍କର ଆଦିଲୀଳାଠାରୁ ଶେଷଲୀଳା ପର୍ଯ୍ୟନ୍ତ କଳାକୁଞ୍ଜ ଭ୍ରମଣକାରୀଙ୍କ ଚିତ୍ତବୋଧ କରେ।

<u>ଶ୍ରୀରାମନବମୀ ଯାତ୍ରା :</u> ଓଡ଼ଗାଁ ରଘୁନାଥ ଜୀଉଙ୍କର ନବମୀ ଯାତ୍ରା ନଅଦିନ ଧରି ଚାଲେ। ଶ୍ରୀରାମଚନ୍ଦ୍ରଙ୍କର ଜନ୍ମଠାରୁ ଅଭିଷେକ ପର୍ଯ୍ୟନ୍ତ ପ୍ରଭୁଙ୍କର ବିଭିନ୍ନ ଲୀଳା ମନ୍ଦିରରେ ବିଗ୍ରହର ରୂପ ଦେଇ ପ୍ରଦର୍ଶନ କରାଯାଏ। ସୀତାବିବାହ ଉତ୍ସବ ହେଉଛି ଯାତ୍ରାର ସବୁଠାରୁ ଆକର୍ଷଣୀୟ ଉତ୍ସବ। ଯାତ୍ରାରେ ଦୋକାନ ବଜାର ଏବଂ ସୁନାମଧନ୍ୟ କଟକୀୟା ଗଣନାଟ୍ୟ ପଡ଼ିଥିବାରୁ ଯାତ୍ରା ସବୁଦିନ ଜନଗହଳ। ଏହି ଉତ୍ସବ ସାମାଜିକ ପରମ୍ପରା ବୈଦିକ ରୀତି ନିୟମରେ ପାଳନ କରାଯାଇଥାଏ।

<u>ଦ୍ୱିତୀୟ ଶ୍ରୀକ୍ଷେତ୍ର, ଓଡ଼ଗାଁ :</u> ଶ୍ରୀକ୍ଷେତ୍ର ପୁରୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ହେଉଛନ୍ତି ନିମ୍ବ ଦାରୁବିଗ୍ରହ। ଶ୍ରୀମନ୍ଦିର ତିନିଠାକୁର ଜଗନ୍ନାଥ, ବଳଭଦ୍ର, ଦେବୀ ସୁଭଦ୍ରାଙ୍କର ନବକଳେବର ହୁଏ। ନବକଳେବରରେ ପ୍ରଭୁଙ୍କର ଘଟ ପରିବର୍ତ୍ତନ ହୁଏ। ପୁରୁଣା କଳେବର ପ୍ରଭୁଙ୍କର କୋଇଲି ବୈକୁଣ୍ଠରେ ବିସର୍ଜନ କରାଯାଏ। ଓଡ଼ଗାଁ ଅଧିଷ୍ଠିତ ପ୍ରଭୁ ଶ୍ରୀରାମ, ଲକ୍ଷ୍ମଣ, ମାତା ଜାନକୀଙ୍କର ବିଗ୍ରହ ନିମ୍ବଦାରୁ ବିଗ୍ରହ। ପ୍ରଭୁ ଶ୍ରୀରାମ ଅବତାର ଜଗନ୍ନାଥ ଅବତାରୀ। ରଘୁନାଥଙ୍କର ନବକଳେବର ହୁଏ ନାହିଁ। ଠାକୁରଙ୍କର ବିଗ୍ରହକୁ ପ୍ରତି ଚୈତ୍ରରେ ରଙ୍ଗରେ ମାଜଣା କରି ବିଗ୍ରହତ୍ରୟଙ୍କ ନୂତନତ୍ୱ ଦିଆଯାଏ। ପ୍ରଭୁଙ୍କ ନୀତି ଅବତାର ନୀତି ମାନବୀୟ ପ୍ରକାଶ। ଏଣୁ ଓଡ଼ଗାଁ ଦ୍ୱିତୀୟ ଶ୍ରୀକ୍ଷେତ୍ର। ତୀର୍ଥଯାତ୍ରୀଙ୍କର ଶ୍ରୀକ୍ଷେତ୍ର ଦର୍ଶନ ପରେ ଓଡ଼ଗାଁ ରଘୁନାଥଜୀଉଙ୍କ ଦର୍ଶନ ନକଲେ ତୀର୍ଥଯାତ୍ରା ପୂର୍ଣ୍ଣାଙ୍ଗ ହୁଏ ନାହିଁ।

<u>ମନ୍ଦିର ଶିଳ୍ପୀ / ପଥରଶିଳ୍ପୀ :</u> ଓଡ଼ଗାଁ ହେଉଛି ମନ୍ଦିର ନିର୍ମାଣକାରୀଙ୍କ ପ୍ରଧାନ ବାସସ୍ଥଳୀ। ଏଠାକାର ମନ୍ଦିର ଶିଳ୍ପୀମାନେ ଓଡ଼ିଶାରେ, ଓଡ଼ିଶା ବାହାର ରାଜ୍ୟମାନଙ୍କର ଆରାଧ୍ୟ ଦେବାଦେବୀଙ୍କର ମନ୍ଦିର ନିର୍ମାଣ କରି ଖ୍ୟାତି ଅର୍ଜନ କରିଛନ୍ତି।

<u>କାଷ୍ଠଶିଳ୍ପୀ ମଶାବାରୀ :</u> ମଶାବାରୀ ନୟାଗଡ଼ ଜିଲ୍ଲାର ପୁରୁଣା କାଷ୍ଠଶିଳ୍ପୀର ଗାଁ। ଏ ଗାଁ'ର କବିରାଜ ମହାରଣା, ଆର୍ତ୍ତବନ୍ଧୁ ମହାରଣା କାଠରେ ସୂକ୍ଷ୍ମ ଚାରୁକଳାର ଖୋଦେଇରେ ଶିଶୁ, ପିଆଶାଳ, ଶାଗୁଆନ କାଠରେ ଶୟନକକ୍ଷର ବିଳାସପୂର୍ଣ୍ଣ ପଲଙ୍କ, ସୋଫା, ଘରର ଦ୍ୱାରବନ୍ଧ, କବାଟ ତିଆରି କରନ୍ତି। ସେହିପରି ଆକର୍ଷଣୀୟ ସରୁ ଖୋଦେଇର କାଠ କାରିଗରୀ ଚଢ଼ୟାପଲ୍ଲୀ ରାଜକିଶୋର ମହାରଣା ଖ୍ୟାତି ଅର୍ଜନ କରିଥିଲେ। ତାଙ୍କ ବଂଶଜ ସହଦେବ ମହାରଣା ଜଣେ ଦକ୍ଷ କାଷ୍ଠଶିଳ୍ପୀ ଭାବେ ଜିଲ୍ଲାରେ ସୁପରିଚିତ।

<u>କୁମ୍ଭାର ଶିଳ୍ପକଳା ପଞ୍ଚୁଡ଼ା ମାନପୁର :</u> ପଞ୍ଚୁଡ଼ା ମାନପୁର କୁମ୍ଭାର ମାଟିରେ ସୁନ୍ଦର ସୁନ୍ଦର ହାଣ୍ଡି, କଳସ, ସୁରେଇ, ଦେବଦେବୀଙ୍କ ମୂର୍ତ୍ତି, ମାଟି କଣ୍ଢେଇ ନିର୍ମାଣ କରିବାରେ ସୁଦକ୍ଷ କୁମ୍ଭାର।

**ରାବରା :** ରାବରା ଗ୍ରାମରେ ନୟାଗଡ଼ର ଦ୍ୱାଦଶ ଅର୍ଦ୍ଧେକ ଶିବଲିଙ୍ଗ ମଧ୍ୟରୁ ମଧୁକେଶ୍ୱର ମହାଦେବ ଆବିର୍ଭାବ ହୋଇଛନ୍ତି। ଏକକ କଳାର ସ୍ରଷ୍ଟା କଳାନିଧି ବାଞ୍ଛାନିଧି ଶତପଥିଙ୍କର ରାବରା ଗ୍ରାମରେ ଜନ୍ମ। ବାଞ୍ଛାନିଧି ଶତପଥି ଭାରତବର୍ଷରେ ଜଣେ ଅନନ୍ୟ ଏକକ କଳାକାର। ଅଞ୍ଚଳରେ ଗଳ୍ପସାଗର ଭାବେ ସୁପରିଚିତ। ବାଞ୍ଛାନିଧି ଶତପଥିଙ୍କୁ ଜନ୍ମଦେଇ ରାବେରା ଗର୍ବ କରେ।

**ଜଳଭଣ୍ଡାର :** ନୟାଗଡ଼ ଜିଲ୍ଲାରେ ଦୁଇଟି ବଡ଼ ଜଳଭଣ୍ଡାର ବୁଢ଼ାବୁଢ଼ୀଆଣୀ ଏବଂ କୁଆଁରିଆ। କୁଆଁରିଆ ଦଶପଲ୍ଲା ଗଡ଼ର ଏବଂ ବୁଢ଼ାବୁଢ଼ୀଆଣୀ ନୟାଗଡ଼ ଗଡ଼ର। ଏ ବନ୍ଧ ଦୁଇଟି ସ୍ୱାଧୀନତା ପରବର୍ତ୍ତୀ ସମୟର ଜଳଭଣ୍ଡାର।

**କୁଆଁରିଆ ଜଳଭଣ୍ଡାର :** କୁଆଁରିଆ ନଦୀ ଉପରେ ଆବଦ୍ଧ ଜଳଭଣ୍ଡାର ନଦୀବନ୍ଧ। ଏହା ରାଜ୍ୟର ପର୍ଯ୍ୟଟନ କ୍ଷେତ୍ରର ମାନ୍ୟତାପ୍ରାପ୍ତ। ଆରଣ୍ୟକ ପରିବେଷ୍ଟନୀ ମଧ୍ୟରେ ଦୀର୍ଘ ପ୍ରଶସ୍ତ ଜଳଭଣ୍ଡାର। ଏହାର ଅବସ୍ଥିତି ଦଶପଲ୍ଲା ଗଡ଼ର ଦକ୍ଷିଣ ପଶ୍ଚିମ ଆରଣ୍ୟକ କ୍ରୋଡ଼ର ମଧ୍ୟରେ। ଏହାର ଆକର୍ଷଣୀୟ ମନୋହର ପରିବେଶ ପର୍ଯ୍ୟଟକଙ୍କ ଚିତ୍ତବୋଧ କରେ। ଏହା ପିକ୍‌ନିକ୍‌ର ଏକ ମନୋରମ ସ୍ଥାନ। କୁଆଁରିଆ ଜଳଭଣ୍ଡାର ଦଶପଲ୍ଲାର ଶସ୍ୟଭୂମିକୁ ଜଳଦାନ କରେ।

**ବୁଢ଼ାବୁଢ଼ୀଆଣୀ ଜଳଭଣ୍ଡାର ଓ ଓଡ଼ଗାଁ ସମତଳ ଭୂମିର ପ୍ରତିଭୂ :**

**ବୁଢ଼ାବୁଢ଼ୀଆଣୀ ଜଳଭଣ୍ଡାରର ଉଦ୍‌ଯୋଗୀ ପୁରୁଷ ବାସୁଦେବ ମହାପାତ୍ର :** ବାସୁଦେବ ମହାପାତ୍ର ଅଖାରିଆ, ଯାହାଙ୍କୁ ଅଞ୍ଚଳର ଲୋକେ କୁଜିଗାନ୍ଧି ବୋଲି କହନ୍ତି। ସେ ବୁଢ଼ାବୁଢ଼ୀଆଣୀ ଜଳଭଣ୍ଡାର ପ୍ରକଳ୍ପର ଉଦ୍ୟକ୍ତା ତଥା ନିର୍ମାତା। ବୁଢ଼ାବୁଢ଼ୀଆଣୀ ଜଳଭଣ୍ଡାର ରତ୍ନମାଳା ପର୍ବତ କ୍ରୋଡ଼ର ଗୋଛାମାଳର ପଶ୍ଚିମ ନାଣ୍ଡିଗିରି ପାହାଡ଼ ଓ ଏହାର ଦକ୍ଷିଣ ପାର୍ଶ୍ୱ ଗଡ଼ଗାଁ ଓସ୍ତିଆ ପୂର୍ବଭାଗରେ ଭୋଗସର କନ୍ଧ ବନବାସୀଙ୍କ ସରହଦ ମଧ୍ୟରେ ପ୍ରସାରୀ ହୋଇ ବ୍ୟାପୀ ରହିଥିବା ଦୁଆଣ୍ଟ ନଦୀ ଉପରେ ବଡ଼ ଜଳଭଣ୍ଡାର। ଏହାର ତଳିଗାଁ, ଗଉଡ଼ପୁଟ, ନନ୍ଦିଘୋର, ଆରଡ଼ା, ଆମ୍ବରାପୁର, କେନ୍ଦୁପଲ୍ଲୀ, ବଡ଼ପୁଟ, ପଞ୍ଚୁଡ଼ା, ଚଢ଼ୟାପଲ୍ଲୀ, ଗୋଡ଼ିପଲ୍ଲୀ, ମାନପୁର ବୃହତ୍ ଜନାଞ୍ଚଳ ଶସ୍ୟଭୂମିକୁ ଜଳସେଚନ କରିଥାଏ। ଏ ଅଞ୍ଚଳର କୃଷିଜୀବି ବର୍ଷତମାମ ଶସ୍ୟଭୂମିରେ କର୍ମରତ।

**ପନିପରିବାର ଗାଁ - ଗୋଡ଼ିପଲ୍ଲୀ, ମାନପୁର, ଚଢ଼ୟାପଲ୍ଲୀ :** ଗୋଡ଼ିପଲ୍ଲୀ, ମାନପୁର, ଚଢ଼ୟାପଲ୍ଲୀ କୃଷକମାନେ ଜମିରୁ ଧାନ, ଆଖୁ, ସୋରିଷ, ମୂଳା, ଶାଗ, ଫୁଲକୋବି, ପତ୍ରକୋବି, ଉଲ୍‌କୋବି, ଟମାଟୋ, ଆଳୁ, ବାଇଗଣ ପ୍ରଚୁର ପରିମାଣରେ ଅମଳ କରନ୍ତି। ଓଡ଼ିଶାର ପରିବା ବଜାରକୁ ପ୍ରଚୁର ପରିମାଣରେ ପନିପରିବା ଯୋଗାଇବା ଏ ଅଞ୍ଚଳର ବଡ଼ ଅବଦାନ।

<u>ରମାକାନ୍ତ ମିଶ୍ର :</u> ପ୍ରାକ୍ତନ ବିଧାୟକ ରମାକାନ୍ତ ମିଶ୍ରଙ୍କ ଜନ୍ମସ୍ଥାନ ଓଡ଼ଗାଁ ମଣ୍ଡଳ ଅଧୀନସ୍ଥ କରଡ଼ାଶାସନ ଗ୍ରାମ। ଓଡ଼ିଶାରେ କଂଗ୍ରେସ ଶାସନ କାଳରେ ରଣପୁର ନିର୍ବାଚନମଣ୍ଡଳୀରୁ ବହୁଥର ବିଧାନସଭାକୁ ନିର୍ବାଚିତ ହୋଇଯାଇଛନ୍ତି। କଂଗ୍ରେସ ସରକାର ସମୟରେ ସେ କୃଷିମନ୍ତ୍ରୀ ପଦ ଅଳଙ୍କୃତ କରିଥିଲେ। କଂଗ୍ରେସର ବିପର୍ଯ୍ୟୟ କାଳରେ କଂଗ୍ରେସ ତରଫରୁ ବିରୁଦ୍ଧ ଦଳ ନେତା ଥିଲେ।

<u>ସତ୍ୟନାରାୟଣ ପ୍ରଧାନ :</u> ସତ୍ୟନାରାୟଣ ପ୍ରଧାନଙ୍କ ଜନ୍ମସ୍ଥାନ ଓଡ଼ଗାଁ ମଣ୍ଡଳ ଅଧୀନସ୍ଥ ମଗରବନ୍ଧ ଗ୍ରାମ। ସେ ବର୍ତ୍ତମାନ ବିଜୁ ଜନତା ଦଳ ସରକାରର ଲୋକପ୍ରିୟ ବିଧାୟକ। ସେ ରଣପୁର ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି। ସେ ଦୁଇଥର ଓଡ଼ିଶା ସରକାର ବିଧାନସଭାକୁ ନିର୍ବାଚିତ ହୋଇ ଲୋକପ୍ରିୟତା ଅର୍ଜନ କରିଛନ୍ତି। ସେ ଜଣେ ସାଧୁ ଜନସେବକ ବିଧାୟକ।

<u>ସୁଧାକର ଜେନା :</u> କବି ସୁଧାକର ଜେନାଙ୍କର ଜନ୍ମସ୍ଥାନ ଓଡ଼ଗାଁର ପଡ଼ୋଶୀ ବିଲମାନପୁର ଗ୍ରାମ। ସେ ଜଣେ ଖ୍ୟାତିସଂପନ୍ନ ସଂକୀର୍ତ୍ତନ ଗୁରୁ। ସେ ଓଡ଼ଗାଁ ଅଞ୍ଚଳରେ ଗ୍ରାମେ ଗ୍ରାମେ ସଂକୀର୍ତ୍ତନ ମଣ୍ଡଳ ଗଠନ କରିଥିଲେ। ସେ ରଘୁନାଥଙ୍କର ପରମ ଭକ୍ତ ଥିଲେ। ସେ ଦୂତୀକେଶ୍ୱର ପୁରାଣ ଏବଂ ଅନେକ ସଂକୀର୍ତ୍ତନ ପୁରାଣ ପୁସ୍ତିକା ରଚନା କରିଯାଇଛନ୍ତି।

<u>ନୟାଗଡ଼ର ପ୍ରଥମ ଜାତୀୟ ସଂଗ୍ରାମୀ ନାରାୟଣ ନନ୍ଦ :</u> ନୟାଗଡ଼ର ପ୍ରଥମ ଜାତୀୟ ସଂଗ୍ରାମୀ ନାରାୟଣ ନନ୍ଦଙ୍କର ଜନ୍ମସ୍ଥାନ ପବିତ୍ର ରଘୁନାଥଜୀଉଙ୍କ ସ୍ଥାନ ଓଡ଼ଗାଁରେ। ୧୯୨୦ ମସିହା ମହାତ୍ମାଗାନ୍ଧିଙ୍କ 'ଚରଖା ଆନ୍ଦୋଳନ' ନୟାଗଡ଼ ଭୂଇଁରେ ପ୍ରଥମେ ପ୍ରସାର କରିଥିଲେ ଏବଂ ରାଜରୋଷର ଶିକାର ହେଲେ। ସେ ଓଡ଼ଗାଁର ପୋଷ୍ଟମାଷ୍ଟର ଥିଲେ। ରାଜରୋଷର ସରବ୍ୟ ହୋଇ ତାଙ୍କର ଅରଟି ବ୍ୟାଜାପ୍ତ କରାଗଲା। ତାଙ୍କୁ ପୋଷ୍ଟମାଷ୍ଟର ପଦରୁ ବହିଷ୍କାର କରାଯାଇଥିଲା। ତାଙ୍କର ଜମାଟଙ୍କାକୁ ଅଟକ କରାଗଲା ଏବଂ ରଘୁନାଥଜୀଉଙ୍କ ସେବାକାର୍ଯ୍ୟରୁ ଅନ୍ତର କରାଯାଇ ସେବାସୀ ଜମିବାଡ଼ି ଛଡ଼ାଇ ନିଆଗଲା।

ତା.୨୪.୭.୧୯୩୭ ମସିହାରେ କଟକ ଭୁବନାନନ୍ଦ ଦାଶଙ୍କ ବାସଭବନରେ 'ଓଡ଼ିଶା ଗଡ଼ଜାତ ସମ୍ମିଳନୀ'ରେ ସକ୍ରିୟ କର୍ମୀଭାବେ ଯୋଗଦାନ କରିଥିଲେ। ୧୯୩୮ ମସିହାରେ ଶ୍ରୀଯୁକ୍ତ ନାରାୟଣ ନନ୍ଦ ମହୋଦୟ ଓଡ଼ଗାଁ'ଠାରେ ରାଜତନ୍ତ୍ରର ସଡ଼କବେଠି ବିରୁଦ୍ଧରେ ବିଶିଷ୍ଟ ଜାତୀୟ ସଂଗ୍ରାମୀ ଲକ୍ଷ୍ମଣ ମହାରଣା ଓ ଭରତ ନାୟକଙ୍କ ସହଯୋଗରେ ହଜାର ହଜାର ଲୋକଙ୍କ ସ୍ୱାକ୍ଷର ନେଇ ବ୍ରିଟିଶ ପଲିଟିକାଲ ଏଜେଣ୍ଟଙ୍କ ନିକଟରେ ରାଜାଙ୍କ 'ବେଠି' ବିରୁଦ୍ଧରେ ଆପତ୍ତିପତ୍ର ଦାଖଲ କରିଥିଲେ। ନୟାଗଡ଼ ରାଜା ବାଧ ହୋଇ ଓଡ଼ଗାଁ'ରେ ସଡ଼କ ବେଠି ବନ୍ଦ କଲେ। ୧୯୩୮ ମସିହାରେ ଡେଲାଙ୍ଗ ବେରବୋଇଠାରେ 'ଗାନ୍ଧୀ ସେବାସଂଘ'ର ସର୍ବଭାରତୀୟ

ବୈଠକରେ ଯୋଗଦେବାରୁ ଉଦ୍ଦେଶ୍ୟମୂଳକ ଭାବେ ନାରାୟଣ ନନ୍ଦଙ୍କୁ ପାନଚୋରି କେସ୍‌ରେ ପକାଇ ତାଙ୍କ ସହିତ ଭରତ ନାୟକ, କାଶୀନାଥ ସାହୁ, ରାମକୃଷ୍ଣ ଅଧିକାରୀ ଓ ଲିଙ୍ଗରାଜ ସାହୁଙ୍କୁ ଗିରଫ କରାଯାଇଥିଲା । ଏହାର ପ୍ରତିବାଦରେ ଓଡ଼ଗାଁ ଅଞ୍ଚଳର ଜନସାଧାରଣ 'ପାନବର୍ଜନ' ଆନ୍ଦୋଳନକୁ ଜୋରଦାର କଲେ । ବାଧହୋଇ ନୟାଗଡ଼ ରାଜା ସେମାନଙ୍କୁ ଜେଲ୍‌ରୁ ଖଲାସ କଲେ ।

ଓଡ଼ଗାଁ ନିକଟସ୍ଥ ଡାଙ୍ଗିବନ୍ଧ ବୈଠକର ମୁଖ୍ୟ ସୂତ୍ରଧର ଥିଲେ ନାରାୟଣ ନନ୍ଦ । ସେହି ବୈଠକରୁ ଓଡ଼ଗାଁ'ରେ ପ୍ରଥମେ 'ପ୍ରଜାମଣ୍ଡଳ' ଗଠନ କରି ତା'ର ଅସ୍ଥାୟୀ ସଭାପତି ଥିଲେ । ଏ ପ୍ରଜାମଣ୍ଡଳ ସମଗ୍ର ନୟାଗଡ଼ ପ୍ରଜାମଣ୍ଡଳର ଜନ୍ମ ଦେଲା । ୧୯୪୦ ଆଇନ୍ ଅମାନ୍ୟ ଆନ୍ଦୋଳନ ଓ ୧୯୪୨ରେ ପ୍ରଜାମଣ୍ଡଳ ଆନ୍ଦୋଳନର ଆଗୁଆ ସଂଗ୍ରାମୀ ଭାବେ ନାରାୟଣ ନନ୍ଦ ନୟାଗଡ଼ ଜେଲ୍‌ରେ ଏକବର୍ଷ ଛଅ ମାସ ଜେଲ୍‌ଦଣ୍ଡ ଭୋଗିଥିଲେ ।

ନାରାୟଣ ନନ୍ଦ ନୟାଗଡ଼ ଗଡ଼ଜାତରେ ଜଣେ ସଚ୍ଚା ନିର୍ଭୀକ ସଂଗ୍ରାମୀ ଥିଲେ । ନୟାଗଡ଼ବାସୀ ତାଙ୍କୁ ଭୁଲିପାରିବେ ନାହିଁ । ତତ୍କାଳୀନ ରାଜାସାହେବଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା କ'ଣ ସହଜ !!!

<u>ଅନ୍ଧକାରର ସୂର୍ଯ୍ୟ ଲକ୍ଷ୍ମଣ ମହାରଣା :</u> ଶ୍ରୀଯୁକ୍ତ ଲକ୍ଷ୍ମଣ ମହାରଣା ଶ୍ରୀ ଶ୍ରୀ ରଘୁନାଥଜୀଉ ପୀଠ ଓଡ଼ଗାଁ'ରେ ୧୯୦୩ ମସିହା ଅପ୍ରିଲ୍ ୧୫ତାରିଖରେ ପିତା ଗୋବିନ୍ଦ ମହାରଣା ମାତା ଦୂତିକା ଦେବୀ କୋଳରେ ଜନ୍ମଲାଭ କରିଥିଲେ । ନୟାଗଡ଼ ଗଡ଼ଜାତ ଅନ୍ଧାରୀ ମୂଳକରେ ସେ ଦେଖାଦେଇଥିଲେ ଉଦୟଭାନୁର ରଶ୍ମିରେଖା । ତାଙ୍କର ଶିକ୍ଷାଗତ ଯୋଗ୍ୟତା ସେ ସମୟର ଷଷ୍ଠ ଶ୍ରେଣୀ ମାତ୍ର । ଦେଶର ସ୍ୱାଧୀନତା ଦିଗରେ ସତ୍ୟାଗ୍ରହୀମାନଙ୍କୁ ଟାଣକରିବା ପାଇଁ ନିଶାନିବାରଣ, ଖଦଡ଼ ପରିଧାନ, ସମ୍ବାଦପତ୍ର ପଠନ, ବିଦେଶୀଦ୍ରବ୍ୟ ବର୍ଜନ ଓ ସମାଜ ସେବା ଗ୍ରାମେ ଗ୍ରାମେ ପ୍ରସାର କରିବାର କାର୍ଯ୍ୟକ୍ରମ ରଖିଥିଲେ । ୧୯୨୫ ମସିହାରେ ୨୨ବର୍ଷ ବୟସରେ ଲକ୍ଷ୍ମଣ ମହାରଣା ଜାତୀୟ କଂଗ୍ରେସର ସାଧାରଣ ସଭ୍ୟ ହୋଇ ଖବରକାଗଜ ପଢ଼ିବା ତାକୁଡ଼ିରେ ସୂତାକାଟିବା ଆରମ୍ଭ କଲେ । ସେତେବେଳେ ନୟାଗଡ଼ ରାଜ୍ୟରେ ସୂତାକାଟିବା, ଖବରକାଗଜ ପଢ଼ିବା ମନା, କଠୋର ନୀତି ଥିଲା । ଏଣୁ ଗାନ୍ଧି ଚିନ୍ତାଧାରାରେ ଅନୁପ୍ରାଣିତ ଲୋକଙ୍କ ଉପରେ ପୋଲିସର କଡ଼ା ନଜର । ଲକ୍ଷ୍ମଣ ମହାରଣାଙ୍କ ଉପରେ ପୋଲିସ ଜୁଲୁମ୍ ଚାଲିଲା । ଉଚ୍ଚସ୍ୱରରେ 'ଶଳା' କହି ନାନା କୁଭାଷା ପ୍ରୟୋଗ କରି ବେତରେ ନିସ୍ଥୁକ ମାଡ଼ ଦେଲେ ମହାରଣାଙ୍କୁ । ଲକ୍ଷ୍ମଣ ମହାରଣା ସେହି ପୋଲିସ ବିରୁଦ୍ଧରେ ମୋକଦ୍ଦମା କରିବା ପାଇଁ ଅଦାଲତରେ ଦରଖାସ୍ତ ଲେଖୁଥିବା ମୋହରିରଙ୍କୁ କହିଲେ । କୌଣସି ମୋହରିର ପୋଲିସ ବିରୁଦ୍ଧରେ ଦରଖାସ୍ତ ଲେଖିବାକୁ ସାହସ କଲେ ନାହିଁ ।

ସ୍ୱାଧୀନଚେତା ଲକ୍ଷ୍ମଣ ମହାରଣା ଆହୁରି ଦୃଢ଼ତାର ସହ ଗାଁ ଗାଁ ବୁଲି ଗାନ୍ଧିଜୀଙ୍କ ବାଣୀ ପ୍ରଚାର ପ୍ରସାର କରିବାରେ ଲାଗିଲେ। ୧୯୩୭ ମସିହାରେ ପଟ୍ଟାଭି ସୀତାରାମାୟାଙ୍କ ସଭାପତିତ୍ୱରେ କଟକଠାରେ ଅନୁଷ୍ଠିତ ଗଡ଼ଜାତ ପ୍ରଜା ସମ୍ମିଳନୀରେ ଯୋଗଦେଇ ଶ୍ରୀ ମହାରଣା ସାଧାରଣ ସଭ୍ୟଭାବେ ରସିଦ୍ ନେଇ ଚାନ୍ଦା ଆଦାୟ କରିଥିଲେ।

୧୯୩୮ ମସିହାରେ ଭାଦ୍ରବମାସ ପୂର୍ଣ୍ଣିମା ତିଥିରେ ଏହିଦିନ ଭାଗବତ ଜନ୍ମ ପୂଜା ନାମରେ ୫୦ହଜାର ଜନସାଧାରଣଙ୍କ ସମାବେଶରେ ଗଡ଼ଜାତ ଶାସନ ବିରୁଦ୍ଧରେ ସଂଗଠନ ତେଜିଉଠିଲା ଓଡ଼ଗାଁ'ଠାରେ । ବାଞ୍ଛାନିଧି ସେନାପତିଙ୍କୁ ଏହି ସଭାରେ ପ୍ରଜାମଣ୍ଡଳର ସଭାପତି ରଖାଯାଇଥିଲା। ଏହି ସଭାରେ ପ୍ରଜାମଣ୍ଡଳ ଗୃହୀତ ୧୭ଟି ପ୍ରସ୍ତାବ ନେଇ ଲକ୍ଷ୍ମଣ ମହାରଣା ସାଇକେଲ୍‌ରେ ଗୋଡ଼ିପଡ଼ା, ରଣପୁର, ଓଳସିଂ, ଖୋର୍ଦ୍ଧା, ଚନ୍ଦକା ରାସ୍ତାଦେଇ କଟକରେ ସାରଙ୍ଗଧର ଦାଶଙ୍କୁ ଦେଲେ ଏବଂ ଏହି ଦାବିପତ୍ରକୁ ପ୍ରେସ୍‌ରେ ଛପାଇ ସାରଙ୍ଗଧର ଦାଶଙ୍କ ପରାମର୍ଶକ୍ରମେ ସେ ପ୍ରସ୍ତାବ ପତ୍ରକୁ ନୟାଗଡ଼ ଗଡ଼ଜାତ ଅଞ୍ଚଳରେ ବାଣ୍ଟିଥିଲେ। ଏ ଦୁଃସାହସ ପଦକ୍ଷେପ ଲକ୍ଷ୍ମଣ ମହାରଣାଙ୍କର ଉଗ୍ର ଜାତୀୟତାବୋଧର ପ୍ରମାଣ ଦିଏ। କର୍ତ୍ତବ୍ୟନିଷ୍ଠ ଦେଶପ୍ରେମ ଯୋଗୁଁ ଶ୍ରୀଯୁକ୍ତ ଲକ୍ଷ୍ମଣ ମହାରଣା ୧୯୩୯ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ପ୍ରଜାମଣ୍ଡଳର ସଂପାଦକ କାର୍ଯ୍ୟ ନିର୍ବାହ କରିଥିଲେ।

୧୯୪୨ ମସିହା ଜୁଲାଇ ୧୮ ତାରିଖରେ ଓଡ଼ଗାଁ ପୋଲିସ୍ ଲକ୍ଷ୍ମଣ ମହାରଣାଙ୍କୁ ଗିରଫ କଲା। ୧୯୪୨ ମସିହା ଜୁଲାଇ ୨୯ ତାରିଖରେ ଶ୍ରୀ ବାଞ୍ଛାନିଧି ସେନାପତି, ଶ୍ରୀଧର ଦାଶ, ଶୁକ୍ରୁ ବେହେରା ଓ ଲକ୍ଷ୍ମଣ ମହାରଣାଙ୍କର ବିଚାର ହେଲା ତତ୍କାଳୀନ ମାଜିଷ୍ଟ୍ରେଟ୍ ଶ୍ରୀ ବଳଭଦ୍ର ପ୍ରସାଦ ଚୌଧୁରୀଙ୍କ ଇଜିଲାସରେ ଏବଂ ନ୍ୟାୟ ମିଳିଲା ପ୍ରତ୍ୟେକଙ୍କୁ ଦେଢ଼ବର୍ଷ ଜେଲ୍ ଓ ଚାରିଶହ ଟଙ୍କା ଜୋରିମାନା। ଜୋରିମାନା ନଦେଲେ ପ୍ରତ୍ୟେକେ ଆଉ ଚାରିମାସ ସଶ୍ରମ କାରାଦଣ୍ଡ ଭୋଗିବାକୁ ହେବ। ବେଲୁଁବେଲ ପ୍ରଜା ଆନ୍ଦୋଳନ ଘମାଘୋଟ ରୂପ ନେଲା। ଏକସମୟରେ ନୟାଗଡ଼ର ଚାରିଦିଗରୁ ନୟାଗଡ଼ ରାଜବାଟୀ ଅବରୋଧ କରିବାକୁ ଅଗ୍ରସର ହେଉଥିବା ସମୟେ ଥୁଆବାରୀ ଆନନ୍ଦ ସ୍ୱାଇଁ ନେତୃତ୍ୱରେ ଆନ୍ଦୋଳନକାରୀ ନୂଆଗାଁ ଥାନା ଅବରୋଧ କରିବା ସମୟରେ ଥାନା ଅଧିକାରୀ ଗୁଳି କଲେ। ତା ୧୦.୧୦.୧୯୪୨ ଗୁଳିରେ କୁଶୁବିଡ଼ାର କଷ୍ଟି ଡାକୁଆ ଶହୀଦ୍ ହେଲେ। ଆନ୍ଦୋଳନକାରୀ ନୟାଗଡ଼ ଜେଲ୍‌ରେ ସଜା ଭୋଗିଲେ। ୧୯୪୭ ମସିହା ଅଗଷ୍ଟ ୧୫ରେ ଦେଶ ସ୍ୱାଧୀନତା ହେଲା। ଜେଲ୍‌ରୁ ସଭିଏଁ ମୁକ୍ତ ହେଲେ।

ଶ୍ରୀଯୁକ୍ତ ଲକ୍ଷ୍ମଣ ମହାରଣା କବି କି ସାହିତ୍ୟିକ ନଥିଲେ... ସେ ଜାତିର ଉଦ୍ଧାର ପାଇଁ ଜାତୀୟ ସଂଗୀତ ଲେଖି ଗାଁ ଗାଁ ଗାଇ ବୁଲୁଥିଲେ। ତାଙ୍କଦ୍ୱାରା ସୃଷ୍ଟି ସଙ୍ଗୀତ

ବିଜୟ ଭେରୀ, ଭୂଦାନଭେରୀ, ଶହୀଦ୍ କଷ୍ଟିଡାକୁଆ ଗୀତ ହୃଦୟ ଆନ୍ଦୋଳିତ କରେ। ନୟାଗଡ଼ ଅଞ୍ଚଳରେ ଶିକ୍ଷାର ବିକାଶ ଦିଗରେ ପ୍ରସିଦ୍ଧ ରଘୁନାଥ ବିଦ୍ୟାପୀଠ ଓଡ଼ଗାଁ, ନୟାଗଡ଼ର ପ୍ରଜାମଣ୍ଡଳ ମହିଳା ମହାବିଦ୍ୟାଳୟ ତାଙ୍କ ପାଇଁ ସାକ୍ଷ ବହନ କରେ। ସେ ସୃଷ୍ଟିକର୍ମା ମଣିଷକୁ କେବେ ଭୁଲି ନୁହେଁ।

<u>ଓଡ଼ିଶାର ଭାଷାବିତ୍, ଶିକ୍ଷାବିତ୍ ତଥା ପ୍ରାଜ୍ଞପୁରୁଷ ଡକ୍ଟର ବାସୁଦେବ ସାହୁ :</u> ଓଡ଼ିଶାର ଭାଷାତତ୍ତ୍ୱବିତ୍, ପ୍ରାଜ୍ଞପୁରୁଷ ଡକ୍ଟର ବାସୁଦେବ ସାହୁ, ନୟାଗଡ଼ ଜିଲ୍ଲାର ଓଡ଼ଗାଁ ନିକଟସ୍ଥ ରଙ୍ଗଣୀପାଟଣା ଗ୍ରାମରେ ୧୯୩୯ ମସିହା ଅକ୍ଟୋବର ୧ ତାରିଖରେ ଜନ୍ମଗ୍ରହଣ କରିଥିଲେ। ଡକ୍ଟର ସାହୁ ଜଣେ ଆଦର୍ଶ ପ୍ରାଧ୍ୟାପକ, ସରଳ, ଅତିମାନୁଷ ବ୍ୟକ୍ତି ପ୍ରଭା ତଥା ଜ୍ଞାନର ରତ୍ନମୁଣ୍ଡା। ସେ ମହୋଦୟ ଉତ୍କଳ ବିଶ୍ୱବିଦ୍ୟାଳୟର ଛାତ୍ରୀଛାତ୍ରବତ୍ସଳ ଦିବ୍ୟଗୁରୁ।

ଡକ୍ଟର ବାସୁଦେବ ସାହୁ ଓଡ଼ିଆ ଭାଷାରେ ଏମ୍.ଏ. ଶ୍ରେଣୀରେ ପ୍ରଥମ ସ୍ଥାନରେ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ସ୍ୱର୍ଣ୍ଣପଦକ ଲାଭ କରିଥିଲେ। ତାଙ୍କର ସୃଷ୍ଟିସମ୍ଭାର 'ଭାଷା ବିଜ୍ଞାନର ରୂପରେଖ', 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ', ଅଳଙ୍କାର ତତ୍ତ୍ୱ, ସାହିତ୍ୟିକ ଦିଗ୍‌ଦର୍ଶନ, ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା, ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ ସମାଜ ସଂହତି, ଓଡ଼ିଆ ଶବ୍ଦର ବ୍ୟୁତ୍ପତ୍ତି ବିଜ୍ଞାନ ସିଂହାସନ, ପ୍ରଣୟ ବାରିଧି, ଅନନ୍ୟ, ବିବର୍ଣ୍ଣ ପୃଥିବୀ, ଦୂର ଗାଁ ନଈ; ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ, ଓଡ଼ିଆ ଭାଷାର ରୂପରେଖ। ପ୍ରଫେସର ସାହୁ ଥିଲେ ଓଡ଼ିଶାର ଖ୍ୟାତନାମା ଭାଷାତତ୍ତ୍ୱବିତ୍ ଓ ଗବେଷକ। ଡକ୍ଟର ବାସୁଦେବ ସାହୁ ଝଙ୍କାରରେ ପ୍ରକାଶିତ ତାଙ୍କର ପ୍ରବନ୍ଧ ପାଇଁ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ପ୍ରଜାତନ୍ତ୍ରର ବିଷୁବ ମିଳନରେ ଶ୍ରେଷ୍ଠ ପ୍ରାବନ୍ଧିକ ପୁରସ୍କାର ପାଇଥିଲେ। କେନ୍ଦ୍ର, ରାଜ୍ୟ ସାହିତ୍ୟ ଅନୁଷ୍ଠାନମାନଙ୍କରୁ ଅନେକ ଅନେକ ସମ୍ମାନପତ୍ର ପାଇବାର ଅଧିକାରୀ ଥିଲେ ଡକ୍ଟର ସାହୁ ମହୋଦୟ। ସେ ନୟାଗଡ଼ର ଗର୍ବ ଗୌରବ ପୁରୁଷ।

<u>ଗୀତିକଣ୍ଠ ହରିଶ ପ୍ରଧାନ :</u> ଗୀତିକଣ୍ଠ ହରିଶ ପ୍ରଧାନ ଓଡ଼ଗାଁ ବ୍ଲକ୍ ବାଣ୍ଟପୁର ପଞ୍ଚାୟତ ଅଧୀନସ୍ଥ ବୁଢ଼ାବୁଢ଼ୀଆଣୀ ଡ୍ୟାମର ଦକ୍ଷିଣାଞ୍ଚଳ ଘଞ୍ଚ ଆରଣ୍ୟକ ପୃଷ୍ଠଭୂମିରେ ଅବସ୍ଥିତ ଆଦିବାସୀ ଗାଁ ଓସ୍ତିଆରେ ପିତା ନରସିଂହ ପ୍ରଧାନ ମାତା ସନିମା ପ୍ରଧାନଙ୍କ କୋଳମଣ୍ଡନ କରିଥିଲେ। ହରିଶ ପ୍ରଧାନ ଜୀବନବୀମା କାର୍ଯ୍ୟାଳୟରେ କାର୍ଯ୍ୟରତ। ତାଙ୍କର ଧର୍ମପତ୍ନୀ ପ୍ରମିଳା ପ୍ରଧାନ ଓସ୍ତିଆ ଆବାସିକ ବିଦ୍ୟାଳୟରେ ପ୍ରଧାନ ଶିକ୍ଷୟିତ୍ରୀ ଦାୟିତ୍ୱ ସୁରୁବୁରୂପେ ଚଳାଉଛନ୍ତି।

ଲୁଚିଯାଉଥିବା, ହଜିଯାଉଥିବା ବିଭିନ୍ନ ଦିଗର ତଥ୍ୟାବଳୀକୁ ସ୍ଥାୟୀତ୍ୱ କରିବାରେ ହରିଶ ପ୍ରଧାନ ମହୋଦୟ ବ୍ୟସ୍ତ। ନିଜର ସାଧନା ସଂପାଦନାରେ ପାକ୍ଷିକ

ଖବରକାଗଜ 'ନୟାଗଡ଼ ଦର୍ପଣ' ନୟାଗଡ଼ ଜିଲ୍ଲାରେ ସମ୍ବାଦ ପ୍ରକାଶ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଜନସାଧାରଣଙ୍କ ସମସ୍ୟା, ପିଲାଙ୍କ ଜ୍ଞାନବିଜ୍ଞାନ, ନୟାଗଡ଼ର ଜଣାଶୁଣା ମନୀଷିମାନଙ୍କ ପରିଚୟ, ନୂତନ ସାହିତ୍ୟିକ ପୀଢ଼ିଙ୍କୁ ଉତ୍ସାହ, ପରିବେଶ ସୁରକ୍ଷା ଓ ସ୍ୱାସ୍ଥ୍ୟ ପରିମଳ ବ୍ୟବସ୍ଥା ଫଟୋଚିତ୍ରକୁ ନେଇ ପ୍ରକାଶ କରିଥାନ୍ତି । ତାଙ୍କର 'ନୟାଗଡ଼ ଦର୍ପଣ' ଜିଲ୍ଲା ତଥା ରାଜ୍ୟରେ ବେଶ୍ ଜନାଦୃତ ।

ଶ୍ରୀଯୁକ୍ତ ହରିଶ ପ୍ରଧାନ ଗୀତିକାର, ସଂଗୀତକାର ନିଜେ ମଧୁର ସଂଗୀତ ଗୀତ ଗାନ କରନ୍ତି । ତାଙ୍କର ସୃଷ୍ଟି 'ନୟାଗଡ଼ ପୁରାଣ (ଋଳବ ଖଣ୍ଡ), ନୟାଗଡ଼ ଜଣାଅଜଣା ଉପରେ ଆଧାରିତ 'ନୟାଗଡ଼ ଜ୍ଞାନ' ନୟାଗଡ଼ ମାଟି ମହକର ସ୍ୱର ।

ହରିଶ ପ୍ରଧାନ ମହୋଦୟ ନିଜର ପ୍ରକାଶନୀ ନୟାଗଡ଼ ଦର୍ପଣ ମାଧ୍ୟମରେ ପୁସ୍ତକ ମୁଦ୍ରଣକାରୀ ବନ୍ଧୁଟିଏ । ଶ୍ରୀଯୁକ୍ତ ପ୍ରଧାନ ମହୋଦୟଙ୍କ ନୟାଗଡ଼ ଦର୍ପଣର କାର୍ଯ୍ୟାଳୟ ନୟାଗଡ଼ରେ ଅବସ୍ଥିତ ତାଙ୍କର ନିଜ ବାସଭବନ ପି.ଟି.ଏସ୍. ମାର୍ଗରେ । ସମାଜସେବାରେ ନୟାଗଡ଼ ଦର୍ପଣକୁ ଉଜ୍ଜୀବିତ କରି ରଖିବା ତାଙ୍କର ମୁଖ୍ୟ ପ୍ରଚେଷ୍ଟା । ନୟାଗଡ଼ ଜିଲ୍ଲାର ଜଣେ ଯୁବପ୍ରତିଭା ।

<u>ନୟାଗଡ଼ର ପଣ୍ଡିତ ଗାଁ ବିନାୟକପୁର ଶାସନ :</u> ନୟାଗଡ଼ର ପଣ୍ଡିତ ଗାଁ ହେଉଛି ବିନାୟକପୁର । ଏହି ଗାଁ'ର ସମସ୍ତେ ନୈଷ୍ଠିକ ବ୍ରାହ୍ମଣ ପରିବାର । ସବୁ ପରିବାରରେ ସଂସ୍କୃତ ପଣ୍ଡିତ ଅଛନ୍ତି । ବିନାୟକପୁର ସଂସ୍କୃତ ପଣ୍ଡିତମାନେ ଓଡ଼ିଶାର ବହୁ ଉଚ୍ଚବିଦ୍ୟାଳୟମାନଙ୍କରେ ସଂସ୍କୃତ ପଣ୍ଡିତ ଭାବେ ଶିକ୍ଷାଦାନ ଦେଇଛନ୍ତି । ବିନାୟକପୁରରେ କେବଳ ବ୍ରାହ୍ମଣ ପରିବାର ବାସକରନ୍ତି । ତାଙ୍କ ଜମିବାଡ଼ିରେ ଲୋକମାନେ ଆସି କାମ କରନ୍ତି । ପଣ୍ଡିତ ଗାଁ' ଭାବରେ ଏ ଗାଁ' ନାଁ ନୟାଗଡ଼ରେ ରହିଛି ।

ପ୍ରାଧ୍ୟାପକ ଉମେଶ ମହାପାତ୍ର ପଣ୍ଡିତ ଗାଁ ବିନାୟକପୁରରେ ଜନ୍ମଗ୍ରହଣ କରିଛନ୍ତି । ସେ ମହୋଦୟଙ୍କର ଶରଣକୁଳ ମହାବିଦ୍ୟାଳୟ ଗଢ଼ିବାରେ ଅବଦାନ ରହିଛି । ସେ ଜଗନ୍ନାଥଙ୍କର ଅନେକ ଭଜନ ପୁସ୍ତିକାମାନଙ୍କରେ ସଂକଳିତ କରିଛନ୍ତି । ତାଙ୍କର ଭଜନ ପୁସ୍ତକ ଶ୍ରୀମୁଖ, ପ୍ରଭୁ ଚରଣେ, ପଦ୍ୟ ଅମୃତ, ଚକାଆଖି, ପଦ୍ୟକୈବଲ୍ୟ, ଶ୍ରଦ୍ଧା ସୁମନ ଆହୁରି କେତେକ ପୁସ୍ତକ ରହିଛି । "THE DUSK OF DREAMS" ଇଂରାଜୀ କବିତାର ପୁସ୍ତକ ପ୍ରକାଶିତ ହୋଇଥିଲା । ତାଙ୍କର କବିତାଗୁଡ଼ିକ ପ୍ରଭୁ ଜଗନ୍ନାଥଙ୍କୁ ଭକ୍ତିପୁତ ପୁଷ୍ପାଞ୍ଜଳି । ତାଙ୍କୁ ଭକ୍ତକବି କହିଲେ ଭୁଲ୍ ହେବ ନାହିଁ ।

<u>ସାହିତ୍ୟବନ୍ଧୁ ଏମ୍ ଦୀନବନ୍ଧୁ :</u> ଏମ୍ ଦୀନବନ୍ଧୁ କବି, ଗାଳ୍ପିକ, ପ୍ରାବନ୍ଧିକ, ଶିଶୁ ସାହିତ୍ୟିକ ଭାବେ ସୁପରିଚିତ । କବିଙ୍କର ବାସସ୍ଥାନ ତୁଳସୀ ନଗର ଶରଣକୁଳ । ସେ ଜଣେ ଆଦର୍ଶ ଶିକ୍ଷକ ତଥା ଦୃଢ଼ ସଂଗଠକ । ସାହିତ୍ୟିକମାନଙ୍କୁ ଏକାଠି

କରିବାରେ ତାଙ୍କର ଆନନ୍ଦ। ସମ୍ବର୍ଦ୍ଧନା ପରିବାର ଗଠନର ଗୁରୁଭାର ବହନ କରି ସାହିତ୍ୟ ସଭା ଡକାଇ କବି, କବୟିତ୍ରୀମାନଙ୍କ ଆସର ଜମାଇଥାନ୍ତି। କବିଙ୍କର କବିତା ପୁସ୍ତକଗୁଡ଼ିକ- ମୋହବନ୍ଧ, ଭିଜାମନ, ଅଲୋଡ଼ା ସପନ, ଶୂନ୍ୟତାର ପ୍ରତିଛବି।

**ସାଧନାର ତପସ୍ୱିନୀ ସାହିତ୍ୟ ସେବୀକା ଉଷାମଣୀ ମିଶ୍ର :** ସାହିତ୍ୟ ପୂଜାରିଣୀ ଉଷାମଣୀ ମିଶ୍ର ବୃତ୍ତିରେ ଶିକ୍ଷୟିତ୍ରୀ। ସେ ନିଜେ ଏକ ସାହିତ୍ୟ ଅନୁଷ୍ଠାନ। ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇ ମଧ ସାହିତ୍ୟକୁ ହାତଛଡ଼ା କରିନାହାନ୍ତି। ତାଙ୍କ ସଂପାଦନାରେ ବାର୍ଷିକ ପତ୍ରିକା 'ସେତୁବନ୍ଧ' ପ୍ରକାଶ ପାଏ। ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲେଖକମାନଙ୍କଠାରୁ କବିତା, ଗଳ୍ପ, ପ୍ରବନ୍ଧ ସଂଗ୍ରହ କରି ସେତୁବନ୍ଧରେ ପ୍ରକାଶ କରନ୍ତି। ନାରୀ କବି ଉଷାମଣୀ ମିଶ୍ର ତାଙ୍କର ସାହିତ୍ୟ ସେବାର ସଫଳତା ପାଇଁ ସାଧନାର ତପସ୍ୱିନୀ ସାଜିଛନ୍ତି।

**ଶାସ୍ତ୍ରଭୂଷଣ ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟ :** ଶାସ୍ତ୍ରଭୂଷଣ ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟ କଣ୍ଟାବଣିଆ ଶାସନ ଏକ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ୨୬.୦୪.୧୯୨୮ ମସିହାରେ। ସେ ମହାଶୟ କିଶୋର ବୟସରୁ ଶେଷ ବୟସ ପର୍ଯ୍ୟନ୍ତ କର୍ମକାଣ୍ଡ ସାଧନା ଅଭ୍ୟାସ ଜାରି ରଖିଥିଲେ। ବ୍ରାହ୍ମଣର ନୀତିମୟ ଜୀବନଯାତ୍ରା ତାଙ୍କଠାରୁ ଶୁଣିବ ଦେଖିବ। ତାଙ୍କର କୋଷ୍ଠି ଗଣନା ନିର୍ଭୁଲ୍ ଥିଲା। ଦୂରଦୂରାନ୍ତରୁ ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତିତ୍ୱମାନେ ଶିଶୁମାନଙ୍କର ଜାତକ ଗଣନା, ଗୃହନିର୍ମାଣ, ଗୃହ ପ୍ରବେଶ ଏବଂ ଶୁଭକାର୍ଯ୍ୟର ଗଣନା ପାଇଁ ତାଙ୍କର ଦ୍ୱାରସ୍ଥ ହେଉଥିଲେ। ସମସ୍ତେ ତାଙ୍କୁ ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟ କହି ସମ୍ମାନ କରୁଥିଲେ। ଅନେକ ସମୟ ଲେଖକ ତାଙ୍କ ସହିତ ବସିଛନ୍ତି ସେ ମହାଶୟ ବିଶିଷ୍ଟ କବିମାନଙ୍କର ଶ୍ଳୋକ, ଛାନ୍ଦ, ଚଉତିଶା କୋମଳ ମଧୁର ସ୍ୱରରେ ଗାଇ ତା'ର ଭାବାର୍ଥ ସମୀକ୍ଷା କରନ୍ତି। ଦେଖିବାରେ ବହୁ ପୁରୁଷ ସ୍ତ୍ରୀ ତାଙ୍କ ପିଲାମାନଙ୍କର କୋଷ୍ଠି ଗଣନା ତଥା ଗ୍ରହର ଶୁଭଫଳ କାମନା ଗଣନା ପାଇଁ ତାଙ୍କ ନିକଟକୁ ଆସନ୍ତି। ପଣ୍ଡିତଙ୍କର ଖଡ଼ିପକା ଗଣନା ଶୁଭଫଳ ଦିଏ। ଯେଉଁଠି ଯେତେ ଯଜ୍ଞ ଅନୁଷ୍ଠାନ ହୁଏ ସୁଦର୍ଶନ ଆଚାର୍ଯ୍ୟ ମୁଖ୍ୟ ପୁରୋହିତ ଭାବେ ଆମନ୍ତ୍ରିତ ହୁଅନ୍ତି। ତାଙ୍କର ଯଜ୍ଞର ନୀତିନିୟମ ଦେଖି ଉପସ୍ଥିତ ସହଯୋଗୀ ପଣ୍ଡିତମାନେ ତାଙ୍କୁ ତୃତୀୟ ଭାସ୍କର ସମ୍ମାନ ଦିଅନ୍ତି। ସେମାନଙ୍କ ମୁଖବାଣୀ-

ନକ୍ଷତ୍ର ବିଦ୍ୟାବିଷୟେ ସଧୁରୀଣଃ
ପୁରାଣ ଶାସ୍ତ୍ରେ ଷ୍ୱପି ସିଦ୍ଧ ହସ୍ତକ
ସକର୍ମକାଣ୍ଡାଖିଳ ଶାସ୍ତ୍ରଭୂଷଣ
ସୁଦର୍ଶନଃ ଭାତି ସତାଂ ସମାଦୃତ।

ମୂଳ ବାଲ୍ମୀକି ରାମାୟଣ ଉପରେ ସୁଦର୍ଶନ ଆଚାର୍ଯ୍ୟଙ୍କର ପୂର୍ଣ୍ଣ ଦଖଲ ଥିଲା। ମୁକ୍ତକଣ୍ଠରେ ବାଲ୍ମୀକି ରାମାୟଣକୁ ଗାଇଯାଉଥିଲେ। ତାଙ୍କ କଣ୍ଠରୁ ଗୀତାବଳୀ ଶୁଣିଲେ ଉଠି ଯାଇହୁଏନି। ସୁଦର୍ଶନ ଆଚାର୍ଯ୍ୟ କ'ଣ ପଢ଼ିଛନ୍ତି ଜଣାନାହିଁ କିନ୍ତୁ ସମସ୍ତ ପଢ଼ାଲୋକଙ୍କୁ ସେ ପାଠ ପଢ଼ାନ୍ତି।

ସୁଦର୍ଶନ ଆଚାର୍ଯ୍ୟ ଧନବାନ ବ୍ରାହ୍ମଣ ନଥିଲେ କି ଧନ ଉପାର୍ଜନ ଲାଳସା ତାଙ୍କର ନଥିଲା। ଯିଏ ଯାହା ଦେଲା ସେଥିରେ ସେ ସନ୍ତୋଷ। ତାଙ୍କର ଛଅ ପୁଅଙ୍କୁ ନେଇ ଏକ ବଡ଼ ଖର୍ଚ୍ଚି ପରିବାର। ସବୁ ପିଲା ବିଦ୍ୟା ଅର୍ଜନରେ ଧୂରୀଣ। ସମସ୍ତେ ଉଚ୍ଚଶିକ୍ଷା ଲାଭକରି ଯିଏ ଯାହା ପଦବୀରେ ପ୍ରଜ୍ଞାଶୀଳ ପ୍ରବୀଣ-ଉତ୍ତମ ଶିକ୍ଷକ, ଇଂଜିନିୟର, ବୈଜ୍ଞାନିକ, ଆଷ୍ଟ୍ରୋଲୋଜର। ନାତି ନାତୁଣୀ ଦେଶବିଦେଶରେ ଶିକ୍ଷାଲାଭ କରି ନିଜର କର୍ମସଂସ୍ଥାନ ପାଇଁ ବ୍ୟସ୍ତ। ଯୁଗର କି ଆଶ୍ଚର୍ଯ୍ୟ ମଣିଷ ସୁଦର୍ଶନ ଆଚାର୍ଯ୍ୟ ଆଦର୍ଶ ପରିବାରଟିଏ ଗଢ଼ି ତୋଳିଛନ୍ତି। ଏ ହେଉଛି ଆଚାର୍ଯ୍ୟଙ୍କର ଶାସ୍ତ୍ରଜ୍ଞାନ ପାରଦର୍ଶିତାର ସୁଫଳ।

ଭାରି ନିଷ୍ଠାବାନ ବ୍ରାହ୍ମଣ ସୁଦର୍ଶନ ଆଚାର୍ଯ୍ୟ। ତାଙ୍କର ଗୋଟିଏ ଉଦାହରଣରୁ ପରିଲକ୍ଷିତ ହୁଏ- ଲଡୁବାବାଙ୍କର ପ୍ରଥମ ଯଜ୍ଞର ପ୍ରଥମ ରାତ୍ରର ବ୍ରାହ୍ମଣ ଭୋଜନ ସମୟେ ଖାଦ୍ୟ ପରିବେଷଣ କରୁଥିବା ବ୍ୟକ୍ତିଙ୍କର ଖଲିର ଡାହାଣପଟେ ଲୁଣ ପରଷା ଦେଖି ଆଚାର୍ଯ୍ୟେ କହିଲେ- "ଅଚ୍ଛିନ୍ନ କଦଳୀ ପତ୍ରଂ ତର୍ଜନ୍ୟା ଦନ୍ତ ଧାବନଂ ଦକ୍ଷିଣେ ଲବଣଂ ଦଦ୍ୟାତ୍ ସଦ୍ୟ ଗୋମାଂସ ଭକ୍ଷଣଂ" କହି ସୁଦର୍ଶନ ଆଚାର୍ଯ୍ୟେ ଖଲିପତ୍ରଟି ବାମପଟକୁ ବୁଲାଇ ଦେଲେ। ଏହା ଦେଖି ଅନ୍ୟ ପୁରୋଧାମାନେ ନିଜ ନିଜର ଖଲିର ଦିଗ ପରିବର୍ତ୍ତନ କରିଥିଲେ। ବୟସ ଶେଷ ସମୟ ପର୍ଯ୍ୟନ୍ତ ସୁଦର୍ଶନ ଆଚାର୍ଯ୍ୟ କର୍ମ ସଂପାଦନ ବଜାୟ ରଖି ୧୭.୧.୨୦୧୮ରେ ଇହଲୀଳା ତ୍ୟାଗ କରିଥିଲେ ନବେ ବର୍ଷ ବୟସରେ। ସୁଦର୍ଶନ ଆଚାର୍ଯ୍ୟଙ୍କ ମୃତ୍ୟୁ ପରେ ତାଙ୍କର ମଧ୍ୟମ ପୁତ୍ର ଶ୍ରୀୟାକାନ୍ତ ଆଚାର୍ଯ୍ୟ ନନାଙ୍କର ବ୍ରତ ସାଧନକୁ ଅନୁସରଣ କରିଚାଲିଛନ୍ତି।

ଉତ୍କଳ ମାଟି ରଙ୍ଗଣୀପାଟଣା : ରଙ୍ଗଣୀପାଟଣା ମାଟି ବହୁ ବିଜ୍ଞ ଗୁଣୀ ବ୍ୟକ୍ତିଙ୍କୁ ଜନ୍ମ ଦେଇଛି। ଏ ମାଟିରେ ଓଡ଼ିଆ ଭାଷାବିତ୍ ଡକ୍ଟର ବାସୁଦେବ ସାହୁ, ପରିବେଶବିତ୍ ପଦ୍ମଶ୍ରୀ ରାଧାମୋହନ ଏବଂ ଅନେକ ପ୍ରଜ୍ଞାଶାଳୀ ବ୍ୟକ୍ତି, ସମାଜସେବୀ ଡାକ୍ତରଙ୍କୁ କୋଳରେ ଧରିଛି। ଏ ମାଟି ଶସ୍ୟଶ୍ୟାମଳା, ପରିବା ବଗିଚାର ମାଟି। ଓଡ଼ିଶା ବଜାରକୁ ପ୍ରଚୁର ପନିପରିବା ଯୋଗାଇବାର ମାଟି।

ପରିବେଶବିତ୍, କୃଷିବିତ୍ ଓ ଅର୍ଥନୀତିଜ୍ଞ ପଦ୍ମଶ୍ରୀ ପ୍ରଫେସର ରାଧାମୋହନ : ଗାନ୍ଧିବାଦୀ, ସମାଜସେବୀ, ବୈପ୍ଳବିକ, ଅର୍ଥନୀତିଜ୍ଞ, ପରିବେଶବିତ୍, ବୈଜ୍ଞାନିକ ପଦ୍ମଶ୍ରୀ ପ୍ରଫେସର ରାଧାମୋହନ ନୟାଗଡ଼ ଜିଲ୍ଲାର ଓଡ଼ଗାଁ ବ୍ଲକ୍ ନିକଟସ୍ଥ



ରଙ୍ଗଣୀପାଟଣା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ରଙ୍ଗଣୀପାଟଣା ବସତି ନୟାଗଡ଼ର ଏକ ରତ୍ନମାଟିର ଅଗଣା ଖଣ୍ଡେ। ଏଇ ଗାଁ ବହୁ ଗୁଣୀ ବିଜ୍ଞ ସନ୍ତାନଙ୍କୁ ଜନ୍ମ ଦେଇଛି- ଡକ୍ଟର ବାସୁଦେବ ସାହୁ, ବୈଜ୍ଞାନିକ ରାଧାମୋହନ ବହୁ ଇଞ୍ଜିନିୟର, ଚିକିତ୍ସକମାନଙ୍କୁ। ରାଧାମୋହନ ଅର୍ଥନୀତି ବିଭାଗର ପ୍ରଫେସର, ପୁରୀ ଏସ୍.ସି.ଏସ୍ କଲେଜର ଅଧ୍ୟକ୍ଷ ପଦ ସଂପାଦନ କରିଥିଲେ ଓ ଅବସର ଅନ୍ତେ ରାଜ୍ୟ ସୂଚନା କମିଶନର ଭାବେ କାର୍ଯ୍ୟରତ ଥିଲେ। ସୁନ୍ଦର ପରିବେଶର ସୁରକ୍ଷା ତଥା ଜନ ଉଦ୍ୟୋଗ ମାଧ୍ୟମରେ ବୃକ୍ଷରୋପଣ କରାଇ ନୂତନ ପରିବେଶ ସୃଷ୍ଟି କରାଇବା, ଜଙ୍ଗଲ ସୁରକ୍ଷାରେ ବୈପ୍ଳବିକ ଅଭିଯାନ ଚଳାଇ ସଫଳତା ଅର୍ଜନ କରିଥିଲେ। ଜୈବ କୃଷି ପଦ୍ଧତିରେ ସହଜ ସରଳ ସୁଗମ ମାର୍ଗରେ କୃଷିର ବିକାଶ ଘଟାଇ କୃଷକଙ୍କୁ ଶସ୍ୟ ଅମଳ କରିବାର ଦିଗ ଦର୍ଶାଇଥିଲେ। ଏ କ୍ଷେତ୍ରରେ ତାଙ୍କର ସୁକନ୍ୟା ସାବରମତିକୁ ନିୟୋଜିତ କରିଥିଲେ।

ପରିବେଶ ଓ କୃଷି ବିକାଶର ନମୁନା ପାଇଁ ପ୍ରଫେସର ରାଧାମୋହନ ନିଜର ମାଙ୍କଡ଼ାପଥର ଟାଙ୍ଗରା ଭୂମି କୋମଣ୍ଡ ରୋଇବାଙ୍କ ମଧ୍ୟରେ ସୁନ୍ଦର ଆରଣ୍ୟକ ପରିବେଶ ସୃଷ୍ଟି କରି ତା' ମଧ୍ୟରେ ଜୈବକୃଷି ପ୍ରଣାଳୀରେ ଉନ୍ନତ ଶସ୍ୟକ୍ଷେତ୍ର ସୃଷ୍ଟିକରି ତାହା ସମ୍ଭବ ସେବାଶ୍ରମ ନାମରେ ପଞ୍ଜିକୃତ କରିଥିଲେ। ଏହି ପରିବେଶ ମଧ୍ୟରେ ଅସମ୍ଭବ କୃଷି ପ୍ରଚେଷ୍ଟାକୁ ସହଜ ସମ୍ଭବ କରି ଦେଖାଇଦେଲେ। ସମ୍ଭବ ମଧ୍ୟରେ ଦେଶୀ ବିଦେଶୀର ବୃକ୍ଷ ଓ ଜୈବିକ ପ୍ରଣାଳୀରେ ଅଧିକ ଅମଳ କୃଷି ଉତ୍ପାଦନ କରାଇ ଲୋକଲୋଚନକୁ ଆଣିଲେ। ସୁନ୍ଦର ପରିବେଶ ସୃଷ୍ଟି କରିବାର ସହଜ ସାଧନା ଏବଂ ଜୈବକୃଷି ବିକାଶରେ ଉଲ୍ଲେଖନୀୟ ଅବଦାନ ପାଇଁ ପ୍ରଫେସର ରାଧାମୋହନ ଏବଂ ତାଙ୍କର ସୁକନ୍ୟା ସାବରମତିକୁ ମିଳିତଭାବେ ଦେଶର ପଦ୍ମଶ୍ରୀ ଭୂଷଣ ଉପାଧିରେ ସମ୍ମାନୀତ କରାଗଲା ୨୦୨୦ ମସିହାରେ।

ପଦ୍ମଶ୍ରୀ ରାଧାମୋହନ ପରିବେଶବିତ୍ ଭାବରେ ଜଣେ ଆନ୍ତର୍ଜାତୀୟ ଖ୍ୟାତିସଂପନ୍ନ ବ୍ୟକ୍ତି। ସେ ଦେଶବିଦେଶ ଭ୍ରମଣ କରି ପରିବେଶ ଅନୁଧ୍ୟାନ କରୁଥିଲେ। ସେ କୋରାପୁଟ ଆରଣ୍ୟକ ଭୂମି ପରିଦର୍ଶନରେ କେତେକ ସାଥୀଙ୍କ ଗହଣରେ ମୁନିଗୁଡ଼ା ଅଞ୍ଚଳ ପରିଦର୍ଶନ କରିଥିଲେ। ଆରଣ୍ୟକ ଭୂମିରେ ଆମ୍ବ, ପଣସ ଆଦି ଫଳ ବୃକ୍ଷମାନଙ୍କୁ ଦେଖି ପ୍ରକୃତି କ'ଣ ନ ଦେଇଛି ମାନବଜାତିକୁ। ସେଠାକାର ଲୋକ ଗହଣରେ ପ୍ରଶ୍ନ କରିଥିଲେ -'ଏପରି ପରିବେଶ ସୃଷ୍ଟି

କରିହେବନି ?' ଉତ୍ତର ମିଳିଥିଲା ସବୁ ମାଟିରେ ଏପରିକା ବୃକ୍ଷ ଉତ୍ତାରି ହେବନି । ସେ ହସି କହିଥିଲେ ସବୁ ମାଟିରେ ହୋଇପାରିବ କରିବାର ଉତ୍ସାହ ଥିଲେ ହେଲା । ମାଟିର ଦୋଷ ନୁହେଁ ମଣିଷର ଅପାରଗ ଦୋଷ । ଏ ପ୍ରଶ୍ନର ସମାଧାନ କରି ଦେଖାଇ ଦେଇଥିଲେ ତାଙ୍କ ପ୍ରତିଷ୍ଠିତ 'ସମ୍ଭବ' ପରିବେଶ ମଧ୍ୟରେ । ସମ୍ଭବ ଭଳି ଟାଙ୍ଗରାଭୂମିରେ ବିଭିନ୍ନ ବୃକ୍ଷରାଜି ଗଛପତ୍ର ମେଲାଇ ଦୋହଲୁଛନ୍ତି ।

ପ୍ରଫେସର ରାଧାମୋହନ ରାଜ୍ୟର ସୂଚନା କମିଶନର ଭାବେ କାର୍ଯ୍ୟରତ ଥିବାବେଳେ ସୂଚନା ଅଧିକାର ଆଇନକୁ ଲୋକପ୍ରିୟ କରାଇବାରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପ୍ରତି ଜିଲ୍ଲାର ଗାଁ ଗାଁ ବୁଲି ଲୋକଙ୍କୁ ସୂଚନା ଅଧିକାର ଆଇନ ସଂପର୍କରେ ବୁଝାଉଥିଲେ । ଗ୍ରାମୀଣ ଅର୍ଥନୀତିର ସୁଦୃଢ଼ୀକରଣ ପାଇଁ ସଦା ତାଙ୍କ ଉଦ୍ୟମ ଜାରି ରହିଥିଲା । ଲୋକଙ୍କର ବିଭିନ୍ନ ସମସ୍ୟା କିପରି ସମାଧାନ କରାଯାଇପାରିବ ସେ ନେଇ ପ୍ରୟାସୀ ଥିଲେ । ପରିବେଶ ସୁରକ୍ଷା, ଜଙ୍ଗଲ ସୁରକ୍ଷା, ଜଳ ସଂରକ୍ଷଣ ଦିଗରେ ଜନସଚେତନତା ସୃଷ୍ଟି କରିବାରେ ନିଜକୁ ସାମିଲ୍ କରିପାରିଥିଲେ । ଏତେ ବଡ଼ ଗାନ୍ଧିବାଦୀ ସମାଜସେବୀ ନିଷ୍କପଟ ସରଳ ମଣିଷ ଆଗରେ ସମସ୍ତଙ୍କ ମଥା ନଇଁ ପଡୁଥିଲା ।

ପଦ୍ମଶ୍ରୀ ପ୍ରଫେସର ରାଧାମୋହନଙ୍କର ୧୧.୬.୨୦୨୧ ତାରିଖରେ ଦେହାନ୍ତ ଘଟିଥିଲା । ଦେହାନ୍ତ ବେଳକୁ ତାଙ୍କୁ ୭୮ ବର୍ଷ ବୟସ ହୋଇଥିଲା । ତାଙ୍କର ଦେହାନ୍ତରେ ଦେଶରେ ଶୋକଛାୟା ଖେଳିଯାଇଥିଲା । ଦେଶର ଗାର୍ଡ଼ ଅଫ୍ ଅନର ଦିଆଯାଇ ତାଙ୍କର ଶେଷକୃତ୍ୟ ସମ୍ପନ୍ନ କରାଯାଇଥିଲା । ତାଙ୍କର କନ୍ୟା ପଦ୍ମଶ୍ରୀ ସାବରମତି ମୁଖାଗ୍ନି ଦେଇଥିଲେ ।

ରାଧାମୋହନଙ୍କ ଦେହାନ୍ତରେ ଦେଶର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଶୋକବାର୍ତ୍ତାରେ କହିଛନ୍ତି- "ରାଧାମୋହନ କୃଷି ପ୍ରତି ସମର୍ପିତ ଥିଲେ । ବିଶେଷକରି ଦୀର୍ଘସ୍ଥାୟୀ ଜୈବିକ ଚାଷ ପ୍ରତି ସେ ସର୍ବଦା ଗୁରୁତ୍ୱ ଦେଉଥିଲେ । ଅର୍ଥନୀତି ଏବଂ ପରିବେଶ ପାଇଁ ସେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ ।" ରାଜ୍ୟପାଳ ଗଣେଶୀ ଲାଲ ଦୁଃଖପ୍ରକାଶ କରି କହିଛନ୍ତି, "ତାଙ୍କର ଅନନ୍ୟ ଜୈବିକ କୃଷି କୌଶଳ ପାଇଁ ସେ ଚିର ସ୍ମରଣୀୟ ହୋଇ ରହିବେ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଶୋକର ବାର୍ତ୍ତାରେ 'ରାଧାମୋହନ ଜଣେ ବିଶିଷ୍ଟ ପରିବେଶବିତ୍ ତଥା ଅର୍ଥନୀତିଜ୍ଞଙ୍କୁ ରାଜ୍ୟ ହରାଇଲା । ଆନ୍ଧ୍ରପ୍ରଦେଶ ରାଜ୍ୟପାଳ ବିଶ୍ୱଭୂଷଣ ହରିଚନ୍ଦନ ଶୋକବାର୍ତ୍ତା ଜଣାଇଛନ୍ତି- "ରାଧାମୋହନଙ୍କ ବିୟୋଗ ଓଡ଼ିଶାର ଜୈବିକ କୃଷିକ୍ଷେତ୍ରରେ ଅପୂରଣୀୟ କ୍ଷତି । ସେ ଥିଲେ ଜଣେ ବିଶିଷ୍ଟ ଗାନ୍ଧିବାଦୀ ନେତା, ସମାଜସେବୀ, ସ୍ତମ୍ଭକାର ଓ ବୈପ୍ଳବିକ ଚାଷୀ ।"

ଏତେ ବଡ଼ ମହାମାନ୍ୟ ସନ୍ତାନ ପଦ୍ମଶ୍ରୀ ପ୍ରଫେସର ରାଧାମୋହନଙ୍କୁ ପାଇ କେବଳ ରଙ୍ଗଣୀପାଟଣା ଧନ୍ୟ ନୁହେଁ ନୟାଗଡ଼ ଗର୍ବ କରେ ।

**ଶିକ୍ଷା ପ୍ରସାରର ବନ୍ଧୁ ଭୀମସେନ ରାଉତ :** ଅଞ୍ଚଳରେ ଶିକ୍ଷା ପ୍ରସାରର ବନ୍ଧୁ ଭୀମସେନ ରାଉତ ଓଡ଼ଗାଁ ନିକଟସ୍ଥ ଆମ୍ବରାପୁର ଗ୍ରାମରେ ଜନ୍ମ ହୋଇଥିଲେ । ସେ ଆମ୍ବରାପୁରର ସମ୍ଭ୍ରାନ୍ତ ଋଷୀ ପରିବାର ଜଣେ ଜଣାଶୁଣା ଲୋକ । ସ୍ୱାଧୀନତାର ପରବର୍ତ୍ତୀ ଦ୍ୱିତୀୟ ଦଶନ୍ଧି ମଧ୍ୟରେ ଓଡ଼ଗାଁ ବ୍ଲକ୍ ମଧ୍ୟରେ ନାରାୟଣ ଉଚ୍ଚବିଦ୍ୟାଳୟ ଶରଣକୁଳ ଏବଂ ଦୂରାନ୍ତରେ ରଘୁନାଥ ଉଚ୍ଚ ବିଦ୍ୟାପୀଠ ଓଡ଼ଗାଁ ମଧ୍ୟରେ ଅନ୍ୟ ଉଚ୍ଚବିଦ୍ୟାଳୟ ନଥିଲା । ଅଞ୍ଚଳବାସୀ ଶରଧାପୁର ପଞ୍ଚାୟତବାସୀଙ୍କ ଦ୍ୱାରା ପ୍ରଭାବିତ ହୋଇ ନିଜ ଅର୍ଥଦାନରେ ଭୀମସେନ ବିଦ୍ୟାପୀଠ ବିନାୟକପୁର ଗଢ଼ିଥିଲେ । ଏ ଅଞ୍ଚଳ ତଥା ପଡ଼ୋଶୀ ଅଞ୍ଚଳର ବହୁ ଛାତ୍ରୀଛାତ୍ର ପ୍ରବେଶିକା ପରୀକ୍ଷା ପ୍ରମାଣପତ୍ର ହାସଲ କରି ଉଚ୍ଚଶିକ୍ଷାର ଅଧିକାରୀ ହୋଇପାରିଥିଲେ । ଶିକ୍ଷାପ୍ରେମୀ ଭୀମସେନ ରାଉତ ପୁନଶ୍ଚ ଅଞ୍ଚଳର ଛାତ୍ରୀଛାତ୍ରଙ୍କର ଶୈକ୍ଷିକ ବିକାଶ ସହଜ ପାଇଁ ବାଉଁଶଗାଡ଼ିଆ ବ୍ରାହ୍ମଣଶାସନରେ ଭୀମସେନ ବିଦ୍ୟାପୀଠ ବାଉଁଶଗାଡ଼ିଆ ସ୍ଥାପନ କଲେ । ଏବେ ପାଖାପାଖି ଦୁଇଟିଯାକ ଶିକ୍ଷାନୁଷ୍ଠାନ ଅଞ୍ଚଳର ମେଧାବୀ ଛାତ୍ରୀଛାତ୍ରଙ୍କୁ ଉତାରି ଅଞ୍ଚଳର ଶିକ୍ଷାର ବିକାଶ କରିପାରିଛନ୍ତି । ଜଣେ ବ୍ୟକ୍ତି ଦୁଇଟା ଉଚ୍ଚବିଦ୍ୟାଳୟ ଠିଆ କରାଇବା କମ୍ ଗୌରବର କଥା ନୁହେଁ । ଭୀମସେନ ରାଉତଙ୍କ ମରଶରୀର ମାଟିରେ ପାଉଁଶ ହୋଇ ବିଲୀନ ହୋଇଥିଲେ ହେଁ ଏଇ ଦୁଇ ଶିକ୍ଷାନୁଷ୍ଠାନ କର୍ତ୍ତା ଅମର ଅମ୍ଳାନ ଅଲିଭା ଦୀପ ହୋଇ ପ୍ରଜ୍ୱଳିତ ।

**ଦିଅଁଗଣ୍ଡ ଠାକୁରାଣୀ / ବାଉଁଶରାଣୀ ଯାତ୍ରା / ଦିଅଁଗଣ୍ଡ ଜଳପ୍ରପାତ :** ଓଡ଼ଗାଁ ନିକଟସ୍ଥ ସାକେରୀ ଗ୍ରାମର ଉତ୍ତରକୁ ପ୍ରାୟ ୩କି.ମି. ଦୂରରେ ଶୂଳିଆ ପର୍ବତର ଖୋଲ ମଧ୍ୟରେ ଦିଅଁଗଣ୍ଡ କ୍ଷୁଦ୍ର ଜଳପ୍ରପାତ । ଏହି ଗଣ୍ଡର ଦକ୍ଷିଣ ଲମ୍ବିଯାଇଥିବା ପର୍ବତ ମଧ୍ୟରେ ଦୂତୀକେଶ୍ୱର ମହାଦେବଙ୍କ ମନ୍ଦିର । ଗଣ୍ଡର ପଶ୍ଚିମକୁ ନୟାଗଡ଼ ରାଜବଂଶର ପୁରାତନ ରଳବଗଡ଼ । ପର୍ବତ ପାଦଦେଶରେ ଝରଣା ଜଳ ଏହିଠାରେ ଦେବୀ ମସ୍ତକ ସଦୃଶ୍ୟ ସୁନ୍ଦର ଶିଳାକୁ ଆବୋରି ଦୁଇଧାରରେ ୧୫ଫୁଟ ତଳକୁ ଗଦ ଗଦ ନାଦକରି ଖସିପଡ଼ି ଏକ ଜଳଗଣ୍ଡ ସୃଷ୍ଟି କରିଛି । ଖସିପଡୁଥିବା ଜଳଧାର ଭିତରକୁ ପୂଜକ ସହଜରେ ପୂଜା କରିବାର ଦେବୀର ଆସ୍ଥାନ କୋରଡ଼ ରହିଛି । କୋରଡ଼ ଭିତରେ ଦିଅଁଗଣ୍ଡ ଠାକୁରାଣୀଙ୍କର ପୂଜା କରାଯାଏ । ଦେବୀ ଛାଗବଳୀ ଖାଏ । ଦେବୀ କୃପାରୁ ପୁତ୍ର କନ୍ୟା ଲାଭ କରିଥିବା ଦମ୍ପତି ତାଙ୍କର ମାନସିକ ପୂରଣ ହୋଇଥିବାରୁ ଦେବୀଙ୍କୁ ବୋଦାବଳୀ ପୂଜା ଦାନ କରିଥାନ୍ତି । ଏହାର ପୂଜକ ହେଲେ ସାକେରୀ ଗ୍ରାମର ବିହୁଡ଼ି ସଂପ୍ରଦାୟର ଜନଜାତି ।

ପୌଷପୂର୍ଣ୍ଣମୀ ପରଦିନ ଦିଅଁଗଣ୍ଡ ଠାକୁରାଣୀଙ୍କର ଯାତ୍ରା ଉତ୍ସବ । ଏହିଦିନ ଦୁଇଟି ବାଉଁଶକୁ ଗୋଟିଏ ମୁଣ୍ଡରେ ଯୋଡ଼ିଦେଇ ବାଉଁଶର ଶୀର୍ଷରେ ଠାକୁରାଣୀ ଶାଢ଼ୀ ଘେରଦେଇ ଦୁଇ କାଠିକୁ ପିନ୍ଧାଇ ସଜାଇଥାନ୍ତି । ବିହୁଡ଼ି ଦେବୀଙ୍କର ପୂଜା

କରେ। କାଠି ଠାକୁରାଣୀ ବାଉଁଶରାଣୀ ବେଶରେ ଉଭା ହୁଏ। ଢୋଲ, ଝାଞ୍ଜ, କାହାଳୀ ଶବ୍ଦରେ ବନଭୂମି ନିନାଦିତ। ବାଉଁଶରାଣୀକୁ ଧରିଥିବା ଲୋକମାନେ ଉନ୍ମତ୍ତ ହୋଇ ନାଚି ନାଚି ସାକେରୀ ଗ୍ରାମକୁ ପ୍ରବେଶ କରନ୍ତି। ବାଉଁଶରାଣୀ ନାଚ ଖୁବ୍ ଚିତ୍ତାକର୍ଷକ ଦୃଶ୍ୟ। ଆଖପାଖ ଗ୍ରାମର ନରନାରୀ କାଠି ଠାକୁରାଣୀ ଯାତ୍ରା ଦେଖିବାକୁ ସାକେରୀରେ ସମାବେଶ ହୁଅନ୍ତି।

ଶୀତଋତୁ, ବସନ୍ତ ଋତୁରେ ଏ ଜଳପ୍ରପାତର ଦୃଶ୍ୟ ଅତୀବ ମନୋହର। ବଣଭୋଜିର ଏକ ରମଣୀୟ ସ୍ଥାନ।

ଭଣ୍ଡାର ପାହାଡ଼ ପୂର୍ବ ସମତଳଭୂମି - ଶୈବପୀଠ : ଭଣ୍ଡାର ପାହାଡ଼ ଏବଂ ବରଡ଼ା ପାହାଡ଼ର ମଧ୍ୟବର୍ତ୍ତୀ ସମତଳଭୂମି ରତ୍ନମାଳା ପର୍ବତର ଗୋଛା ମାଳଭୂମି ପର୍ଯ୍ୟନ୍ତ ବିସ୍ତାର ସମତଳ ଅଞ୍ଚଳ। ଏ ଅଞ୍ଚଳରେ କୁସୁମୀ ଦୁଆଣ୍ଟ ନାଗଝର ନଦୀ ଜଳଧାରା ପ୍ରବାହିତ। ଏ ସମତଳରେ ନୟାଗଡ଼ର ଶସ୍ୟଭୂମି ଚିନାମାଳି ଗହୀର ପ୍ରସାରୀ ରହିଛି। ଚିନାମାଳ ଗହୀର ଧାନ, ମୁଗ, ଚଣା ଫସଲର ଗହୀର ନୟାଗଡ଼ ଜିଲ୍ଲାର ସର୍ବବୃହତ୍ ଶସ୍ୟଶାଳୀ ଗହୀର।

<u>ସ୍ୱର୍ଣ୍ଣ ତ୍ରିଭୁଜର ଶକ୍ତିପୀଠ :</u> ଚିନାମାଳ ଗହୀର ମଧ୍ୟରେ ଭଣ୍ଡାର ପାହାଡ଼ ପାଦଦେଶରେ ପ୍ରସିଦ୍ଧ ଲଡୁକେଶ ମହାଦେବଙ୍କ ଆବିର୍ଭାବ ଶରଣକୁଳ, ଧାଡ଼ିପାହାଡ଼ ତଳେ ଗୋଡିସାହି ଗ୍ରାମରେ ମୁକ୍ତେଶ୍ୱର ମହାଦେବଙ୍କ ଆବିର୍ଭାବ ଏବଂ କୁସୁମୀ ନଦୀର ଉତ୍ତର ଦାଢ଼ରେ ଗୁଞ୍ଜାବାରଣ ଗ୍ରାମରେ କପିଳେଶ୍ୱର ମହାଦେବ ଆବିର୍ଭାବ। ଚିନାମାଳି ଗହୀର ମଧ୍ୟରେ ସମଦୂରତା ବିଶିଷ୍ଟ ଏକ ତ୍ରିଭୁଜର ଶୀର୍ଷକୋଣମାନଙ୍କରେ ମୁକ୍ତେଶ୍ୱର ମହାଦେବ, କପିଳେଶ୍ୱର ମହାଦେବ, ଲଡୁକେଶ୍ୱର ମହାଦେବ ବିଜେ କରିଛନ୍ତି। ତିନି ଠାକୁରଙ୍କର ସୁନ୍ଦର ମନ୍ଦିର ବେଢ଼ା ରହିଛି। ଶିବରାତ୍ରି ଦିନ ଏ ତିନି ସ୍ଥାନରେ ଭକ୍ତମାନେ ଜାଗର ଜାଳନ୍ତି। ରାସପୂର୍ଣ୍ଣିମା କାର୍ତ୍ତିକରେ ହରଗୌରୀ ବିବାହ ଶୀତଳଷଷ୍ଠୀରେ ବହୁଭକ୍ତଙ୍କର ସମାବେଶ ହୁଏ। ଏଣୁ ଏ ତିନି ଠାକୁରଙ୍କୁ ଏକ ସ୍ୱର୍ଣ୍ଣ ତ୍ରିଭୁଜର ଉଜ୍ଜ୍ୱଳ ବିନ୍ଦୁ ରୂପେ ଧରିହୁଏ। ଏ ତିନି ଠାକୁରଙ୍କୁ ରାଜଦତ୍ତ ଭୂସଂପତ୍ତି ଖଞ୍ଜା କରାଯାଇଛି। ମୁକ୍ତେଶ୍ୱରଙ୍କର ଗୋଡିସାହି ଗ୍ରାମରେ ସାତବାଟି ଜମି, କପିଳେଶ୍ୱରଙ୍କର ସାତବାଟି ଜମି ଗୁଞ୍ଜାବାରଣ ଗ୍ରାମରେ ଏବଂ ଲଡୁବାବା ଶରଣକୁଳଙ୍କର ଏକ ଶହ କୋଡ଼ିଏ ବାଟି ରାଜଖଞ୍ଜା ଜମି ରହିଛି।

ଏ ଠାକୁରଙ୍କର ଐତିହାସିକ ଜନଶ୍ରୁତି ଏହି ଯେ ମୁକ୍ତେଶ୍ୱର ମହାଦେବ ମୁକୁତା ନାମ୍ନୀ ଏକ କନ୍ଧୁଣୀ ଝିଅ ପାଣିଆଳୁ ଖୋଳୁ ଖୋଳୁ ଶିଳାରେ ଖଣତି ଆଘାତ ହୁଅନ୍ତେ ରକ୍ତ ଝରିଆସିଲା। ଏ ଘଟଣା ପ୍ରଘଟ ହେବାରୁ ଶିବଲିଙ୍ଗକୁ ଉଦ୍ଧାର କରାଯାଇ ମହାଦେବଙ୍କର ପୂଜାପାର୍ବଣ ଚାଲିଲା। ଗୋଡିସାହିର ସେକାଳ ଗ୍ରାମବାସୀଙ୍କଠାରୁ ଏଯାବତ୍ ଏ ସୁନ୍ଦର ମନ୍ଦିର ମଧ୍ୟରେ ମୁକ୍ତେଶ୍ୱର ମହାଦେବଙ୍କ

ସେବା ହୋଇଆସୁଛି । କନ୍ଧୁଣୀ ମୁକୁଟା ନାମାନୁସାରେ ମହାଦେବଙ୍କ ନାମ ମୁକ୍ତେଶ୍ୱର ରଖାଯାଇଛି । ଖଣତି ଆଘାତ କ୍ଷତ ଏବେ ବି ପୂଜକ ଦେଖାଇଦିଏ ।

କପିଳେଶ୍ୱର ମହାଦେବଙ୍କ ପୂଜକ ନାରାୟଣ ପଣ୍ଡା କୁହନ୍ତି, କପିଳେଶ୍ୱରଙ୍କ ସ୍ଥାନ ଚାଷ ପଦା ଭୂଇଁ ଥିଲା । କେଉଁତଳ ସମୟରୁ ଲୋକେ କହିଆସୁଛନ୍ତି ଚାଷୀ ହଳ କରୁ କରୁ ଲଙ୍ଗଳମୁନ ପଥରରେ ଆଘାତ ପାଇ ହଳ ହାମୁଡ଼ି ପଡ଼ି ସେଇଠି ଅଟକି ରହିଲେ । ହଳୁଆ ସେ ସ୍ଥାନ ଆଡ଼େଇବାରୁ ପଥର ଦେହରୁ ରକ୍ତ ଛିଟିକା ବାହାରି ଆସିଲା । ଶିଳାର ଶିର ଲଙ୍ଗଳ ମୁନରେ ଚିରି ହୋଇଥିବା ଏବେ ବି ପୂଜକ ଫୁଲ ଆଡ଼େଇ ଦେଖାଇଦିଏ ।

ଲଡୁବାବା : ଲୋକକଥାରେ ଲଡୁବାବାଙ୍କର ଆବିର୍ଭାବ ହରିହରପୁରର ଲଡୁଆ ନାମକ ଗୌଡ଼ କୁସୁମୀ ନଦୀ ପାରକରି ଗାଈଗୋଠ ଭଣ୍ଡାର ପାହାଡ଼କୁ ଚରାଇନିଏ । ଏକ କାଳିଗାଈ ଗୋଠଫିଟା ହୋଇ ଚାଲିଯାଏ । ଘରେ ଏ ଗାଈ କ୍ଷୀର ଅଧିକ ପରିମାଣରେ ଦିଏ ନାହିଁ । ଘର ମାଲିକ ଲଡୁଆକୁ ପଚାରେ । ଏପରିକି ନଦୀରେ ପାଣି ଥିଲାବେଳେ ଏ କାଳିଗାଈଟି ନଦୀ ପହଁରୀ ପାହାଡ଼ ପଟକୁ ଚାଲିଯାଏ । ଦିନେ ଲଡୁ ଗୌଡ଼ ଗାଈର ପିଛା କଲା । ଗାଈଟି ଏକ ଗିଲଲଟା ଭିତରେ ଏକ ଶିଳା ଉପରେ କ୍ଷୀର ଢାଳିବାର ଦେଖିଲା । ତତ୍‌କ୍ଷଣାତ୍ ଗାଈକୁ ବାଡ଼େଇବାରୁ ଗାଈର ଖୁରାଘାତରେ ପଥରରୁ ରକ୍ତ ଛିଟିକି ଆସିଲା । ଲଡୁଆ ଗାଁରେ ଯାଇ ପ୍ରଘଟ କଲା । ସେହିଦିନୁ ଏ ଶିଳାଲିଙ୍ଗ ଲଡୁ ଗୌଡ଼ ନାମ ଧାରଣ କରି ଲଡୁକେଶ୍ୱର ନାମରେ ପୂଜା ପାଉଛନ୍ତି । ଲଡୁବାବାଙ୍କର ଭଣ୍ଡାର ପାହାଡ଼ ତଳେ ବର୍ଗାକାର ଆୟତନର ବେଢ଼ା । ଏହାର ମନ୍ଦିର ବହୁତ ବଡ଼ । ପାର୍ଶ୍ୱ ଦେବାଦେବୀଙ୍କ ପାଇଁ ସୁନ୍ଦର ସୁନ୍ଦର ମନ୍ଦିର ରହିଛି । ଏ ଶିବଲିଙ୍ଗ ବୃହତାକାର ଛତ୍ରଲିଙ୍ଗ । ଏହା ହରିହରଙ୍କ ଯୁଗଳ ଆବିର୍ଭାବ ଶିଳାଲିଙ୍ଗ । ଲିଙ୍ଗରେ ବ୍ରହ୍ମ ପଇତାର ଦାଗ ଚକ୍ରଚିହ୍ନ ଅର୍ଦ୍ଧଚନ୍ଦ୍ରର ଚିହ୍ନ ରହିଛି । ଫୁଲ ବେଲପତ୍ର ତୁଳସୀ ସେବାରେ ଦିଅଁ ପୂଜା ପାଆନ୍ତି ।

ଶରଣକୁଳ ଲଡୁବାବାଙ୍କ ଜାଗର ଯାତ୍ରା : ଶରଣକୁଳ ଲଡୁବାବାଙ୍କ ପୀଠରେ ଶିବରାତ୍ରୀ ଜାଗରଯାତ୍ରା ଓଡ଼ିଶା ପ୍ରସିଦ୍ଧ । ଶିବରାତ୍ରରେ ଲଡୁବାବାଙ୍କ କ୍ଷେତ୍ରରେ ଜାଗର ଜାଳିବା ପାଇଁ ବହୁ ଦୂରଦୂରାନ୍ତରୁ ଭକ୍ତମାନଙ୍କର ସମାବେଶ । ଦୀପ ଆଲୋକରେ ଭଣ୍ଡାର ପାହାଡ଼ ଆଲୋକିତ ହୋଇଉଠେ । ବେଢ଼ା ଭିତରେ ମନ୍ଦିର ବାହାରେ ଠାକୁରଙ୍କର ସରୋବର ଚତୁଃପାର୍ଶ୍ୱରେ ଦୀପର ଆଲୋକଶିଖାରେ କ୍ଷେତ୍ର ଆଲୋକିତ । ଠାକୁରଙ୍କ ବେଢ଼ାରେ ବହୁ ଗୁହାରିଆ ଧୋତି ଘୋଡ଼ାଇ ହୋଇ ମାନସିକ ପୂରଣ ପାଇଁ ପଡ଼ିଥାନ୍ତି । ମଧ୍ୟରାତ୍ରରେ ମନ୍ଦିର ଚୂଡ଼ାରେ ଠାକୁର ବେଢ଼ା ପରିକ୍ରମା ସମୟରେ ତିନି ଧୂପ ଦିଆଯାଏ । ଧୂପଦାନ ସମୟରେ ହରିବୋଲ ହୁଳହୁଳି ଶବ୍ଦରେ କ୍ଷେତ୍ର ପ୍ରକମ୍ପିତ ହୁଏ । ଯାତ୍ରା ପଡ଼ିଆରେ ଦୁଇ ତିନି ଅପେରା ପଡ଼ିଥାଏଁ । କଳାକୁଞ୍ଜ,

ଚିଡ଼ିଆଖାନା, ମଟର ସାଇକେଲ ଖେଳ, ପିଲାଙ୍କର ଦୋଳି, ଚକ୍ରଦୋଳି, ହୋଟେଲ, ବଡ଼ ବଡ଼ କଂସା ପିତଳ ସିଲ୍‌ଭର ବାସନକୁସନ ଦୋକାନ ପନ୍ଦରଦିନ ପର୍ଯ୍ୟନ୍ତ ଶରଣକୁଳ ଶିବରାତ୍ର ଯାତ୍ରା ଅଞ୍ଚଳବାସୀଙ୍କ ପାଇଁ କିଣାବିକାର ବଜାର ପାଲଟିଯାଏ ।

ଚିନାମାଳି ଗହୀର : ଭଣ୍ଡାର ପାହାଡ଼ ଓ ବରଡ଼ା ପାହାଡ଼ ମଧ୍ୟବର୍ତ୍ତୀ ସମତଳ ଉପତ୍ୟକା ଉତ୍ତରରେ ପଦ୍ମାଦେଇପୁର ବ୍ରାହ୍ମଣ ଶାସନଠାରୁ ରତ୍ନମାଳ ପର୍ବତ ପାଦଦେଶ ପର୍ଯ୍ୟନ୍ତ ବିସ୍ତାର ଶସ୍ୟଭୂମି । ଏହି ସମତଳ ଭୂମିର ଦକ୍ଷିଣପାର୍ଶ୍ୱରେ କୁସୁମୀ ଓ ଦୁଆଣ୍ଟ ନଦୀ ନାଗଝର ପ୍ରବାହିତ । ଏ ସମତଳରେ ପ୍ରଚୁର ଧାନ ଚାଷ, ଆଖୁ ଚାଷ କରାଯାଏ । ବିଶେଷକରି ଏହି ଉପତ୍ୟକାରେ ଧାନଚାଷର ଆୟତନ ଅଧିକ । ଏହା ନୟାଗଡ଼ ଜିଲ୍ଲାର ବୃହତ୍ ଶସ୍ୟଭୂମି ।

କୁବେର ଲୋକନାଥ ପ୍ରଧାନ : ଚିନାମାଳି ଗହୀରର ବଡ଼ ସାଉକାର ଲୋକନାଥ ପ୍ରଧାନ । ଲୋକନାଥ ପ୍ରଧାନଙ୍କ ଗ୍ରାମ ହେଉଛି ବଡ଼ ଗୋରଡ଼ା । ତାଙ୍କର ଅନେକ ଧାନ ଅମାର ଥାଏ । ସେ ଅଞ୍ଚଳର ଜଣେ ସାଉ ଖାତକର ଲୋକ । ଥରେ ନୟାଗଡ଼ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଲା । ନୟାଗଡ଼ ରାଜା ଲୋକନାଥଙ୍କୁ ପ୍ରଜାଙ୍କ ପାଇଁ ଧାନ ମାଗିଲେ । ଲୋକନାଥ ପ୍ରଧାନ ସହମତ ପ୍ରଦାନ କଲେ ଆପଣ ଯେତେ ନେଇପାରନ୍ତି । ଲୋକନାଥଙ୍କ ଅମାରରୁ ଧାନ ବୁହାହେଲା ଶେଷ ହୋଇପାରିଲାନି । ରାଜା ଖୁସି ହୋଇ ଲୋକନାଥଙ୍କୁ କୁବେର ଉପାଧି ପ୍ରଦାନ କରିଥିଲେ । ସେହିଦିନୁ ସାଧାରଣ ଲୋକନାଥ ପ୍ରଧାନ କୁବେର ଲୋକନାଥ ନାମେ ପରିଚିତ ।

ଶିମିଳି ଜଳପ୍ରପାତ : ରତ୍ନମାଳ ପର୍ବତମାଳାର ପୂର୍ବ କନ୍ଦରରୁ ଗିରିଝରଣା ସ୍ରୋତ ପଶ୍ଚିମାମୁହାଁ ହୋଇ ଶିଳାଶଯ୍ୟାରୁ ଥାକ ଥାକ ପଡ଼ି ପଡ଼ି ଉତ୍ତରମୁହାଁ ହୋଇ ଆଦିବାସୀ ଗାଁ ଶିମିଳିର ଦକ୍ଷିଣ ମୁଣ୍ଡରେ ଉପତ୍ୟକାକୁ ଗଡ଼ି ଆସେ । ପ୍ରବାହିତ ପଥରେ ଉଚ୍ଚଶିଳା ଶିରରୁ ଗଦ୍‌ଗଦ୍ ନାଦରେ ଅନେକ ଜଳପ୍ରପାତ ଦେଖାଯାଏ । ବର୍ଷା ଋତୁରେ ଏହାର ଜଳପ୍ରବାହ ଭୟଙ୍କର ଏବଂ ଶରତ ଶୀତଋତୁରେ କ୍ରମଶଃ ହ୍ରାସ ପାଏ । କାର୍ତ୍ତିକ ପୌଷରେ ଏ ଜଳପ୍ରପାତର ଦୃଶ୍ୟ ଚିତ୍ତାକର୍ଷକ । ବହୁ ପର୍ଯ୍ୟଟକ ଡିସେମ୍ବର ଜାନୁଆରୀ ମାସରେ ଏଠାରେ ଭିଡ଼ କରନ୍ତି । ଜଳପ୍ରପାତରେ ସ୍ନାନ କରି ବଣଭୋଜି କରନ୍ତି । ଏହି ଜଳପ୍ରପାତର ଧାରା ଜାନୁଆରୀ ପରଠାରୁ କ୍ରମଶଃ କ୍ଷୀଣ ହୋଇଯାଏ । ଏ ପ୍ରପାତର ଜଳଧାରା ବର୍ଷସାରା ନ ରହିଲେହେଁ ଶୀତଋତୁରେ ପର୍ଯ୍ୟଟକଙ୍କୁ ଆକର୍ଷଣ କରେ । ନୟାଗଡ଼ ଜିଲ୍ଲାର ଏ ହେଉଛି ଏକ ବୃହତ୍ ଜଳପ୍ରପାତ । ଆଗରୁ ଏ ସ୍ଥାନ ଅଗମ୍ୟ ଅରଣ୍ୟ ସ୍ଥଳରେ ଲୁକ୍କାୟିତ ହୋଇ ରହିଥିଲା । ଏକବିଂଶ ଶତାବ୍ଦୀର ପ୍ରବେଶ କାଳରୁ ଶିମିଳି ଜଳପ୍ରପାତ ପର୍ଯ୍ୟଟକଙ୍କର ଦୃଷ୍ଟିଆକର୍ଷଣ କରିଅଛି । ଏ ପ୍ରପାତ ସ୍ଥଳକୁ ପ୍ରବେଶ କରିବାର ପଥ ସହଜ ସରଳ ହୋଇଗଲାଣି ।

<u>ଗୋଛା ଅଗ୍ନିଉତ୍ସବ :</u> ମାଘମାସ ପୂର୍ଣ୍ଣମୀ ଓଡ଼ିଶାର ଅଗ୍ନି ଉତ୍ସବର ଦିବସ। ସବୁ ଗାଁ'ରେ ଅଗ୍ନି ଦେବତାଙ୍କୁ ସନ୍ତୁଷ୍ଟ କରିବାପାଇଁ ଗାଁ'ମୁଣ୍ଡରେ ପାଳନଡ଼ା କାଠଗଣ୍ଡି ଜମାକରି ପାଳ ଗଦାର ଚୂଡ଼ାରେ ବାଉଁଶରେ ପତାକା ବାନ୍ଧି ଚାଉଳ ଲୁଣ ସୋରିଷ ପରିବା ପକାଇ ଖୋଳତାଳ ନାଦ ମଧ୍ୟରେ ହରିବୋଲ ଡାକଦେଇ ଅଗ୍ନି ସଂଯୋଗ କରନ୍ତି। ଗାଁ'ରୁ ଅଗ୍ନି ଭୟ ଦୂର ପାଇଁ ଅଗ୍ନି ଦେବତାଙ୍କୁ ପ୍ରାର୍ଥନା କରନ୍ତି। ଗୋଛା ଅଗ୍ନି ଉତ୍ସବର ପ୍ରଥା ଏହାଠାରୁ ନିଆରା ଢଙ୍ଗରେ। ଏହିଦିନ ଗ୍ରାମର ମଧ୍ୟଭାଗରେ ଗ୍ରାମବାସୀ ଜଙ୍ଗଲରୁ ବଡ଼ ବଡ଼ କାଠଗଣ୍ଡି ଦେଉଳ ପରିକା ଜମା କରନ୍ତି। ରାମଚଣ୍ଡୀ ଠାକୁରାଣୀଙ୍କ ଅଗ୍ନି ସଳିତା ଆଣନ୍ତି। ଠାକୁରାଣୀ ବାଉଁଶକାଠିରେ ଉଭା ହୁଅନ୍ତି। ବାଉଁଶକାଠି ପ୍ରାୟତଃ ୨୦ଫୁଟ ଲମ୍ବ। ଝିଅମାନେ ଘେର ପିନ୍ଧିଲା ପରି ବାଉଁଶର ଉପରମୁଣ୍ଡରୁ ତଳିପା ପର୍ଯ୍ୟନ୍ତ ନୂଆ ଶାଢ଼ୀ କୁଞ୍ଚ ଘେର କରିଥାନ୍ତି। ବାଉଁଶକାଠିକୁ ଉର୍ଦ୍ଧ୍ୱମୁଖ କରାଇ ନାଚି ନାଚି ଗ୍ରାମ ପରିକ୍ରମା କରି କାଠଗଦାରେ ଅଗ୍ନି ସଂଯୋଗ କରନ୍ତି। ଠାକୁରାଣୀ ମହିମାରୁ କାଠଗଦା ଜଳିଉଠେ। ପବନରେ ନିଆଁରଡ଼ ଚାଳମାନଙ୍କରେ ଗଡ଼େ ଚାଳ ପୋଡ଼େ ନାହିଁ। ଏ ହେଉଛି ଏ ଅଗ୍ନି ଉତ୍ସବର ଆଶ୍ଚର୍ଯ୍ୟତା। ଦୂରଦୂରାନ୍ତରୁ ଯାତ୍ରୀମାନେ ଏ ଉତ୍ସବରେ ସମବେତ ହୁଅନ୍ତି। ରାତିରେ କଟକୀୟା ଅପେରାର ବ୍ୟବସ୍ଥା ଥାଏ। ଏ ଯାତ୍ରା ବହୁଦିନ ଧରି ରହେ। ରାମଚଣ୍ଡୀଙ୍କଠାରେ ମାନସିକ ବୋଦା କୁକୁଡ଼ା ବଳି ପଡ଼େ। ଆଦିବାସୀ ପରିବାରର ଘରେ ଘରେ ମାଂସ। ଗୋଛାରେ ସବୁ ପରିବାର ବନ୍ଧୁବାନ୍ଧବଙ୍କ ଭିଡ଼।

<u>ଗଡ଼ଗାଁ କାଠି ଠାକୁରାଣୀ ଯାତ୍ରା :</u> ବୁଢ଼ାବୁଢ଼ୀଆଣୀ ଜଳଭଣ୍ଡାର ପାର୍ଶ୍ୱବର୍ତ୍ତୀ ନାଣ୍ଡିଗିରି ନେପାଳ ଅରଣ୍ୟ ମଧ୍ୟବର୍ତ୍ତୀ ଗଡ଼ଗାଁ'ରେ ଦୋଳପୂର୍ଣ୍ଣମୀରେ କାଠି ଠାକୁରାଣୀ ଯାତ୍ରା ହୁଏ। ୨୦ଫୁଟ ଲମ୍ବ ବିଶିଷ୍ଟ ବାଉଁଶକୁ ବିଭିନ୍ନ ରଙ୍ଗର ଶାଢ଼ୀକୁ କୁଞ୍ଚକରି ଘେରେଇ ଦିଆଯାଏ। ସଜ୍ଜିତ ବାଉଁଶରେ ଆଦିବାସୀ ଠାକୁରାଣୀ ଉଭା ହୁଏ। ବାଉଁଶକୁ ଧରି ନାଚି ନାଚି ଠାକୁରାଣୀ ପୀଠରେ ପରିକ୍ରମା ହୁଏ। କାଠି ଠାକୁରାଣୀ ଯାତ୍ରା ଆଦିବାସୀଙ୍କର ମହାନ ପର୍ବ। ଝିଅମାନେ ଘେର ପିନ୍ଧି ନାଚିଲା ପ୍ରାୟକ କାଠିଠାକୁରାଣୀକୁ ନଚା ଯାଉଥାଏ। ଏହି ଅରଣ୍ୟ ମଧ୍ୟସ୍ଥ ବାସକରୁଥିବା ଗୋଛା, ଭବସର, ଓଡ଼ିଆ, ଶିମିଳି, ବାଣ୍ଠପୁର, ନେପାଳ ଗଡ଼ଗାଁ'ର ଆଦିବାସୀମାନେ ସମବେତ ହୋଇ ତମାମ ରାତି ଯାତ୍ରା ଉପଭୋଗ କରନ୍ତି। ଢୋଲ, ଚାଙ୍ଗୁ, କାହାଳୀ, ଝାଞ୍ଜରେ ଗଡ଼ଗାଁ ଦୁଲୁକୁଥାଏ।

<u>ବୁଢ଼ାବୁଢ଼ୀଆଣୀଙ୍କ ଯାତ୍ରା :</u> ବୁଢ଼ାବୁଢ଼ୀଆଣୀ ଜଳଭଣ୍ଡାର ପାଦଦେଶରେ ବୁଢ଼ାବୁଢ଼ୀଆଣୀ ଠାକୁରାଣୀ ବୃହତ୍ ତେନ୍ତୁଳି ବୃକ୍ଷ ମୂଳେ ନିବାସ। ଏହା କନ୍ଧ ଠାକୁରାଣୀ। ବୁଢ଼ାବୁଢ଼ୀଆଣୀ ଠାକୁରାଣୀ ପ୍ରଥମେ ଜଳଭଣ୍ଡାର ମଧ୍ୟବର୍ତ୍ତୀ ଅଞ୍ଚଳରେ ଥିଲେ। ବନ୍ଧ ନିର୍ମାଣ ଯୋଗୁଁ ଠାକୁରାଣୀଙ୍କୁ ବନ୍ଧର ତଳକୁ ସ୍ଥାନାନ୍ତରିତ କରାଯାଇଛି।

ଠାକୁରାଣୀଙ୍କର ବଡ଼ ପର୍ବଦିନ ହେଲା ଅକ୍ଷୟତୃତୀୟା। ଅକ୍ଷୟତୃତୀୟା ବୁଢ଼ାବୁଢ଼ୀଆଣୀ ଠାକୁରାଣୀ ପୀଠରେ ତିନି/ଚାରି ଦିନ ଧରି ବଡ଼ ଧରଣର ଯାତ୍ରା ହୁଏ। ଏ ପୀଠରେ ହଜାର ହଜାର ନାରୀ ପୁରୁଷଙ୍କ ସମାବେଶରେ ଯାତ୍ରା ଗହଳ ହୁଏ। ମନୋରଞ୍ଜନ ପାଇଁ ପ୍ରତିଦିନ ନାଚ ହୁଏ। ଯାତ୍ରୀମାନଙ୍କ ପାଇଁ ଅନ୍ନକୁଟର ବ୍ୟବସ୍ଥା ଥାଏ।

ଓଡ଼ିଶାର ବାଇଗଣ ପରିବାର ଗାଁ କୁଟୁଣୀ : ରତ୍ନମାଳା ପର୍ବତର ଉତ୍ତର ପାର୍ଶ୍ୱକୁ ଛୋଟ ଡୁବୁରୀ ପାହାଡ଼ ପଦାମାନଙ୍କରେ ବାଇଗଣ ଚାଷ ହୁଏ। ବଡ଼କୁଟୁଣୀ, ସାନକୁଟୁଣୀ, ଶିମିଳି, କଜଳାଇ ପଲ୍ଲୀ ପାଣିଭଣ୍ଡାର ଚାଷୀମାନେ କାଳିଗାଈ ପାହାଡ଼ ଡୁବୁରୀ ପାହାଡ଼ ପଦା, ହଳଦାପଦା, କସିପଦା, କୁନିପୋଡ଼ା ପଦା, ଗଞ୍ଜେଇଖାଇ, ଜାମୁଡ଼ିହ, ତରେଇକୁପ ପଦା, ଖମାରଡ଼ିହ, ବରକୋଳି ପଦା, ନାକେଇପଦା, ହାଣ୍ଡିଡିହ ପଦା, ବାଲିବିଲ, ରାମିଆବାରି ପଦାମାନଙ୍କରେ ବର୍ଷାଦିନେ ବାଇଗଣ ଚାଷ କରନ୍ତି। ଦଶହରା ବେଳକୁ ଫସଲ ଅମଳ କରନ୍ତି। ଏତେ ପରିମାଣରେ ବାଇଗଣ ତୋଳାଯାଇଥାଏ ଯେ ଟ୍ରକ୍ ଟ୍ରକ୍ ବାଇଗଣ ବୋଝେଇ ଓଡ଼ିଶାର ପରିବା ବଜାରକୁ ପଠାଯାଏ। କଜଳାଇପଲ୍ଲୀ କୁଟୁଣୀ ଛକରୁ ପର୍ଯ୍ୟାପ୍ତ ପରିମାଣର ବାଇଗଣ ଟ୍ରକମାନଙ୍କରେ ବାଝେଇ ହୁଏ। ଏଣୁ କୁଟୁଣୀକୁ ଓଡ଼ିଶାର ବାଇଗଣ ପରିବାର ଗାଁ କହିଲେ ଭୁଲ୍ ହେବ ନାହିଁ।

ଶରଣକୁଳ ଅଞ୍ଚଳର ଓଜ୍ଜ୍ୱଶୀଳ ପ୍ରତିଭା- ପଣ୍ଡିତ ବିନାୟକ ମିଶ୍ର : ପ୍ରଥିତଯଶା ପଣ୍ଡିତ ବିନାୟକ ମିଶ୍ର ୧୮୯୪ ମସିହା ଗଣେଶ ଚତୁର୍ଥୀ ଦିନ ହରିହରଙ୍କର ଏକାଙ୍ଗ ଆବିର୍ଭୂତ ଶିବଲିଙ୍ଗ ଲଡୁକେଶ ମହାଦେବ ନାମେ ପ୍ରସିଦ୍ଧ ଭଣ୍ଡାର ପାହାଡ଼ ପୂର୍ବ ପାଦଦେଶରେ ଶୈବକ୍ଷେତ୍ର ଶରଣକୁଳ ମାଳିସାହିରେ ଏକ ଗରିବ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ। ବିନାୟକଙ୍କର ପିତା କୃଷ୍ଣଚନ୍ଦ୍ର ମିଶ୍ର ଏବଂ ମାତା ସାବିତ୍ରୀ ଦେବୀ। ଶରଣକୁଳ ମାଳିସାହିରେ ତାଙ୍କର ଛଅ ଡିସିମିଲ୍ ପରିମାଣର ଘର ଡିହ ପରିତ୍ୟକ୍ତ ଅବସ୍ଥାରେ ରହିଛି।



ବିନାୟକ ମିଶ୍ର ନୟାଗଡ଼ ମଧ୍ୟଇଂରାଜୀ ବିଦ୍ୟାଳୟରୁ ୧୯୧୦ ମସିହାରେ ମାଇନର ପାସ୍ କରିଥିଲେ। ସେତିକିରେ ତାଙ୍କର ଶିକ୍ଷା ଯୋଗ୍ୟତା ସାଇତା। ନୀଳଗିରି ବିଦ୍ୟାଳୟରେ ସେ ଓଡ଼ିଆ ଶିକ୍ଷକ ଭାବେ ନିଯୁକ୍ତି ପାଇଥିଲେ। ମାସିକ ଦରମା ଥିଲା ୨୦ଟଙ୍କା। ଅଭାବ କଷଣରେ ସାରାଜୀବନ ସେ ଅତିବାହିତ କରିଥିଲେ। ତାଙ୍କ ସ୍ତ୍ରୀଙ୍କ ନାମ ପଦ୍ମାବତୀ। ତାଙ୍କର ଏକମାତ୍ର କନ୍ୟା ଶାନ୍ତିଲତା

ମିଶ୍ର। ଦୁହିତା ଶାନ୍ତିଲତାଙ୍କୁ ନୟାଗଡ଼ ନିକଟବର୍ତ୍ତୀ ଭାଟସାହି ଲଡୁକେଶ୍ୱରପୁର ଗ୍ରାମର ରବୀନ୍ଦ୍ରନାଥ ମିଶ୍ରଙ୍କୁ ବିବାହ ଦେଇଥିଲେ।

ଚିରସ୍ରୋତା ନଦୀ ପରି ବିନାୟକ ମିଶ୍ର ଅଗାଧ ପାଣ୍ଡିତ୍ୟରେ ପ୍ରବହମାନ ବ୍ୟକ୍ତିତ୍ୱ। ଧୀଶକ୍ତିର ସୌରଭ ମାଇନର ଉନ୍ନୀତ ଜଣେ ଡ୍ରଇଁଶିକ୍ଷକରୁ କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ପଦରେ ନିଯୁକ୍ତି ହେବାରେ ମହକିତ କରିଥିଲା। ବିନାୟକ ମିଶ୍ର କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ପଦରେ ମାସକୁ ୭୫ଟଙ୍କା ବେତନ ପାଉଥିଲେ। ସେ ଏକାଧାରରେ ଶିକ୍ଷକ, ଅଧ୍ୟାପକ, ଗବେଷକ, କବି, ଗାଳ୍ପିକ, ନାଟ୍ୟକାର, ଦାର୍ଶନିକ, ଐତିହାସିକ ଏବଂ ହୋମିଓପ୍ୟାଥିକ୍ ଚିକିତ୍ସକ। ଏପରି ଦୁର୍ଲଭ ବ୍ୟକ୍ତିତ୍ୱ ଓଡ଼ିଶା ରାଜ୍ୟରେ ବିରଳ। ବିଦ୍ୱାନ ଓ ଗବେଷକ ସମାଜରେ ସେ ଥିଲେ ଯଥାର୍ଥରେ ବିନାୟକ।

ବିନାୟକ ମିଶ୍ର କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିବା ସମୟରେ ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସାନ୍ନିଧ ଲାଭ କରିଥିଲେ- ଐତିହାସିକ ରାୟବାହାଦୂର ରମା ପ୍ରସାଦ ଚନ୍ଦ ଏବଂ ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟ। ବିନାୟକ ମିଶ୍ର କଲିକତା ରହଣିକାଳରେ ଓଡ଼ିଆ ଭାଷାର ଇତିହାସ ପାଣ୍ଡୁଲିପିଟି ପ୍ରସ୍ତୁତ କରିଥିଲେ। ପରମାନନ୍ଦ ଆଚାର୍ଯ୍ୟ ମହାଶୟ ପାଣ୍ଡୁଲିପିଟି ଆମୂଳଚୂଳ ପାଠକରି ମତବ୍ୟକ୍ତ କରିଥିଲେ ମିଶ୍ରେ ଏ ତୁମର 'ଅଭିନବ ପ୍ରଚେଷ୍ଟା'। କେ ରୋକିବ ସାଧନାର ସାଧନା। ପରମାନନ୍ଦ ଆଚାର୍ଯ୍ୟଙ୍କ ଅଭିନନ୍ଦନରେ ବିନାୟକ ମିଶ୍ର 'ଓଡ଼ିଆ ସାହିତ୍ୟ ଇତିହାସ' ପାଣ୍ଡୁଲିପିଟି ପୂର୍ଣ୍ଣାଙ୍ଗ କଲେ। ଆଚାର୍ଯ୍ୟ ମହୋଦୟ ମୟୂରଭଞ୍ଜ ବାସିନ୍ଦା ଥିଲେ। ସେ ମୟୂରଭଞ୍ଜ ରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ଆଗରେ ବିନାୟକ ମିଶ୍ରଙ୍କର ପ୍ରତିଭା ବୟାନ କଲେ। ମୟୂରଭଞ୍ଜ ରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ଅଧ୍ୟାପକ ବିନାୟକ ମିଶ୍ରଙ୍କୁ ଏକ ତାମ୍ରଫଳକ ପାଠ କରିବାକୁ ଦେଲେ। ବିନାୟକ ମିଶ୍ର ତାମ୍ରଫଳକଟି ପ୍ରାଞ୍ଜଳ ପାଠକରି ରାଜାଙ୍କୁ ବୁଝାଇ ଦେଇଥିଲେ। ଗୁଣଗ୍ରାହୀ ମହାରାଜା ବିନାୟକ ମିଶ୍ରଙ୍କୁ ପଣ୍ଡିତ ପଦରେ ଭୂଷିତ କରିଥିଲେ। ମହାରାଜାଙ୍କ ଆର୍ଥିକ ସହାୟତାରେ 'ଓଡ଼ିଆ ଭାଷାର ଇତିହାସ' ଓ 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥଦ୍ୱୟ ମୁଦ୍ରିତ ହୋଇଥିଲା।

ପଣ୍ଡିତ ବିନାୟକ ମିଶ୍ରଙ୍କର ଅଜସ୍ର ଶ୍ରାବିତ ଲେଖନୀର ଲିପିଚିତ୍ରର ବିବିଧତା ଓଡ଼ିଆ ଜାତି ଭାଷାର ସୌଭାଗ୍ୟ। ଶେଷ ବାର୍ଦ୍ଧକ୍ୟରେ ବି ସେ ଲେଖନୀ ଚାଳନା ଜାରି ରଖିଥିଲେ। ପାଖରେ ବସିଥିବା ଲୋକଙ୍କୁ ତାଙ୍କର ଥର ଥର ହାତକୁ ଧରିଦେବାକୁ କହୁଥିଲେ। ଏତେ କମ୍ ଶିକ୍ଷା ଯୋଗ୍ୟତା ଥାଇ ମଧ୍ୟ ସଂସ୍କୃତ, ବଙ୍ଗଳା, ଇଂରାଜୀ ଭାଷା ଉପରେ ପୂର୍ଣ୍ଣ ଦଖଲ ତାଙ୍କର ଥିଲା। ତାଙ୍କର ସୃଷ୍ଟିସମ୍ଭାରଗୁଡ଼ିକ...

ପ୍ରଥମ କବିତା 'ନବଜାତ ଶିଶୁ' ଉତ୍କଳ ସାହିତ୍ୟ ୧୯୨୫-୨୮ ଭାଗରେ ପ୍ରକାଶିତ । କ୍ଷୁଦ୍ରଗଳ୍ପ ବୁଢ଼ାବର ୧୯୨୫ ମସିହା 'ମୁକୁର' ପତ୍ରିକାରେ, କବିତା ଗ୍ରନ୍ଥ 'ବରଣମାଳା' ୧୯୪୬ ମସିହାରେ, ଗଜପତି ଜେମା ଓ ଉପେନ୍ଦ୍ର ଭଞ୍ଜ ଏ ଦୁଇଟି ଯାତ୍ରା ପୁସ୍ତକ ପ୍ରକାଶିତ । 'ଓଡ଼ିଆ ଭାଷାର ଇତିହାସ' ଓ 'ଓଡ଼ିଆ ସାହିତ୍ୟର ଇତିହାସ' ୧୯୨୭ ଓ ୧୯୨୮ ମସିହାରେ ପ୍ରକାଶିତ 'ଭାରତୀୟ ଦର୍ଶନ ପ୍ରବେଶିକା' ଶୀର୍ଷକ ଗ୍ରନ୍ଥ ୧୯୪୭ ମସିହାରେ ପ୍ରକାଶିତ, ଓଡ଼ିଆ ସାହିତ୍ୟ ପ୍ରକାଶ ୧ମ ଭାଗ, ୨ୟଭାଗ ୧୯୪୯ରେ ପ୍ରକାଶିତ, 'ଓଡ଼ିଆ ଛାନ୍ଦ ସାହିତ୍ୟ' ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ୧୯୫୮ରେ ପ୍ରକାଶିତ, 'ମହାମାନବ ମହାତ୍ମାଗାନ୍ଧି' ଜୀବନୀଗ୍ରନ୍ଥ ୧୯୪୯ରେ ପ୍ରକାଶିତ, ଓଡ଼ିଆ ଭାଷାର ପୁରାତତ୍ତ୍ୱ ୧ମ ଓ ୨ୟ ଭାଗ ୧୯୬୫ରେ ପ୍ରକାଶିତ । ପଣ୍ଡିତଙ୍କ ସମ୍ପାଦନାରେ 'ଯଦୁମଣି' ଗ୍ରନ୍ଥାବଳୀ ଗ୍ରନ୍ଥଟି ୧୯୬୮ରେ ପ୍ରକାଶ ପାଇଥିଲା ।

ପଣ୍ଡିତ ବିନାୟକ ମିଶ୍ରଙ୍କର ଇଂରାଜୀ ଭାଷାରେ ଲିଖିତ ପୁସ୍ତକ- 'Dynasties of medieval orissa' ୧୯୩୩ ମସିହାରେ ପ୍ରକାଶିତ, 'Orissa under Bhauma Kings' ଗ୍ରନ୍ଥଟି ୧୯୩୪ ମସିହାରେ ପ୍ରକାଶିତ । 'Indian Culture and cult of Jagannath' ପୁସ୍ତକଟି ତାଙ୍କର ମୃତ୍ୟୁ ପରେ ୧୯୮୬ ମସିହାରେ ପ୍ରକାଶ ଲାଭ କରିଥିଲା ।

ପଣ୍ଡିତ ବିନାୟକ ମିଶ୍ର ଗବେଷଣାଧର୍ମୀ ବହୁ ଦୁର୍ଲ୍ଲଭ ପ୍ରବନ୍ଧ ଓଡ଼ିଆ ଏବଂ ଇଂରାଜୀ ପତ୍ରପତ୍ରିକାରେ ପ୍ରକାଶିତ ତା'ର କେତୋଟି ଦୃଷ୍ଟାନ୍ତ...

1. 'A Brief Historical sketch of Orissa' - Journal of Bihar Orissa Research Society, 17/1-1921
2. Copper plate grant of Netra Bhanja - Journal of Bihar
3. A Note on the Kangoda country.
4. Fragmentry stone Inscription of Gobindapur,
5. The area of Orissa in Hivensanga's time.
7. The Trikalinga country.
8. Hindol plate of Subhakar deva
9. Narasinghpur charter of Odyotkeshari Mahabhabagupta.

The above Article published in Journal of Bihar Orissa Research society.

10. Alekha religion in Orissa- modern review vol.1, 1931

11. The sailodbhab rulers kongada- Historical Quarterly 7/3, 1931

12. Ganjam grant of Jayavermandeva of udayotkesari time- Indian Historical Quarterly 1213, 1936

13. Exploration of Dengaposhi in Keonjhar state. Modern Review, LXIII-1938

14. Initial year of the Ganga Era- Journal of orissa Academy 2/1, April, 1938

15. Kumar and Gautam Budha- Journal of Kalinga Historical Research Society, 2/4, 1950

16. Maninag, worship of orissa- Orissa Historical Research Journal- 11/3/4, 1954

ପୁରୀ ଏବଂ ଜଗନ୍ନାଥ ସମ୍ପର୍କରେ କେତୋଟି ପ୍ରକାଶିତ ପ୍ରବନ୍ଧ :

1. Jagannath Temple at Puri, 2. Origin of Lord Jagannath origin of Jagannath worship in Puri, Puri after Kharvela Indentification of Indradyumna, Puri after Rudradaman published in Mayurbhanj chronicle, Baripada in different period.

Golklore care and Puranic Tradition about the origin of Lord Jagannath- Indian Historical quarterly XIII/4, Calcutta 1937.

୧. ଭାଷା ସଂସ୍କାର - ଉତ୍କଳ ସାହିତ୍ୟ - ୨୫/୧୧, ୧୯୨୨-୨୩

୨. ଭାଷା ଓ ସାହିତ୍ୟ - ମୁକୁର ୧୮/୧୯ ବର୍ଷ, ୧୯୨୪-୧୯୨୫

୩. ଅଭିଭାଷଣ - ମୁକୁର ୧୮/୧୯ବର୍ଷ, ୧୯୨୪-୧୯୨୫

୪. ପ୍ରକୃତି ଓ ସାହିତ୍ୟ - ଉତ୍କଳ ସାହିତ୍ୟ ୨୭ବର୍ଷ, ୧୯୨୪-୧୯୨୫

୫. ପ୍ରେମ ଓ ସାହିତ୍ୟ - ଉତ୍କଳ ସାହିତ୍ୟ ୨୭ବର୍ଷ, ୧୯୨୪-୧୯୨୫

୬. ସମାଲୋଚନା ଓ ସାହିତ୍ୟ - ଉତ୍କଳ ସାହିତ୍ୟ, ୨୭ବର୍ଷ, ୧୯୨୪-୨୫

୭. ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ - ନବଭାରତ, ୧/୫, ୧୯୩୫
୮. ଉତ୍କଳରେ ମାତୃକା ପୂଜା - ନବଭାରତ, ୪/୧, ୧୯୩୫
୯. ଆଧୁନିକ ଓଡ଼ିଆ ସାହିତ୍ୟର ଗତି - ନବଭାରତ, ୪/୧, ୧୩୫୪ସାଲ
୧୦. 'ସରସ୍ୱତୀ ପୂଜା' - ନବଭାରତ-୧/୧୦, ୧୯୩୫
୧୧. 'ବୌଦ୍ଧଧର୍ମ ଓ ଯୋଗ' - ନବଭାରତ-୨/୪, ୧୯୩୫
୧୨. ଆଧୁନିକ ଛନ୍ଦ ଓ ଉପାନ୍ତ୍ୟ ମିଳନ - ନବଭାରତ, ୨/୧୧, ୧୯୩୫
୧୩. ବୌଦ୍ଧ ତାନ୍ତ୍ରିକ ଯୋଗ - ନବଭାରତ, ୧/୬, ୧୯୩୬
୧୪. ଉତ୍କଳ ଭାରତୀ କୁନ୍ତଳା କୁମାରୀଙ୍କ କବିତା - ନବଭାରତ, ୩/୬-୧୯୩୯
୧୫. ଅମ୍ବିକା ବିଳାସ - ନବଭାରତ, ୫ମ ବର୍ଷ, ୨ୟ ସଂଖ୍ୟା, ୧୯୩୯
୧୬. ଆଧୁନିକ ସାହିତ୍ୟର ଆଦର - ଶଙ୍ଖ ୧/୩, ୧୯୪୫
୧୭. ଋତୁ ନିରୂପଣ, ନବଭାରତ ୧/୭, ୧୯୪୭
୧୮. ସାହିତ୍ୟ ଲକ୍ଷଣ ଚର୍ଚ୍ଚା, ନବଭାରତ ୧/୪, ୧୯୪୭
୧୯. ସାହିତ୍ୟର ମନସ୍ତତ୍ତ୍ୱ, ନବଭାରତ ୨/୧, ୧୯୪୭
୨୦. ଓଡ଼ିଆ ସାହିତ୍ୟରେ ଗୌଡ଼ୀୟ ବୈଷ୍ଣବ ଧର୍ମ - ୫/୧୦, ଝଙ୍କାର-୧୯୫୪
୨୧. କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଡଗର, ମାର୍ଚ୍ଚ/ଏପ୍ରିଲ୍, ୧୯୫୬
୨୨. ଇତିହାସର ଗବେଷଣା- କୋଣାର୍କ, ସେପ୍ଟେମ୍ବର-୧୯୫୮
୨୩. ମୌଳିକ ପରଜା ଓ ଅନୁବାଦିତ ଉପନଗରୀରେ ଶୟତାନ, ଡଗର ୫/୧, ଜୁଲାଇ-୧୯୨୧, ଜଗନ୍ନାଥ ସଂସ୍କୃତି ଉପରେ ଆଧାରିତ।
୧. ଜଗନ୍ନାଥ ପୂଜା- ଶ୍ରୀ ଜଗନ୍ନାଥ, ଭୁବନେଶ୍ୱର-୧୯୮୨ ଏବଂ ରାଜାଧିରାଜ ଜଗନ୍ନାଥ, କଟକ, ୧୯୮୪
୨. ଶ୍ରୀଜଗନ୍ନାଥ ନାମ ମହିମା- ଜଗନ୍ନାଥ ଲହରୀ ୧/୧, ପୁରୀ-୧୯୮୪

ଜ୍ଞାନର ପୂଜାରୀ ଜ୍ଞାନ ତପସ୍ୱୀ ପଣ୍ଡିତ ବିନାୟକ ମିଶ୍ରଙ୍କ ପ୍ରତିଭା ଉପରେ ଡକ୍ଟର ମାୟାଧର ମାନସିଂହ ତାଙ୍କର ପ୍ରଣୀତ 'ଓଡ଼ିଆ ସାହିତ୍ୟ ଇତିହାସ' ଗ୍ରନ୍ଥରେ ଲେଖିଛନ୍ତି- "ଆର୍ତ୍ତବଲ୍ଲଭ ମହାନ୍ତି ଓ ତାଙ୍କ ପରିକା ଦାମ୍ଭିକତାପୂର୍ଣ୍ଣ ବହୁ ଡିଗ୍ରୀଧାରୀ ଅଧ୍ୟାପକ- ଲେଖକଙ୍କ ବିପରୀତ ଦିଗରେ ଏକାକୀ ଦଣ୍ଡାୟମାନ ପଣ୍ଡିତ ବିନାୟକ ମିଶ୍ର। ନିଜର ପାଣ୍ଡିତ୍ୟ ଓ ନିରବ କିନ୍ତୁ ବିସ୍ମୟକର ସିଦ୍ଧି ପାଇଁ ସମଗ୍ର ଓଡ଼ିଆ ଜାତିଠାରୁ ଯେଉଁ ସମ୍ମାନ ପାଇବାର କଥା, ସେସବୁକୁ ନପାଇ ସେ ଦାରିଦ୍ର୍ୟ ଓ ଅବହେଳାରେ ଶେଷ ଜୀବନଯାପନ କରୁଛନ୍ତି। ପୂର୍ବର ମଧ୍ୟଇଂରାଜୀ ବିଦ୍ୟାଳୟର ଶିକ୍ଷାମାତ୍ର ପ୍ରାପ୍ତ ପଣ୍ଡିତ ବିନାୟକ ହାଇସ୍କୁଲ ଓ କଲେଜରେ ସୀମା ନମାଡ଼ି,

ଇଂରାଜୀ ସହିତ ବହୁଭାଷାରେ ନିଜକୁ ବିଦ୍ୱାନ କରାଇ ପାରିଛନ୍ତି କେବଳ ନୁହେଁ, ନିଜର ଗବେଷଣା ଫଳରେ ଓଡ଼ିଶା ଦେଶର ଇତିହାସରେ ଏକ ଗୌରବମୟ ଅଧ୍ୟାୟ, ଭୌମ ରାଜବଂଶକୁ ଯୋଗକରି ଯାଇଛନ୍ତି । ଏ ପର୍ଯ୍ୟନ୍ତ 'ଓଡ଼ିଆ ଭାଷାର ଇତିହାସ' ଓ 'ଓଡ଼ିଆ ସାହିତ୍ୟର ଇତିହାସ' ସେହି ସେହି କ୍ଷେତ୍ରରେ ଦୃଢ଼ାସୀନ । X X X X ପୁରସ୍କାର କାମନାହୀନ ଏପ୍ରକାର ଜ୍ଞାନ ତପସ୍ୱୀଙ୍କର ବିରାଟ ସାଧନା ଓ ସିଦ୍ଧି ଯେ ଏ ଦେଶରେ କୌଣସି ଶୁଭ ପ୍ରତିକ୍ରିୟା ଆଣିପାରିନି, ତାହା ଏକ ଐତିହାସିକ ଜାତି ପକ୍ଷରେ ନିନ୍ଦାର କଥା ।

ଡକ୍ଟର ସତ୍ୟନାରାୟଣ ରାଜଗୁରୁ ପଣ୍ଡିତ ବିନାୟକ ମିଶ୍ରଙ୍କ ସଂପର୍କରେ ଲେଖିଛନ୍ତି- "ସେ ଥିଲେ ଓଡ଼ିଶାର ହତଭାଗ୍ୟ ଗବେଷକଙ୍କ ମଧ୍ୟରୁ ଜଣେ । ଯେ କି ନିଜର ଯାବତୀୟ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନଦେଇ ଦେଶର ଜ୍ଞାନ ପ୍ରସାର ପାଇଁ ଲେଖନୀ ଧାରଣ କରିଥିଲେ । ବୃଦ୍ଧ ବୟସରେ ବହୁ ପାରିବାରିକ ଦୁର୍ଦ୍ଦଶା ତଥା ଦାରିଦ୍ର୍ୟର କଷାଘାତ ତାଙ୍କୁ ଦୁର୍ବଳ କରି ସୁଦ୍ଧା ତାଙ୍କର ଗବେଷଣା ଓ ସାହିତ୍ୟିକ ଚିନ୍ତାଧାରାକୁ ଶୁଷ୍କ କରିପାରି ନଥିଲା । ନିରବଚ୍ଛିନ୍ନ ଭାବେ ଦୀର୍ଘ ୪୦ବର୍ଷ ଧରି ଜୀବନରେ ସେ ଯେପରି ଦୁର୍ଦ୍ଦଶା ଓ ନିର୍ମମ ଉପେକ୍ଷାର ଶରବ୍ୟ ହୋଇ ସୁଦ୍ଧା, ଓଡ଼ିଶାର ମଙ୍ଗଳ ପାଇଁ ସାହିତ୍ୟ କ୍ଷେତ୍ରରେ ପ୍ରାଣ ଉତ୍ସର୍ଗ କରିଥିଲେ, ତାହା ମନେପଡ଼ିଲେ ସେହି ମହାନ ବ୍ୟକ୍ତିତ୍ୱ ପ୍ରତି ମସ୍ତକ ଅବନତ ହୁଏ ଦୁଃଖରେ, ଭକ୍ତିରେ ଓ ଲଜ୍ଜାରେ । କାରଣ ଓଡ଼ିଶା ପାଇଁ ସେ ଯେଉଁ ଦାନ କରିଛନ୍ତି, ସେଥିର ମୂଲ୍ୟ ଓଡ଼ିଶା କ'ଣ ତାଙ୍କୁ ଦେଇପାରିଛି ?"

ବି.ଦ୍ର: ଓଡ଼ିଆ ଅଧ୍ୟାପକ ଡକ୍ଟର ପ୍ରେମାନନ୍ଦ ମହାପାତ୍ରଙ୍କ ଲିଖିତ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସ୍ୱୀକୃତିପ୍ରାପ୍ତ "ମନସ୍ୱୀ ସାଧକ ପଣ୍ଡିତ ବିନାୟକ ମିଶ୍ର" ଗ୍ରନ୍ଥରୁ ଆଧାରିତ ।

ପଣ୍ଡିତ ବିନାୟକ ମିଶ୍ର ବଡ଼ ସ୍ୱାଭିମାନୀ । ଧନ ଦୃଷ୍ଟିରୁ ସେ ନିସ୍ୱ ମାନ ଦୃଷ୍ଟିରୁ ସେ କୁବେର । ସାରା ଜୀବନ ସେ ଦାରିଦ୍ର୍ୟ କଷଣ ସହିଲେ । ଶେଷ ସମୟରେ ତାଙ୍କ ପାଖରେ ସ୍ତ୍ରୀ ନଥିଲେ, ପୁଅ ନଥିଲେ, ଝିଅ ନଥିଲେ । ୧୯୭୧ ମସିହା ଅଗଷ୍ଟ ମାସ ୫ତାରିଖରେ ଗହ୍ମାପୂର୍ଣ୍ଣିମା ପୂର୍ବଦିନ ଗୁରୁବାର ସନ୍ଧ୍ୟା ଛଅଟାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସେ ଓଡ଼ିଆ ଜାତିର ଚିର ନମସ୍ୟ । ଶରଣକୁଳ ମାଟିର ଉଜ୍ଜ୍ୱଳ ଜ୍ଞାନଦୀପ ଶିଖା କାଳଜୟୀ ପୁରୁଷ । ଓଡ଼ିଶା ସାହିତ୍ୟ ଭଣ୍ଡାରକୁ ଅନେକ ଅନେକ ଗବେଷଣାର ଅକାଟ୍ୟ ତଥ୍ୟ ପ୍ରଦାନ କରି ଋଦ୍ଧିମନ୍ତ କରିଛନ୍ତି ।

**ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା :** ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ରୀତିକାବ୍ୟ ଯୁଗର ଜଣେ ସାରସ୍ୱତ କବିପ୍ରତିଭା । ରାଧାକୃଷ୍ଣ ପ୍ରେମଭକ୍ତି ମାଧୁର୍ଯ୍ୟ ରସରେ ତାଙ୍କ କବି ମାନସ ଦୋଳାୟିତ । ସେ ଗୌଡ଼ୀୟ ସଂପ୍ରଦାୟର ଜଣେ କୃଷ୍ଣଭକ୍ତିର ପ୍ରବକ୍ତା ।



ଶ୍ରୀକୃଷ୍ଣ ତାଙ୍କର କାବ୍ୟ ଚିନ୍ତାମଣି। ରୀତିଯୁଗର ଶ୍ରେଷ୍ଠ କବି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଉତ୍କଳଘଣ୍ଟ ଯଦୁମଣି ମହାପାତ୍ର, ପଦଲାଳିତ୍ୟର କବି ଦୀନକୃଷ୍ଣ ଦାଶ ସମଭାର ସମ୍ମାନର କବି ହେଉଛନ୍ତି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା। ଏ ପ୍ରଚଣ୍ଡ ପ୍ରତିଭୂ ପ୍ରସିଦ୍ଧ ଶୈବପୀଠ ଲଡୁକେଶ୍ୱର ମହାଦେବଙ୍କ ଆବିର୍ଭାବର କ୍ଷେତ୍ର ଶରଣକୁଳ ମାଟିର ଗର୍ବ ଗୌରବ। ରୀତି କାବ୍ୟକଳା ବିଭାବ ପରିପୂର୍ଣ୍ଣତା ଆସିଥିବା କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଶରଣକୁଳ ଭିକାରିପଡ଼ା ଶାସନ ହୋତା ଉପାଧିଧାରୀ ସାମବେଦୀ ବ୍ରାହ୍ମଣ ପରିବାରରେ ୧୭୩୮ ଖ୍ରୀ.ରେ ଜନ୍ମ ବୋଲି ବିଦ୍ୱାନମାନେ ନିର୍ଣ୍ଣୟ କରିଛନ୍ତି। ସଦାନନ୍ଦଙ୍କ ପିତା ହେଉଛନ୍ତି ପରମାନନ୍ଦ ହୋତା ମାତା ଭବାନୀ ଦେବୀ। କବିଙ୍କର ପିତୃପ୍ରଦତ୍ତ ନାମ ସଦାଶିବ ମହାପ୍ରଭୁ ଲଡୁକେଶ୍ୱର ମହାଦେବଙ୍କ ପ୍ରସାଦରୁ ମାତା ପିତାଙ୍କର କୋଳମଣ୍ଡନ କରିଥିବାରୁ ମାତା ଭବାନୀ ପିତା ପରମାନନ୍ଦ ତାଙ୍କର ନାମ ରଖିଥିଲେ ସଦାଶିବ। କବି ସଦାନନ୍ଦ ତାଙ୍କ ଲଳିତ ଲୋଚନ କାବ୍ୟର ପ୍ରଥମ ଛାନ୍ଦରେ ଲେଖିଛନ୍ତି –

ନବଦୁର୍ଗ ବୋଲି ନୀଳକନ୍ଦର ନିକଟେ
ସେ ରାଜ୍ୟ ନରେଶ ପଦ ମାନଧାତା ଅଟେ।
ତହିଁରେ ଶରଣକୁଳ ବୋଲି ଯେ ନଗର
ଯହିଁ ବିଜେ ଲଡୁକେଶ ନାମେ ମହେଶ୍ୱର।
ନବେଲକ୍ଷ ରୁଦ୍ରଗଣ ଖଟନ୍ତି ଯା ପାଦ
ଯାହାଙ୍କ ପ୍ରସାଦେ ପାଇ ସକଳ ସମ୍ପଦ।
ତାହାଙ୍କ ଆଜ୍ଞାରେ ମୋର ଜନମ ମହୀରେ
ସଦାଶିବ ନାମ ଲଭି ମାତା ପିତାଙ୍କର।

କବି ସଦାନନ୍ଦ ଚୈତନ୍ୟପନ୍ଥୀ ଧର୍ମଧାରଣାରେ ବଶବର୍ତ୍ତୀ ହୋଇଥିଲେ। ଭଗବାନ କୃଷ୍ଣଚନ୍ଦ୍ରଙ୍କ ମହିମା ପ୍ରଚାର ପ୍ରସାରରେ ତାଙ୍କର କାବ୍ୟିକ ଚେତନା। ବୈଷ୍ଣବ ଧର୍ମ ପ୍ରଚାରରେ ସନ୍ଥ ସଦାନନ୍ଦ ନାମରେ ପରିଚିତ। ତାଙ୍କ ବୈରାଗ୍ୟ ଜୀବନର ପ୍ରଜ୍ଞା ଶ୍ରଦ୍ଧାଳୁଙ୍କୁ ଅଭିଭୂତ କରେ। କବି ସଦାନନ୍ଦ ସ୍ଥାନରୁ ସ୍ଥାନ ପରିବର୍ତ୍ତନ କରି ଶ୍ରୀକୃଷ୍ଣଙ୍କ ମହିମା ପ୍ରଖ୍ୟାପନ କରୁଥିଲେ। ସେ ନୟାଗଡ଼ରେ, ଘୁମୁସର, ଦଶପଲ୍ଲା, କଟକ ନିକଟସ୍ଥ ଦାମୋଦରପୁର, ମଧୁପୁର ରାଜ୍ୟରେ କିଛିକାଳ ଆଶ୍ରମ ଜୀବନ ଅତିବାହିତ କରିଥିଲେ। ଏହିଠାରୁ ବାଲିଆର ଇନ୍ଦ୍ରଜିତ ସାମନ୍ତସିଂହାରଙ୍କ

ଦ୍ୱାରା ଅନୁଷ୍ଠିତ ପୁତ୍ରେଷ୍ଟି ଯଜ୍ଞକୁ ସେ ଆମନ୍ତ୍ରିତ ହୋଇଥିଲେ। ପୁତ୍ରେଷ୍ଟି ଯଜ୍ଞ ସନ୍ଥ ସଦାନନ୍ଦଙ୍କ ଦ୍ୱାରା ସଫଳ ସମ୍ପାଦନ ହୋଇଥିଲା। ଇନ୍ଦ୍ରଜିତ ସାମନ୍ତସିଂହାର ପୁତ୍ରେଷ୍ଟି ଯଜ୍ଞ ପରେ ତେଜଦୀପ୍ତ ପ୍ରତିଭାର ପୁତ୍ର ଅଭିମନ୍ୟୁ ସାମନ୍ତସିଂହାର ତାଙ୍କର କୋଳମଣ୍ଡନ କରିଥିଲା। ଇନ୍ଦ୍ରଜିତ, ସନ୍ଥ ସଦାନନ୍ଦଙ୍କ ଉପରେ ସନ୍ତୋଷ ହୋଇ ତାଙ୍କ ପାଇଁ ବାଲିଆ ନିକଟବର୍ତ୍ତୀ ଦୀକ୍ଷିତପଡ଼ା ଗ୍ରାମରେ ଏକ ମଠ ନିର୍ମାଣ କରିଥିଲେ। ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ପରିଣତ ବୟସରେ ଚାନ୍ଦୋଳ ନିକଟସ୍ଥ ପବିତ୍ର ପଡ଼ାଠାରେ ରାସେଶ୍ୱରୀ ରସିକରା ମଠ ସ୍ଥାପନ କରିଥିଲେ। ଏଠାରେ ତାଙ୍କର ଅନ୍ତିମ ବୟସ କଟିଥିଲା।

ଓଡ଼ିଆ ଭାଷା ସାହିତ୍ୟର ବିଶିଷ୍ଟ ଗବେଷକ, ପ୍ରାବନ୍ଧିକ, ପ୍ରଜ୍ଞାଦୀପ୍ତ ଅଧ୍ୟାପକ ଡ. ପ୍ରେମାନନ୍ଦ ମହାପାତ୍ର ଯାହାଙ୍କର ଜନ୍ମସ୍ଥାନ ନୟାଗଡ଼ ମାଟିରେ ବାଲୁଗାଁ ନିକଟସ୍ଥ ମାଳିସାହି ରୀତିଯୁଗର ପ୍ରବୀଣ କବି ସଦାନନ୍ଦଙ୍କ କାବ୍ୟକଳା ଉପରେ ଏକ ବିସ୍ତୃତ ଆଲୋଚନାଧର୍ମୀ ପ୍ରବନ୍ଧ ନୟାଗଡ଼ ଆରଣ୍ୟକ ପତ୍ରିକାରେ ପ୍ରକାଶ କରିଛନ୍ତି। ମହାନ କବିଙ୍କର ୨୫ଗୋଟି କାବ୍ୟକୁ ଆଲୋଚନା କରିଛନ୍ତି ଏବଂ ଅନେକ ଜଣାଣକୁ ଲୋକଲୋଚନକୁ ଆଣିଛନ୍ତି। କବି ସଦାନନ୍ଦ ବ୍ରହ୍ମା ତାଙ୍କ କାବ୍ୟକୃତି ପାଇଁ ୧୭୪୩-୧୭୭୯ଖ୍ରୀ ଖୋର୍ଦ୍ଧା ରାଜା ବୀରକିଶୋର ଦେବ କବିଙ୍କୁ କବିସୂର୍ଯ୍ୟ ବ୍ରହ୍ମା ଉପାଧିରେ ଭୂଷିତ କରିଛନ୍ତି। କବି ସଦାନନ୍ଦ ତାଙ୍କର କାବ୍ୟ 'ଲଳିତ ଲୋଚନା' କାବ୍ୟରେ ଉଲ୍ଲେଖ କରିଛନ୍ତି :-

ଓଡ଼ିଶା ଶ୍ରୀ ଗଜପତି ଆଜ୍ଞାରେ ଯେମନ୍ତ
କବି ସୂର୍ଯ୍ୟ ବ୍ରହ୍ମା ପଦ ହେଲା ମୋର ଖ୍ୟାତ
ବ୍ରଜଲୀଳାମୃତ ସମୁଦ୍ର- ୫୩ଶ ଛାନ୍ଦ
ବୀରକେଶରୀ ଦେବଙ୍କ ଦତ୍ତ
କବିସୂର୍ଯ୍ୟ ବ୍ରହ୍ମା ପଦ ଖ୍ୟାତ

ଗବେଷକ ମହୋଦୟ ଭାବ ପ୍ରସଙ୍ଗ ଦୃଷ୍ଟିରୁ ସଦାନନ୍ଦଙ୍କ କାବ୍ୟକଳାକୁ ସାତଗୋଟି ବିଭାଗରେ ପର୍ଯ୍ୟାୟଭୁକ୍ତ କରିଛନ୍ତି-

(କ) କାଞ୍ଚନିକ କାବ୍ୟ- ଲଳିତ ଲୋଚନା
ମୋହନ କଞ୍ଚଲତା।

(ଖ) କୃଷ୍ଣ ପ୍ରେମାଶ୍ରୟୀ କାବ୍ୟ- ଯୁଗଳ ରସାମୃତ ଲହରୀ
ଯୁଗଳ ରସାମୃତ ଭଉଁରୀ।
ପ୍ରେମ ତରଙ୍ଗିଣୀ।
ଚିଟାଉ ଚନ୍ଦ୍ରୋଦୟ।
ପ୍ରୀତି ଚିନ୍ତାମଣି।

(ଗ) ସାଂପ୍ରଦାୟିକ ରଚନା ନାମ ଚିନ୍ତାମଣି
ନିଷ୍ଠା ନୀଳମଣି
ତତ୍ତ୍ୱ ତରଙ୍ଗିଣୀ
ପାଟ ରତ୍ନାବଳୀ
କୁଞ୍ଜବିହାର
ଗୋବିନ୍ଦ ଗୁଣକୀର୍ତ୍ତନ ମାଳା
ବ୍ରତ ସୂର୍ଯ୍ୟୋଦୟ
ବ୍ରହ୍ମାଣ୍ଡ ମଣ୍ଡଳ
କୀର୍ତ୍ତନ ଉଜ୍ଜ୍ୱଳ

(ଘ) ଜୀବନୀ ସାହିତ୍ୟ : ବିଶ୍ୱମ୍ଭର ବିହାର
ଚୈାର ଚିନ୍ତାମଣି

(ଙ) ଅନୁବାଦ ଶ୍ରେଣୀୟ : ପ୍ରେମ କଳ୍ପଲତା
ବ୍ରଜଲୀଳାମୃତ ସମୁଦ୍ର
ଉଜ୍ଜ୍ୱଳ ନୀଳମଣି
ପ୍ରେମ ଚିନ୍ତାମଣି
ହରିଭକ୍ତି କଳ୍ପଲତା
ଶ୍ରୀକୃଷ୍ଣ ଚୈତନ୍ୟ ଚରିତାମୃତ ସାର ।
ଭଗବତ ଗୀତାନୁବାଦ

(ଚ) ଶାସ୍ତ୍ରୀୟ ରଚନା : ସଂଗୀତ ସଦାନନ୍ଦ
ବାଲବୋଧିନୀ
ସ୍ୱର ଦୀପିକା

(ଛ) ଗୀତିକବିତା : ଦୂତୀ ଚଉତିଶା / କୋଇଲି ଚଉତିଶା
ନୂଆଗଡ଼ ଲଡୁକେଶ୍ୱରଙ୍କ ଜଣାଣ
ଶ୍ରୀ ଚୈତନ୍ୟ ଜଣାଣ
ମନଃ ଶିକ୍ଷା
ଶ୍ରୀ ନିଳାଦ୍ରୀନାଥ ମଣିମା ଜଣାଣ
ଚଉପଦୀ ସମାହାର

ମହାନ କବିଙ୍କର କାବ୍ୟ- 'ଯୁଗଳ ରସାମୃତ ଲହରୀ', 'ପ୍ରେମ ତରଙ୍ଗିଣୀ', 'ପ୍ରେମ କଳ୍ପତରୁ', 'ନିଷ୍ଠା ନୀଳମଣି', 'ଚୈାର ଚିନ୍ତାମଣି', 'ନାମ ଚିନ୍ତାମଣି' ପ୍ରକାଶିତ । କେତେକ କାବ୍ୟ ଅନୁପଲବ୍ଧ ତଥାପି କବିଙ୍କର ଅନେକ କାବ୍ୟକୃତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରନ୍ଥାଗାରର ପୋଥି

ବିଭାଗରେ ତାଳପତ୍ର ପୋଥିରେ ସଂରକ୍ଷିତ ଥାଇ କବିଙ୍କର ଅସାଧାରଣ କାବ୍ୟ ସାଧନାର ପରିଚୟ ଦିଏ।

ମହାନ କବି ସଦାନନ୍ଦଙ୍କ କବିସୂର୍ଯ୍ୟ ଉପାଧି ଉପରେ ବାଦାନୁବାଦ ଉପୁଜେ। ୧୯୫୭ ମସିହାରେ 'ସଦାନନ୍ଦ ସାହିତ୍ୟ ପରିଷଦ' ଶରଣକୁଳ ଗଢ଼ିଉଠିଥିଲା। ଏବେ ଏହା କର୍ମଚଞ୍ଚଳ। ପ୍ରଥମେ ଏହି ଅନୁଷ୍ଠାନ ସଭାପତି ବାଗ୍ମୀ ପୁରୀପଣ୍ଡା ଆପଲ୍ ସ୍ୱାମୀ ଉପସଭାପତି ଭୁବନେଶ୍ୱର ମିଶ୍ର, ଚିତ୍ରଶିଳ୍ପୀ ନାରାୟଣ ଉଚ୍ଚବିଦ୍ୟାଳୟ ଶିକ୍ଷକ, କୋଷାଧକ୍ଷ ଦାମୋଦର ମହାପାତ୍ର, ନାରାୟଣ ଉଚ୍ଚବିଦ୍ୟାଳୟର ଶିକ୍ଷକ, ସଂପାଦକ ଦଣ୍ଡପାଣି ମିଶ୍ର (ସଞ୍ଜୟ) ଧରିତ୍ରୀର ପ୍ରକାଶକ ସଭ୍ୟମାନେ ଛାତ୍ରନେତା ଗୌରାଙ୍ଗ ପ୍ରଧାନ ଅସୁରଢ଼ିପା, ବୁଦ୍ଧିରାମ ମହାପାତ୍ର ଅସୁରଢ଼ିପା, ଶିକ୍ଷକ ପଦ୍ମନାଭ ଘଡ଼େଇ ଗୋଡ଼ିପଡ଼ା। ପଦ୍ମନାଭ ଘଡ଼େଇ କୁହନ୍ତି, "ସଦାନନ୍ଦ ହେଉଛନ୍ତି ରୀତିଯୁଗର ଦିଗବେରଣୀ କବି ସ୍ତମ୍ଭ"। ସଦାନନ୍ଦ ସାହିତ୍ୟ ପରିଷଦ, ଶରଣକୁଳ ଓଡ଼ିଶା ସରକାରଙ୍କ ଏକ ପଞ୍ଜିକୃତ ସାହିତ୍ୟ ଅନୁଷ୍ଠାନ। ଏହି ଅନୁଷ୍ଠାନ ପ୍ରତିବର୍ଷ କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମାଙ୍କର ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବ ପାଳନ କରିଆସୁଛି।

**କବି ଦଣ୍ଡପାଣି ମିଶ୍ର (ସଞ୍ଜୟ) :** ସେ ସମୟ ନଥାଏ କଥା ରହିଥାଏ। 



ନୟାଗଡ଼ କଲେଜର ଇଂରାଜୀ ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କ ଭାଷାରେ, "ବିଚିତ୍ର ବର୍ଣ୍ଣା ମଣିଷଟିଏ ସଂଜୟ ଶ୍ରୀ ଦଣ୍ଡପାଣି ମିଶ୍ର ଏକାଧାରରେ ସ୍ୱାଧୀନତାସଂଗ୍ରାମୀ, ଭୂଦାନକର୍ମୀ, ସମାଜସଂସ୍କାରକ, ସାମ୍ବାଦିକ, ପାଠାଗାର ଆନ୍ଦୋଳନର ଅଗ୍ରଦୂତ, ପ୍ରଶାସନିକ ଅଧିକାରୀ, ବାସ୍ତବବାଦୀ ଦାର୍ଶନିକ, ଜୀବନଧର୍ମୀ କବି ଓ 'ଧରିତ୍ରୀ' ସମ୍ବାଦପତ୍ରର ପ୍ରକାଶକ ଓ ଦିଗ୍‌ଦର୍ଶକ।"

ଏତେ ଗୁଣର ଅଧିକାରୀ ଦଣ୍ଡପାଣି ମିଶ୍ର ୧୯୧୭ ମସିହା ମାର୍ଚ୍ଚ ୩୦ ତାରିଖରେ ନୟାଗଡ଼ ଜିଲ୍ଲାର ପ୍ରସିଦ୍ଧ ଶୈବପୀଠ ଶରଣକୁଳରେ ଜନ୍ମଗ୍ରହଣ କରିଥିଲେ। ପରିବାରର ଆର୍ଥିକ ଅସ୍ୱଚ୍ଛଳତାରୁ ଆନୁଷ୍ଠାନିକ ଉଚ୍ଚଶିକ୍ଷାରୁ ବଞ୍ଚିତ ଦଣ୍ଡପାଣି ଶୈଶବରୁ ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ, ଅପରିସୀମ ଜ୍ଞାନପୀପାସୁ, ଅତ୍ୟନ୍ତ ସ୍ୱାଧୀନଚେତା, ସାହସୀ ଓ ସଂସ୍କାରବାଦୀ। ନା ତାଙ୍କର ଭୟ ଥାଏ ତତ୍କାଳୀନ ଗଡ଼ଜାତ ଶାସନର ବେଡ଼ି, କୋରଡ଼ା ପ୍ରହାର ପ୍ରତି, ନା ଖାତିର୍ ଥାଏ ନୈଷ୍ଠିକ ବ୍ରାହ୍ମଣ ସମାଜର ସଂକୀର୍ଣ୍ଣ ଜାତିଆଣ କଟକଣା ପ୍ରତି। ମେଧାବୀ ଦଣ୍ଡପାଣି ପ୍ରାଥମିକ ବୃତ୍ତି ଅର୍ଥରେ ନୟାଗଡ଼ ରାଜ୍ୟକୁ ପ୍ରଥମ କରି 'ସମାଜ' ଖବରକାଗଜ ମଗାଇ

ରାଜରୋଷର ସରବ୍ୟ ହୋଇଥିଲେ। ଦଣ୍ଡପାଣି ମିଶ୍ର ଦେଶ ସ୍ୱାଧୀନତା ପୂର୍ବରୁ 'ଦେଶବାର୍ତ୍ତା'ର ସଂପାଦକ ଥିଲେ। ସେ ନୟାଗଡ଼ ରାଜ୍ୟର ପ୍ରଥମ ସାମ୍ବାଦିକ। ତାଙ୍କର କାବ୍ୟ କବିତା ସମାଜଧର୍ମୀ, ଜୀବନଧର୍ମୀ, ସଂସ୍କାରର ଉଚ୍ଚଶିକ୍ଷା ଭାବ ଉଚ୍ଚାରଣ।

ଗଡ଼ଜାତ ରାଜ୍ୟରେ ଦୁଇ ଦୁଇଟା ଶାସନ- ରାଜାଶାସନ ଓ ତା'ର ମଙ୍ଗୁଆଳ ବ୍ରିଟିଶ୍ ଶାସନ ମଝିରେ ପେଶି ହେଉଥିବା ନିରୀହ ପ୍ରଜାପୀଡ଼ା ତାଙ୍କୁ ବ୍ୟଥିତ କରେ। ଫଳରେ କିଶୋର ବୟସରେ ସେ ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନ ଓ ଜାତୀୟ ସ୍ୱାଧୀନତା ସଂଗ୍ରାମର ଛାମୁଆ ବିପ୍ଳବୀ ଥିଲେ। ବିପ୍ଳବୀର ଭାଷା ତାଙ୍କ କବିତା ଗଳ୍ପରେ ଶାଣିତ ସ୍ୱର ଉତ୍ତୋଳନ କରେ। ରସ ଓ ଛନ୍ଦର ଏକ ସୁଖଦ ମିଳନ ଦେଖିବାକୁ ମିଳେ ତରୁଣ ଦଣ୍ଡପାଣିଙ୍କ ଆଦ୍ୟ କବିତାମାନଙ୍କରେ। କିନ୍ତୁ ଦଣ୍ଡପାଣି ମିଶ୍ରଙ୍କ ଆମ୍ବିକ ଓ ଆଙ୍ଗିକରେ ଅଧିକ ବିବିଧତା ଦେଖିବାକୁ ମିଳେ। ଆମ୍ବିକରେ ପ୍ରେମଠାରୁ ପ୍ରଳୟ ପର୍ଯ୍ୟନ୍ତ ଆଙ୍ଗିକରେ ମାନସିଂ ଓ ରବି ଠାକୁରଙ୍କଠାରୁ ଗଡ଼ନାୟକ ଓ କାଳିନ୍ଦୀ ଚରଣ ଯାଏ ବିବିଧତା ହିଁ ଦଣ୍ଡପାଣିଙ୍କ କବିତା ସମୂହକୁ ନିଆରା ପରିଚୟ ଦିଏ। ସେତିକି ନୁହେଁ ସ୍ୱର ତାଙ୍କର ଶୁଭେ ପ୍ରଣୟର ଛଳଛଳ ଝରଣାର ରିମ୍‌ଝିମ୍ ପରି ତ ପୁଣି କେତେବେଳେ ଆସନ୍ନ ପ୍ରଳୟର ଆଗ୍ନେୟ ଚେତାବନୀ ପରି।

**ଦଣ୍ଡପାଣି ମିଶ୍ରଙ୍କ ସୃଷ୍ଟିସମ୍ଭାର :** କବି ଦଣ୍ଡପାଣି ମିଶ୍ର କବିତା ପୁସ୍ତକ 'ଅସ୍ଥି ସଞ୍ଚୟନ' ପ୍ରକାଶିତ ୧୯୫୪ ମସିହା 'ଚଇତି ବିଜୁଳି' ୧୯୬୮ ମସିହା, 'ଯେ ଫୁଲ ମଉଳେ ନାହିଁ' ୧୯୯୯ ମାର୍ଚ୍ଚ ୩୦ରେ। ମରଣୋତ୍ତର ପୁସ୍ତକ ପ୍ରକାଶନ 'ମଟକା ଡାଳ' ଗଳ୍ପ ସଂକଳନ, 'ମୋ ଠିକଣା ଯାଇଛି ବଦଳି' କବିତା ସଂକଳନ।

ପ୍ରଣୟୀ କବି ଦଣ୍ଡପାଣି ମିଶ୍ର: 'ଯେ ଫୁଲ ମଉଳେ ନାହିଁ

ରାତି ଥିଲେ ସ୍ୱପ୍ନ ଅଛି
ଛାତି ଥିଲେ ରହିଛି ବେଦନା
ଜହ୍ନ ଥିଲେ ପ୍ରେମ ଅଛି
ଦେହ ଥିଲେ ଅଛି ରହି
ସମ୍ଭୋଗ କାମନା
କିଏ ଏହା କରିବ ବା ମନା।

କବି କଳ୍ପନାବିଳାସୀ ହେଲେ କଳ୍ପନାରେ ଛନ୍ଦି ହୋଇଯାଏନି- 'ଯେ ଫୁଲ ମଉଳେ ନାହିଁ'

କବି ଖାଲି ନୁହେଁ କଳ୍ପନା ବିଳାସୀ
ସିଏ ତୋଳିପାରେ ଫୁଲ

ଧରିପାରେ ଅସି ।
ତା' ବଇଁଶୀ ହୋଇପାରେ ଲାଠି
ତା କଟାକ୍ଷେ ଇନ୍ଦ୍ରାୟୁଧ
ହୋଇପାରେ ସୃଷ୍ଟି ।

ସମାଜର ସଂକୀର୍ଣ୍ଣ ବାସ୍ତବ ଜୀବନ ପ୍ରତି କବିର ଅନୁଭବ : 'ଅସ୍ଥି ସଞ୍ଚୟନ'

ଜାଣ ସହୀ ତଳିଆ ଜାତିର
ବିଳାପରେ ତରଳିଛି ଆଜି କେଉଁ କବିର ଅନ୍ତର ?
ଶ୍ରାବଣର ବରଷାର ଦାଢ
କାଟିଥିବ ଯା'ର ମାଂସ ହାଡ଼
କାରଖାନା ଚିମିନିର ବାଟେ
ନିତି ନିତି ନିଶ୍ୱାସ ଯା ଛୁଟେ

X X X X

ଦେଶ ଲାଗି ଦଶ ଲାଗି ଅହରହ ଝରେ ଯା'ର ରକ୍ତ
ଜାଗ ପ୍ରିୟେ ଆଜି ତା'ର ହୋଇଛି ମୁଁ ଭକ୍ତ ।

କବିର ବୀଣାରେ ବିପ୍ଳବର ଅଗ୍ନିକଣା ସ୍ୱର :

ବର୍ଲିନର ଧରାତଳେ ଦିଶିଲାଣି ଗିରିକଣା
ପୃଥିବୀର ଜାତିସଂଘ ଖୋଜିବୁଲେ ହୋଇ ବାଟବଣା

X X X X

ମୃତ୍ୟୁଠାରୁ ନିର୍ଭୀକ ତୁ ହୋଇଯାଅରେ ଥରେ
ଝଞ୍ଜା ଭୟ ଅଗ୍ନିତାପେ ପଳାଇ ନ ଯା ଡରେ

X X X X

ପଥରଠାରୁ ନୀରବ ହୁଅ ଲୁହାରୁ ହୁଅ ଟାଣ
ଛାତିରେ ତୋର ବାଜିଲେ ବାଜୁ ବଜ୍ର-ବ୍ୟଥା-ବାଣ

ଚଇତ ବିଜୁଳି କବିତା ସଂକଳନରେ- 'ଛାତି'

ତୁମେ ସାଥୀ ବଂଚି ରୁହ ମାୟାଧରା ତଳେ
ମଣିଷ ପାଇଁକି ଯହିଁ ମଣିଷର ହୃଦ ନ ତରଳେ
ଯେଉଁଠି ଜଳଇ ମନ
ଘନ ଘନ ପବନର ମୁଖେ
ଅଛି ବୋଲି ଦୁଃଖେ
ଯେଉଁଠି ନ ହୁଏ ସଂଜ ନ ହୁଅଇ ରାତ୍ରି
ତୁମେ ସାଥୀ ସେହି ପଥେ ହୋଇଥାଅ ଯାତ୍ରୀ ।

ଦଣ୍ଡପାଣି ମିଶ୍ରଙ୍କ ସାଥିରେ ଯେତେଥର ମିଶିଛି ପ୍ରୌଢ଼ ବୟସରେ ତାଙ୍କ ଯୁବସୁଲଭ ଶବ୍ଦର ଭାବ ଶୁଣିଛି । ଓଡ଼ିଶାରେ ରବି ଠାକୁରଙ୍କ ଭଳି ତାଙ୍କ ଚେହେରା ତଳେ ମସ୍ତକ ନଇଁପଡ଼େ । ସେ ଯୁବପୀଢ଼ିଙ୍କୁ ଆହ୍ୱାନ କରନ୍ତି କଳିକାଳର ମଣିଷ ୧୨୦ ବୟସଧାରୀ । ସରକାରୀ କର୍ମଯୋଗରୁ ଅବସର ନେଲାପରେ 'ଧରିତ୍ରୀ' ସମ୍ବାଦପତ୍ର ଶିଳ୍ପ ସହିତ ୪ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ସଂପୃକ୍ତି ଥିବା କବି ଓ ସାହିତ୍ୟିକ ଦଣ୍ଡପାଣି ମିଶ୍ର ୨୯.୧୦.୨୦୧୪ରେ ୯୮ ବର୍ଷ ବୟସରେ ପରଲୋକ ଗତ ହେଲେ । ସେ ମହାନ ପୁରୁଷଙ୍କୁ ଶରଣକୁଳ ମାଟି ଝୁରେ ।

<u>କବି କନ୍ଦର୍ପ ଗୌରାଙ୍ଗ ପ୍ରଧାନ :</u> ନୟାଗଡ଼ ରାଜଦାଣ୍ଡରୁ ଦୂରରୁ ବାରିହୋଇଯାଉଥିବା ମୁଣ୍ଡରେ ଆଧୁନିକ ଟୋପି ଦେହରେ ଆଧୁନିକ ମର୍ଯ୍ୟାଦାର ପୋଷାକ ସଦା ଯୁବସୁଲଭ ସ୍ୱାସ୍ଥ୍ୟବାନ ଗୌରବର୍ଣ୍ଣର ଉଚ୍ଚାଙ୍ଗଧାରୀ ଆଧୁନିକ ଦିଶୁଥିବା ମଣିଷଟି ଗୌରାଙ୍ଗ ପ୍ରଧାନ । ତାଙ୍କୁ ଦେଖିଲେ ମନେହୁଏ- କେତେ ଉଚ୍ଚ ଏଇ ମଣିଷ, କଳିହୁଏନା ଉଚ୍ଚତା, କେତେ ଗଭୀର ମନ ବିଳାସୀ, ମାପି ହୁଏନା ଗଭୀରତା । ସାହିତ୍ୟ ଆକାଶର ଇନ୍ଦ୍ରଧନୁ ଟଙ୍କାରି ଫୁଲଶର ବିନ୍ଧିଚାଲିଥିବା କନ୍ଦର୍ପ ବାସ୍ତବରେ କବି କନ୍ଦର୍ପ ଗୌରାଙ୍ଗ ପ୍ରଧାନ । ଓଡ଼ିଶାର ଖ୍ୟାତନାମା ମହାବିଦ୍ୟାଳୟ କଟକ ଖ୍ରୀଷ୍ଟ ମହାବିଦ୍ୟାଳୟର ଛାତ୍ରନେତା, ଜନସମାଜର ରାଜନେତା, ସାହିତ୍ୟ ସମାଜର କବି, ପ୍ରାବନ୍ଧିକ, ଗାଳ୍ପିକ, ସ୍ତମ୍ଭକାର ଜନଜୀବନର ସାମ୍ବାଦିକ ହସ୍ତରେଖା ଦେଖି ଭାଗ୍ୟ ନିର୍ଣ୍ଣୟର ସିଦ୍ଧଧର୍ମୀ ବ୍ୟକ୍ତିତ୍ୱଟିଏ । ବାସ୍ତବରେ ଏପରି ବ୍ୟକ୍ତିତ୍ୱକୁ ଏ ମାଟି ପାସୋରି ପାରେନି । ଗୌରାଙ୍ଗ ପ୍ରଧାନଙ୍କ ପ୍ରକାଶିତ କବିତାଗୁଚ୍ଛ ସଂକଳନ: ଭିନ୍ନ ମାୟା, ଅଭିନ୍ନ ମମତା, ଅନେକ ସ୍ମୃତି ଏକକ ସ୍ୱାଦ, ଅସଂଖ୍ୟ ପାଖୁଡ଼ା ଅମାନିଆ ଭଅଁର, ଯୋଡ଼ିଯୋଡ଼ି କଥା ଅଛିଣ୍ଡା ମମତା ।



**ଅପ୍ରକାଶିତ ପାଣ୍ଡୁଲିପି :** ଅଭିଶପ୍ତ ପଦ୍ମଗନ୍ଧା, ବିସ୍ମୃତି ଗର୍ଭରେ ନୟାଗଡ଼, ଉଛୁଳା ପ୍ରେମ ଓ ବଢ଼ିଲା ସ୍ନେହ, ଅଳ୍ପ କଥା ଅନେକ ବ୍ୟଥା । ଏପରି ପଡ଼ି ରହିଥିବା ଅନେକ ଲେଖା ।

<u>ଚୟନିକା ପତ୍ରିକା :</u> ସାହିତ୍ୟିକ ଗୌରାଙ୍ଗ ପ୍ରଧାନ ନିଜ ଗ୍ରାମ ଅସୁରଢ଼ିପାରୁ 'ଚୟନିକା' ସାହିତ୍ୟ ପତ୍ରିକାଟିଏ ପ୍ରକାଶ କରୁଥିଲେ । ଏହି ପତ୍ରିକା ପାଇଁ ବର୍ଷରେ ଦୁଇଥର କବିତା ଆସର କରୁଥିଲେ । ଏହି ଆସରମାନଙ୍କରେ ଓଡ଼ିଶାର ସୁନାମଧନ୍ୟ ସାହିତ୍ୟିକ ଯୋଗ ଦେଉଥିଲେ । 'ଚୟନିକା' ପତ୍ରିକାରେ ପ୍ରବନ୍ଧ, ଗଳ୍ପ, କବିତା ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକମାନଙ୍କର ଲେଖା ପ୍ରକାଶିତ ହେଉଥିଲା । ଚୟନିକା ପତ୍ରିକାର

କଳେବର ସେ ସମୟର ଖ୍ୟାତନାମା ପତ୍ରିକାମାନଙ୍କର ସମକକ୍ଷ ଥିଲା । 'ଚୟନିକା' ପତ୍ରିକାର ସଂପାଦକ ନିଜେ ଗୌରାଙ୍ଗ ପ୍ରଧାନ । ଅସୁରଢ଼ିପା ଗ୍ରାମରୁ 'ଚୟନିକା' ସାହିତ୍ୟ ପତ୍ରିକା ପ୍ରକାଶ କମ୍ ସୌଭାଗ୍ୟର ବିଷୟ ।

ଗୌରାଙ୍ଗ ପ୍ରଧାନ 'ବ୍ରହ୍ମପୁର ନବୀନ' ସାପ୍ତାହିକ ପତ୍ରିକାର ଧାରାବାହିକ ପ୍ରାବନ୍ଧିକ ଥିଲେ । ଓଡ଼ିଶାର ବହୁ ସାହିତ୍ୟ ଅନୁଷ୍ଠାନମାନଙ୍କରେ ସେ ଯୋଗ ଦେଇଥିଲେ । ବହୁ ଅନୁଷ୍ଠାନରୁ ସେ ବିବିଧ ଉପାଧିର ଅଧିକାରୀ ସାହିତ୍ୟିକ ଗୌରାଙ୍ଗ ପ୍ରଧାନ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟୟନ କାଳରେ 'କଟକ ପୀର', କନ୍ଦର୍ପ ନାମରେ ନାମିତ । ପାରାଦ୍ୱୀପ 'ମନସ୍ୱିନୀ' ସାହିତ୍ୟ ଅନୁଷ୍ଠାନ ତାଙ୍କୁ 'ରସରାଜ' ପଦ ନୟାଗଡ଼ ପରମ୍ପରା ସାହିତ୍ୟ ଅନୁଷ୍ଠାନ ତାଙ୍କୁ 'ଚିରବସନ୍ତ' ପଦ- ଓଡ଼ିଶା ଅହିଂସା ମଞ୍ଚ ତାଙ୍କୁ 'ଶାନ୍ତିଦୂତ' ପଦ- ଶରଣକୁଳ ମହାବିଦ୍ୟାଳୟ ତାଙ୍କୁ 'ରତିପତି'ପଦ- ଓଡ଼ିଶା କୃଷକ ମଞ୍ଚ ତାଙ୍କୁ 'କୃଷକ ବନ୍ଧୁ'ପଦ- ନୟାଗଡ଼ କୃଷକ ମଞ୍ଚ ତାଙ୍କୁ 'କବି କନ୍ଦର୍ପ' ପଦ- କଟକ ପାରାଦ୍ୱୀପରୁ ତାଙ୍କୁ 'କବି ମୁକୁଳ' ପଦରେ ଭୂଷିତ କରାଇଥିଲେ ।

<u>ରାଜନୀତିରେ ଗୌରାଙ୍ଗ ପ୍ରଧାନ :</u> ଓଡ଼ିଶା ନିର୍ମାତା ବିଜୟାନନ୍ଦ ପଟ୍ଟନାୟକଙ୍କର ପଟ୍ଟଶିଷ୍ୟ ଥିଲେ ଗୌରାଙ୍ଗ ପ୍ରଧାନ । ଓଡ଼ିଶାର ଲୋକଦଳ ତରଫରୁ ରଣପୁର ନିର୍ବାଚନମଣ୍ଡଳୀରୁ ସେ ବିଧାୟକ ପାଇଁ ନିର୍ବାଚନ ଲଢୁଥିଲେ କିନ୍ତୁ ପାରିଲେନି । ଏହିଠାରୁ ତାଙ୍କର ରାଜନୀତି ଜୀବନରେ ସେ ଜାଣି ଜାଣି ପୂର୍ଣ୍ଣଚ୍ଛେଦ ଟାଣି ଦେଇଥିଲେ ।

ଖିଆଲି ବାଦ୍‌ଶାହା ଠାଣିର ଗୌରାଙ୍ଗ ପ୍ରଧାନ ଶରଣକୁଳ ନିକଟସ୍ଥ ଅସୁରଢ଼ିପା ଗ୍ରାମର ଦରଦୀ ମଣିଷଟିଏ । ତାଙ୍କର ବନ୍ଧୁତାର ହାତ ଖୁବ୍ ଲମ୍ୱ । କେମିତି କାହା ପାଇଁ ହୋଇପାରେ ୧୯୩୬ ମସିହା ଅକ୍ଟୋବର ୫ତାରିଖରେ ଅସୁରଢ଼ିପା ଗ୍ରାମରେ ଜନ୍ମଲାଭ କରିଥିଲେ ଏକ କୃଷକ ପରିବାରରେ । ତାଙ୍କ ପିତାଙ୍କର ନାମ ଲଡୁକିଶୋର ପ୍ରଧାନ, ମାତାଙ୍କର ନାମ ରଙ୍ଗବତୀ ପ୍ରଧାନ । ୨୦୧୫ ଜୁଲାଇ ୨୪ତାରିଖରେ ତାଙ୍କର ପରଲୋକ ଘଟିଥିଲା ।

<u>ସଂସ୍କାରକ ମୁରାରୀ ତ୍ରିପାଠୀ :</u> ସଂସାରର ଭୋଗବିଳାସର ସହଜ ପଥ



ଛାଡ଼ି ଦଳିତ ଗଳିତ ଜନର ସେବାର କଠିନ ପଥରେ ପାଦ ପକାଇବା ଶହେକରେ ଜଣେ ଦେଖିବା ବିରଳ । ଏପରି ବିରଳ ପୁରୁଷ ଜଣେ ମୁରାରୀ ତ୍ରିପାଠୀ, ଜନଆଦୃତ ଡାକ ମୁରାରୀ ଭାଇନା । ସେ ମହାପୁରୁଷ ତାଙ୍କର

ସେବା କାର୍ପଣ୍ୟ ବଳରେ ଦେଶର ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକୃଷନ ଠାରୁ ଉପହାର ସ୍ୱରୂପ ମଥାକୁ ପଗଡ଼ି, ସ୍ୱର୍ଣ୍ଣ ପଦକ ସହ ପାଞ୍ଚହଜାର ମୁଦ୍ରା ପାଇଥିଲେ। ରାଷ୍ଟ୍ରପତିଙ୍କ ଠାରୁ ପ୍ରାପ୍ତ ଉପହାରକୁ ନିଜର ନମଣି ପୁରୀ ସେବାନୁଷ୍ଠାନକୁ ମୁକ୍ତହସ୍ତରେ ପ୍ରଦାନ କରିଥିଲେ। ଏହି ପ୍ରତିଭାବାନ ପୁରୁଷଙ୍କର ଜନ୍ମ ଶରଣକୁଳ ନିକଟସ୍ଥ ବାଉଁଶିଆ ରଘୁନାଥପୁର ବ୍ରାହ୍ମଣଶାସନୀ ଗାଁ'ରେ। ସେ ଏ ଅଞ୍ଚଳର ଗୌରବ ମୁରାରୀ ତ୍ରିପାଠୀ। ମୁରାରୀଙ୍କର ପିତାଙ୍କର ନାମ ଲୋକନାଥ ତ୍ରିପାଠୀ, ମାତା ଫକୀର ଦେବୀ।

ମୁରାରୀ ତ୍ରିପାଠୀଙ୍କର ଜୀବନର ଚଲାପଥ କେଉଁ ଆଡ଼କୁ ତାହା ବାଲ୍ୟତ ବେଳରୁ ଜଣାପଡ଼ିଯାଉଥିଲା। ପିଲାଟି ଦିନରୁ ସେ ସାହସୀ, ସ୍ପଷ୍ଟବାଦୀ, ନିର୍ଭୀକ ଥିଲେ। ବାଲ୍ୟତ ବେଳର କେତେକ ଘଟଣାରୁ ବେଶ୍ ଜଣାପଡ଼େ ମୁରାରୀ ଦିନେ ଜନ ସ୍ମରଣୀୟ ହେବେ।

ନଅ, ଦଶ ବର୍ଷ ବୟସର ମୁରାରୀ ଗାଁ'ର କୁସୁମୀ ନଈକୂଳ ଆମ୍ବତୋଟାରେ ଆମ୍ବ ତୋଳୁଥିବା ସମୟରେ ତାଙ୍କ ଅବଧାନଙ୍କ ହାବୁଡ଼େ ପଡ଼ିଗଲେ। ଅବଧାନେ ମୁରାରୀକୁ ଦଣ୍ଡବିଧାନ କଲେ ଗୋଟେ ଗୋଡ଼ରେ ଠିଆ ହୋଇଥା। ଅବଧାନଙ୍କ ଆଦେଶ ମାନି ମୁରାରୀ ଆମ୍ବ ଧରି ଠିଆ ହୋଇଥାଏ। ରାତି ହୋଇଗଲା, ଘରେ ମୁରାରୀର ଖୋଜାପହରା ଚାଲିଲା ହେଲେ ଟିକିପିଲା ମୁରାରୀ ଅବଧାନଙ୍କ ଆଦେଶ ମାନି ଠିଆ ହୋଇଥାଏ, କାହା କଥା ଶୁଣୁ ନଥାଏ। ଅବଧାନେ ଫେରି ତାଙ୍କୁ ଦଣ୍ଡରୁ ମୁକୁଳାଇବାରୁ ପିଲାଟି ଘରକୁ ଫେରିଥିଲା।

ଏହିପରି ଆଉ ଏକ ଛୋଟିଆ ମାନବୀୟ ଘଟଣା- ଶ୍ରେଣୀଗୃହରେ ମୁରାରୀ ଛାତ୍ରମାନଙ୍କ ଗହଣରେ ଅଧ୍ୟୟନ ସମୟରେ ଶ୍ରେଣୀଗୃହ କାନ୍ଥରେ ଫିରିଙ୍ଗିଟାକୁ ଝିଣ୍ଟିପିଟ ମାରିବା ପାଇଁ ଗୋଡ଼ାଇଛି। ମୁରାରୀ ଶ୍ରେଣୀକକ୍ଷରେ ହଠାତ୍ ଉଚ୍ଚସ୍ୱରରେ ସୁସୁକାର ମାରିବାରୁ ଅବଧାନେ ପିଲାମାନେ ଚମକି ପଡ଼ିଲେ। ଗୁରୁଜୀ ମୁରାରୀକୁ ନିସ୍ତୁକ ମାଡ଼ ଦେଲେ। ଶ୍ରେଣୀର ବିଶୃଙ୍ଖଳା କରିବା କାରଣ କ'ଣ? ମୁରାରୀ ନିର୍ଭିକରେ ସାହସ ବାନ୍ଧି କହିଲେ ମୋର ଦୋଷ ଅବଧାନେ ଯେତେ ବାଡ଼ଉଛନ୍ତି ବାଡ଼ାନ୍ତୁ। ମୋର ସୁସୁକାର ଶବ୍ଦରେ ଦେଖନ୍ତୁ ଫିରିଙ୍ଗିଟା ବଞ୍ଚିଗଲା। ଅବଧାନେ ବୁଝିଗଲେ। ପିଲାଟିର ଜୀବ ପ୍ରତି ଦୟା ଦେଖି ଖୁସି ହୋଇଗଲେ।

ମୁରାରୀ ତ୍ରିପାଠୀ ଏଇ କମ୍ ବୟସରେ ଗ୍ରାମରେ ସ୍ୱେଚ୍ଛାସେବୀ ଛାତ୍ରସମାଜ ଗଢ଼ିଥିଲେ। ସାଥୀମାନଙ୍କୁ ମେଳେଇ ଗ୍ରାମ ସଫେଇ, ପୋଖରୀ ସଫେଇ କରୁଥିଲେ। କେଉଁ ଗାଁ'ରେ ନିଆଁ ଲାଗିଗଲେ ସ୍ୱେଚ୍ଛାସେବୀ ସଙ୍ଗଠନର ସଭ୍ୟମାନଙ୍କୁ ନେଇ ନିଆଁ ଲିଭାଇବାକୁ ଦୌଡ଼ି ଯାଉଥିଲେ। ମୁଠିଚାଉଳ ସଂଗ୍ରହ କରି ଗାଁ'ର ଗରିବ ଲୋକଙ୍କୁ ବାଣ୍ଟି ଦେଉଥିଲେ। ପିଲାଟିଦିନରୁ ଏ ସମାଜ ସେବା କର୍ମ ତାଙ୍କୁ ସଂସ୍କାରକ ମୁରାରୀ ଭାଇନା ପଦରେ ସମାଜରେ ପ୍ରତିଷ୍ଠିତ କରିଥିଲା।

ମୁରାରୀ ତ୍ରିପାଠୀ ଅବିବାହିତ ଥିଲେ। ସେବା ହିଁ ତାଙ୍କ ଜୀବନର ପ୍ରଧାନ ମଙ୍ଗଳମୟ ଲକ୍ଷ୍ୟ। ଯୁବ ବୟସରେ ଗାଁ ଛାଡ଼ି ବିଶ୍ୱବାସୀଙ୍କ ତୀର୍ଥଯାତ୍ରା ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ଜଗନ୍ନାଥପୁର ପୁରୀରେ ଶେଷ ଜୀବନ ପର୍ଯ୍ୟନ୍ତ ରହିଗଲେ। ମୁରାରୀ ଭାଇନା କହିଲେ ପୁରୀରେ ସମସ୍ତେ ତାଙ୍କୁ ଜାଣିବେ। ସେ ନିଜକୁ ମାନବ ସେବାରେ ଉତ୍ସର୍ଗ କରିଦେଇଥିଲେ। ମାନବର ସେବା ମାଧବର ସେବା ତୁଲ୍ୟ ମଣିଥିଲେ।

ମୁରାରୀ ତ୍ରିପାଠୀ ପୁରୀରେ ଏକ ସ୍ୱେଚ୍ଛାସେବୀ ସଂଗଠନ ଗଢ଼ିଲେ। ଏ ସଙ୍ଗଠନରେ ପୁରୀର ଅନେକ ଯୁବକ ଯୋଗଦେଇଥିଲେ। ପୁରୀ ସହରର ସ୍ୱଚ୍ଛତା ପାଇଁ ନର୍ଦ୍ଦମାମାନ ସଫା କରୁଥିଲେ। ଅସହାୟ ଲୋକର ସହାୟତା କରୁଥିଲେ। ଶବ ସଂସ୍କାର କରୁଥିଲେ।

ଥରେ ପୁରୀ ରଥଯାତ୍ରାରେ ହଇଜା ବ୍ୟାପୀଗଲା। ବହୁସଂଖ୍ୟାରେ ଶବ ପୁରୀରେ ପଡ଼ିଗଲା। ଏ ମହାମାରୀ ବିଭୀଷିକାରେ ଆତଙ୍କିତ ହୋଇ ପୁରୀରେ ତାଟିକବାଟ ପଡ଼ିଗଲା। ଏ ଭୟଙ୍କର ଦୃଶ୍ୟ ଦେଖି ସାଥୀମାନେ ଯେ ଯୁଆଡ଼େ ପଳାଇଗଲେ। ସାହସୀ ମୁରାରୀ ତ୍ରିପାଠୀ ଶବ ଗୋଟେଇ ସ୍ୱର୍ଗଦ୍ୱାରରେ ପୋଡ଼ିବାରେ ଲାଗିଲେ। ସେତେବେଳେ ଗୋପବନ୍ଧୁ ବାଲେଶ୍ୱରରେ ଅଟକି ଯାଇଥିଲେ। ପୁରୀକୁ ଫେରି ଗୋପବନ୍ଧୁ ମୁରାରୀଙ୍କର ଦୀର୍ଘ ବୟସ କାମନା କଲେ। ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ଧନ୍ୟ ତୁ ମୁରାରୀ, ତୁ ହିଁ ଜଗନ୍ନାଥଙ୍କର ଏକ ଅଂଶ ସ୍ୱରୂପ ନ ହୋଇଥିଲେ ତୁ ଏକାଥରକେ ଶହ ଶହ ଭଗବାନଙ୍କ ଚରଣରେ ସେବା କରିପାରିଥା'ନ୍ତୁ!"

ମୁରାରୀ ତ୍ରିପାଠୀ ଦେଶର ସ୍ୱାଧୀନତା ସଂଗ୍ରାମର ଛାମୁଆ ବାହିନୀର ବିପ୍ଳବୀ ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନରେ ନିଜକୁ ଝାସ ଦେଇ କାରାବରଣ କରିଥିଲେ। ସୁବାସ ବୋଷଙ୍କ ଆଜାଦହିନ୍ଦ୍ ଫୌଜରେ ଫୌଜ ଥିଲେ। ଇଂରେଜ ସରକାରଙ୍କ ନଜରର ଉହାଡ଼ରେ ବଣ ଜଙ୍ଗଲରେ ମାସ ମାସ ବିତାଇଥିଲେ। ଦେଶର ସ୍ୱାଧୀନତା କାଳରେ ନୟାଗଡ଼ ରାଜ୍ୟର ତିନିଜଣ ମନ୍ତ୍ରୀମଣ୍ଡଳରେ ମୁରାରୀ ତ୍ରିପାଠୀ ଥିଲେ ବାଚସ୍ପତି। ଏହାର ମୁଖ୍ୟମନ୍ତ୍ରୀ ବୃନ୍ଦାବନ ଚନ୍ଦ୍ର ସିଂହ ଅନ୍ୟ ମନ୍ତ୍ରୀ ବାଞ୍ଛାନିଧି ସେନାପତି ଓ ଶ୍ରୀଧର ଦାଶ।

୧୨.୯.୧୯୬୬ ମସିହାରେ ମହାମାନବୀୟ ଗୁଣର ଅଧିକାରୀ, ସମାଜସେବୀ, ସଂସ୍କାରକ, ଜାତୀୟ ଜୀବନକୁ ଅଙ୍ଗୀକାର କରିଥିବା ମୁରାରୀ ତ୍ରିପାଠୀ ପୁରୀରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ। ସେ ଶବ ସଂସ୍କାର କରୁଥିଲେ ହେଲେ ତାଙ୍କ ଶବ ହଜାର ହଜାର ମଣିଷ ସଂସ୍କାର କଲେ। ଚିତାଗ୍ନି କାଳରେ ତାଙ୍କର ପରିବାର ପାଖରେ ଥିଲେ। ମୁରାରୀ ଭାଇନାଙ୍କ ସ୍ୱର୍ଗ ଗମନ ଯାତ୍ରା ସର୍ବସାଧାରଣ ଜନତାଙ୍କ ପ୍ରାର୍ଥନାରେ ସଫା ହୋଇ ହୋଇ ଯାଉଥାଏ।

<u>ନିରାଶ୍ରୟର ଆଶ୍ରୟ ଲୋକନାଥ ଦାଶ, ଏକ ବିସ୍ମୟ ପୁରୁଷ :</u> ଏକକ କଳାକାର, ସମାଜସେବୀ, ସଂସ୍କାରକ, ସାମ୍ବାଦିକ, ସୁଲେଖକ, ଆଶ୍ରୟ ସମ୍ବାଦପତ୍ରର ପ୍ରକାଶକ ତଥା ଆଶ୍ରୟ ଦିବ୍ୟାଙ୍ଗ ସେବାଗ୍ରାମ ହରେକୃଷ୍ଣ ସେବାସଦନ, ବାଉଁଶିଆର ପ୍ରତିଷ୍ଠାତା ଲୋକନାଥ ଦାଶ ନିଜ କଳ୍ପନାର ଚିନ୍ତା ଚେତନାକୁ ବାସ୍ତବ ରୂପ ଦେବାରେ କର୍ମଚଞ୍ଚଳ ବିସ୍ମୟ ପୁରୁଷ। ଲୋକନାଥ ଦାଶ ନିଜେ ଭିନ୍ନକ୍ଷମ ଥାଇ ଦିବ୍ୟାଙ୍ଗ, ଭିନ୍ନକ୍ଷମ, ଅସହାୟ, ଅବହେଳିତ, ନିଷ୍ପେସିତ, ଦୀନଦରିଦ୍ର, ନିରାଶ୍ରୟ, ଅନାଥ, ବୃଦ୍ଧବୃଦ୍ଧା, ଦୁସ୍ଥ, ଜରା, ରୋଗାଗ୍ରସ୍ତ, ଲେପ୍ରସି, ବିକଳାଙ୍ଗ, କିଡ଼ନୀ ପୀଡ଼ିତ, କ୍ୟାନସର ରୋଗୀ, ବିଧବା ପୀଡ଼ିତ ଓ ଜାତି ଅଜାତି ପ୍ରତିବନ୍ଧ ଉଚ୍ଛେଦ ସେବାରେ କର୍ମସାଧନାର ବ୍ରତ ରଖିବା କମ ଆଶ୍ଚର୍ଯ୍ୟର ଲୋକଚିନ୍ତା। ସେ ମହୋଦୟ ଏକକ କଳା ପରିବେଷଣ ମାଧ୍ୟମରେ ନିଜଗଢ଼ା ମଞ୍ଚରେ ଭିନ୍ନକ୍ଷମ ଅସହାୟ ଚରିତ୍ରରେ ଉପନୀତ ହୋଇ ସେମାନଙ୍କର ଦୂରାବସ୍ଥାକୁ ସ୍ୱଅଭିନୟରେ ରୂପାନ୍ତର କରି ସେମାନଙ୍କୁ କର୍ମକ୍ଷମ କରିବାର ସକ୍ଷମତାର ବାଟ ଦେଖାଇବାରେ ଜଣେ ସଫଳ ଏକକ କଳାକାର। ସେ ଅଭିନୟ କଳାରେ ୧୫୦୦ରୁ ଊର୍ଦ୍ଧ୍ୱ ନର, ନାରୀ, ପଶୁପକ୍ଷୀଙ୍କର ସ୍ୱର ଉଚ୍ଚାରଣ କରିବାରେ ଜଣେ ସିଦ୍ଧସାଧକ। ତାଙ୍କ ଦ୍ୱାରା ଗଢ଼ା 'ଆଶ୍ରୟ', ଦିବ୍ୟାଙ୍ଗ ସେବାଗ୍ରାମ ହରେକୃଷ୍ଣ ସେବାସଦନ (ବୃଦ୍ଧାଶ୍ରମ)ରେ ଦିବ୍ୟାଙ୍ଗ, ଅସହାୟଙ୍କୁ ସେବାର ବାର୍ଷିକ କାର୍ଯ୍ୟଧାରା, ବିଧିବଦ୍ଧ ଭାବେ କାର୍ଯ୍ୟରତ। ଅସହାୟ ଛାତ୍ରୀଛାତ୍ରଙ୍କୁ, ପୁସ୍ତିକା, ସ୍କୁଲବ୍ୟାଗ୍, ଦିବ୍ୟାଙ୍ଗଙ୍କୁ ସାଇକେଲ୍, ଆଶ୍ରୟବାଡ଼ି, ଶୀତବସ୍ତ୍ର, ବସ୍ତ୍ର, ରନ୍ଧାଖାଦ୍ୟ, ଶୁଖିଲା ଖାଦ୍ୟ ଜାତୀୟ ଦିବସମାନଙ୍କରେ ବଣ୍ଟନ କରାଯାଏ। ସେ ଦେଶର ବହୁଗୁଣର ଅଧିକାରୀ ଚିକିତ୍ସକ, ସମାଜସେବୀ, କବି, ସାହିତ୍ୟିକ, ଗବେଷକ, ଶିଳ୍ପଗୁରୁମାନଙ୍କୁ ଆଶ୍ରୟର ସଦସ୍ୟ, ଶୁଭେଚ୍ଛୁ ଓ ଶୁଭାକାଂକ୍ଷୀଙ୍କୁ ଯୋଡ଼ିପାରିଥିଲେ ଆଶ୍ରୟ ମାର୍ଗଦର୍ଶିକା ଭାବେ। ସମାଜସେବୀକା ପଦ୍ମଶ୍ରୀ ଡ. ତୁଳସୀ ମୁଣ୍ଡା ଆଶ୍ରୟର ଆବାହକ।

ପରିବ୍ୟାପ୍ତ ଚିନ୍ତା ଚେତନାର ସାଧକ ଲୋକନାଥ ଦାଶ ନିଜ ଗ୍ରାମ ପ୍ରସିଦ୍ଧ ଶୈବପୀଠ ଶରଣକୁଳର ବାଉଁଶିଆ ଗ୍ରାମରେ ୧୯୯୪ ମସିହାରେ 'ଆଶ୍ରୟ' ପ୍ରତିଷ୍ଠା କରିଥିଲେ। ସେ ଆଶ୍ରୟ ତରଫରୁ ଦିବ୍ୟାଙ୍ଗ, ଭିନ୍ନକ୍ଷମ, ଅସହାୟ, ଅବହେଳିତ, ଦୀନଦରିଦ୍ର, ନିରାଶ୍ରୟ, ଅନାଥ, ବୃଦ୍ଧ-ବୃଦ୍ଧା, ରୋଗଗ୍ରସ୍ତ, ଲେପ୍ରସି, ବିକଳାଙ୍ଗ, କିଡ଼ନୀ, କ୍ୟାନସର ରୋଗୀ, ବିଧବା ଓ ପୀଡ଼ିତାଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ରାଜ୍ୟରୁ ପ୍ରକାଶିତ ପ୍ରଥମ ଓଡ଼ିଆ ସମ୍ବାଦପତ୍ର 'ଆଶ୍ରୟ' ନିୟମିତ ପ୍ରକାଶିତ। ଏହା ସହିତ ଅସହାୟଙ୍କୁ ସହାୟତାର ସ୍ୱର ପ୍ରଦାନ କରିବାରେ ସହାୟିକା 'ଆଶ୍ରୟ' ପତ୍ରିକା ବି ତାଙ୍କଦ୍ୱାରା ସଂପାଦିତ। ସେ ନିୟମିତ ବ୍ୟବଧାନରେ ବର୍ତ୍ତମାନ ସୁଦ୍ଧା ୧୪୧ ଥର ରକ୍ତଦାନ କରିବା ସହିତ ଦୀର୍ଘ ୩୫ ବର୍ଷ ଧରି ଜୀବନବ୍ୟାପୀ ଦିବ୍ୟାଙ୍ଗ ଓ ଅସହାୟମାନଙ୍କ ନିମନ୍ତେ ନିଜକୁ ସମାଜସେବାରେ ଉତ୍ସର୍ଗୀକୃତ କରି ଦେଶର ବିଭିନ୍ନ ସ୍ଥାନରୁ ଶତାଧିକ ପୁରସ୍କାର ଅର୍ଜନ କରିଛନ୍ତି ।

ବହୁ ମାନବୀୟ ଗୁଣର ଅଧିକାରୀ ଲୋକନାଥ ଦାଶ, ବିଶିଷ୍ଟ ଗାନ୍ଧିବାଦୀ ପିତା ନାରାୟଣ ଦାଶ, ମାତା ହାରାମଣୀ ଦାଶଙ୍କ କୋଳରେ ଶରଣକୂଳର ବାଉଁଶିଆ ରଘୁନାଥପୁର ଗ୍ରାମରେ ୨୪ଜୁନ୍ ୧୯୭୧ ମସିହାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ଜେଜେ ହରେକୃଷ୍ଣ ଦାଶ ଜଣେ ସଚ୍ଚା ଉତ୍ତମ ସର୍ବରାକାର ଥିଲେ। ଜେଜେ ପିତାମାତାଙ୍କର ଆଦର୍ଶ ଜୀବନଦର୍ଶନରେ ଗଢ଼ି ହୋଇଥିଲେ ଲୋକନାଥ ଦାଶ। ସେବେଠୁ ପିତା, ପିତାମହଙ୍କ ହାତରେ ପାରି ହୋଇଥିବା କୁସୁମ ସୁରଭିତ ଚଲାପଥରେ ସେ ଚାଲିଛନ୍ତି ଯେ ଚାଲିଛନ୍ତି। ଲୋକନାଥ ଦାଶଙ୍କର ଶ୍ରେଷ୍ଠ ବ୍ରତ ସମାଜସେବା ବୃତ୍ତି ଅଭିନୟ ଓ ସାମ୍ବାଦିକତା ମାଧ୍ୟମରେ ଜୀବନର ମହକ ଦର୍ଶନ ଶ୍ରୋତା, ପାଠକ, ଦର୍ଶକଙ୍କୁ ପ୍ରଦାନ କରିବା। ବହୁ ପ୍ରତିଭାବାନ ଏହି ଯୁବକ ନିଜ ଅନୁଷ୍ଠାନରେ କର୍ମରତ ରହି ଦେଶର ବହୁ ସଙ୍ଗଠନ ସହିତ ସଂଶ୍ଳିଷ୍ଟ ହୋଇ ବହୁ ଅନୁଷ୍ଠାନରୁ ସମ୍ବର୍ଦ୍ଧିତ ଓ ସମ୍ମାନୀତ। ଏହି ପରିବ୍ୟାପ୍ତ ପୂର୍ଣ୍ଣ ଯୁବକଙ୍କ ବିଷୟ ଲେଖିଲାବେଳେ ଲେଖନୀର ଧାର ଛିଡ଼େନି ତାଙ୍କର ପରିଚୟ ସେ ନିଜେ।

<u>ପାଠାଗାର ଆନ୍ଦୋଳନର ସିଦ୍ଧିସାଧକ ଲିଙ୍ଗରାଜ ମିଶ୍ର :</u> ବହି ମଣିଷର ବଡ଼ ବନ୍ଧୁ ବିକାଶର ସାଇତା ଗୁପ୍ତଧନ। ସଭ୍ୟତାର ଆବାହନୀ କାଳରୁ ମାଟି, ଶିଳା, ଧାତୁ ଫଳକରେ ଖୋଦେଇ ହୋଇ ରହିଥିବା ତତ୍‌ସମୟର ଭାବାବେଗ ତାଳପତ୍ର ପୋଥିରେ ସୁସଜ୍ଜିତ କାଗଜ ପୁସ୍ତିକାମାନଙ୍କରେ କାହାଣୀ, ଗୀତିପୁରାଣ ଓ ଇତିହାସର ଲୟ ବିଲୟର ବିଷୟବସ୍ତୁ ଉତ୍ତରପୁରୁଷଙ୍କ ପାଇଁ ନିତାନ୍ତ ଆବଶ୍ୟକ ସେମାନଙ୍କର ଗତି ପ୍ରଗତିର ମୂଳ ଉତ୍ସ। ହଜିଯାଇଥିବା ଏ ଅମୂଲ୍ୟ ସମ୍ପଦକୁ ସଂଗ୍ରହାଳୟରେ ସଜେଇ ରଖିବା ପାଠାଗାରରେ ସାଇତି ରଖିବା କମ୍ ସାଧନାର ଫଳ ନୁହେଁ। ଯେଉଁମାନେ ଲୁଚିଯାଉଥିବା ଏ ରତ୍ନକୁ ସାଉଁଟି ଆଣି ସାଇତି ପାରିଛନ୍ତି ସେମାନେ ହିଁ ସଭ୍ୟତାର ଯୋଗଜନ୍ମା ପୁରୁଷ। ଏ ମହାମନୀଷିଙ୍କ ମଧ୍ୟରେ ନୟାଗଡ଼ ଗଡ଼ଜାତ ରାଜ୍ୟର ପାଠାଗାର ଆନ୍ଦୋଳନର ମୁଖ୍ୟ ପ୍ରବକ୍ତା ଲିଙ୍ଗରାଜ ମିଶ୍ର। ନୟାଗଡ଼ର ଦକ୍ଷିଣରେ ରତ୍ନମାଳା ପର୍ବତର ଉତ୍ତରରେ ଅବସ୍ଥିତ କଜଳାଇପଲ୍ଲୀ ଗ୍ରାମରେ ଲିଙ୍ଗରାଜ ମିଶ୍ର ୧୩.୧୧.୧୯୧୦ କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନରେ ଜନ୍ମଗ୍ରହଣ କରିଥିଲେ।

ରାଜ୍ୟରେ ଶିକ୍ଷାର ଅଭିବୃଦ୍ଧି ଶିକ୍ଷାର ପ୍ରସାର ଦିଗରେ ପାଠାଗାରର ଭୂମିକା ବିସ୍ତାର। ଶିକ୍ଷାକୁ ଲୋକାଭିମୁଖୀ କରିବା ପାଇଁ ନୟାଗଡ଼ ରାଜ୍ୟର ଦୁଇ ପ୍ରଜ୍ଞାଶୀଳ ଯୁବକ ଲିଙ୍ଗରାଜ ମିଶ୍ର, କଜଳାଇପଲ୍ଲୀ, ଦଣ୍ଡପାଣି ମିଶ୍ର, ଶରଣକୂଳ, ବ୍ରହ୍ମପୁର ଲକ୍ଷ୍ମୀନାରାୟଣ ସାହୁଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ପାଠାଗାର ଆଲୋଚନାଚକ୍ରରେ ଯୋଗଦେଇଥିଲେ। ୧୯୩୦ ମସିହାରେ ଏହି ଆଲୋଚନାଚକ୍ରରେ ଅନୁପ୍ରାଣିତ ହୋଇ ଲିଙ୍ଗରାଜ ମିଶ୍ର ନିଜ ଗ୍ରାମ କଜଳାଇପଲ୍ଲୀରେ ଲୋକଙ୍କଠାରୁ ମୁଠି ଭିକ୍ଷାକରି ୧୯୩୫ ମସିହାରେ ଗ୍ରାମର ମହେଶ୍ୱର ରଥଙ୍କ ଏକ ଚାଳିଆ ଘରେ ସରସ୍ୱତୀ

ପାଠାଗାର ନାମକରଣ କରି ପାଠାଗାର ପ୍ରତିଷ୍ଠା କରିଥିଲେ । ଅଗ୍ନିଭୟକୁ ଆଖିରେ ରଖି ନୟାଗଡ଼ ରାଜା ସାହିତ୍ୟାନୁରାଗୀ କୃଷ୍ଣଚନ୍ଦ୍ର ସିଂ ମାନଧାତାଙ୍କଠାରୁ ୧୦୦୦ଟଙ୍କା ଅନୁଦାନ ପାଇ ଚାଳିଆଘରରୁ ପକ୍କା ଘରକୁ ସ୍ଥାନାନ୍ତର କରିଥିଲେ । ଲିଙ୍ଗରାଜ ମିଶ୍ରଙ୍କ ଅକ୍ଲାନ୍ତ ପରିଶ୍ରମ ଉଦ୍ୟମରେ ନୟାଗଡ଼ ଅଞ୍ଚଳରେ ଛୋଟ ବଡ଼ ୯୦ଟି ପାଠାଗାର ମୁଣ୍ଡଟେକି ଲୋକଙ୍କର ଶୈକ୍ଷିକ ଚେତନାକୁ ପ୍ରଭାବିତ କରିଥିଲା ।

୧୯୪୦ ମସିହାରେ ନୟାଗଡ଼ରେ ଲିଙ୍ଗରାଜ ମିଶ୍ର, ଦଣ୍ଡପାଣି ମିଶ୍ର ଓ ଅନ୍ୟ ସହଯୋଗୀଙ୍କ ଆଲୋଚନାରେ ସାହିତ୍ୟପ୍ରାଣ ନୟାଗଡ଼ ରାଜା କୃଷ୍ଣଚନ୍ଦ୍ର ସିଂ ମାନଧାତା ପ୍ରଭାବିତ ହୋଇ ରାଣୀ ସୌଭାଗ୍ୟମଞ୍ଜରୀ ଲାଇବ୍ରେରୀ ନୟାଗଡ଼ରେ ପ୍ରତିଷ୍ଠା କଲେ । ବର୍ତ୍ତମାନ 'ରାଣୀ ସୌଭାଗ୍ୟମଞ୍ଜରୀ ଲାଇବ୍ରେରୀ' କୃଷ୍ଣଚନ୍ଦ୍ର କ୍ଲବ୍‌ରେ ଅବସ୍ଥାପିତ ।

ଡ. ହରେକୃଷ୍ଣ ମହତାବ, ଡକ୍ଟର ପ୍ରାଣକୃଷ୍ଣ ପରିଜା, ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଶ୍ରୀନିବାସ କବିରତ୍ନ, ଦଣ୍ଡପାଣି ମିଶ୍ର ପ୍ରମୁଖ ଉତ୍କଳ ଲାଇବ୍ରେରୀ ଆସୋସିଏସନ୍ ପ୍ରତିଷ୍ଠା କରିଥିଲେ । ଏହାର ମୁଖ୍ୟ କାର୍ଯ୍ୟାଳୟ ବ୍ରହ୍ମପୁର ଥିଲା । ୧୯୪୯ ମସିହାରେ ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର ପ୍ରାଣକୃଷ୍ଣ ପରିଜା ପାଠାଗାର ଆନ୍ଦୋଳନକୁ ସମଗ୍ର ରାଜ୍ୟରେ ବ୍ୟାପକ ପ୍ରସାର ପାଇଁ ଉତ୍କଳ ଲାଇବ୍ରେରୀ ଆସୋସିଏସନ୍‌ର କାର୍ଯ୍ୟାଳୟକୁ ନୟାଗଡ଼କୁ ଉଠାଇ ଆଣିଥିଲେ । ଫଳତଃ ନୟାଗଡ଼ ହେଲା ଓଡ଼ିଶା ପାଠାଗାର ଆନ୍ଦୋଳନର ପ୍ରମୁଖ ସ୍ଥାନ ।

ସ୍ୱାଧୀନତାର ପରବର୍ତ୍ତୀ କାଳରେ ନୟାଗଡ଼ର ବଡ଼ ବଡ଼ ଛାମୁଆ ଗାଁ'ମାନଙ୍କରେ ପାଠାଗାରମାନ ବିକଶିତ ହେଲା । ନୟାଗଡ଼ ଜିଲ୍ଲାରେ ପ୍ରବାଦପୁରୁଷ ଗାନ୍ଧିବାଦୀ ଦାଶରଥି ପଟ୍ଟନାୟକ ଆପ୍ରାଣ ପ୍ରଚେଷ୍ଟାରେ ନୟାଗଡ଼ ନୂଆଗାଁ ବ୍ଲକ୍ ଉଦୟପୁରଠାରେ ବିଶ୍ୱସ୍ତରୀୟ ଏକ ପାଠାଗାର ପ୍ରତିଷ୍ଠା ଲାଭକରି ଜ୍ଞାନବିଜ୍ଞାନ ବିତରଣ କରୁଅଛି । ପଣ୍ଡିତ ଲିଙ୍ଗରାଜ ମିଶ୍ର ୯.୧୦.୧୯୫୮ରେ ପରଲୋକ ଗତ ହେଲେଣି ହେଲେ ସେ ଆମର ସବୁଦିନେ ମନପକାଇବାର ମହାନ ବ୍ୟକ୍ତିତ୍ୱ ।

<u>ବୈଦ୍ୟ ରଘୁନାଥ ଦାଶ :</u> ରଘୁନାଥ ଦାଶ ନୟାଗଡ଼ର ଜଣେ ସୁନାମଧନ୍ୟ ଅମୃତହସ୍ତା ବୈଦ୍ୟ । ରଘୁନାଥ ଦାଶଙ୍କର ବାସସ୍ଥାନ ଶରଣକୁଳ ଥାନା ଅଧୀନସ୍ଥ ଗୋଡିସାହି ଗ୍ରାମରେ । ସେ ଜାତିରେ ଭିଣା । ରୋଗୀ ସେବାରେ ସେ ଜଣେ ସିଦ୍ଧହସ୍ତ ଚିକିତ୍ସକ ହୋଇଥିବାରୁ ତାଙ୍କର ଚିତ୍ରପ୍ରତିମା ଲଡୁବାବା ମହାଦେବଙ୍କ ମୁଖ୍ୟମନ୍ଦିର ଦକ୍ଷିଣ ଦ୍ୱାର ବୃଷବନ୍ଧ୍ୱାରର ପଶ୍ଚିମ କାନ୍ଥରେ ସ୍ଥାନିତ ହୋଇଛି । ବୈଦ୍ୟ ରଘୁନାଥ ଦାଶ ରୋଗୀର ନାଡ଼ି ସ୍ପନ୍ଦନ ପରୀକ୍ଷା କରି ରୋଗ ନିଦାନ କରିବାର ଅଙ୍କିତ ଚିତ୍ରପ୍ରତିମା । ପର୍ଯ୍ୟଟକମାନେ ଏ ପ୍ରତିମାକୁ ଦେଖି କୁହନ୍ତି ଏ ଚିତ୍ର ଗୋଡିସାହି ବୈଦ୍ୟ ରଘୁନାଥ ଦାଶଙ୍କର । ତାଙ୍କର ସୁପୁତ୍ର ନରସିଂହ ଦାଶ ହୋମିଓ ଚିକିତ୍ସାରେ

ପ୍ରସିଦ୍ଧି ଲାଭ କରିଥିଲେ। ସୋଥ ବେମାରୀକୁ ସେ ତାଙ୍କର ଚିକିତ୍ସାରେ ଭଲ କରିଦେଉଥିଲେ।

ସ୍ମୃତିର ସୌରଭ ମୃତ୍ୟୁଞ୍ଜୟ ନାୟକ : ସାହିତ୍ୟ ପ୍ରାଣ ଅଧକ୍ଷ ମୃତ୍ୟୁଞ୍ଜୟ ନାୟକ ଜଣେ ଟାଣୁଆ ସଙ୍ଗଠକ ଓଜସ୍ୱୀଳ ଗବେଷଣାତ୍ମକ ପ୍ରବନ୍ଧମାଳା ଓଡ଼ିଆ ସାହିତ୍ୟ ଆକାଶର ଅବାରିତ ବର୍ଷାଜଳ। ସେ ରେଭେନ୍‌ସା କଲେଜରୁ ସ୍ନାତକୋତ୍ତର ଉପାଧି ଲାଭକରି ଖ୍ରୀଷ୍ଟ କଲେଜରେ ଓଡ଼ିଆ ବିଭାଗରେ ଅଧାପକ ପଦରେ ନିଯୁକ୍ତି ପାଇ ସେହି କଲେଜରୁ ଅଧକ୍ଷ ପଦରେ ଅବସର ଗ୍ରହଣ କରିଥିଲେ। ସେ କର୍ମମୟ ଜୀବନ ଖ୍ରୀଷ୍ଟ କଲେଜରେ କଟାଇ ଛାତ୍ରୀଛାତ୍ରମାନଙ୍କର ପ୍ରିୟ ମୃତ୍ୟୁଞ୍ଜୟ ସାର୍ ଥିଲେ।

ମୃତ୍ୟୁଞ୍ଜୟ ନାୟକ ଶରଣକୁଳ ଥାନା ଅନ୍ତର୍ଗତ ଗୋତିସାହି ଗ୍ରାମରେ ଏକ ଖଣ୍ଡାୟତ ପରିବାରରେ ୭.୫.୧୯୩୫ ମସିହାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିତା ସର୍ବରାକାର ବିଦ୍ୟାଧର ନାୟକ ଓ ମାତା ପଦ୍ମାବତୀ ଦେବୀ ଅଟନ୍ତି। ତାଙ୍କର ଜୀବନକାଳ କଟକରେ ଅତିବାହିତ ହୋଇଥିଲା। ଓଡ଼ିଆ ଭାଷାର ସମୃଦ୍ଧ କ୍ଷେତ୍ର ଖ୍ରୀଷ୍ଟ ମହାବିଦ୍ୟାଳୟ ଏହାକୁ ଓଡ଼ିଆ ଭାଷା ସାହିତ୍ୟର ଗବେଷଣା କ୍ଷେତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ। ସେ ସେଠାକାର ଓଡ଼ିଆ ବିଭାଗରେ ଅଧାପକ ଥିବା ସମୟରେ 'ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଇତିବୃତ୍ତ, ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶ ଓ ବିସ୍ତୃତି, ଗଦ୍ୟ ସାହିତ୍ୟର ଉଦ୍ଭବ ଓ ବିକାଶ, ମାଦଳା ପାଞ୍ଜି, ସନ୍ଥକବି ଅଚ୍ୟୁତାନନ୍ଦ ଓ ଶୂନ୍ୟସଂହିତା, କୋଣାର୍କେ ଓ ପଣ୍ଡିତ ନୀଳକଣ୍ଠ (ରାମଚଣ୍ଡୀରେ ସକାଳ) କୋଣାର୍କେ ଓ ପଣ୍ଡିତ ନୀଳକଣ୍ଠ (ମାୟାବତୀ) ଚିଲିକା ଓ କବିବର ରାଧାନାଥ, ଗୋଦାବରୀଶ ଓ ଏବେ ମଧ ବଞ୍ଚିଛି, ଭାରତୀୟ ମହିୟସୀ ପ୍ରଥମ ଓ ଦ୍ୱିତୀୟ ଖଣ୍ଡ, ଓଡ଼ିଶାର ପ୍ରତିଷ୍ଠିତ ପତ୍ରିକା ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ଓ ସାହିତ୍ୟ ବିଭବ (୧ମ ଓ ୨ୟ) ପ୍ରକାଶିତ ହୋଇ ଓଡ଼ିଆ ଭାଷା ଭଣ୍ଡାରକୁ ଋଦ୍ଧିମନ୍ତ କରେ। ସେ ଓଡ଼ିଶାରେ ଓଡ଼ିଆ ଭାଷା ସାହିତ୍ୟ ଗବେଷଣା ଉପରେ ଜଣାଶୁଣା ଉଚ୍ଚକୋଟିର ଲେଖକ।

ସ୍ମୃତିର ସୌରଭ ଚହଟ ମୃତ୍ୟୁଞ୍ଜୟ ନାୟକ ନିଜ ଗ୍ରାମ ଅବିଭକ୍ତ ଗୋତିସାହି ପଞ୍ଚାୟତର ବିସ୍ତୃତ ଅଞ୍ଚଳର ଶିକ୍ଷାର ବିକାଶ ପାଇଁ ଉଚ୍ଚବିଦ୍ୟାଳୟ ସ୍ଥାପନ ପ୍ରସ୍ତାବ ଆଣିଥିଲେ। ଗୋତିସାହି, ଜାମୁଟଝାଲା, କଲ୍ୟାଣପୁର, ସୋଲପଟା, ମାଛିପଡ଼ା, ରଘୁନାଥପୁର, କଣ୍ଟାବଣିଆ, ଗମ୍ଭାରିଡିହି ଗ୍ରାମର ମୁଖ୍ୟ ଲୋକଙ୍କୁ ସମବେତ କରାଇ ସୋଲପଟା ମଧଇଂରାଜୀ ବିଦ୍ୟାଳୟରେ ଏକ ଆଲୋଚନା ବୈଠକ କରାଇଥିଲେ। ବୈଠକର ନିଷ୍ପତ୍ତିକ୍ରମେ ଅଞ୍ଚଳର ମଧବର୍ତ୍ତୀ ସ୍ଥାନ ଯେଉଁଠାକୁ ଛାତ୍ରୀଛାତ୍ରଙ୍କ ଆସିବା ସହଜ ହେବ ସୋଲପଟା ଗ୍ରାମ ଭାଲୁମୁଣ୍ଡିଆ ପାଦଦେଶରେ ଜାତୀୟ ରାଜପଥର ପାର୍ଶ୍ୱରେ ସୋଲପଟା ମଧଇଂରାଜୀ ବିଦ୍ୟାଳୟ ପରିସର ମଧରେ ୧୯୬୪

ମସିହାରେ ସୋଲପଟା ଉଚ୍ଚବିଦ୍ୟାଳୟ ପ୍ରତିଷ୍ଠା ଲାଭକଲା । ସୋଲପଟା ଉଚ୍ଚବିଦ୍ୟାଳୟ ସ୍ଥାପନର ପ୍ରଥମ ଉଦ୍ୟକ୍ତା ଆବାହକ ଥିଲେ ମୃତ୍ୟୁଞ୍ଜୟ ନାୟକ । ଅଧୁନା ସୋଲପଟା ମିଳିତ ଉଚ୍ଚବିଦ୍ୟାଳୟ ନିଜ ପରିସର ମଧ୍ୟରେ ଅଙ୍ଗନବାଡ଼ି ଶିଶୁଠାରୁ ପ୍ରବେଶିକା ପରୀକ୍ଷା ଦେଉଥିବା ଛାତ୍ରୀଛାତ୍ରଙ୍କୁ ନେଇ ହସୁଛି । ଏ କ୍ଷେତ୍ର ଶିକ୍ଷାବିକାଶର କେନ୍ଦ୍ର ପାଲଟିଛି ।

<u>ନୟାଗଡ଼ ଦର୍ପଣ ପାଣ୍ଡବ ନାୟକ :</u> ଶ୍ରୀଯୁକ୍ତ ପାଣ୍ଡବନାୟକ ଏ ପୁସ୍ତକର ଲେଖକ ଏକାଧାରରେ କବି, ଗାଳ୍ପିକ, ଗବେଷକ, ପ୍ରାବନ୍ଧିକ, ମଞ୍ଚ ଅଭିନେତା, ଚଳଚ୍ଚିତ୍ର ଅଭିନେତା, ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ, ସଂଗଠକ, ଶିକ୍ଷାବିତ୍ ଭାବରେ ସୁପରିଚିତ ବ୍ୟକ୍ତିତ୍ୱ । ପାଣ୍ଡବ ନାୟକ ଶରଣକୁଳ ଥାନା ଅଧୀନସ୍ଥ ଗୋଡିସାହି ଗ୍ରାମର ଖଣ୍ଡାୟତ କୁଳ ନାୟକ ପରିବାରରେ ପିତା ସୁଦାମ ନାୟକ, ମାତା ବେଲଦେଈଙ୍କ କୋଳରେ ୧୪.୬.୧୯୫୦ମସିହାରେ ଜନ୍ମଲାଭ କରିଥିଲେ । ପିତାଙ୍କର କର୍ମଯୋଗର ନିଷ୍ଠା ଓ ମାତାଙ୍କର ସଚ୍ଚୋଟ ନିର୍ଭୀକ ଇଚ୍ଛା ଗାଁ'ରେ ତାଙ୍କ ପିଲାମାନେ ଜଣାଶୁଣା ହୁଅନ୍ତୁ । ତାହାହିଁ ହେଲା । ବଡ଼ପୁଅ ପାଣ୍ଡବ ନାୟକ ଓଡ଼ିଆ ଏମ୍.ଏ. ସାନପୁଅ ପଠାଣି ନାୟକ ଇଂରାଜୀରେ ଏମ୍.ଏ. । ବଡ଼ ଶିକ୍ଷକ, ସାନ ଇଂରାଜୀ ଅଧ୍ୟାପକ ଅଞ୍ଚଳରେ ବେଶ୍ ଜଣାଖୋଜା । ଲେଖକଙ୍କର ସହଧର୍ମିଣୀ ସୌଦାମିନୀ ନାୟକ ତ୍ୟାଗୀ, ସାଧ୍ୱୀ ଜଣେ ସୌଭାଗ୍ୟବତୀ ସୁଗୃହିଣୀ ଗୃହଲକ୍ଷ୍ମୀ । ସେ ଖଣ୍ଡପଡ଼ା ଶିଖରପୁର ଗ୍ରାମର ଧନଶାଳୀ ବ୍ୟକ୍ତି ରାଜନ ସ୍ୱାଇଁଙ୍କ କନ୍ୟା । ତାଙ୍କର ସାଧନା ନିଷ୍ଠା ବଳରେ ଘରଟିକୁ ଉଚ୍ଚଶିକ୍ଷିତ ଘର କରି ଗଢ଼ିଥିଲେ । ସୁଗୃହିଣୀ ରୂପରେ ଭୁଲି ହେବନି । ତାଙ୍କରି ତ୍ୟାଗ ବଳରେ ଦେବର ପଠାଣୀ ନାୟକଙ୍କୁ ଇଂରାଜୀ ଭାଷାରେ ଏମ୍.ଏ. ଯୋଗ୍ୟତା ହାସଲ କରାଇବା ଗାଁଗହଳରେ କମ୍ କଷ୍ଟସାଧ ନୁହେଁ । ତାଙ୍କର ତ୍ୟାଗର ଋଣ ପରିଶୋଧ କରିବା ପାଇଁ ଲେଖକ ନିଜ ଘରର ଠିକଣା 'ପାର୍ବତୀ ନିବାସ' ରଖିଥିଲେ ।

ଲେଖକ ପାଣ୍ଡବ ନାୟକଙ୍କର ସାହିତ୍ୟ କୃତି ରାଜ୍ୟର ପ୍ରତିଷ୍ଠିତ ପତ୍ରପତ୍ରିକା ଆସନ୍ତାକାଲି, ଗୋକର୍ଣ୍ଣିକା, ସମାବେଶ, ତିମିରି, ସମାରୋହ, ଅନ୍ୱେଷିତା, କଳିଙ୍ଗପ୍ରଭା, ସୁଲେଖା, ନୟାଗଡ଼ ଆଞ୍ଚଳିକ ସାହିତ୍ୟ ସମାଜ, ଶବ୍ଦ ସମୁଦ୍ର, ଶ୍ୱେତପତ୍ର, ଚୟନିକା, ପରମ୍ପରା, ନୟାଗଡ଼ ଲେଖକ ପରିଷଦ, ନୟାଗଡ଼ ଆରଣ୍ୟକ, ନୟାଗଡ଼ ଦର୍ପଣ, ସେତୁବନ୍ଧ, ଦାରୁଭୂତ, ଶ୍ରଦ୍ଧା, ସମ୍ବାଦ ସାହିତ୍ୟଘରର 'ବିମ୍ବ କକ୍ଷ'ରେ ପ୍ରକାଶ ଲାଭ କରେ ।

ଲେଖକଙ୍କର ପ୍ରକାଶିତ ପୁସ୍ତକ କବିତା ସଂକଳନ- 'ତ୍ରିକାଳ ପକ୍ଷୀ'

<u>ଅପ୍ରକାଶିତ ପାଣ୍ଡୁଲିପି :</u>

କବିତା ସଂକଳନ – ଚିନାମାଳୀ, ଅଫିଟା ଦ୍ୱାର, ଆଦିମ

ଗଳ୍ପ ସଂକଳନ – 'ଝଡ଼ାପତ୍ର'

ନାଟକ – ଉପହାର, ବିପତ୍ନୀକ, ଯାତ୍ରା ମଞ୍ଚନାଟକ 'ପକ୍ଷୀଘର', ସ୍ୱପ୍ନ ଆଉ ଏକ କୋଣାର୍କ

କ୍ଷୁଦ୍ର ନାଟକ – ସ୍ୱର୍ଗଦ୍ୱାର, କୋଣାର୍କ

ଗବେଷଣା ତଥା ଅନ୍ୱେଷଣଧର୍ମୀ ପୁସ୍ତକ – 'ନୟାଗଡ଼ ପରିକ୍ରମା'

ଜୀବନଧର୍ମୀ ସମାଲୋଚନାମୂଳକ ପୁସ୍ତକ – 'ଈଶ୍ୱର ଦାଶଙ୍କ ଝୁଲିରୁ'

ମଞ୍ଚକଳାର ଅଭିନେତା ଭାବରେ ଲେଖକ ଏକ ଶତରୁ ଊର୍ଦ୍ଧ୍ୱ ନାଟକରେ ଅଭିନୟ କରି ଦର୍ଶକଙ୍କ ଦ୍ୱାରା ଉଚ୍ଚପ୍ରଶଂସିତ। ଡ୍ରାମା ମଞ୍ଚ, ଯାତ୍ରା ରଙ୍ଗମଞ୍ଚ, ମୁକ୍ତମଞ୍ଚ, ଚରିତ୍ରର ଜଣେ ନିଖୁଣ କଳାକାର। କବି, ନାଟ୍ୟକାର, ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ହରିହର ମିଶ୍ରଙ୍କର 'ସୁଖବାସୀ' ଚଳଚ୍ଚିତ୍ରରେ ସେ ଅଭିନୟ କରିଥିଲେ। ବୟସର ଆଧିକ୍ୟ ଯୋଗୁଁ ୨୦୨୧ ମସିହାରୁ ମଞ୍ଚକଳା ଅଭିନୟରୁ ସେ ଓହରିଲେ। ପାଣ୍ଡବ ନାୟକ ଜଣେ ସହିଷ୍ଣୁ ସଂଗଠକ। ଗ୍ରାମାଞ୍ଚଳରେ ନାଟ୍ୟକଳା, ଲୋକକଳା ପ୍ରଚାର କରିବା ତାଙ୍କର ସାଧୁ ଉଦ୍ୟମ। ତାଙ୍କର ସଂଗଠନରେ ନାଟ୍ୟସମ୍ରାଟ ଯୋଗେନ୍ଦ୍ର ବରାଡ଼ ସୋଲପଟାଙ୍କର ଯୋଗେନ୍ଦ୍ର ଗଣନାଟ୍ୟ ପ୍ରତିଷ୍ଠା ଲାଭକରିଥିଲା। ନାଟ୍ୟ କାହାଣୀ ଚରିତ୍ରର ଅବିକଳ ଅଭିନୟ ପରିବେଷଣର ସାଧନା, ଯାହାକି ଦର୍ଶକର ହୃଦୟରେ ଲାଗିଯାଏ ସେପରି କଳାକାର ଶ୍ରୀ ନାୟକ ଥିଲେ। ଉମାକାନ୍ତ ବେହେରାଙ୍କ ଐତିହାସିକ ନାଟକର ଫେରାର ଚରିତ୍ରକୁ ସେ ଏତେଟା ନିଖୁଣ ଭାବରେ ଅଭିନୟ କରିଥିଲେ ଯେ ଦର୍ଶକଙ୍କୁ ଚମକାଇ ସ୍ତମ୍ଭୀଭୂତ କରିଦେଇଥିଲେ। ଫେରାର ନାଟକରେ ମୋର ଅଭିନୟ ଯେ ଦେଖିଛନ୍ତି ଏଯାଏ ସେମାନେ 'ଫେରାର' ସମ୍ବୋଧନ କରି ମୋତେ ଡାକନ୍ତି।

ମୁଁ ସୋଲପଟା ମଧ୍ୟଇଂରାଜୀ ବିଦ୍ୟାଳୟରେ ୧୯୭୩ ମସିହାରୁ ୨୦୦୮ ପର୍ଯ୍ୟନ୍ତ ସ୍ୱଳ୍ପ ବେତନରେ ଶିକ୍ଷକତା କରି ଛାତ୍ରୀଛାତ୍ରଙ୍କର ପ୍ରିୟ ସାର୍ ହୋଇପାରିଛି। ମୋର ନିଯୁକ୍ତି ସମୟରେ ଉକ୍ତ ବିଦ୍ୟାଳୟର ଜଣେ ଦକ୍ଷ ପରିଚାଳକ ପ୍ରଶ୍ନ କରିଥିଲେ, "ଆପଣ ଜଣେ ଉଚ୍ଚଶିକ୍ଷିତ ଏଇ ଛୋଟ ପିଲାଙ୍କୁ ପାଠପଢ଼ାଇ ସନ୍ତୋଷ ପାଇବେ ତ ?" "ଉଚ୍ଚଶିକ୍ଷା ଥିଲେ ସିନା ଛାତ୍ରୀଛାତ୍ରଙ୍କୁ ଶିକ୍ଷାଦାନ କରିହେବ" ଏ ଥିଲା ମୋର ତାଙ୍କ ପ୍ରଶ୍ନର ଉତ୍ତର। ଏଇ ଛୋଟ ଛୋଟ ପିଲାଙ୍କର ଆଦରରେ ବାନ୍ଧି ହୋଇଗଲି। ମୋର ଶିକ୍ଷାଦାନର ଉପହାର ଫେରିପାଇଛି ସେମାନଙ୍କଠାରୁ। ମୋର ଛାତ୍ର ଲକ୍ଷ୍ମୀକାନ୍ତ ଆଚାର୍ଯ୍ୟ କଣ୍ଟାବଣିଆ ଶାସନ ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟଙ୍କ ସାନପୁଅ ଉଦ୍ଭିଦବିଜ୍ଞାନ ଉପରେ ସ୍ନାତକୋତ୍ତର ଉପାଧି ପ୍ରାପ୍ତ ପରେ ଉଦ୍ଭିଦ ଉପରେ ଗବେଷଣାତ୍ମକ ଥେସିସ୍‌ର ତତ୍ତ୍ୱାବଧାରକ (Guide man) ଭାବେ ଥେସିସ୍‌ରେ ମୋ ନାମ ଲିପିବଦ୍ଧ କରିଥିଲେ। ଯା'ଠାରୁ ଅଧିକ ଆଉ କି ବଡ଼ ସମ୍ମାନ ମିଳିବ

ଶିକ୍ଷକତା ଜୀବନରେ। ସେ ପ୍ରଜ୍ଞାଶୀଳ ସାଧକ ଗବେଷଣାରେ ମଗ୍ନ ରହି ଉଚ୍ଚବୈଜ୍ଞାନିକ ମହଲରେ ଗୁଞ୍ଜିତ ହୁଅନ୍ତୁ ତାଙ୍କ ପାଇଁ ଏହା ହୃଦୟର ବାର୍ତ୍ତା।

୨୦୦୪ରେ ଏ ବିଦ୍ୟାଳୟର ପ୍ରଧାନଶିକ୍ଷକ ଦାୟିତ୍ୱରେ ଥାଇ ବିଦ୍ୟାଳୟର ବହୁମୁଖୀ ବିକାଶରେ ବ୍ରତୀ ହେଲି। ବିଦ୍ୟାଳୟକୁ ଆଞ୍ଚଳିକ ସାଧନ କେନ୍ଦ୍ରରେ ପରିଣତ କଲି। ସର୍ବଶିକ୍ଷା ଅଭିଯାନ କାଳରେ ବିଦ୍ୟାଳୟରେ ପକ୍କା ଶ୍ରେଣୀଗୃହ ଛିଡ଼ା କରାଇପାରିଲି। ସରକାରଙ୍କଠାରୁ ମୋ ବିଦ୍ୟାଳୟ ପାଇଲଟିଂ ବିଦ୍ୟାଳୟ ରୂପେ ମାନ୍ୟତା ପାଇଲା।

ଶିକ୍ଷକତା କାଳରେ ଏକ ଶୁଭଙ୍କର ଘଟଣା ଘଟିଗଲା। ମୋର କଲେଜ ବନ୍ଧୁଦ୍ୱୟ ଉମେଶ ମହାପାତ୍ର (Political Science M.A.) ଶ୍ରୀବତ୍ସ ଲାଞ୍ଛନ ମହାପାତ୍ର (Sanskrit M.A.) ନବ ପ୍ରସ୍ତାବିତ ରଘୁନାଥ ମହାବିଦ୍ୟାଳୟ ଓଡ଼ଗାଁ ଅଧ୍ୟାପକ ନିଯୁକ୍ତି ଇଣ୍ଟରଭ୍ୟୁରୁ ନିରୁତ୍ସାହିତ ହୋଇ ଫେରିଥିଲେ। ବିଦ୍ୟାଳୟର ଛୁଟି ପରେ ସୋଲପଟା ଉଚ୍ଚବିଦ୍ୟାଳୟ ପ୍ରାଙ୍ଗଣ ମଧ୍ୟରେ ପଥର ଉପରେ ବିମର୍ଷ ଆଲୋଚନାବେଳେ ପାଖରେ ଥିଲେ ଉମେଶ ମହାପାତ୍ର, ଶ୍ରୀବତ୍ସ ମହାପାତ୍ର, ସନ୍ତୋଷ ବରାଡ଼, ସୋଲପଟା ଶିକ୍ଷାବିତ୍, ଚୈତନ୍ୟ ବରାଡ଼ ଜ୍ୟେଷ୍ଠ ପୁତ୍ର। ମୋ ତୁଣ୍ଡରୁ ଆପେ ଆପେ ଉଚ୍ଚାରିତ ହୋଇଗଲା ଚାଲ ଆମେ ଶରଣକୁଳରେ କଲେଜ ଖୋଲିବା। ଏହା କିପରି ସମ୍ଭବ ବୋଲି ପ୍ରଶ୍ନଉଠିଲା। ମୁଁ ପ୍ରସ୍ତାବ ଦେଲି ଗଙ୍ଗାଧର ଦାଶ (ନାରାୟଣ ଉଚ୍ଚବିଦ୍ୟାଳୟର ପ୍ରଧାନଶିକ୍ଷକ)ଙ୍କର ଛାତ୍ରାବାସ ଖାଲି ପଡ଼ିଛି। ସେ ସହୃଦ ମହୋଦୟ ଚାହିଁଲେ କଲେଜ ଚାଲିବ। ତା'ପରଦିନ ଭୋରୁ ଭୋରୁ ଗଙ୍ଗାଧର ଦାଶ ସାର୍‌ଙ୍କ ଦ୍ୱାରସ୍ଥ ହେଲୁ। ସାର୍‌ଙ୍କୁ ପ୍ରସ୍ତାବ ଦେଲୁ ସାର୍ ଆପଣ ପାରିବା ଲୋକ। ଆପଣଙ୍କ ବିଦ୍ୟାଳୟର ଛାତ୍ରାବାସ ଖାଲି ପଡ଼ିଛି। ଆପଣ ଚାହିଁଲେ ଶରଣକୁଳ କଲେଜ ଖୋଲିବ। ଆପଣଙ୍କୁ ଆମେ ଅଧ୍ୟାପକ ଛାତ୍ରୀଛାତ୍ର ଯୋଗାଇଦେବୁ। ଲଡୁବାବାଙ୍କର ଅନୁରାଗ ଥିଲା କଲେଜ ଚାଲିଲା। ଈଶ୍ୱରଙ୍କ ଇଚ୍ଛାକୁ କେ ଅଟକାଇବ? ଆଜି ସୁନ୍ଦର ଶରଣକୁଳ ମହାବିଦ୍ୟାଳୟ ଅଞ୍ଚଳର ଛାତ୍ରୀଛାତ୍ରଙ୍କୁ ଶିକ୍ଷାଦାନ କରିଚାଲିଛି। ଲଡୁବାବାଙ୍କର ଆଶୀର୍ବାଦ ଏହି ଯେ ସେ ଶୁଭ ଉଚ୍ଚାରଣର ପ୍ରତିଦାନ ସ୍ୱରୂପ ମୋର ପୁତ୍ରବଧୂ ମୋନାଲିସା ସାମଲଙ୍କୁ ମହାବିଦ୍ୟାଳୟ ବିଜ୍ଞାନ ବିଭାଗର ପଦାର୍ଥବିଜ୍ଞାନ ବିଭାଗରେ ଅଧ୍ୟାପିକା ପଦରେ ନିଯୁକ୍ତି ମିଳିଛି। ଆଉ କ'ଣ ମିଳିଥାନ୍ତା ଏ ନିରୀହ ଦାସାନୁଦାସକୁ।

ମୁଁ ତ କଳାକାର। କଳାକାରମାନଙ୍କୁ ଏକାଠି କରିବାର ନାଟୁଆଟିଏ। ନାଟ୍ୟ ନିର୍ଦ୍ଦେଶକ ବନ୍ଧୁମାନଙ୍କ ପ୍ରସ୍ତାବକ୍ରମେ ମୋର ପ୍ରବଳ ଉଦ୍ୟମରେ ନୟାଗଡ଼ ଜିଲ୍ଲାରେ ନାଟ୍ୟ ନିର୍ଦ୍ଦେଶକ ସଂଘ ନୟାଗଡ଼ ଗଢ଼ିଉଠିଛି। ନାଟ୍ୟ ନିର୍ଦ୍ଦେଶକ ସଂଘର ବହୁବର୍ଷ ଧରି ମୁଁ ଥିଲି ସଂପାଦକ। ନାଟ୍ୟ ନିର୍ଦ୍ଦେଶକ ସଂଘ ସରକାର ଦପ୍ତରରେ ଏକ

ପଞ୍ଜୀକୃତ ସଂସ୍ଥା। ନିର୍ଦ୍ଦେଶକମାନେ ସଂଘର ନିୟମରେ ବନ୍ଧା। ଏହି ହିଁ ଚମତ୍କାର କି ରାଜ୍ୟର କେଉଁ ସ୍ଥାନରେ ଏପରି ନାଟ୍ୟ ନିର୍ଦ୍ଦେଶକ ସଂଘ ପ୍ରତିଷ୍ଠା ଲାଭ କରିନାହିଁ।

ଲେଖକ ଅନେକ ସାହିତ୍ୟ ଅନୁଷ୍ଠାନରୁ ନାଟ୍ୟ ଅନୁଷ୍ଠାନରୁ ସମ୍ମାନୀତ ହୋଇଛନ୍ତି। ନାଟ୍ୟ ଅନୁଷ୍ଠାନର ପାଇଥିବା ସମ୍ମାନପତ୍ର- ମୁଁ ବ୍ରାହ୍ମଣୀଦେଇ ନାଟ୍ୟ ସଂସଦ, ଗୋଟିସାହିର ସଂପାଦକ ତଥା ନାଟ୍ୟାନୁଷ୍ଠାନର ପ୍ରଯୋଜକ ଭାବରେ ଓଡ଼ିଶା ସଙ୍ଗୀତ ନାଟକ ତରଫରୁ ବୋଲଗଡ଼ଠାରେ ଆୟୋଜିତ ଗୀତିନାଟ୍ୟ ଉତ୍ସବ ୧୯୮୪ ମସିହାରେ ମୋ ନାଟ୍ୟ ଦଳର ଶ୍ରେଷ୍ଠ ପରିବେଷଣ ସମ୍ମାନପତ୍ର ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ କଳକମଳରୁ ଗ୍ରହଣ କରିଥିଲି। ସଂସ୍କୃତି ସଂସଦ ନୟାଗଡ଼ ରଙ୍ଗମଞ୍ଚରୁ ଶ୍ରେଷ୍ଠ ଅଭିନେତା ସମ୍ମାନ ମିଳିଥିଲା। 'ତ୍ରିନାଥ ବଜାର କମିଟି' ନୟାଗଡ଼ ତରଫରୁ ତ୍ରିନାଥ ଠାକୁରଙ୍କ ଜନ୍ମବାର୍ଷିକ ଉତ୍ସବ ନାଟ୍ୟ ପ୍ରତିଯୋଗିତାରେ ବିଚାରକର ସମ୍ମାନ ପାଇଛି। 'ଚମତ୍କାର' ନାଟ୍ୟ ଅନୁଷ୍ଠାନ ନୟାଗଡ଼ ଧୂରୀଣ ଅଭିନେତା, ଆଦର୍ଶ ଶିକ୍ଷକ ଓ କବିର ମାନ୍ୟତା ପ୍ରଦାନ କରିଛି।

ଓଡ଼ିଶାର ସାରସ୍ୱତ ସାହିତ୍ୟାନୁଷ୍ଠାନମାନଙ୍କରୁ ସମ୍ମାନୀତ ହୋଇଛି। ସ୍ୱସ୍ତି ସୁଧା ସାହିତ୍ୟ ସଂସଦ କିଶୋର ଚନ୍ଦ୍ର ପଲ୍ଲୀ, ଆସିକା, ଗଞ୍ଜାମରୁ ଧୂରୀଣ କବି ସମ୍ମାନ, ସୁଲେଖା ସାହିତ୍ୟ ସଂସ୍କୃତି ପରିଷଦ ପୁରୀଙ୍କଠାରୁ "ସୁଲେଖା ସାରସ୍ୱତ ସମ୍ମାନ ଓ ବେଲାର ସ୍ମୃତି ସମ୍ମାନ, ସଦାନନ୍ଦ ସାହିତ୍ୟ ପରିଷଦ ଶରଣକୁଳରୁ ସୁସାହିତ୍ୟିକ ସମ୍ମାନ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏବଂ ଯଦୁମଣି କ୍ଲବ ଇଟାମାଟିରୁ ରାଜ୍ୟସ୍ତରୀୟ କବି ଯଦୁମଣି ଜୟନ୍ତୀ ଉତ୍ସବରେ "ଯଦୁମଣି ସାହିତ୍ୟ ପ୍ରତିଭା ସମ୍ମାନ"ରେ ସମ୍ବର୍ଦ୍ଧିତ ହୋଇଛି। ପରମ୍ପରା ସାହିତ୍ୟ ଓ ସଂସ୍କୃତି ପରିଷଦ ନୟାଗଡ଼ ଆଦର୍ଶ ଶିକ୍ଷକ, ସୁକବି ଓ ବରିଷ୍ଠ ଅଭିନେତାର ମାନ୍ୟତା ଦେଇ 'ପରମ୍ପରା ସମ୍ମାନ' ପ୍ରଦାନ କରିଅଛି। ନୟାଗଡ଼ ଦର୍ପଣ ମୋର ସାହିତ୍ୟ ସାଧନା ପାଇଁ 'THE MIRROR OF NAYAGARH' ସମ୍ମାନରେ ଭୂଷିତ କରିଅଛନ୍ତି। ଶିକ୍ଷାବିତ୍ ଭାବରେ ବହୁ ଅନୁଷ୍ଠାନ ସହିତ ମୋର ଜଡ଼ିତ। ଏ ମହାନୁଭବୀ ବ୍ୟକ୍ତିତ୍ୱ ପାଇଁ ସରସ୍ୱତୀ ଶିଶୁବିଦ୍ୟାମନ୍ଦିର ନୟାଗଡ଼ ତା'ର ରୌପ୍ୟ ଜୟନ୍ତୀ ସମାରୋହରେ ସମ୍ବର୍ଦ୍ଧନା ସମ୍ମାନପତ୍ର ପାଇ ଧନ୍ୟ ହୋଇଛି।

<u>**କୃଷ୍ଣପ୍ରିୟା ପଟ୍ଟନାୟକ :**</u> କୃଷ୍ଣପ୍ରିୟା ପଟ୍ଟନାୟକ ବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିର ଲେଖନୀ ଚାଳନା କରି ଏଯାବତ୍ ଚଳଚଞ୍ଚଳ। ତାଙ୍କର ଲେଖନୀ ଅଜସ୍ର ସ୍ରାବୀ। ସେ ମହୋଦୟା ବୋଲଗଡ଼ର କବି ସ୍ୱର୍ଗତ ରାମଚନ୍ଦ୍ର ମହାନ୍ତିଙ୍କ କନ୍ୟା। ଗୋଟିସାହି ଗ୍ରାମ କରଣ ପରିବାରର ସ୍ୱର୍ଗତ ସୁରେନ୍ଦ୍ର ପଟ୍ଟନାୟକ ପତ୍ନୀ ଜଣେ ସୁଗୃହିଣୀ, ଗୃହଲକ୍ଷ୍ମୀ, କୁଳବଧୂ ଭାବରେ ବହୁ ପ୍ରଶଂସାର ଚର୍ଚ୍ଚିତ ସୁଲେଖିକା। ଲେଖିକା କୃଷ୍ଣପ୍ରିୟା ପଟ୍ଟନାୟକ ଅନେକ ଗୀତିନାଟ୍ୟ, ନାଟକ, ଶିଶୁ କବିତା,

ପ୍ରବନ୍ଧର ରଚୟିତା ।

କୃଷ୍ଣପ୍ରିୟା ପଟ୍ଟନାୟକଙ୍କର ପ୍ରକାଶିତ ଗୀତିନାଟ୍ୟ : ଅଭିମାନୀନି ସୀତା, ତୁଳସୀ ପାଦପ, ତପସ୍ୱିନୀ, ସାବିତ୍ରୀ, କାଞ୍ଚିକେମା ପଦ୍ମାବତୀ, ଅଭିଶାପ, ଭଗ୍ନଯାନୁ ଦୁର୍ଯ୍ୟୋଧନ, ଅପୂର୍ବ ମିଳନ, ଲକ୍ଷ୍ମୀ ପରିଣୟ, ଗଣିକାର ମୁକ୍ତି, ଭକ୍ତିଡ଼ୋରେ ବନ୍ଧା ସେ ତ, ନର ବା ଗୁଞ୍ଜରେ ଅଶ୍ୱଥାମା ହତ ।

ଶିଶୁମାନଙ୍କ ପାଇଁ – ପ୍ରକାଶିତ କବିତା ପୁସ୍ତକ – ଜାଣିବା ଶୁଣିବା କଥା, ଚୁନି ଚୁନି କବିତା ।

ସାମାଜିକ ନାଟକ – ପ୍ରତ୍ୟାବର୍ତ୍ତନ, ଦେବାଳୟ

ପୌରାଣିକ ନାଟକ – କଥା ଅତୀତର

ଲେଖିକାଙ୍କର କବିତା ପ୍ରବନ୍ଧ, ନାଟକ ଓଡ଼ିଶାର ବିଭିନ୍ନ ସ୍ଥାନରେ ୧୬୦ ପତ୍ରପତ୍ରିକାରେ ପ୍ରକାଶିତ ।

ବେତାରକେନ୍ଦ୍ରରେ ପ୍ରଚାରିତ : ଆକାଶବାଣୀ କଟକ କେନ୍ଦ୍ରର ନାରୀମହଲ ଏବଂ ଗାଁଗହଳି କାର୍ଯ୍ୟକ୍ରମରେ ସାମୟିକ କଥାକାର । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଇଂରାଜୀ ଗଳ୍ପ ଟ୍ରଷ୍ଟ ପ୍ରପଟିର ବେତାର ରୂପାନ୍ତର 'ମାର୍ଫତଦାର' ଆକାଶବାଣୀ କଟକ କେନ୍ଦ୍ରରେ ପ୍ରଚାରିତ ।

କୃଷ୍ଣପ୍ରିୟା ପଟ୍ଟନାୟକଙ୍କର ଗୀତିନାଟ୍ୟ 'ଭଗ୍ନଯାନୁ ଦୁର୍ଯ୍ୟୋଧନ' ଓ 'ଗଣିକାର ମୁକ୍ତି' ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ଦ୍ୱାରା ମଞ୍ଚସ୍ଥ ହୋଇ ପ୍ରଶଂସିତ । ଇଟାମାଟି ଯଦୁମଣି କ୍ଲବ, ନୟାଗଡ଼ ପରମ୍ପରା, ନୟାଗଡ଼ ପୁସ୍ତକମେଳା ଓ ଓଡ଼ିଶାର ବହୁ ସାହିତ୍ୟ ଅନୁଷ୍ଠାନରୁ ସମ୍ମାନୀତ ହୋଇଛନ୍ତି । ଏବେ ବି ତାଙ୍କର ଲେଖନୀ ଚଳଚଞ୍ଚଳ । କବୟତ୍ରୀଙ୍କର ଗୀତିନାଟ୍ୟ ଉଜାଗର ବ୍ରତ, ଗୀତିନାଟ୍ୟ ଛାଗ ମସ୍ତକରେ ଦକ୍ଷ ପାଣ୍ଡୁଲିପି ପ୍ରକାଶ ଅପେକ୍ଷା ଅଛି ।

ଗାଳ୍ପିକା ଔପନ୍ୟାସିକା ଅମୂଲ୍ୟ କୁମାରୀ ପଟ୍ଟନାୟକ : ଲେଖିକା ସ୍ୱର୍ଗତା ଅମୂଲ୍ୟ କୁମାରୀ ପଟ୍ଟନାୟକ ଶରଣକୁଳ ଥାନା ଅନ୍ତର୍ଗତ ଗୋଡିସାହି ଗ୍ରାମ ଅନ୍ତର୍ଯ୍ୟାମୀ ପଟ୍ଟନାୟକଙ୍କର ପ୍ରଥମ କନ୍ୟା । ଲେଖିକାଙ୍କର ମାତା ମୁକ୍ତାମାଳି ଦେବୀ । ୧୯୩୪ ମସିହାରେ ଲେଖିକାଙ୍କର ଜନ୍ମ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ତୃତୀୟ ଶ୍ରେଣୀ । ଅନ୍ତର୍ଯ୍ୟାମୀ ପଟ୍ଟନାୟକ ନୟାଗଡ଼ ଗଡ଼ଜାତର ଜଣେ ପ୍ରତାପୀ ଦାରୋଗା ଥିଲେ । କନ୍ୟାର ଗଳ୍ପ ଲେଖିବା ଆଗ୍ରହ ଦେଖି ତାଙ୍କୁ ଲେଖିବାରେ ସବୁଦିନ ପ୍ରେରଣା ଦେଉଥିଲେ । ସେ ଗଞ୍ଜାମ ଜିଲ୍ଲା ଚିକିଟିର ରମେଶ ପଟ୍ଟନାୟକଙ୍କୁ ତାଙ୍କରି କନ୍ୟା ଅମୂଲ୍ୟ କୁମାରୀକୁ ବିବାହ ଦେଇଥିଲେ । ରମେଶ ପଟ୍ଟନାୟକ ଭୁବନେଶ୍ୱର ଏ.ଜି. ଅଫିସରେ ଅଡ଼ିଟର ଥିଲେ । ପତ୍ନୀଙ୍କ ଗଳ୍ପ ଉପନ୍ୟାସ ଆଗ୍ରହରେ ସେ ଅନୁରାଗୀ ଥିଲେ । ସୁନ୍ଦର ଦାମ୍ପତ୍ୟ ଯୋଡ଼ି ସେମାନଙ୍କର । ତାଙ୍କ ଲେଖା ପ୍ରତି ସ୍ୱାମୀଙ୍କର ଆଗ୍ରହରୁ ତାଙ୍କୁ ସୁଲେଖିକାର ଉଚ୍ଚ ଆସନ ମିଳିଥିଲା ।

ଅମୂଲ୍ୟ କୁମାରୀଙ୍କ ଉପନ୍ୟାସ – ତୋଫାନ ପରେ, କୋହ ତଳେ ମୋହ, ମନର ମଣିଷ, ହଜିଲା ଦିନ ଫେରେନି, ଧରିତ୍ରୀ, ଅର୍ପଣ, ଶିଳ୍ପୀ, ସାନୀ, ପ୍ରକାଶିତ, କାହାଣୀ ଓ କବିତା ସମାହାରରେ ଶିଶୁମାନଙ୍କ ପାଇଁ 'ଆ ଜହ୍ନମାମୁଁ ସରଗଶଶୀ' ପୁସ୍ତକ ପ୍ରକାଶିତ। ତାଙ୍କର ପାଣ୍ଡୁଲିପି ଅପ୍ରକାଶିତ ହୋଇ ରହିଛି।

ଲେଖିକାଙ୍କର ଧରିତ୍ରୀ ଉପନ୍ୟାସ 'ଧରିତ୍ରୀ' ଚଳଚ୍ଚିତ୍ରରେ ରୂପାୟନ ହୋଇ ରାଜ୍ୟର ପ୍ରେକ୍ଷାଳୟମାନଙ୍କରେ ମାସ ମାସ ଧରି ଦର୍ଶକଙ୍କୁ ମନୋରଞ୍ଜନ କରାଇଛି।

ହଜାରୀ ସେଠୀ (ବିଷଝଡ଼ା ବୈଦ୍ୟ) : ହଜାରୀ ସେଠୀ କଲ୍ୟାଣପୁର ଜଣେ ଖ୍ୟାତନାମା ବିଷଝଡ଼ା ବୈଦ୍ୟ। ଅଞ୍ଚଳରେ କାହାକୁ ବିଷଧର ଦର୍ପ ଦଂଶନ କଲେ ହଜାରୀ ସେଠୀ ସାପକାମୁଡ଼ା କ୍ଷତରୁ ବିଷ ଝାଡ଼ିଦେବାର ମନ୍ତ୍ର ଜାଣନ୍ତି। ସାପକାମୁଡ଼ା ରୋଗୀକୁ ଭଲ କରିଦେଇଥାନ୍ତି।

ଶିଶୁ ଚିକିତ୍ସକ ବୈଦ୍ୟରାଜ ବିଶ୍ୱନାଥ ବେହେରା : ବିଶ୍ୱନାଥ ବେହେରାଙ୍କ ଜନ୍ମସ୍ଥାନ ସୋଲପଟା (ମୁଷାପଲ୍ଲୀ) ଏ ଗ୍ରାମାଞ୍ଚଳର ସବୁଠାରୁ ପୁରୁଣା ବିଷଝଡ଼ା ବୈଦ୍ୟ। ତାଙ୍କର ବୟସ ବର୍ତ୍ତମାନ ୮୨ବର୍ଷ। ଯେତେ ବଡ଼ ବିଷଧର ସର୍ପ କାମୁଡ଼ିଥିଲେ ହେଁ ସେ ରୋଗୀକୁ ଭଲ କରିଥାନ୍ତି। ସେ ହେଉଛନ୍ତି ଶିଶୁ ଚିକିତ୍ସକ ବିଶେଷଜ୍ଞ। ରାଜ୍ୟର ବହୁ ଅଞ୍ଚଳରୁ ଶିଶୁ ରୋଗୀମାନେ ତାଙ୍କ ପାଖକୁ ଚିକିତ୍ସା ପାଇଁ ଆସିଥାନ୍ତି। ଦୁଃସାଧ ଶିଶୁ ରୋଗୀଙ୍କୁ ଚେରମୂଳୀ ଔଷ ଦ୍ୱାରା ଚିକିତ୍ସା କରନ୍ତି। ରାଜ୍ୟ ସରକାରଙ୍କର ସେ ହେଉଛନ୍ତି ପଞ୍ଜିକୃତ ଗାଉଁଲୀ ଚିକିତ୍ସକ।

ଅଦ୍ଭୁତ ବାଣାକାର ବାଞ୍ଛାନିଧି ଭଟ୍ଟବ୍ରହ୍ମା (ବିଶିଷ୍ଟ ରସାୟନବିତ୍ ବାଣାକାର) : ବାଞ୍ଛାନିଧି ଭଟ୍ଟବ୍ରହ୍ମା ଅବିଭକ୍ତ ପୁରୀ ଜିଲ୍ଲାର ଏକ ଖ୍ୟାତନାମା ବାଣାକାର (Fire worker) ସେ ମହାଶୟ ନୟାଗଡ଼ ଥାନା ଅଧୀନସ୍ଥ ପଲ୍ଲୀଶାସନ (ବ୍ରାହ୍ମଣଶାସନ) ଗ୍ରାମରେ ସମ୍ଭବତଃ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିତାଙ୍କର ନାମ ପୁରୁଷୋତ୍ତମ ଭଟ୍ଟବ୍ରହ୍ମା। ବାଣ ତିଆରିରେ ସେ ଜଣେ ସଫଳ ସିଦ୍ଧହସ୍ତ ବାଣାକାର ଜିଦ୍‌ଖୋର ମଣିଷ। ବାଣ ପ୍ରତିଯୋଗିତାରେ ସେ ଶ୍ରେଷ୍ଠ କୃତିତ୍ୱ ହାସଲ କରିଥିବା ବାଣାକାର।

ବାଞ୍ଛାନିଧି ଭଟ୍ଟବ୍ରହ୍ମା ୨୧.୪.୧୯୩୮ରେ ଦଶପଲ୍ଲାର ଶ୍ରେଷ୍ଠ ବାଣାକାର ପଦରେ ସମ୍ମାନୀତ ହୋଇଥିଲେ। ୪.୬.୧୯୪୮ ମସିହାରେ ବାଲୁଗାଁ ଦଶଦୋଳ ବାଣ ପ୍ରତିଯୋଗିତାରେ ଦେବୋତ୍ତର ମ୍ୟାନେଜର ନୟାଗଡ଼ ଷ୍ଟେଟ୍‌ଙ୍କ କରକମଳରୁ ପ୍ରତିଭା ସମ୍ମାନ ଗ୍ରହଣ କରିଥିଲେ। ୧୯୪୦ ମସିହାରେ Agriculture and Industrial Exhibition, Nayagarh E.S.A. ତରଫରୁ ରୌପ୍ୟ ମେଡ଼ାଲ ପାଇ ପୁରସ୍କୃତ ହୋଇଥିଲେ। ୨୩.୩.୧୯୬୫ ମସିହାରେ ବାଣପୁର ପଞ୍ଚଦୋଳ ଯାତ୍ରା ସାଂସ୍କୃତିକ ଅନୁଷ୍ଠାନରେ ଶ୍ରେଷ୍ଠ ବାଣ ପ୍ରଦର୍ଶନ କରିଥିବାରୁ

ବାଣପୁର ପଞ୍ଚଦୋଳ କମିଟି ସଭାପତି ଶ୍ରୀ ଗଣେଶ୍ୱର ଜେନାଙ୍କ କରକମଳରୁ କୃତିର ପ୍ରଶଂସାପତ୍ର ଗ୍ରହଣ କରିଥିଲେ। ସେ ମହୋଦୟ ନୟାଗଡ଼ ଦୁର୍ଗାପୂଜା (ଦଶହରା ଯାତ୍ରା)ରେ ବାଣ ପ୍ରତିଯୋଗିତାରେ ଅଂଶଗ୍ରହଣ କରି ୧୯୬୩ ମସିହାରୁ ୧୯୭୧ ମସିହା ଯାଏଁ ଚେୟାରମାନ୍ ଏନ୍.ଏ.ସି. ନୟାଗଡ଼ ଆର୍.ଏନ୍.ଦାସଙ୍କ କରକମଳରୁ ଶ୍ରେଷ୍ଠ ବାଣାକାର ପ୍ରଶଂସାପତ୍ର ୯.୨.୧୯୭୧ ମସିହାରେ ଗ୍ରହଣ କରିଥିଲେ। ୨୮.୧୨.୧୯୭୦ ମସିହାରେ ସାଳିଆ ଡ୍ୟାମ ଲୋକାର୍ପଣ ଉତ୍ସବରେ ବାଞ୍ଛାନିଧି ଭଙ୍ଗବ୍ରହ୍ମାଙ୍କର ବାଣ ପ୍ରଦର୍ଶନ ଲୋକ ଆକର୍ଷଣୀୟ ହୋଇଥିବାରୁ B.Sc (Engineer) କିଶୋର ଚନ୍ଦ୍ର ମିଶ୍ରଙ୍କ କରକମଳରୁ ଶ୍ରେଷ୍ଠ ବାଣାକାର ମାନ୍ୟତା ଗ୍ରହଣ କରିଥିଲେ।

ଶ୍ରୀଯୁକ୍ତ ବାଞ୍ଛାନିଧି ଭଙ୍ଗବ୍ରହ୍ମା ଗ୍ରାମ ପଲ୍ଲୀଶାସନ ନୂତନ ଜ୍ଞାନ କୌଶଳରେ ବାଣ ତିଆରି କରିବାରେ ସିଦ୍ଧହସ୍ତ ପୁରୁଷ। ତାଙ୍କର ଗଛବାଣରୁ ମୁକ୍ତଭାବରେ ଚକ୍ରମାନ ଶୂନ୍ୟଗାମୀ। ଗଛବାଣ ଓହଳରେ ରାଧାକୃଷ୍ଣଙ୍କର ରାସ ପ୍ରଦର୍ଶନ ସମାବେଶ ଦର୍ଶକଙ୍କର ଚିତ୍ତଚକିତ କରେ। ରକେଟ୍‌ଯାନ ପରି ଚେଙ୍ଗମାନ ଶୂନ୍ୟରେ ଗମନ୍ତି। ଚକ୍ରବାଣରେ ସଂଗୀତର ସ୍ୱର ଓ ହୁଳହୁଳି ଶବ୍ଦ ବେଶ୍ ଚମକପ୍ରଦ। ତାଙ୍କର ତୋପ, ଆକାଶ ତୋପର ନାଦ ଶୂନ୍ୟ ଓ ସ୍ଥଳକୁ ସ୍ତବ୍ଧ କରେ। ଚେଙ୍ଗ ବାଣରୁ ଶୂନ୍ୟରୁ ପୁଷ୍ପହାର ଝୁଲି ଝୁଲି ଖସେ। ତାଙ୍କର ବାଣକୌଶଳ ଆକାଶରେ ରଙ୍ଗବେରଙ୍ଗର ଚକମକି ତାରା ଫୁଟାଏ। ତାଙ୍କର ସୁପୁତ୍ର ଲଡୁକେଶ୍ୱର ଭଙ୍ଗବ୍ରହ୍ମା ଭଞ୍ଜନଗର, ଚାନ୍ଦପୁର, ଇଟାମାଟି, ଦଶପଲ୍ଲା, ନୟାଗଡ଼ ଦକ୍ଷିଣକାଳୀ ପଣାସଂକ୍ରାନ୍ତି ଯାତ୍ରା ଉତ୍ସବରେ ଯୋଗଦାନ କରି ନନାଙ୍କ ପୀଢ଼ି ବଜାୟ ରଖିଛନ୍ତି। ଦଶପଲ୍ଲା ଲଙ୍କାପୋଡ଼ି ଯାତ୍ରା ଉତ୍ସବରେ ଶ୍ରୀରାମଙ୍କ ହସ୍ତରୁ ନିକ୍ଷେପ ବ୍ରହ୍ମଶର ରାବଣକୁ ବଧକରି ଶ୍ରୀରାମଙ୍କ ତୃଣୀରକୁ ଫେରିଆସିବା ଏ ଅଦ୍ଭୁତ କୌଶଳର ଭେଦ ପାଇଁ ବାଣାକାର ଲଡୁକିଶୋର ଭଙ୍ଗବ୍ରହ୍ମା ପ୍ରଶଂସିତ। ଲଡୁକେଶ୍ୱର ଭଙ୍ଗବ୍ରହ୍ମା ନନା ବାଞ୍ଛାନିଧି ଭଙ୍ଗବ୍ରହ୍ମାଙ୍କ ବାଣମୋଡ଼ା କୌଶଳକୁ ଅଧିକ ଆଧୁନିକୀକରଣ କରିସାରିଲେଣି।

<u>ଦେଶଭକ୍ତ ରାମଚନ୍ଦ୍ର ରଥ :</u> ରାମଚନ୍ଦ୍ର ରଥ ଭାରତ ସ୍ୱାଧୀନତା ଆନ୍ଦୋଳନର ଛାମୁଆ ସଚ୍ଚା ସଂଗ୍ରାମୀ। ତାଙ୍କର ଜାତୀୟ ଜୀବନ ପାଇଁ ଫିରିଙ୍ଗି ବିଦେଶୀ ଶାସନ କବଳରୁ ଦେଶ ଜନନୀର ଉଦ୍ଧାର ପାଇଁ ଜନଜାଗରଣର ସ୍ୱର ଉଠାଇବାରେ ଜଣେ ସାହସୀ କର୍ମୀ ହେତୁ ତାଙ୍କୁ ଦେଶଭକ୍ତ ଆଖ୍ୟା ଦିଆଯାଏ। କିଶୋର ବୟସରୁ ଦେଶର ସ୍ୱାଧୀନତା ସଂଗ୍ରାମର ଅଗ୍ରଣୀ କର୍ମବୀର। ମହାନ ସ୍ୱାଧୀନତା ସଂଗ୍ରାମୀ ରାମଚନ୍ଦ୍ର ରଥ ନୟାଗଡ଼ ବ୍ରାହ୍ମଣ ଶାସନ ପଲ୍ଲୀ ଶାସନ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ରାମଚନ୍ଦ୍ର ରଥଙ୍କର ପିତା ବାଇଧର ରଥ ମାତା ସାଧବାଣୀ ରଥ ଏବଂ

ତାଙ୍କର ପତ୍ନୀ କମଳା ରଥ। ମହାମହିମ ଦେଶସେବକ ରାମଚନ୍ଦ୍ର ରଥ ୨.୧.୧୯୧୮ରେ ଜନ୍ମଲାଭ କରି ୬.୧.୨୦୧୩ ମସିହାରେ ୯୫ବର୍ଷ ବୟସରେ ଦେହତ୍ୟାଗ କରିଥିଲେ। ସେ କାଉଁରିଆ କାଠି ପରି ଜଣେ ଉଚ୍ଚାଙ୍ଗ ପୁରୁଷ ଭାଙ୍ଗିଯାଇ ପାରନ୍ତି ମୁଣ୍ଡ ନୁଆଁଇବାର ନୁହେଁ। ଅଞ୍ଚଳରେ ଜାତୀୟବାଦୀ ମଣିଷ ଭାବେ ଯେତିକି ଜାଣିଛି ତାଙ୍କର ପୁଅ ଏବଂ ଝିଅ ଗୀତାଞ୍ଜଳି ରଥଙ୍କ କହିବାରୁ ସଂଗ୍ରହ କରିଛି। ତାଙ୍କ ନନା ରାମଚନ୍ଦ୍ର ରଥ କୁହନ୍ତି- ଦେଶମାଟିରେ ଜନ୍ମ ହୋଇଛେ। ତା'ର ପାଣି ପବନରେ ବଢୁଛେ ତା'ର ସେବା ହେଉଛି ସୁମଣିଷର ଧର୍ମ। ମଣିଷକୁ ଭଲପାଇବା ମଣିଷର ସହାୟକ ହେବା।

ରାମଚନ୍ଦ୍ର ରଥ ମହାତ୍ମାଗାନ୍ଧୀ, ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ପଥ ଅନୁଗାମୀ ଥିଲେ। ସେ ଇଂରେଜ ଶାସକଙ୍କର ତୀବ୍ର ବିରୋଧୀ ହେବାରୁ ତାଙ୍କୁ ଫାଶୀ ପରୱାନା ଜାରି ହୋଇଥିଲା। ସେ ଗାନ୍ଧୀଙ୍କ ପ୍ରାର୍ଥନା ସଭାର ସଦସ୍ୟ ଥିବା ସମୟରେ ଏ ନିଷ୍ଠୁର ଦଣ୍ଡାଦେଶରୁ ଖସି କଲିକତା ପଳାୟନ କରିଥିଲେ। କଲିକତାରେ ସିପାହୀ ଫାଶରୁ ଖସି କଲିକତାର ଜନୈକ ଗୃହରେ ପଶିଯାଇଥିଲେ। ସେ ଗୃହର ବିନୋଦିନୀ ନାମ୍ନୀ ମହିୟସୀ ମହିଳା ତାଙ୍କର ଶାଢ଼ୀ ଓ ଚୂଡ଼ି ତାଙ୍କୁ ପିନ୍ଧାଇ ମହିଳା ବେଶରେ ଚାଲିଯିବା ପାଇଁ ସାହାଯ୍ୟ କରିଥିଲେ। କଲିକତାରୁ ଚାଲି ଚାଲି ବାଟରେ ପାଗଳା ବେଶ ଧାରଣ କରି ଓଡ଼ିଶାର ବଡ଼ମ୍ବା ଗଡ଼ରେ ମାମୁଁଘରେ ଆଶ୍ରୟ ନେଲେ। ସେତେବେଳେ ସେ ଭାରି ଅସୁସ୍ଥ ହୋଇପଡ଼ିଥିଲେ। ଦେଶର ମୁକ୍ତି ସଂଗ୍ରାମୀ କର୍ମବୀରଙ୍କର ଜଟିଳ କଷ୍ଟମୟ ଜୀବନ ସ୍ୱାଧୀନୋତ୍ତର ମଣିଷ କି ବୁଝିବେ ?

ରାମଚନ୍ଦ୍ର ରଥ ନେତାଜୀ ସୁବାସ ବୋଷଙ୍କ ଆଜାଦ ହିନ୍ଦ ଫୌଜର ଲଢୁଆ ସୈନିକ। ନୟାଗଡ଼ ପ୍ରଜାମଣ୍ଡଳ ଆନ୍ଦୋଳନର ଜଣେ ମୂଖ୍ୟ ଭୂମିକାଧାରୀ ଆନ୍ଦୋଳନକାରୀ ଥିଲେ ସଂଗ୍ରାମୀ ରାମଚନ୍ଦ୍ର ରଥ। ସେ ବହୁ ରାଜପୀଡ଼ନ ସହ୍ୟକରି ଭାରତ ସ୍ୱାଧୀନ ସଫଳରେ ଆନନ୍ଦରେ ଉଲ୍ଲସିତ ହୋଇଥିଲେ। ଦେଶରେ ଗଣତନ୍ତ୍ର ଶାସନ ପାଇଁ ପ୍ରଥମ ଗଣ ନିର୍ବାଚନରେ ନୟାଗଡ଼ ନିର୍ବାଚନମଣ୍ଡଳରେ ପ୍ରଜା ସୋସାଲିଷ୍ଟ ଦଳ ତରଫରୁ ବରଗଛ ଚିହ୍ନ ନେଇ ନୟାଗଡ଼ ରାଜାଙ୍କ ପ୍ରତିଦ୍ୱନ୍ଦ୍ୱୀ ହୋଇ ନିର୍ବାଚନ ଲଢ଼ିଥିଲେ। କିନ୍ତୁ ପରାଜିତ ହୋଇଥିଲେ। ସେ ଭାରତ ମାତାର ସୁପୁତ୍ର ଥିଲେ। ୧୯୮୪ ଓ ୧୯୮୫ ମସିହାରେ କେନ୍ଦ୍ର ସରକାର ରାଜ୍ୟ ସରକାରଙ୍କଠାରୁ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ମଞ୍ଜୁରୀ ପାଇଥିଲେ। ଦେଶରୁ ରାଜ୍ୟରୁ ପ୍ରଦାନ ହୋଇଥିବା ଭତ୍ତାକୁ ଗ୍ରହଣ କଲେ ନାହିଁ। କହିଥିଲେ 'ଦେଶମାଟିର ସନ୍ତାନ ମୁଁ। ମାତୃଭୂମିର ସ୍ୱାଧୀନତା ଆଣିବାରେ ସନ୍ତାନର ଧର୍ମ ନିର୍ବାହ କରିଛି। ଦେଶ ନିର୍ମାଣରେ ମୋତେ ପ୍ରଦାନ କରାଯାଉଥିବା ଅର୍ଥ ଦେଶପାଇଁ ବିନିଯୋଗ ହେଉ। ମୋର ହାତ ଗୋଡ଼ ଚଳୁଥିବା ପର୍ଯ୍ୟନ୍ତ ନିଜ କର୍ମ ଅର୍ଜନରେ ଚଳିପାରିବି। ମାତ୍ର

ମୋର ଏ କ୍ଷୁଦ୍ର ଉତ୍ସର୍ଗ ଦେଶକାମରେ ଲାଗୁ।" ଏପରି ମହାନୁଭବର ଦର୍ଶନ ଏ ମାଟି ସନ୍ତାନଙ୍କର ଯଦି ଥାଆନ୍ତା ସୁନାର ଭାରତ କେବେଠୁଁ ଫେରି ଆସନ୍ତାଣି।

ମହିଳା ସଂଶକ୍ତିକରଣର ସାଧିକା ଗୀତାଞ୍ଜଳି ରଥ : ମହିଳା ସଶକ୍ତିକରଣର ସାଧିକା ଗୀତାଞ୍ଜଳି ରଥ ନୟାଗଡ଼ ଥାନା ଅଧୀନସ୍ଥ ପଲ୍ଲୀଶାସନ ଗ୍ରାମର ବିଶିଷ୍ଟ ସମାଜସେବୀ ତଥା ସ୍ୱାଧୀନତାସଂଗ୍ରାମୀ ଶ୍ରୀଯୁକ୍ତ ରାମଚନ୍ଦ୍ର ରଥଙ୍କର ଏକମାତ୍ର ସୁକନ୍ୟା ଏବଂ ଏହି ଥାନା ଅନ୍ତର୍ଗତ ମାଛିପଡ଼ା ଗ୍ରାମର ଶ୍ରୀଯୁକ୍ତ ସଞ୍ଜୟ କୁମାର ସାହୁଙ୍କର ଧର୍ମପତ୍ନୀ। ସେ ମହାଶୟା ନନା ରାମଚନ୍ଦ୍ର ରଥଙ୍କ ଆଦର୍ଶରେ ଚାଲି ଚାଲି ନିଜ ଗୋଡ଼ରେ ଠିଆ ହେବାରେ ସାଧନାରତ। ସେବାହିଁ ତାଙ୍କ ଜୀବନର ବ୍ରତ। ସେ 'ସିଦ୍ଧ ଭୈରବୀ ଇଣ୍ଟରପ୍ରାଇଜର ମାଛିପଡ଼ା' ପ୍ରତିଷ୍ଠାନର ପ୍ରତିଷ୍ଠାତା। ନୟାଗଡ଼ ଜିଲ୍ଲାର ଦକ୍ଷିଣ ପଥରେ ମାତ୍ର ଚାରି କିଲୋମିଟର ଦୂରରେ ଓଡ଼ଗାଁ ବ୍ରହ୍ମପୁର ରାଜପଥରେ ଏହି ପ୍ରତିଷ୍ଠାନ ଅବସ୍ଥିତ। ଏହା ବହୁମୁଖୀ ବ୍ୟବସାୟିକ ପ୍ରତିଷ୍ଠାନ। ଏହି ପ୍ରତିଷ୍ଠାନର ଉତ୍ପାଦିତ ଦ୍ରବ୍ୟ ସୁତା ପୋଷାକ ଚୁଡ଼ିଦାର ପଞ୍ଜାବୀ, ଫ୍ରକ୍, ପ୍ୟାଣ୍ଟ, ଆଦିବାସୀ ଅଳଙ୍କାର ଏବଂ ଆୟୁର୍ବେଦିକ ଔଷଧି ଉପଚାର। ଆୟୁର୍ବେଦିକ ପୁଟୁଳି ଚିକିତ୍ସା ଡାଇବେଟିସ, ବ୍ଲଡ଼ପ୍ରେସର, ଶ୍ୱାସ, କିଡ଼ନୀଜନିତ ରୋଗ, ଚର୍ମରୋଗ, ବାତରୋଗ ଇତ୍ୟାଦିର ଏହି ପ୍ରତିଷ୍ଠାନର ପଞ୍ଚକର୍ମ ଦ୍ୱାରା ସେବା କରାଯାଏ। ଏହି ପ୍ରତିଷ୍ଠାନ ଦେଶର ବିଭିନ୍ନ ରାଜ୍ୟରେ ପାଳିତ ହେଉଥିବା ମହୋତ୍ସବ ବଜାରକୁ ପ୍ରତିଷ୍ଠାନର ବ୍ୟବସାୟୀକ ଷ୍ଟଲ ନେଇ ଓଡ଼ିଶାରୁ ପ୍ରତିନିଧିତ୍ୱ କରେ। ଏହାର ପରିଚାଳିକା ନିଜେ ଗୀତାଞ୍ଜଳି ରଥ ଅଟନ୍ତି। ସେ ମହୋଦୟା କେରଳ, ମାଲାପୁରମ୍, ତିରୁବନ୍ତପୁରମ୍, କୋଚିକଲମ୍, ପୋଟାୟମ୍, ତ୍ରିଶୂର, ପନୁର୍, କୋଲାମ୍, ପଞ୍ଜାବ- ଭାଟିନ୍ଦା, ସନ୍‌ଗୁରୁ, ପଟିଆଲା, ଲୁଧିଆନା, କାଶ୍ମିର, ହରିୟାନା, ଦିଲ୍ଲୀ, ରାଜସ୍ଥାନ, ହାଇଦ୍ରାବାଦ, ତେଲେଙ୍ଗାନା, ଗୋଆ ମେଳାରେ ଷ୍ଟଲ ସ୍ଥାପନ କରି ଷ୍ଟଲ୍‌ର ସାମନ ବେପାର ମର୍ଯ୍ୟାଦା ସହିତ ପରିଚାଳନା କରି ସବୁଠାରୁ ସମ୍ମାନୀତା। ନିଜର କର୍ମ ସାଧନା କ୍ଷେତ୍ରରେ ମହିଳାମାନଙ୍କ କର୍ମ ସହଯୋଗ ସାମିଲ କରାଇ ସେମାନଙ୍କର ରୋଜଗାର ଦେଖାଇ ନିଜ ଗୋଡ଼ରେ ଠିଆ ହୋଇପାରିବାର ଶକ୍ତି ଦେଖାଇ ମହିଳାଙ୍କ ପାଇଁ ଉଦାହରଣ ପାଲଟିଛନ୍ତି ଗୀତାଞ୍ଜଳି ରଥ ମହୋଦୟା।

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ନୟାଗଡ଼ ଜିଲ୍ଲାର ଲୌହମାନବ ଶ୍ରୀଯୁକ୍ତ ଶ୍ରୀଧର ଦାଶ - ସଂକ୍ରାନ୍ତି ପୁରୁଷ : ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ ଶ୍ରୀଯୁକ୍ତ ଶ୍ରୀଧର ଦାଶ ନୟାଗଡ଼ ଜିଲ୍ଲାର ଲୌହମାନବ। ଶ୍ରୀଧର ଦାଶ ନୟାଗଡ଼ର ପୂର୍ବ-ଦକ୍ଷିଣ କୋଣ ଅବସ୍ଥିତ ଗୋଡ଼ିପଡ଼ା ଗ୍ରାମରେ ଏକ ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରେ ତା. ୧୩.୩. ୧୯୧୮ ମସିହାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ଲୋକନାଥ

ଦାଶ ଏବଂ ମାତା ଦୁଲାଦେବୀ। ୧୪ବର୍ଷ ବୟସରେ ଜାତୀୟ ସଂଗ୍ରାମରେ ଯୋଗଦେଇଥିଲେ। ସେ ଗାନ୍ଧି ଦର୍ଶନରେ ନିଜକୁ ସଜାଇ ନେଇଥିଲେ। ଦେଶର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇଥିଲେ। ଏଣୁ ଅନେକଥର ସଜା ଭୋଗିଥିଲେ। ଦେଶରେ ଗଡ଼ଜାତ ଆନ୍ଦୋଳନ କାଳରେ ଶ୍ରୀଧର ଦାଶ ଗୋଡ଼ିପଡ଼ା, ବାଞ୍ଛାନିଧି ସେନାପତି ବାହାଡ଼ାଝୋଲା ନାରାୟଣ ନନ୍ଦ ଓଡ଼ଗାଁ, ଲକ୍ଷ୍ମଣ ମହାରଣା, ଓଡ଼ଗାଁ, ନୟାଗଡ଼ ପ୍ରଜାମଣ୍ଡଳ ଗଠନ କରି ରାଜବିରୋଧୀ ଆନ୍ଦୋଳନ ତେଜୀୟାନ୍ କରିଥିଲେ। ନୟାଗଡ଼. ପ୍ରଜାଆନ୍ଦୋଳନର ଏନ୍ତୁଡ଼ିଶାଳ ହେଉଛି ଥୁଆବାରୀ। ଥୁଆବାରୀ କସ୍ତୁରୀ ପରିଡ଼ା ଜଣେ ଝାମ୍ପି ଠେଙ୍ଗାଧାରୀ ମଇଁଷିଆଳ, ଆନନ୍ଦ ଚନ୍ଦ୍ର ସ୍ୱାଇଁ, କୁଶବିଡ଼ା କଷ୍ଟି ଡାକୁଆ, ନୟାଗଡ଼ ପ୍ରଜା ଆନ୍ଦୋଳନର ସକ୍ରିୟ ଭୂମିକାଧାରୀ ଛାମୁଆ ସଂଗ୍ରାମୀ। ନୟାଗଡ଼ ପ୍ରଜା ଆନ୍ଦୋଳନରେ କଷ୍ଟି ଡାକୁଆ ଆନ୍ଦୋଳନକୁ ପ୍ରଖର ମୁଖକରି ନୂଆଗାଁ ଥାନା ଅଦୂରରେ ଶହୀଦ ହୋଇଥିଲେ। କସ୍ତୁରୀ ପରିଡ଼ା ନୟାଗଡ଼ ରାଜ ବନ୍ଦୀଶାଳାରେ ଶହୀଦ ହୋଇଥିଲେ। ଦେଶର ସ୍ୱାଧୀନତା ସଂଗ୍ରାମ ଅପରାଧରେ ଶ୍ରୀଧର ଦାଶ, ନୟାଗଡ଼ ଜେଲ୍‌ରେ ୧ ବର୍ଷ ୬ମାସ ବନ୍ଦୀ ଜୀବନ ବିତାଇଥିଲେ। ଭାରତକୁ ସ୍ୱାଧୀନତା ଦେବାର ସମୟ ପାଖେଇ ଆସିଲାରୁ ସ୍ୱାଧୀନତା ସଂଗ୍ରାମୀ ବନ୍ଦୀମାନେ ବନ୍ଦୀମୁକ୍ତ ହେଲେ। ଦେଶ ସ୍ୱାଧୀନତା ହେବା ପରେ ଶ୍ରୀଧର ଦାଶ ମହୋଦୟ ନୟାଗଡ଼ ଷ୍ଟେଟର ୧୯୪୭ରୁ ୧୯୪୮ ମସିହା ପର୍ଯ୍ୟନ୍ତ ଶିକ୍ଷାମନ୍ତ୍ରୀ ଥିଲେ। ସମାଜସେବାରେ ଉତ୍ସର୍ଗୀକୃତ ଏହି ମଣିଷ ନୟାଗଡ଼ ଜିଲ୍ଲାର ଜଣେ କିମ୍ବଦନ୍ତୀ ପୁରୁଷ। ସେ ନିଜର ଦାବି ଉପସ୍ଥାପନ କରିଥିଲେ ଥୁଆବାରୀ ହେଉଛି ସଂଗ୍ରାମୀ ଶ୍ରୀକ୍ଷେତ୍ର। ସେ ମାଟିର ଅନୁଗତ ସେ। ନୟାଗଡ଼ର ଗର୍ବ ଗୌରବ ଶ୍ରୀଧର ଦାଶ ମହୋଦୟ ୯୭ବର୍ଷ ବୟସରେ ଦେହତ୍ୟାଗ କରିଥିଲେ।

*(ସହଯୋଗ ପତ୍ରିକା ଶ୍ରଦ୍ଧା କୃଷ୍ଣଚନ୍ଦ୍ର କ୍ଲବ ନୟାଗଡ଼, ଅଶୋକ ରଥ)*

**ନୟାଗଡ଼ ଆକାଶରେ ଶୁକ୍ରତାରା ଶୁକ୍ରୁ ବେହେରା ଗାଇଆଳ :** ନୟାଗଡ଼ ଆକାଶରେ ଶୁକ୍ରତାରା ସଦୃଶ୍ୟ ଶୁକ୍ରୁ ବେହେରା ଶରଣକୁଳ ଥାନା ଅଧୀନସ୍ଥ ଭାଲିଆଡ଼ିହି ଗ୍ରାମରେ ଜନ୍ମଲାଭ କରିଥିଲେ ୧୯୦୩ ମସିହାରେ। ତାଙ୍କର ପିତାଙ୍କ ନାମ ଲୋକନାଥ ବେହେରା, ମାତା ମାହାଦେଈ। ତାଙ୍କର ଜାତି ବେଉସା ଗାଇଆଳ। ଏ ପ୍ରତିକ୍ରିୟାଶୀଳ ଗଉଡ଼ ରାଜଶକ୍ତିର ଚାବୁକ୍ ପ୍ରହାରକୁ ବେକୁବ କରିଦେଇଥିଲା ଶୁଣିଲେ ଏବେ ବି ଛାତି ଥରିଉଠେ। ନୟାଗଡ଼ର ଶେଷ ରାଜା କୃଷ୍ଣଚନ୍ଦ୍ର ସିଂ ମାନଧାତା ରାଜ୍ୟର ଦକ୍ଷିଣ ପଥରେ ଗମନାଗମନ ସୁବିଧା ପାଇଁ ଆଙ୍ଗିସିଙ୍ଗଠାରୁ ଗୋଛା ପର୍ଯ୍ୟନ୍ତ ରାସ୍ତା ନିର୍ମାଣ ପାଇଁ ଆଦେଶ କଲେ। ପ୍ରଜାଙ୍କ ଖଞ୍ଜଣା ଅନୁକ୍ରମେ ରାସ୍ତା ନିର୍ମାଣ କାର୍ଯ୍ୟ ପ୍ରଜାଙ୍କ ଉପରେ ଲଦି ଦିଆଗଲା। ଭାଲିଆଡିହି ପ୍ରଜାଙ୍କ ଉପରେ ରାସ୍ତା ତିଆରିର କିଛିଭାଗ ପଡ଼ିଲା। ତାତି ଖରାରେ

ଗ୍ରାମବାସୀ ବେଠି କାମରେ ଲାଗିପଡ଼ିଥାନ୍ତି। ଏ କାର୍ଯ୍ୟକୁ ଘୋଡ଼ାରେ ଚଢ଼ି ଜଣେ ରାଜକର୍ମଚାରୀ ତଦାରଖ କରୁଥାନ୍ତି। ଏହି ଗ୍ରାମର ଷାଠିଏ ବର୍ଷର ଜଣେ ଦୁର୍ବଳ ବୁଢ଼ାଙ୍କର ଧୀର ମନ୍ଥର କାମ ଦେଖି କର୍ମଚାରୀ ଶୀଘ୍ର କରିବାକୁ କହି ତାଙ୍କ ପିଠିରେ ଚାବୁକ୍ ପ୍ରହାର କରି ବେଜିତ୍ କଲେ। ରାଜକର୍ମଚାରୀଙ୍କ ଏତାଦୃଶ ଦଣ୍ଡ ପ୍ରହାରକୁ ପ୍ରତିରୋଧ କରିବାକୁ କାହାର ବା ସାହସ ଥାଏ। ବେଠି କରୁଥିବା ଶୁକ୍ରୁ ବେହେରା କାମ ବନ୍ଦକରି ପ୍ରତିବାଦ କରି ଉଚ୍ଚ ଶବ୍ଦରେ କହିଲେ "ତାଙ୍କ କାମ ହବ। ମାଡ଼ କାହିଁକି ? ସେ ବୁଢ଼ା ଲୋକ। କେତେ କାମ୍ କରିଥାନ୍ତେ ? ଦିନକରେ ନହେଲେ ଦି' ଦିନରେ କରିବେ, ପାଚିଲା ବାଳର କ'ଣ ସମ୍ମାନ ନାହିଁ ? ବୁଢ଼ାଟାକୁ ମାରି ବାବୁପଣିଆ ଦେଖଉଛ ? ଏତିକି ଶୁଣାଣିରେ ରାଜକର୍ମଚାରୀ ଚାବୁକ୍ ମାଡ଼ ଶୁକ୍ରୁ ବେହେରାଙ୍କ ଉପରେ ପଡ଼ିଲା। କିନ୍ତୁ ଶୁକ୍ରୁ ବେହେରାଙ୍କ ଭୟଙ୍କର ପ୍ରତିକ୍ରିୟା ଆଗରେ କର୍ମଚାରୀ କାବୁ ହୋଇଥିଲେ। ସେ ପରଠାରୁ ରାଜକୋଷ ଶୁକ୍ରୁ ବେହେରାଙ୍କ ଉପରେ। ଶୁକ୍ରୁ ବେହେରା ଓ ତାଙ୍କ ପରିବାର ଉପରେ ନାନା ବାଟରେ ହଇରାଣ ହରକତ କରାଗଲା। ଶୁକ୍ରୁ ବେହେରା ସମ୍ଭାଳି ନପାରି ନୟାଗଡ଼ ରାଜ୍ୟ ଛାଡ଼ି ପଳାଇଲେ। ଠିକ୍ ଏହି ସମୟରେ ନୟାଗଡ଼ ପ୍ରଜାମଣ୍ଡଳର ରାଜବିରୋଧୀ ନୟାଗଡ଼ ପ୍ରଜା ଆନ୍ଦୋଳନ ତେଜିଉଠିଲା। ଶୁକ୍ରୁ ବେହେରା ପ୍ରଜା ଆନ୍ଦୋଳନରେ ସାମିଲ ହୋଇ ରାଜବିରୋଧୀ ସ୍ୱର ଉଠାଇଲେ। ଏଣୁ ସେ ରାଜରୋଷ ଶିକାର ହୋଇ ବହୁ ନିର୍ଯାତନା ଭୋଗିଥିଲେ। ନୟାଗଡ଼ ବନ୍ଦୀଶାଳାରେ ସଜ୍ଜାର ନିର୍ମମ ଅତ୍ୟାଚାର ସହିଥିଲେ। ଶୁକ୍ରୁ ବେହେରାଙ୍କ ଦୁର୍ଦ୍ଦଶାର କିୟଦ ଅଂଶ ତାଙ୍କର କନ୍ୟା ସାବିତ୍ରୀଙ୍କ ଲେଖାରୁ ବୟାନ କରାଯାଏ-

"ଗଡ଼ଜାତ ଆନ୍ଦୋଳନ ନୟାଗଡ଼ରେ ଚାଲିଥାଏ। ଆମ ଗାଁ ହେଉଛି ଭାଲିଆଡ଼ିହି। ମୋର ବାପା ଆନ୍ଦୋଳନରେ ମାତିଲେ ଏବଂ ଜେଲ୍ ଗଲେ। ବାପା ଜେଲ୍ ଗଲାବେଳେ ମୋତେ ଦେଢ଼ବର୍ଷ। ବାପା ବୋଉଙ୍କର ମୁଁ ପ୍ରଥମ ସନ୍ତାନ। ବାପା ଜେଲ୍‌ରେ ରହିଲେ ଦେଢ଼ବର୍ଷ। ଜେଲ୍‌ରୁ ଫେରିଆସିଲା ବେଳକୁ ମୋତେ ହୋଇଥାଏ ତିନି ବର୍ଷ। ଏ ଭିତରେ ପୁଲିସମାନେ ଆମ ଘର କୋରଖି କଲେ। ଆମର ଗାଈଗୋରୁ କଂସାବାସନ ଯାହା ସଂପତ୍ତି ଥିଲା ସବୁକିଛି ପୋଲିସ ନେଇଗଲେ। ଏପରିକି କବାଟ ମଧ୍ୟ ତାଡ଼ି ନେଇଗଲେ। ଆମର ଯେତେସବୁ ବନ୍ଧୁବାନ୍ଧବ ଥିଲେ ଆମ ଯୋଗୁଁ ତାଙ୍କ ଘରସବୁ କୋରଖି ହେଲା। ସେଥିପାଇଁ ଆମକୁ ଘରେ, ବାହାରେ କେହି ଭଲପାଇଲେ ନାହିଁ। ଦାଦା ଆମକୁ ଏଥିପାଇଁ ଭିନ୍ନେ କରିଦେଲେ। ବେଢ଼ି ଉପରେ କୋରଡ଼ା ପରି ଆମର ଦୁଃଖ ଦିନକୁ ଦିନ ବଢ଼ିଚାଲିଲା। ବାପା ଜେଲ୍ ଗଲେ ଆମେ ଘରେ ରହିଲୁ। ମା' ଝିଅ ବହୁ କଷ୍ଟରେ ଚଳିଲୁ। ସେ ଦୁଃଖ ଲେଖିବାକୁ କଷ୍ଟ ଲାଗୁଛି।

ମୋର ମନେପଡୁଛି- ବାପା ଜେଲ୍‌ରେ ଥାଆନ୍ତି। ଦିନକର ଘଟଣା ଆମର କିଛି ଖାଇବାକୁ ନଥାଏ। ଦିନ ଦ୍ୱି'ପ୍ରହର ହେଲାଣି। ବୋଉ କିଛି ଖାଇ ନାହିଁ। ମାଣ୍ଡିଆ ଜାଉ ଟିକିଏ ବୋଉ ତିଆରି କରୁଛି। ଏହି ସମୟରେ ନାଲି ପଗଡ଼ି ପୋଲିସ୍ ଆମ ଘରକୁ ପଶିଆସିଲେ। ବୋଉ ସେମାନଙ୍କୁ ଦେଖି ଭାରି ରାଗିଗଲା। ସେମାନଙ୍କୁ ଗାଳିଦେଇ ସେମାନଙ୍କ ଉପରକୁ ପଥର ଫିଙ୍ଗିଲା। ପୋଲିସମାନେ ଚାଲିଗଲେ, ଘରେ ବାସନ ଖଣ୍ଡେ ନଥାଏ। ଆମେ ପଥର କୁଣ୍ଡିରେ ଖାଉଥାଉ। ଦିନେ ଶୁଣିବାକୁ ପାଇଲୁ ବାପା ଜେଲ୍‌ରୁ ଲୁଚିକରି ଆସିଛନ୍ତି। ପୁଣି ପୋଲିସମାନେ ଜାଣିପାରି ବାପାଙ୍କୁ ନେବାକୁ ଆସିଲେ। ବାପାଙ୍କୁ ନେଇ ବାଡ଼େଇ ବାଡ଼େଇ ଗୋଡିପଡ଼ା ଡୋଟାରେ ମରିଗଲେଣି ବୋଲି ଫିଙ୍ଗିଦେଇ ଆସିଲେ। ଗୋଡ଼ିପଡ଼ା ମୋ ନାନୀଘର। ଲୋକେ ସବୁ ଦେଖି ନାନୀ ଘରେ କହିଲେ। ମୋ ନାନୀଘରର ଲୋକେ ସେଠାରୁ ବାପାଙ୍କୁ ମୋର ଟେକିଆଣି ଗୁଆଘିଅ କଉଡ଼ି ପୋଡ଼ି ଖୁଆଇଲେ। ନାନୀଘରେ କେତେଦିନ ରହି ଟିକିଏ ସୁସ୍ଥ ହୋଇଥାନ୍ତି। ହଠାତ୍ ପୁଣି ପୋଲିସ ଖବର ପାଇ ବାନ୍ଧିନେଇ ଜେଲ୍‌ରେ ରଖିଦେଲେ। ଭାରତ ସ୍ୱାଧୀନ ହେଲା। ଗଡ଼ଜାତରୁ ଯେତେ କଂଗ୍ରେସ କର୍ମୀ ଜେଲ୍ ଯାଇଥିଲେ ସମସ୍ତେ ମୁକ୍ତି ପାଇଲେ।

ଦୁଃସହ ଯନ୍ତ୍ରଣା ଭୋଗକରି ଦେଶର ସ୍ୱାଧୀନତା ଆଣିଥିଲେ ଆନ୍ଦୋଳନକାରୀମାନେ। ସେତିକିରେ ନୀରବି ଯାଇନଥିଲେ ଶୁକ୍ର ବେହେରା। ନିଜର ଜନ୍ମମାଟି ଛାଡ଼ି ଦର୍ପନାରାୟଣପୁର ବିସ୍ତୀର୍ଣ୍ଣ ଅରଣ୍ୟ ଭୂମିକୁ ନିଜର ଆଗାମୀ କର୍ମକ୍ଷେତ୍ର ରୂପେ ବାଛିନେଲେ ଯାହାର ଐତିହାସିକ ନାମ ଥିଲା ଭେଟପଦା। ଏ ସ୍ଥାନ ନୟାଗଡ଼ ଓ ରଣପୁର ରାଜାଙ୍କର ମୈତ୍ରୀଚୁକ୍ତିର ସ୍ଥାନ ଥିବାରୁ ଏହା ଭେଟପଦା ନାମରେ ଖ୍ୟାତ।

ଶୁକ୍ରୁ ବେହେରା ଗାନ୍ଧୀ, ବିବେକାନନ୍ଦଙ୍କର ଅନୁଗାମୀ ଥିଲେ। ସମାଜରୁ ଅର୍ଥନୈତିକ ଅସମାନତା ଦୂର କରିବାକୁ ତାଙ୍କର କର୍ମଭୂମି ଦର୍ପନାରାୟଣପୁରରେ ଗଠନମୂଳକ କାର୍ଯ୍ୟ କରିବାରେ ଲାଗିପଡ଼ିଲେ। ତାଙ୍କର ସାଧନା କ୍ଷେତ୍ରକୁ ବାପୁଜୀ ପଲ୍ଲୀରେ ନାମିତ କଲେ। ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ରମାଦେଈଙ୍କ ସଂସ୍ପର୍ଶରେ ଆସି ଏ ସ୍ଥାନର ବିକାଶ ଦିଗରେ ଲାଗିପଡ଼ିଲେ। ଚରଖା କେନ୍ଦ୍ର ଖୋଲିଲେ, ଦର୍ପନାରାୟଣପୁରରେ ଡାକ୍ତରଖାନା, ପଶୁ ଡାକ୍ତରଖାନା, ବାପୁଜୀ ଏମ୍.ଇ. ସ୍କୁଲ, ଜନତା ହାଇସ୍କୁଲ, ନବକୃଷ୍ଣ ଚୌଧୁରୀ ମହାବିଦ୍ୟାଳୟ ଗଢ଼ିଉଠି ଅଞ୍ଚଳରେ ସ୍ୱାସ୍ଥ୍ୟସେବା, କୃଷିସେବାର ବିକାଶ ହେଲା। ଦର୍ପନାରାୟଣପୁରରେ ଅରଣ୍ୟଭୂମିକୁ କୃଷିକ୍ଷେତ୍ର ପରିଣତ କରିବା ପାଇଁ ଏଠାରେ ଏକ କ୍ଷୁଦ୍ର ଜଳସେଚନର ବନ୍ଧ ନିର୍ମାଣ କରାଇଲେ ଯଦ୍ୱାରା ଏ ଅଞ୍ଚଳ ସବୁଜଭୂମିରେ ବିକଶିତ ହୋଇପାରିଲା।

ଏ ମହାନ ବିପ୍ଳବୀ ପୁରୁଷଙ୍କର ୧୯୯୧ ମସିହା ଶ୍ରୀଗୁଣ୍ଡିଚା ଭଳି ପବିତ୍ର

ଦିବସରେ ଜୁଲାଇ ୧୪ତାରିଖରେ ତିରୋଧାନ ଘଟିଲା। ତାଙ୍କର ମରଶରୀର ଅବସାନ ଘଟିଲେ ହେଁ ସେ ମହାମହିମ ପୁରୁଷ ନୟାଗଡ଼ ଅଞ୍ଚଳରେ ସକାଳ ସଞ୍ଜରେ ଶୁକ୍ରତାରା ଭଳି ପ୍ରତୀୟମାନ।

ପ୍ରକୃତିବନ୍ଧୁ ଶ୍ରମିକଯୋଗୀ : ପ୍ରକୃତିବନ୍ଧୁ, ସବୁଜପୁରୁଷ, ଯୋଗସିଦ୍ଧ, ସବ୍ୟସାଚୀ ଶ୍ରମିକଯୋଗୀ ନୟାଗଡ଼ ନୟାଗଡ଼ ବ୍ଲକ୍ ଅଧୀନସ୍ଥ କାଳିକାପ୍ରସାଦ ପଞ୍ଚାୟତର ମାନପୁର ଗ୍ରାମରେ ପିତା ବ୍ରଜବନ୍ଧୁ ସାହୁ ମାତା ସୀତାଦେବୀ କୋଳରେ ୧.୧.୧୯୪୭ ମସିହାରେ ଜନ୍ମଲାଭ କରିଥିଲେ। ତାଙ୍କର ଲୋକ ପରିଚିତ ନାମ ଶ୍ରମିକ ଯୋଗୀ କିନ୍ତୁ ନାମ ଯୋଗୀନାଥ ସାହୁ। ଯୋଗୀନାଥ ସାହୁ ନୟାଗଡ଼ ମହାବିଦ୍ୟାଳୟରୁ ତାଙ୍କର ଯୋଗ୍ୟତା ହାସଲ କରି ତାଙ୍କ ଗ୍ରାମ ନିକଟସ୍ଥ କେଶରପୁର ଗ୍ରାମରେ ନୂଆକରି ଖୋଲିଥିବା 'ଗୋପବନ୍ଧୁ ମଧ୍ୟଇଂରାଜୀ ବିଦ୍ୟାଳୟ'ରେ ପ୍ରଧାନଶିକ୍ଷକ ଭାବରେ କର୍ମନିଯୁକ୍ତି ପାଇଥିଲେ। ଗୋପବନ୍ଧୁ ମଧ୍ୟଇଂରାଜୀ ବିଦ୍ୟାଳୟ ଥିଲା ତାଙ୍କ ଜୀବନର ସାଧନା କ୍ଷେତ୍ର। ସାନଭାଇ ଭାବରେ ତାଙ୍କ ସାଥିରେ ମିଶିଛି ଚଳିଛି ତାଙ୍କ ଶ୍ରଦ୍ଧାର ହସହସ ଆଳାପ କେବେ ବି ମନରୁ ଲିଭିବ ନାହିଁ। ତାଙ୍କର ସାଧନା ଶ୍ରମରେ ଅସରନ୍ତି ସ୍ୱପ୍ନକୁ ବାସ୍ତବ ରୂପାୟିତ କରିବାରେ ଜଣେ ଅମାୟିକ ଢାଳଜୟୀ ପୁରୁଷ।

ସବୁଜ ସୁନ୍ଦର କ୍ଷିତିର ବଣଘେରରେ ଜୀବଜନ୍ତୁଙ୍କର ବିଚରଣ ପକ୍ଷୀଙ୍କର କୂଜନ ନାରୀପୁରୁଷର ବିଳାସ ସାମଗ୍ରୀ ଖୋଜିବାରେ ଆତ୍ମମୁଗ୍ଧ ହେଉଥିଲେ ଯୋଗୀବାବୁ। ତାଙ୍କ ଆଖି ସାମ୍ନାରେ ଯେତେବେଳେ ଏ ଅରଣ୍ୟ, ପାହାଡ଼, କାନ୍ତାରରୁ ସବୁଜିମା ପୋଛି ହୋଇ ବିଧବା ପ୍ରାୟକ ଦିଶିଲା। ଋତୁଚକ୍ରରେ ବିଡ଼ମ୍ବନା ଦେଖାଗଲା। ପରିବେଶ ପ୍ରଦୂଷଣରେ ଭୟଙ୍କର ରୋଷର ଆତଙ୍କ ସମାଜ ଆଡ଼କୁ ଧାଇଁଲା । ତାଙ୍କ ଦଗ୍ଧ ଆତ୍ମା ତାଙ୍କୁ ବିଚଳିତ କରାଇଲା। ତାଙ୍କର ପ୍ରତିକ୍ରିୟା ହେଲା କିପରି ପରିବେଶ ଉଦ୍ଧାର କରିବେ। ଲଣ୍ଡାଭୂଇଁରେ ଗଛ ଲଗାଇବାରେ ମାତିଲେ। କର୍ମର ସଫଳତା ଆସିଲା। ତାଙ୍କ ହାତରେ ଛୁଆ ଗଛର ଯତ୍ନନେଇ ସାଉଁଳି ପକାଉଥିଲେ। ଛାତ୍ରଛାତ୍ରୀଙ୍କ ସହାୟତାରେ ବୃକ୍ଷ ରୋପଣ କରି ଗୋଟିକୁ ଗୋଟିକର ଯତ୍ନରେ ଗଛ ବଢ଼ିଲେ। ତାଙ୍କର କ୍ଷୁଦ୍ର ପରିବେଶ ସୁନ୍ଦର ହେବାକୁ ଲାଗିଲା। ଏହାର ସୁଫଳକୁ ଅଙ୍ଗୀକାର କରି କେଶପୁର ଗ୍ରାମର ଜ୍ଞାନପ୍ରଭା- ନାରାୟଣ ହଜାରୀ 'ବୃକ୍ଷ ଓ ଜୀବବନ୍ଧୁ' ପରିଷଦ ଗଠନ କଲେ।

ଯୋଗୀନାଥ ସାହୁ (ଶ୍ରମିକଯୋଗୀ) ଏହି ପରିଷଦର ସଂପାଦକ ଭାବେ ୨୧ବର୍ଷ କର୍ମ ସଂପାଦନ କରିଥିଲେ। ଭାରତବର୍ଷରେ ସାମାଜିକ ବନୀକରଣ ଆରମ୍ଭ ହେବାର ଏକ ଦଶନ୍ଧି ପୂର୍ବରୁ ନୟାଗଡ଼ ଜିଲ୍ଲାର ବୁଦ୍ଧଗ୍ରାମ (କେଶରପୁର) ଓ ଶ୍ରମିକଯୋଗୀଙ୍କ ସବୁଜ ପରିବେଶର ସୁରକ୍ଷା ଆନ୍ଦୋଳନ ବୃକ୍ଷବନ୍ଧୁ, ବୃକ୍ଷ ବଞ୍ଚାଅ ଜନସମାଜରେ

ସଚେତନ ଆଣିଥିଲା । ଏ ଆନ୍ଦୋଳନରେ ତାଙ୍କର ସହଯୋଗୀ ବନ୍ଧୁ ନାରାୟଣ ହଜାରୀ, ଭିକ୍ଷାକାରୀ ହଜାରୀ, ଉଦୟନାଥ ଖଟେଇ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ପରବର୍ତ୍ତୀ ସମୟରେ ପରିବେଶ ଅଭିବୃଦ୍ଧିର କାର୍ଯ୍ୟଧାରାକୁ ବଳବତ୍ତର କରିବା ପାଇଁ ୧୯୮୨ରେ ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ ଆନୁକୂଲ୍ୟରେ ଆଞ୍ଚଳିକ ଭଉଣୀ ସଂଗଠନ ଜିଲ୍ଲାସ୍ତରରେ ଜଙ୍ଗଲ ସୁରକ୍ଷା ମହାସଂଘ ଓ ରାଜ୍ୟସ୍ତରୀୟ ଜଙ୍ଗଲ ମଞ୍ଚ ଗଠନରେ ସକ୍ରିୟ ଭୂମିକା ନେଇଥିଲେ ଶ୍ରମିକଯୋଗୀ ମହୋଦୟ । ତାଙ୍କର ଉଦ୍ୟମରେ ପରିଷଦର ପାର୍ଶ୍ୱବର୍ତ୍ତୀ ଲଣ୍ଡା ପାହାଡ଼ ବୁଦ୍ଧଗିରି ଓ ମାଳତୀରେ ସବୁଜ ବନାନୀ ସୃଷ୍ଟି ତା'ର ସୁରକ୍ଷା ଗ୍ରାମବାସୀଙ୍କ ଦାୟିତ୍ୱରେ ରଖିଲେ । ଯେଉଁ ପାହାଡ଼ରୁ ୨୫ବର୍ଷ ତଳୁ ଝରଣା ଝରୁନଥିଲା ସେ ବନକନ୍ଦରରୁ ଝରଣା ବହିବାର ଦେଖି ଉତ୍‌ଫୁଲ୍ଲିତ ହୋଇପଡ଼ିଥିଲେ । ଗ୍ରାମମାନଙ୍କରେ ଗ୍ରାମସଭା ଡକାଇ ନିଜ ନିଜ ଜଙ୍ଗଲ ସୁରକ୍ଷା ପାଇଁ ସଚେତନ କରାଇଥିଲେ । ତାଙ୍କରି ଶ୍ରମ ସାଧନା ଯୋଗୁଁ ରତ୍ନମାଳା ପାର୍ବତ୍ୟ ଅଞ୍ଚଳ, ଶୂଳିଆ ଜଙ୍ଗଲ ସୁରକ୍ଷା, ଡମସାହି ଆରଣ୍ୟଭୂମିରେ ସବୁଜବନାନୀ ସୃଷ୍ଟି ପ୍ରାୟତଃ ନୟାଗଡ଼ ଜିଲ୍ଲାର ଲଣ୍ଡା ପାହାଡ଼ରେ ମୂଲ୍ୟବାନ ବୃକ୍ଷ ଓ ଔଷଧୀୟ ବୃକ୍ଷମାନ ଉତୁରି ଆସି ସବୁଜ ଶୀତଳ ଛାୟା ପ୍ରଦାନ କରେ ।

ଶ୍ରମିକଯୋଗୀ ଛାତ୍ରୀଛାତ୍ରଙ୍କୁ ଜଙ୍ଗଲ ସୁରକ୍ଷା ବାର୍ତ୍ତାଦେବା ପାଇଁ ଶୋଭାଯାତ୍ରାରେ ବୃକ୍ଷ ଜୀବର ବନ୍ଧୁ, ବୃକ୍ଷ ପରିବେଶର ସୁରକ୍ଷା ଦିଏ, ବୃକ୍ଷର ସବୁଜିମା ବର୍ଷା ଆଣେ, ବୃକ୍ଷ ପ୍ରଦୂଷଣରୁ ମୁକ୍ତ କରେ, ବୃକ୍ଷ ପରିବେଶକୁ ସୁସ୍ଥ କରେ, ବୃକ୍ଷ ବଂଚିଲେ ଜୀବନ ରହେ ବହୁ ବୃକ୍ଷର ଆବଶ୍ୟକତା ଉପରେ ପ୍ଲାକାର୍ଡ଼ ମାଧ୍ୟମରେ ବୃକ୍ଷ ଜୀବନ ମିତ୍ର ବାବଦରେ ଗୀତଗାଇ ଜନ ସଚେତନ ସୃଷ୍ଟି କରିପାରିଥିଲେ ଆଦର୍ଶ ଶିକ୍ଷକ ଯୋଗୀନାଥ ସାହୁ ।

<u>ଶ୍ରମିକଯୋଗୀଙ୍କର ଠେଙ୍ଗାପାଳି :</u> ଠେଙ୍ଗା ଜଗିବ ଜଙ୍ଗଲ । ପ୍ରତି ଗ୍ରାମବାସୀ ମନରେ ଭର୍ତ୍ତି କରିଦେଇଥିଲେ ଯୋଗୀନାଥ ସାହୁ ଗ୍ରାମ ସଭାମାନଙ୍କରେ ଏ ଆଖ୍ୟାନର କର୍ମକାରିତାକୁ ହୃଦୟଙ୍ଗମ କରାଇ ପାରିଥିଲେ । ଗାଁ'ରେ ୪ଟି ଠେଙ୍ଗା ରଖାଯିବ ସଂଖ୍ୟା ଅନୁସାରେ ୧,୨,୩,୪ । ୧ ଓ ୨ନଂ. ଠେଙ୍ଗା ଜଙ୍ଗଲର ନିର୍ଦ୍ଦିଷ୍ଟ ବୃକ୍ଷରେ ରହିବ । ଯେଉଁ ଦୁଇ ପରିବାର ପାଳିଥିବ ୩ ଓ ୪ନଂ. ଠେଙ୍ଗା ନେଇ ଜଙ୍ଗଲର ନିରାପତ୍ତାରେ ସାରା ଜଙ୍ଗଲ ତଦାରଖ କରିବେ । ଫେରିବାବେଳେ ୧ ଓ ୨ନଂ. ଠେଙ୍ଗା ପାଖ ଦୁଇ ପରିବାର ଘର ଦୁଆରେ ଡେରିଦେବେ ପରଦିନ ସେମାନଙ୍କ ଜଙ୍ଗଲଜଗା ପାଳି । ପରଦିନ ସେମାନେ ଯିବେ ଜଙ୍ଗଲ ତଦାରଖ କରିବେ ୩ ଓ ୪ନଂ. ଠେଙ୍ଗା ଆଣି ପରଦିନ ପାଳିଥିବା ଦୁଇ ପରିବାର ଦୁଆରେ ଡେରିଦେବେ । ଏହି ରୀତିରେ କାହାକୁ ଜଙ୍ଗଲ ଜଗିଯିବାକୁ କହିବାକୁ ପଡ଼େନି ।

ଆପେ ଆପେ ଜଙ୍ଗଲ ଜଗାଚାଲେ। ଜଙ୍ଗଲ ଲୁଟ ହେବାର ସମ୍ଭାବନା ରହେନି। ଏ ଜଙ୍ଗଲ ଜଗା ପ୍ରଣାଳୀ ସମଗ୍ର ରାଜ୍ୟରେ ପ୍ରଶାର ଲାଭ କରିଥିଲା। ତାଙ୍କରି ଆହ୍ୱାନରେ ମହିଳା ସଂଗଠନମାନ ଗଢ଼ିଉଠି ନିଜ ଜଙ୍ଗଲର ସୁରକ୍ଷା ନେବାରେ ଆଗଭର ହୋଇଥିଲେ। ଗ୍ରାମବାସୀମାନେ ନିଜ ନିଜ ଜଙ୍ଗଲ ଜଗି ଜଙ୍ଗଲର ସୁଫଳ ଲାଭକଲେ।

ଶ୍ରମିକଯୋଗୀ ବୃକ୍ଷର ମୂଲ୍ୟାୟନଭିତ୍ତିକ କବିତା, ପ୍ରବନ୍ଧ, ଗଳ୍ପ ସଂକଳନ ପୁସ୍ତକ ପ୍ରକାଶ କରି ଗ୍ରାମେ ଗ୍ରାମେ ବାଣ୍ଟୁଥିଲେ। ସେଗୁଡ଼ିକ- ଆସ ବାଞ୍ଚ ହେବା, ଛୁଆଁ ଚାଲୁଣି ଉପାଖ୍ୟାନ, ପରିବେଶ ସଂଗୀତ ସଂକଳନ, ନିଶାଜନ୍ତା, ଦୂବଗଣ୍ଠି। ଏ ପୁସ୍ତିକାମାନ ପାଠକଲେ ପରିବେଶ ସୁରକ୍ଷା ପାଇଁ ମନ ବଳିଯାଏ। ଯୋଗୀନାଥ ସାହୁଙ୍କର ସବୁଜିମାର ବାର୍ତ୍ତା ଜଣରୁ ଜଣ ବୃକ୍ଷରୋପଣ କରିବା ଏବଂ ତା'ର ଯତ୍ନନେଇ ବଞ୍ଚାଇବାରେ ଉତ୍ସାହିତ କରେ।

ନୟାଗଡ଼ ଜିଲ୍ଲାରେ ଗ୍ରାମେ ଗ୍ରାମେ ଶ୍ରମିକଯୋଗୀ ଜଙ୍ଗଲ ସୁରକ୍ଷା ଆନ୍ଦୋଳନକୁ ତାଙ୍କଦ୍ୱାରା ଗଢ଼ା 'ବୃକ୍ଷ ଜୀବବନ୍ଧୁ ପରିଷଦ' ମାଧ୍ୟମରେ କାଏମ ରଖିଛନ୍ତି। ଯଦ୍ୱାରା ଆଜି ଉଜୁଡ଼ା ଜଙ୍ଗଲ ବୃକ୍ଷରାଜିରେ ଭରପୁର ହୋଇ ସବୁଜପର୍ଣ୍ଣର ଶୀତଳ ଛାୟା ପ୍ରଦୂଷଣମୁକ୍ତ ପରିବେଶ ଜନସମାଜ ଭୋଗ କରୁଛନ୍ତି। ଏ ସବୁଜ ଆନ୍ଦୋଳନର ପାରଦର୍ଶିତା ନୟାଗଡ଼ ଜିଲ୍ଲାରେ ସୀମିତ ନରହି ରାଜ୍ୟ, ଦେଶ ଓ ଆନ୍ତର୍ଜାତୀୟ ସ୍ତରରେ ପ୍ରଭାବ ବିସ୍ତାର କରିଛି। ଏ ସବୁଜ ବିପ୍ଳବରେ ଉତ୍ସାହିତ ହୋଇ ୧୯୯୧ ମସିହାରେ ବିଲାତ ଦେଶର ଶ୍ରୀଯୁକ୍ତ ଯୋ ହ୍ୟୁମାନ ସପତ୍ନୀକ 'ବୃକ୍ଷ ଜୀବବନ୍ଧୁ ପରିଷଦ ବୃନ୍ଧଗ୍ରାମ (କେଶରପୁର)କୁ ପରିଦର୍ଶନରେ ଆସିଥିଲେ। ଯୋଗୀନାଥ ସାହୁ ଏବଂ ତାଙ୍କ ସହଯୋଗୀ ବନ୍ଧୁଙ୍କ ସହିତ ନୟାଗଡ଼ ଜିଲ୍ଲାରେ ସୁରକ୍ଷିତ ଅରଣ୍ୟ ବଳୟ ପରିଭ୍ରମଣ କରି ଅତ୍ୟନ୍ତ ପ୍ରମୋଦିତ ହୋଇଥିଲେ। ନୟାଗଡ଼ ଗ୍ରାମବାସୀଙ୍କ ଜଙ୍ଗଲ ଉଦ୍ଧାର କରିବାର ନରମ ସୂତ୍ର ଯୋଜନାରେ ବିମୋହିତ ହୋଇଥିଲେ। ପ୍ରକୃତିର ବନ୍ଧୁ ଶ୍ରମିକ ଯୋଗୀଙ୍କୁ ତାଙ୍କ କର୍ମପ୍ରବାହ ପାଇଁ ଭୂରି ପ୍ରଶଂସା କରିଥିଲେ। ଯୋ ହ୍ୟୁମାନଙ୍କ ପତ୍ନୀ ଶ୍ରମିକ ଯୋଗୀଙ୍କୁ ପ୍ରଶ୍ନ କରିଥିଲେ "ଯୋଗୀ ! ଗୋଟିଏ ନିପଟ ମଫସଲ ଗ୍ରାମରେ ଆରମ୍ଭ ହୋଇଥିବା ଆନ୍ଦୋଳନ ଆନ୍ତର୍ଜାତୀୟ ସ୍ତରକୁ କିପରି ଓ କାହିଁକି ଗଲା ତା'ର କାରଣ ଗୋଟିଏ ବାକ୍ୟରେ କୁହ ?" ଶ୍ରମିକ ଯୋଗୀଙ୍କର ଉତ୍ତର ଥିଲା- "Magic of Love" ସମସ୍ତଙ୍କୁ ଭଲପାଇବା। ଅର୍ଥାତ୍ ସମସ୍ତଙ୍କୁ ଆନ୍ଦୋଳନରେ ସାମିଲ କରିବା। ଯାହାକୁ ଭାରତୀୟ ସଂସ୍କୃତି କୁହେ- "ଆତ୍ମାବତ ସର୍ବଭୂତେ"। ଯୋ ହ୍ୟୁମାନ ଆମ ପରିଦର୍ଶନ ବହିରେ ଲେଖିଥିଲେ- "It has been an inspiring day. Thank for sharing with me. In turn I will share it with OXFAM friends

and supporters in Britain. In this way I will try to reach many people with the message "Trees are our life" Your message which is the message for us all. ତାଙ୍କର ଲେଖା ଲୁହାର ଗାର। ତାହାହିଁ ହେଲା ୧୯୯୫ରେ ବିଲାତର ଏକ ୪ଜଣିଆ ଦଳ ଆସି ଏଠାରେ ୧୨ଦିନ କାଳ ରହି ନୟାଗଡ଼ର ପରିବେଶ ଆନ୍ଦୋଳନର ଧାରା, ଓଡ଼ିଶାର ପରମ୍ପରା, ସଂସ୍କୃତି, ଚାଲିଚଳଣ, ଧାର୍ମିକ ଭାବ, ଭୌଗୋଳିକ ପରିବେଶ, ନେତୃତ୍ୱ ନେଉଥିବା ବ୍ୟକ୍ତିତ୍ୱ, ଆମ କୃଷି, ଆମ ସ୍ୱଭାବ ଓ ସ୍ୱରକୁ ନେଇ ୧୯୯୭ରେ ତାଙ୍କ ଦେଶର ୧୨+ ସ୍କୁଲ ଛାତ୍ରୀଛାତ୍ରଙ୍କୁ ନେଇ ଏକ ପରିବେଶୀୟ ଶିକ୍ଷଣୀୟ ପ୍ୟାକ୍ ପ୍ରସ୍ତୁତ କରି ରାଜ୍ୟଗୋଷ୍ଠୀ ପ୍ରତିଷ୍ଠାନ (Common wealth Institution)ରେ ଆମଦ୍ୱାରା ଜୁନ୍ ୫ତାରିଖ ବିଶ୍ୱ ପରିବେଶ ଦିବସରେ ଉଦ୍‌ଘାଟନ କରାଇ ଆମକୁ ସମ୍ମାନୀତ କଲେ ଏବଂ ବି.ବି.ସି. ରେଡ଼ିଓ ଟେଲିଭିଜନ କାର୍ଯ୍ୟକ୍ରମରେ ଆମକୁ ସାମିଲ ସହ ବିଭିନ୍ନ ଗଣମାଧ୍ୟମରେ ଏହାକୁ ପ୍ରଚାର କଲେ। ସେଠାରେ ୩,୫୦୦ ସ୍କୁଲରେ ପ୍ରାୟ ୪୦-୪୫ ହଜାର ଛାତ୍ରଛାତ୍ରୀ ଏହାକୁ ବ୍ୟବହାର କରିବାର ସୁଯୋଗ ପାଇଛନ୍ତି। ପ୍ରତିବର୍ଷ ଠେଙ୍ଗାପାଳି ପ୍ୟାକରେ ଅଧିକ ତଥ୍ୟ ଯୋଗାଯାଉଛି। ସେମାନଙ୍କ ଭାଷାରେ "ମଞ୍ଜି ଓଡ଼ିଶାର କିନ୍ତୁ ଇଂଲଣ୍ଡରେ ଆମେ ଫଳ ପାଇଛୁ। ବିଲାତ ଦେଶ ଅକ୍‌ସଫାମ (OXFAM) ସଂସ୍ଥାର ଆର୍ଥିକ ସହାୟତା ଅପେକ୍ଷା ନୈତିକ ସମର୍ଥନ କାମ କରିବା ପାଇଁ ଉତ୍ସାହ ପ୍ରୋତ୍ସାହନ ଉଲ୍ଲେଖଯୋଗ୍ୟ।" ଶ୍ରୀଯୁକ୍ତ ଯୋ ହ୍ୟୁମାନ ଆମର ଏ ଜଙ୍ଗଲ ସୁରକ୍ଷା ଅଭିଯାନର ଗୁଣାତ୍ମକ ମୂଲ୍ୟ ଉପରେ ୧୭୬ ପୃଷ୍ଠାର ଗବେଷଣାତ୍ମକ ପୁସ୍ତକ ରଚନା କରି ବିଶ୍ୱଜନ ସଚେତନ ସୃଷ୍ଟି କରିଥିବାରୁ ତାଙ୍କୁ ଭୁଲି ନୁହେଁ। ବିଲାତ ହାମ୍ପସପାୟାର ଠେଙ୍ଗାପାଳିର ମୁଖ୍ୟ ପ୍ରବର୍ତ୍ତକ ଶ୍ରୀଯୁକ୍ତ ଡିଲାନ ଥିଓଡରଙ୍କ ସହିତ ଅନ୍ତରଙ୍ଗ ଆଳାପ :-

ପ୍ରଶ୍ନ- ଆପଣ କାହିଁକି ନୟାଗଡ଼ ଜିଲ୍ଲାର ଠେଙ୍ଗାପାଳିକୁ ପ୍ରାଧାନ୍ୟ ଦେଲେ, ଆଶା ଆପଣଙ୍କର ସଫଳ ହୋଇଛି କି ?

ଡିଲାନଥିଓଡ଼ର- ୧୯୯୫ରେ ଶୁଣିବାକୁ ମିଳିଥିଲା ଓଡ଼ିଶାର ନୟାଗଡ଼ ଜିଲ୍ଲା ବୃକ୍ଷ ଜୀବର ବନ୍ଧୁ ପରିଷଦ ଦ୍ୱାରା କେଶରପୁରରେ ଠେଙ୍ଗାପାଳି ମାଧ୍ୟମରେ ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମ ଚାଲୁରହିଛି। ଏଥିରେ ଅନେକ ଶିକ୍ଷଣୀୟ ତଥ୍ୟ ରହିଥିଲା। ଏ ଇଂଲଣ୍ଡର ଶିକ୍ଷକମାନଙ୍କୁ ସୂଚନା ଓ ଠେଙ୍ଗାପାଳି ମାଧ୍ୟମରେ ଶିକ୍ଷାଦାନ ପାଇଁ ସହଯୋଗ କରିବ। ଓଡ଼ିଶାର ସ୍ଥିତି, ପାଣିପାଗ, ନଦନଦୀ, ପରିବେଶ ପରିବର୍ତ୍ତନ, ଜଙ୍ଗଲ କ୍ଷୟ ଭବିଷ୍ୟତର ଚିରନ୍ତନ ପରିବର୍ତ୍ତନ ପାଇଁ ଯୋଜନା ଓ କାର୍ଯ୍ୟକ୍ରମ ସଂପର୍କରେ ଅବଗତ ପାଇଁ ଉଦ୍ଦିଷ୍ଟ ମଧ୍ୟ ଥିଲା। ଅନ୍ୟ ପକ୍ଷରେ ପ୍ରାକୃତିକ ଓ

ସାମାଜିକ ପରିବେଶ ଶିକ୍ଷାପାଇଁ ଗପ, ନାଟକ, ସଂଗୀତ, ନାଚ, ଧର୍ମୀୟ ଶିକ୍ଷା କିପରି ଆବଶ୍ୟକ ସେ ନେଇ ସେମାନେ ତଥ୍ୟ ଖୋଜୁଥିଲେ।

ଏଗୁଡ଼ିକ କେଶରପୁରରୁ ମିଳିବ ବୋଲି ଆଶା ରଖି ନୟାଗଡ଼ ଜିଲ୍ଲାର ଠେଙ୍ଗାପାଳିକୁ ପ୍ରାଧାନ୍ୟ ଦେଇଥିଲେ। ଏଣୁ ଏହି ତଥ୍ୟକୁ ସଂଗ୍ରହ କରିବାକୁ ମୁଁ ୧୯୯୫ ଅକ୍ଟୋବରରେ ୧୨ଦିନ ଧରି ବୃକ୍ଷ ଜୀବର ବନ୍ଧୁ ପରିଷଦରେ ରହିଥିଲି।

ଛାତ୍ରଛାତ୍ରୀ, ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କ ଉଦ୍ଦେଶ୍ୟରେ ସେ ସଂଗ୍ରହ କରିବାକୁ ଆସିଥିବା ତଥ୍ୟ ପାଇଥିବାରୁ ଅତ୍ୟନ୍ତ ଆନନ୍ଦିତ ହୋଇଥିଲି। ଏହାକୁ ରୂପରେଖ ଦେବାପାଇଁ ୧୦୫ଟି ସୁନ୍ଦର ଓ ବାସ୍ତବ ଫଟୋଚିତ୍ର ନେଇଥିଲି। ଏହାକୁ ଏକ ବାକ୍ସରେ ରଖି ଏକ ଶିକ୍ଷଣୀୟ ପ୍ୟାକ୍ ନିର୍ମାଣ କରିଥିଲି।

ପ୍ରଶ୍ନ- ଠେଙ୍ଗାପାଳିକୁ ଲୋକଲୋଚନକୁ ଆଣିବାକୁ ସାହାଯ୍ୟ ଓ ସହଯୋଗ ମିଳିଥିଲା କି ?

ଉତ୍ତର - ଦୁଇବର୍ଷ କଠିନ ପରିଶ୍ରମ କରି ଠେଙ୍ଗାପାଳିକୁ ଲୋକଲୋଚନକୁ ଅଣାଯାଇଥିଲା। ଏଥିପାଇଁ ବ୍ରିଟେନ୍ ଦେଶର ବହୁ ବ୍ୟକ୍ତି ଓ ଅନୁଷ୍ଠାନ ନୈତିକ ସମର୍ଥନ ଓ ଅର୍ଥ ସାହାଯ୍ୟ ସହ ସହଯୋଗ କରିଥିଲେ। କେଶରପୁରର 'ବୃକ୍ଷ ଜୀବର ବନ୍ଧୁ ପରିଷଦ'ର ଆନ୍ତରିକ ସହଯୋଗ ପ୍ରେରଣା, ସ୍ନେହ ଓ ଆତିଥ୍ୟ ଆମକୁ ଆଗକୁ ବଢ଼ାଇବାରେ ସହାୟକ ହୋଇଥିଲା। ଆମେ ଓଡ଼ିଶାକୁ ଆମର ଦ୍ୱିତୀୟ ଘର ରୂପେ ଭାବୁଛୁ।

ପ୍ର- ଆଗାମୀ ଦିନରେ ଠେଙ୍ଗାପାଳି ପାଇଁ କ'ଣ ଯୋଜନା ରଖିଛନ୍ତି ?

ଉ- ଠେଙ୍ଗାପାଳି ପ୍ୟାକ୍‌ର ଭବିଷ୍ୟତ ଉଜ୍ଜ୍ୱଳ। ଏଠାର ଜନସାଧାରଣ ଏତେ ସହଜରେ ଏହାକୁ ଭୁଲିପାରିବେ ନାହିଁ, ଠେଙ୍ଗାପାଳିକୁ ନେଇ ନୟାଗଡ଼ ଜିଲ୍ଲା ବ୍ରିଟେନ୍‌ରେ ତା'ର ସ୍ଥାନକୁ ସ୍ୱତନ୍ତ୍ରଭାବେ ଅକ୍ତିଆର କରିପାରିଛି। ତେବେ ଏ ଆନ୍ଦୋଳନ କିପରି ବିଶ୍ୱର ଅନ୍ୟାନ୍ୟ ଦେଶକୁ ବ୍ୟାପିବ ସେଥିପାଇଁ ଆମର ଚିନ୍ତା ଓ ଭାବନା ରହିଛି। ନୟାଗଡ଼ର ଏହି ଆନ୍ଦୋଳନ ଭାରତର ଅନ୍ୟାନ୍ୟ ପ୍ରଦେଶରେ କିପରି ପହଞ୍ଚିବ ସେଥିନିମନ୍ତେ ନୟାଗଡ଼ବାସୀ ପ୍ରଚେଷ୍ଟା କରିବାର ରହିଛି।

ପ୍ରଶ୍ନ- ଆପଣଙ୍କ ଦେଶର ପାଠ୍ୟକ୍ରମରେ ଠେଙ୍ଗାପାଳିକୁ କାହିଁକି ସାମିଲ କରାଗଲା ?

ଉ.- ସାଉଥ ଏସିଆର ଅକ୍ସଫାମ କମ୍ୟୁନିକେସନ ଅଫିସର ଶ୍ରୀଯୁକ୍ତ ଯୋ ହ୍ୟୁମାନ ପ୍ରଥମେ ୧୯୯୧ରେ ନୟାଗଡ଼ ଗସ୍ତରେ ଆସିଥିଲେ। ସେ ଏଠାରେ ଦେଖିବାକୁ ପାଇଥିଲେ ଓ ଅନୁଭବ କରିଥିଲେ ଏଠାକାର ଲୋକମାନେ ଧନୀ ହେବାପାଇଁ ଆନ୍ଦୋଳନ କରୁନାହାନ୍ତି ବରଂ ବିଶ୍ୱଚିନ୍ତା ଓ ପରିବେଶ ପାଇଁ ଆନ୍ଦୋଳନକୁ ଚାଲୁରଖିଛନ୍ତି। ଏପରି ବିରଳ ଘଟଣା ଦେଖି ସେ ଠେଙ୍ଗାପାଳିକୁ

ଲୋକଲୋଚନକୁ ଆଣିବାକୁ ସଂକଳ୍ପ ନେଇଥିଲେ। ଏଠାରୁହିଁ ଠେଙ୍ଗାପାଳିର ଅଙ୍କୁରୋପଣ ଆରମ୍ଭ ହୋଇଥିଲା।

ଶ୍ରମିକ ଯୋଗୀଙ୍କ ପ୍ରକାଶରେ ଜଙ୍ଗଲ ଲୁଟୁଥିବା ବ୍ୟବସାୟୀମାନେ ଜଙ୍ଗଲ ସୁରକ୍ଷା ଆନ୍ଦୋଳନକୁ ଭଣ୍ଡୁର କରିବାପାଇଁ ବାରବାର ଦ୍ୱନ୍ଦ କରିଛନ୍ତି। ଏ ବାଡ଼େଇବା ମାରିଦେବାର ଧମକ ଆନ୍ଦୋଳନର କର୍ମୀମାନଙ୍କୁ ଅଟକାଇ ପାରିନାହିଁ। ସେହିପରି ପଇସା ଖାଇବା ଏବଂ ଅନ୍ୟାନ୍ୟ ଅପମାନସୂଚକ ଗାଳି ସମାଲୋଚନା କର୍ମୀମାନଙ୍କୁ କନ୍ଦାଇଛି। ବିଚଳିତ କରିପାରି ନାହିଁ।

ନିନ୍ଦା ଅପମାନ ଗାଳି
ଆମେ ବେକରେ କରିଛୁ ମାଳି

ଜଙ୍ଗଲ ନିଆଁ, ମୃତ୍ତିକା କ୍ଷୟ ପ୍ରତିରୋଧ ପାଇଁ ବଣ ପଶୁପକ୍ଷୀଙ୍କ ସୁରକ୍ଷା ପାଇଁ ଉଲ୍ଲେଖନୀୟ ରଚନାତ୍ମକ କାର୍ଯ୍ୟମାନ ଲୋକମାନେ କରିଛନ୍ତି। ବହୁ ବିଜ୍ଞ, ବୁଦ୍ଧିଜୀବୀ, ସମାଜସେବୀ, ସାମ୍ବାଦିକ ଜାତୀୟ ସେବା ସଂସ୍ଥା, ଭାରତୀୟ ପ୍ରଶାସନ ସେବା ଓ ଭାରତୀୟ ଜଙ୍ଗଲସେବାର ବଡ଼ ବଡ଼ ଉଚ୍ଚପଦସ୍ଥ କର୍ମଚାରୀ, ବିଦେଶର ବହୁ ଗବେଷକ, ଜଙ୍ଗଲପ୍ରେମୀ ଆମର ଅତିଥି ହେଲାବେଳେ ଆମେ ସେମାନଙ୍କ ଦ୍ୱାରା ବୃକ୍ଷରୋପଣ କରିବା ସହ ସେମାନଙ୍କଠାରେ ଥିବା ଜ୍ଞାନ କୌଶଳକୁ ଲେଖିରଖି କାର୍ଯ୍ୟରେ ଲଗାଉଥିଲୁ। ୧୯୮୪ରୁ ବଣଜଙ୍ଗଲର ୧୪୦ ପ୍ରକାର ମଞ୍ଜି ସଂଗ୍ରହ କରି ଏକ ମଞ୍ଜି ବ୍ୟାଙ୍କ ସ୍ଥାପନ କରାଗଲା। ଓଡ଼ିଶା ତଥା ଅନ୍ୟ ରାଜ୍ୟର ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଫରେଷ୍ଟ ବିଭାଗ ଏହି ବ୍ୟାଙ୍କରୁ ଲାଭବିହୀନ ଦରରେ କିଣିନେଲେ। ଏପରିକି ଆମେରିକାର ଏ ସଂସ୍ଥା ମଞ୍ଜି ନେବାପାଇଁ ଯୋଗାଯୋଗ କରିଥିଲା। ସେହିପରି ଅତି କମ୍ ଦରରେ ବିହନ ବର୍ଷର ସବୁ ସମୟରେ 'ଚାରା ବ୍ୟାଙ୍କ'ରୁ ବୃକ୍ଷଚାରା ନେବାର ବ୍ୟବସ୍ଥା କରାଗଲା। ରାସ୍ତାକଡ଼ରେ ବୃକ୍ଷଚରା ରଖି ବାଟରେ ଯାଉଥିବା ସମସ୍ତଙ୍କୁ ମୁଣ୍ଡିଆ ମାରି ଏବଂ ହୃଦୟସ୍ପର୍ଶୀ ସ୍ଲୋଗାନ ଦେଇ ଅନୁରୋଧ କରାଯିବା ଫଳରେ ହଜାର ହଜାର ବୃକ୍ଷ ଲାଗିବା ସମ୍ଭବ ହେଲା।

ବାସ୍ତବରେ ଯୋଗୀନାଥ ସାହୁ ଓରଫ ଶ୍ରମିକ ଯୋଗୀଙ୍କ ପରିବେଶ ପ୍ରଦୂଷଣ ମୁକ୍ତରେ ଜଙ୍ଗଲ ସୁରକ୍ଷାର ଅଭିଯାନ ବିଶ୍ୱଜୀବନକୁ ପ୍ରଭାବିତ କରିଛି। ସେ ଚିରସ୍ମରଣୀୟ ଅମ୍ଳାନ ସବୁଜ ପୁରୁଷ। ତାଙ୍କର କଳା ମଚମଚ ଶରୀର ହସହସ ମୁହଁ ମଧୁର ବଚନର ଆତ୍ମୀୟତା ପକେଟରେ ସଦାବେଳେ କଲମ କାନ୍ଧରେ ଟର୍କିସ ଟାୱାଲ ସରଳ ଚିକ୍କଣ ଚେହେରା ଆଗରେ ଆପେ ମଥା ଆନତ ହୋଇପଡ଼େ। ସେ ପ୍ରତିଭାବାନ ପୁରୁଷଙ୍କୁ ଭୁଲିହୁଏନା।

**ବାଣୀ ସୌରଭ ଅର୍ଜୁନ ବାରିକ :** ବାଣୀସୌରଭ ଅର୍ଜୁନ ବାରିକ ୨୨.୭.୧୯୫୧ ମସିହାରେ ନୟାଗଡ଼ ଜିଲ୍ଲା ଶରଣକୁଳ ଥାନା ଅନ୍ତର୍ଗତ ଡିହିମର

ପଞ୍ଚାୟତର ପଡ଼ୋଶୀ ହରିପୁର ଗ୍ରାମରେ ଏକ ନାପିତ ପରିବାରରେ ଜନ୍ମଲାଭ କରିଥିଲେ। କବିଙ୍କର ଶିକ୍ଷାଗତ ଯୋଗ୍ୟତା ମାତ୍ର ତୃତୀୟଶ୍ରେଣୀ। ପାଲା, ସଂକୀର୍ତ୍ତନରେ ଶୁଣିଶୁଣି ପୁରାଣ କଥାବସ୍ତୁକୁ ଅନୁସରଣ କରି ରୀତିଯୁଗୀୟ କାବ୍ୟଶୈଳୀରେ ଭିନ୍ନ ଭିନ୍ନ ରାଗରାଗିଣୀରେ କାବ୍ୟ ଗୀତିକବିତା ଲେଖିବାରେ ଜଣେ ସିଦ୍ଧସାଧକ ଏବେବି କଲମ ଚଳଚଞ୍ଚଳ। ଏ ସାଂପ୍ରତିକ ସମୟରେ ପାଲା ଓ ସଂକୀର୍ତ୍ତନ ଏ ସଭ୍ୟ ସମାଜରୁ ଦୂରେଇଲାଣି। ଅଧୁନା ଏହାର ଆଦର ମଣିଷ ଉପେକ୍ଷାରେ। ତଥାପି ମଣିଷର ଜନ୍ମ ମରଣ ସମୟରେ ମୃଦଙ୍ଗ, ଝାଞ୍ଜ, ରାମତାଳି ତାଳରେ ଗାୟକର ହରିନାମ ତାନ ଶ୍ରବଣ ଜରୁରୀ ମନେହେଉଛି। ଏକୋଇଶିଆରେ ନବଜାତ ଶିଶୁର ନାମକରଣ, ମରଣକାଳରେ ହରିନାମ ନାମ ସଂକୀର୍ତ୍ତନରେ ଜୀବର ଆସିବା ଯିବାରେ ଶୁଣାଇବା ଉପାଦେୟ ଅମୃତ ତାନ ଯୁଗ ବଦଳି ବଦଳି ଗଲେହେଁ ଏହାର ଉପଯୋଗ ଲୋଡ଼ା ପଡୁଛି। ଅର୍ଜୁନ ବାରିକ କବି ମହାଶୟ ନୟାଗଡ଼ ଜିଲ୍ଲାରେ ସଂକୀର୍ତ୍ତନ ମଣ୍ଡଳୀର ପୁନଃଉଦ୍ଧାରକ। ସୁପ୍ତ ସଂକୀର୍ତ୍ତନ ମଞ୍ଚର ପୁନଃ ଜାଗରଣ ଆଣିଛନ୍ତି। ଅଞ୍ଚଳରେ ସଂକୀର୍ତ୍ତନ ଗୁରୁ ଭାବରେ ସେ ପୂଜ୍ୟ। ଯେତେ ସଂକୀର୍ତ୍ତନ ମଞ୍ଚପୀଠରେ ବସିଛି କବି ବାଣୀସୌରଭ ଅର୍ଜୁନ ବାରିକଙ୍କୁ ଦେଖିଛି। ଗାୟକମାନେ ତାଙ୍କରି ଗୁରୁବନ୍ଦନା କରନ୍ତି। ଅର୍ଜୁନ ବାରିକ ରାଜ୍ୟପାଳ ପୁରସ୍କାରପ୍ରାପ୍ତ କବି। ଗଞ୍ଜାମ ଭଞ୍ଜନଗର କବି ସମ୍ମିଳନୀରୁ ବାଣୀସୌରଭ ଉପାଧିପ୍ରାପ୍ତ।

କବିଙ୍କର ସୃଜନୀ ସୃଷ୍ଟି- ବୃହତ୍ ପର୍ଶୁରାମ ପୁରାଣ, ନୃସିଂହ ବିଳାସ, ଚଉଦ ଅକ୍ଷରୀ ତୁଳସୀ ରାମାୟଣ ଅନୁବାଦ, ଓଡ଼ଗାଁ ରଘୁନାଥ ପୁରାଣ, ସଂକୀର୍ତ୍ତନ ମଣିମାଳା, ସଂକୀର୍ତ୍ତନ (ଦୀକ୍ଷା) ଶିକ୍ଷା ୧ମ, ୨ୟ, ୩ୟ ଭାଗ, ସର୍ବସାର ଦାର୍ଢ୍ୟତା ଭକ୍ତି ମହାପୁରାଣ, ବିଜୟ ରାଘବ, କବିତା ରସମଞ୍ଜରୀ, କବିତା ରସାବଳୀ, ଚଉତିଶା ରତ୍ନାବଳୀ, ଅଭୟ କବଚ, ବ୍ରହ୍ମକବଚ, ମହିମା କବଚ, ଏ କାବ୍ୟ କବିତାରୁ ମାତ୍ର କେତୋଟି ମୁଦ୍ରିତ ଏବଂ ଅନ୍ୟ ରଚନାବଳୀର ପାଣ୍ଡୁଲିପି ତାଙ୍କ ପାଖରେ ଗଚ୍ଛିତ ରହିଛି।



## ନବମ ଅଧ୍ୟାୟ

# ରଣପୁର ସମତଳଭୂମି

ପ୍ରତିକ୍ରିୟାର ତତଲା ମାଟି ରଣପୁର: ମଣିନାଗ ପର୍ବତର ପୂର୍ବ ପାଦଦେଶରେ ରଣପୁର ଗଡ଼ଜାତର ରାଜପ୍ରାସାଦ। ନୟାଗଡ଼ ଜିଲ୍ଲାର ଚାରିଗଡ଼ ଯଥା- ରଣପୁର, ନୟାଗଡ଼, ଦଶପଲ୍ଲା, ଖଣ୍ଡପଡ଼ା ମଧ୍ୟରୁ ରଣପୁର ଗଡ଼ଜାତର ଶାସନ କାଳ ବହୁ ପ୍ରାଚୀନ। ପ୍ରାବନ୍ଧିକମାନେ ରଣପୁର ଗଡ଼ର ଶାସନକାଳ ଖ୍ରୀ.ପୂ. ୧୭୨୭ ବିଶ୍ୱବାସବଙ୍କ ଶାସନକାଳରୁ ନିର୍ଣ୍ଣୟ କରନ୍ତି। ଏ ଗଡ଼ଜାତ ଗଜପତି ଶାସନ ସରହଦକୁ ଲାଗିରହିଛି। ଏ ଗଡ଼ଜାତ ବଙ୍ଗର ମୁସଲମାନ ଓ ବ୍ରିଟିଶ ଶାସକଙ୍କ ଆକ୍ରମଣ ସାମ୍ନା କରିଛି। ଏ ଗଡ଼ଜାତର ପୂର୍ବରେ ଗଜପତି ସାମ୍ରାଜ୍ୟ, ପଶ୍ଚିମରେ ଖଣ୍ଡପଡ଼ା, ଇଟାମାଟି ବଡ଼ପଣ୍ଡୁଷର, ଲାଠିପଡ଼ା ଏବଂ ରତ୍ନମାଳା ପର୍ବତର ଶେଷସୀମା ପର୍ଯ୍ୟନ୍ତ ବ୍ୟାପ୍ତି ଥିଲା। ଦେଶର ସ୍ୱାଧିନତା ପ୍ରାପ୍ତି ପରେ ଅବିଭକ୍ତ ପୁରୀ ଜିଲ୍ଲାର ନୟାଗଡ଼ ସବଡ଼ିଭିଜନ ଅନ୍ତର୍ଭୁକ୍ତ ହେଲା। ଅଧୁନା ନୟାଗଡ଼ ଜିଲ୍ଲାର ଅନ୍ତର୍ଭୁକ୍ତ ରଣପୁର ନିର୍ବାଚନମଣ୍ଡଳୀ।

ଶୁକରମଲ୍ଲ ପର୍ବତମାଳା ଏବଂ ମଣିନାଗ ପର୍ବତମାଳା ପାଦଦେଶ ବିସ୍ତାରୀ ରଣପୁର ସମତଳଭୂମି। ଏହାର ଜନସାଧାରଣ ମୂଖ୍ୟତଃ କୃଷିଜୀବୀ। ଏହାର ଶସ୍ୟଭୂମିରେ ଧାନ, ରବି ଫସଲ ମୁଗ, ବିରି, ଚଣା, କୋଳଥ, ପାହାଡ଼ିଆ ଭୂମିରେ ରାଶି, ମାଣ୍ଡିଆ, ମକା ଚାଷ ହୁଏ।

ରଣପୁର ଯୁବରାଣୀ ପ୍ରଭାବତୀ : ରଣପୁର ରାଜ୍ୟର ୮୧ତମ ରାଜା ଅଚ୍ୟୁତ ସିଂହଙ୍କର ରାଜତ୍ୱକାଳ। ଅଚ୍ୟୁତ ସିଂହଙ୍କ ପୁତ୍ର ଯୁବରାଜ ଗଦାଧର ସିଂହ ବିହାରର ଧଳଭୂମି ରାଜକନ୍ୟା ପ୍ରଭାବତୀଙ୍କୁ ବିବାହ କରିଥିଲେ। ଯୁବରାଜ ଗଦାଧର ସିଂହ ପ୍ରଭାବତୀକୁ ସଙ୍ଗରେ ଧରି ଧଳଭୂମିରୁ ଫେରିବା ସମୟେ କପିଶା ନଦୀକୂଳରେ ଶୁଣିବାକୁ ପାଇଲେ ବଙ୍ଗ ମୁସଲମାନ ସୈନ୍ୟବାହିନୀ ଉତ୍କଳ ଆକ୍ରମଣ କରୁଛି। ଏ ଖବର ଉତ୍କଳ ଗଜପତିଙ୍କୁ ଦେବାକୁ ଯୁବରାଜ ଗଦାଧର ସିଂହ ନବବିବାହିତା ରାଜଜେମାଙ୍କୁ ସେଠାରେ ଛାଡ଼ି ଅଶ୍ୱପୃଷ୍ଠରେ ବାରବାଟୀ ଦୂର୍ଗକୁ ଚାଲିଗଲେ। ଏହି ସମୟରେ ପଠାଣ ସେନା ଆକ୍ରମଣ ଆରମ୍ଭ କରିଦେଇଥିଲେ। ଯୁବରାଣୀ ପ୍ରଭାବତୀଙ୍କ ଉପସ୍ଥିତ ବୁଦ୍ଧିରେ ନିଜେ ବୀରପୁରୁଷର ଛଦ୍ମବେଶରେ, ଉତ୍କଳର ଯୁବରାଜ ବଙ୍ଗର ପଠାଣ ସେନାଙ୍କ ସହ ଯୁଦ୍ଧ କରିବାକୁ ଆସିଛନ୍ତି ଘୋଷଣା କଲେ। ଏ ଘୋଷଣାରେ ସ୍ଥାନୀୟ ଆଦିବାସୀମାନେ ସଂଗଠିତ ହୋଇ ରଣଭୂମିକୁ ଡେଇଁଲେ ମାତୃଭୂମିର ରକ୍ଷା ପାଇଁ। ଏ ଯୁଦ୍ଧରେ ପଠାଣସେନ ଛତ୍ରଭଙ୍ଗ ଦେଲେ।

ଉତ୍କଳ ଗଜପତି ଦେଖିଲେ ଯେ ଶତ୍ରୁପକ୍ଷ ସୈନ୍ୟ ପରାଜିତ ଓ ଛତ୍ରଭଙ୍ଗ। ଗଜପତି ବୀର ପୁରୁଷଙ୍କର ପରିଚୟ ଚାହିଁଲେ। ଧଳଭୂମି ରାଜଜେମା ଛଦ୍ମବେଶ ଓହ୍ଲାଇ ନିଜର ପରିଚୟ ଦେବାରେ ଗଜପତି ଆଶ୍ଚର୍ଯ୍ୟ ହୋଇଗଲେ। ବୀରାରାଣୀ ପ୍ରଭାବତୀଙ୍କ ପାଇଁ କେବଳ ରଣପୁର ନୁହେଁ ଉତ୍କଳ ଗର୍ବ କରେ। ରଣପୁର ତାତିଲା ମାଟିରେ ତା'ର ବୀରଙ୍ଗନା କୃତିତ୍ୱ ଯୁଗଯୁଗକୁ ନାରୀଜାତିର ପ୍ରେରଣାର ଉତ୍ସ ହୋଇ ରହିବ। ଏହି କାହାଣୀକୁ କବି ପଣ୍ଡିତ ନୀଳକଣ୍ଠ ଦାଶ ତାଙ୍କର କୋଣାର୍କ କାବ୍ୟର 'ରାମଚଣ୍ଡୀରେ ରାତି' କବିତାରେ ବର୍ଣ୍ଣନା କରିଛନ୍ତି-

"ଧଳଭୂମି ଜେମା ଯେବେଟି ରଣପୁର କୁମାରେ<br>
କରି ମଧୁଶଯ୍ୟା-ବିଧାନେ ହେଲେ କପିଶାକୂଳେ<br>
ବିବାହ ଉତ୍ସବ ବଢ଼ିଲା ବାରବାଟୀ ମହଲେ<br>
ସାମନ୍ତ ଶେଖର ପଦବୀ ଦେଲେ ସେ ରଣପୁରେ।<br>
'ନାଗମଣି' ଶାଢ଼ି ପାଇଲେ ଧଳଭୂମି ଦୁହିତା<br>
'ମଣିନାଗ' ବହିଲେ ରଣପୁର ଦେବତା।"

<u>ପ୍ରଥମ ଶହୀଦ ଅର୍ଜୁନ ରାଉତ :</u> ୧୯୩୯ ମସିହା ଜାନୁୟାରୀ ୫ତାରିଖରେ ରଣପୁର ଗଡ଼ଜାତର ପୁରପଲ୍ଲୀରୁ ଉଠିଆସିଥିବା ଆନ୍ଦୋଳନକାରୀଙ୍କ ନାଯ୍ୟଦାବି ସମାବେଶରେ ରଣପୁର ଗଡ଼ ଲୋକାରଣ୍ୟ। ରାଜା ଭୟଭୀତ ହୋଇ ଆର.ଏଲ.ବେଦଲ ଗେଟଙ୍କ ସାହାଯ୍ୟ ଲୋଡ଼ିଲେ। ନର ସଂହାରକ ବେଜେଲଗେଟ ରଣପୁର ରାଜ୍ୟକୁ ଆସିବା ପଥ ଲୋଧାଛୁଆଠାରେ ଏ ଅଞ୍ଚଳର ବିଦ୍ରୋହୀମାନେ ରାସ୍ତାରେ ଗଛକାଟି ପକାଇ ଲୋଧାଚୁଆରୁ ରଣପୁର ରାସ୍ତା ଅବରୋଧ କରିଥିଲେ। ସାହେବ ବେଦଲଗେଟ ରାସ୍ତା ସଫା କରିବାକୁ ଲୋକଙ୍କୁ ଆଦେଶ କଲେ। ସାହେବ ତାଙ୍କ ସେନାଙ୍କ କଥାକୁ ମାନିଲେ ନାହିଁ ବିପ୍ଳବୀମାନେ। ଫଳରେ ସିପାହୀମାନେ ଲୋକଙ୍କ ଉପରେ ପ୍ରହାର ଚଳାଇଲେ। ସିପାହୀଙ୍କ ମାଡ଼ରେ ଭୋବନୀ ପୃଷ୍ଟି ଓ କାଶୀ ରାଉତ ମରଣାତ୍ମକ ଆଘାତ ପାଇଥିଲେ। ସାହେବ ରାସ୍ତା ସଫାକରି ରଣପୁର ଗଡ଼ ଅଭିମୂଖେ ଯାତ୍ରା କଲେ। ପରେ ପରେ ଉତ୍ୟକ୍ତ ବିଦ୍ରୋହୀମାନେ ଭୋବନୀ ପୃଷ୍ଟି ଓ କାଶୀ ରାଉତଙ୍କୁ ଶଗଡ଼ରେ ପକାଇ ରଣପୁର ଗଡ଼କୁ ଟାଣି ଟାଣି ନେଲେ। ସାହେବ ଆମ ଲୋକଙ୍କୁ ମାରିଦେଇଛି ବୋଲି କୋଳାହଳ ଉଠିଲା ରଣପୁର ଗଡ଼ରେ। ଗଡ଼ରେ ବିଦ୍ରୋହର ନିଆଁ ଜଳିଉଠିଲା ରାଜଦାଣ୍ଡରେ। ଘଟଣା ଜାଣିବା ପାଇଁ ସାହେବ ବେଜଲଗେଟ ଜନତାଙ୍କ ଭିତରକୁ ପଶିଗଲେ। ଗହଳି ଭିତରେ ସେ ତାଙ୍କର ଦେହରକ୍ଷୀଙ୍କଠାରୁ ଦୂରେଇ ଯାଇଥିଲେ। ଠେଲାପେଲାରେ ସାହେବ ଭଣ୍ଡାରୀ ଛକ ସଂକୀର୍ଣ୍ଣ ଜାଗାକୁ ପଳାଇଥିଲେ। ସାହେବ ଗୁଳି ଚଳାଇଲେ। ମୟୂରଝଲିଆର ଅର୍ଜୁନ ରାଉତ ସାହେବଙ୍କ ଗୁଳିରେ ଟଳିପଡ଼ିଲେ। ଉତ୍ତ୍ୟକ୍ତ ଜନତା

ସାହେବଙ୍କୁ ବାଉଁଶ ଠେଙ୍ଗାରେ ପିଟିପିଟି ମାରିଦେଲେ। ତା'ପରେ ଆନ୍ଦୋଳନ ଭୂମି ଜନଶୂନ୍ୟ ହୋଇଯାଇଥିଲା। ବେଜେଲଗେଟଙ୍କୁ ରଣପୁର ଜନତା ମାରିବା ରାଜ୍ୟର ପ୍ରଥମ ଘଟଣା। ନୟାଗଡ଼ ଜିଲ୍ଲାର ବୀରପୁରୁଷ ଅର୍ଜୁନ ରାଉତ ତାତିଲା ମାଟି ରଣପୁରର ପ୍ରଥମ ଶହୀଦ ଅମର ହୋଇ ରହିଗଲେ କାଳକାଳକୁ।

**ରଘୁନାଥ ମହାନ୍ତିଙ୍କର ରଚନାବଳୀ :** ବିପ୍ଳବୀ ରଘୁନାଥ ମହାନ୍ତିଙ୍କର ୭ଖଣ୍ଡ ପୁସ୍ତକ ୧୯୩୭ ମସିହା ମଧ୍ୟରେ କଟକ ଅରୁଣୋଦୟ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା। ସେଗୁଡ଼ିକ ହେଲା- ୧. ମାରଣାଗଡ଼, ୨. ଶବରବାଳୀ (କାବ୍ୟ), ୩. କ୍ରୋଧର ଲିପ୍‌ସା, ୪. ସଂଗୀତସୁଧା ସମୁଦ୍ର, ୫. ଶକୁନ୍ତଳା (କାବ୍ୟ), ୬. ସଂଗୀତ ମୋହନ ଭୋଷ, ୭. ଅହଲ୍ୟା ଓ ଇଲା।

**ରଣପୁର ରାଜ୍ୟରେ ପ୍ରଚଳିତ ଷ୍ଟାମ୍ପ କୋର୍ଟଫି ଏବଂ ରେଭିନ୍ୟୁ ଷ୍ଟାମ୍ପ :** ରଣପୁର ଗଡ଼ଜାତର ରାଜା କୃଷ୍ଣଚନ୍ଦ୍ର ସିଂ ଦେଓ ବୀରବର ବଜ୍ରଧର ନରେନ୍ଦ୍ର ମହାପାତ୍ର ରାଜତ୍ୱକାଳରେ ରାଜା ନିଜେ ତାଙ୍କ ମୁଣ୍ଡଛପା ଷ୍ଟାମ୍ପ ଛପାଇ ଷ୍ଟାମ୍ପ କୋର୍ଟଫି ଓ ରେଭିନ୍ୟୁ ଷ୍ଟାମ୍ପ ପ୍ରଚଳନ କରିଥିଲେ। ଓଡ଼ିଶାର ସମସ୍ତ ଗଡ଼ଜାତ ମଧ୍ୟରେ ରଣପୁର ଗଡ଼ଜାତର ଏ ହେଲା ସ୍ୱତନ୍ତ୍ରତା। ଅନ୍ୟ ଗଡ଼ଜାତମାନଙ୍କରେ ନିଜ ରାଜ୍ୟର ଷ୍ଟାମ୍ପ ପ୍ରଚଳିତ ନଥିଲା।

**ଏପ୍ରିଲ ୪ ଫାଶୀ ଦିବସ :** ଇଂରେଜ ସରକାରଙ୍କର ପଦଲେହନକାରୀ ରଣପୁର ରାଜା ପ୍ରଜାମାନଙ୍କୁ ନାନାବାଟରେ ଶୋଷଣ କରୁଥିଲେ। ନାନାକ୍ଷେତ୍ରରେ ରାଜାଙ୍କର ବେଠି କରିବା, ଭେଟି ସଲାମି ଦେବା ରାଜକର୍ମଚାରୀଙ୍କର ଶୋଷଣ ଦାଉରେ ପ୍ରଜାମାନେ ସନ୍ତୁଳିତ। ପ୍ରଜା ପ୍ରତିବାଦ ଉଠିଲେ ନିଷ୍ଠୁର ରାଜଦଣ୍ଡ ଠେଙ୍ଗେଣୀ ପ୍ରହାର, ଚାବୁକ ପ୍ରହାର, ସଶ୍ରମ କାରାଦଣ୍ଡ, ପାଣିଖାଦ୍ୟ ନଦେଇ ଖଟାଇବା ଏପରି ଅନେକ ନିର୍ଯାତନା। ରାଜଦଣ୍ଡ ଭୟରେ ପ୍ରଜାଏ ମୂକ। ଏ ହେଉଛି ପରାଧୀନ ଦେଶବାସୀଙ୍କର ଅସହାୟତା। ଏ ରାଜକଷଣ କେତେ ସହିବେ ପ୍ରଜାଗଣ। ଅଙ୍ଗାର ଭିତରେ ନିଆଁ ଛପି ରହିଲା ପରି ପ୍ରଜାଙ୍କ ଭିତରେ ମୁକ୍ତିର ଇଛା କୁହୁଳୁଥିଲା। ରାଜା ଓ ରାଜକର୍ମଚାରୀଙ୍କ ଶୋଷଣ ଅତ୍ୟାଚାରରେ ଅତିଷ୍ଠ ହୋଇ ରଣପୁର ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇ ରଘୁ ଦିବାକର ରଣପୁର ରାଜାଙ୍କ ବିରୁଦ୍ଧରେ ପ୍ରତିବାଦ ସ୍ୱର ଉଠାଇଥିଲେ। ଏ ଆନ୍ଦୋଳନରେ ଆନ୍ଦୋଳନକାରୀ ଇଂରେଜ ପ୍ରତିନିଧି ଆର.ଏଲ୍. ବେଜଲଗେଟ ସାହେବଙ୍କୁ ବାଉଁଶ ଠେଙ୍ଗାରେ ପିଟିପିଟି ମାରିଦେଇଥିଲେ। ବେଜଲଗେଟ ହତ୍ୟାରେ ରଘୁ ଦିବାକର ନିର୍ଦ୍ଦୋଷ ଥିଲେ ହେଁ ଫାଶୀ ପାଇଲେ। ମାଟି ପାଇଁ, ଜନଗଣଙ୍କ ପାଇଁ ଏ ଦୁଇ ବିଦ୍ରୋହୀ ପୁତ୍ରଙ୍କର ବଳୀଦାନ କମ୍ ଗୌରବ କଥା ନୁହେଁ। ସେମାନେ ନିର୍ଯାତିତ ଜାତି ପାଇଁ ଶହୀଦ।



**ରଘୁ-ଦିବାକର :** ୧୯୩୮ ମସିହା ରଣପୁର ରାଜତନ୍ତ୍ର ବିରୋଧରେ ପ୍ରଜା ଆନ୍ଦୋଳନ ଡାକରାରେ ଜାତୀୟ ବିପ୍ଳବୀ ରଘୁ-ଦିବାକର ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଦୁଇ ବିପ୍ଳବୀ ରଘୁ-ଦିବାକର ଦୁଇଟି-ନାମ ଗୋଟିଏ ସ୍ୱର-ଗୋଟିଏ ଲକ୍ଷ୍ୟ ଗୋଟିଏ ସଂଗ୍ରାମ ଯାହା ରଣପୁର ପ୍ରଜାଙ୍କୁ ଏକଜୁଟ କରାଇ ଗଣଆନ୍ଦୋଳନର ମହାତୋଫାନ ସୃଷ୍ଟିକରି ବ୍ରିଟିଶ ଶାସନ ସଂଯୁକ୍ତ ରାଜତନ୍ତ୍ରର ମୂଳଦୁଆ ଦୋହଲାଇ ଦେଇଥିଲା । ଏହାର ପରିଣତି ଭାରତ ସ୍ୱାଧୀନତାସଂଗ୍ରାମକୁ ଅଧିକ ଘନୀଭୂତ କରାଇଲା ।

**ରଘୁନାଥ ମହାନ୍ତି :** ରଘୁନାଥ ମହାନ୍ତି ରଣପୁର ଗଡ଼ଜାତର ବାଦଭୂଇଁ ଗ୍ରାମରେ ୧୯୧୦ ଜୁଲାଇ ୧୮ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଶ୍ରୀଯୁକ୍ତ ନଟବର ମହାନ୍ତି, ମାତା ଲାବଣ୍ୟବତୀ ଦେବୀ । ସେ ଅନ୍ଧାରୀମୂଳକ ରଣପୁର ଗଡ଼ଜାତରୁ ଯାଇ କଟକ ରେଭେନ୍‌ସା କଲେଜରେ ଆଇ.ଏ. ପଢୁଥିଲେ । ପିତା ନଟବର ମହାନ୍ତିଙ୍କର ନିର୍ଭୀକ ବଚନ, ଜାତୀୟ ପ୍ରୀତିଭାବ-ନିଷ୍ଠାର ଜୀବନଚର୍ଯ୍ୟା ରଘୁନାଥ ମହାନ୍ତିଙ୍କର ଚଲାପଥକୁ ବେଶ୍ ମଜଭୁତ୍ କରିଥିଲା । ସେହି ପଥରେ ସେ ଆଗକୁ ପାଦ ଦୃଢ଼କରି ପ୍ରତାପୀ ରଣପୁର ରାଜାଙ୍କୁ ସାମ୍ନା କରିଥିଲେ ।

**ଦିବାକର ପରିଡ଼ା :** ଦିବାକର ପରିଡ଼ା ରଣପୁର ଗଡ଼ଜାତର ଗଡ଼ବାଣିକିଲୋ ଗ୍ରାମରେ ୧୯୧୧ ନଭେମ୍ବର ୨୩ରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପିତା ଶ୍ରୀଯୁକ୍ତ ହରିହର ପରିଡ଼ା ମାତା ତାରାଦେବୀ । ପିତା ହରିହର ପରିଡ଼ା ସ୍ୱାଧୀନଚେତା ବ୍ୟକ୍ତିଭାବେ ଅନ୍ୟାୟ-ଅନୀତି-ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉଠାଉଥିଲେ । ପିତା ହରିହରଙ୍କର ଜାତୀୟ ପ୍ରୀତିରେ ଦିବାକର ବେଶ୍ ଅନୁପ୍ରାଣିତ । ୧୯୩୭ରେ ଦିବାକର କଟକ ସମାଜ ପ୍ରେସ୍‌ରେ କାମ କରୁଥିଲେ ।

ରଘୁ-ଦିବାକର ଜାତୀୟବାଦୀ କବି ଥିଲେ । ସେ ସମୟରେ ରଣପୁର ରାଜାଙ୍କର ଅତ୍ୟାଚାରରେ ଅତ୍ୟାଚାରିତ ପ୍ରଜାଗଣଙ୍କର ଆର୍ତ୍ତଚିତ୍କାର ରଘୁ-ଦିବାକରଙ୍କର ହୃଦୟ ତନ୍ତ୍ରୀ ଥରାଇ ଦେଇଥିଲା । ସେ ଦୁଇ ବନ୍ଧୁ ନିଜ ନିଜ କର୍ମକ୍ଷେତ୍ରରୁ ଓହରି ଆସି ରଣପୁର ରାଜାଙ୍କ ବିରୋଧରେ ଜନ ଜାଗରଣ ସୃଷ୍ଟି କଲେ ।

ରାଜ୍ୟର ଗଡ଼ଜାତ ରାଜ୍ୟଗୁଡ଼ିକ ବ୍ରିଟିଶ ସରକାରଙ୍କ ଦ୍ୱୈତ ଶାସନ ଅଧୀନସ୍ଥ ଥିଲା । ଦ୍ୱୈତ ଶାସନରେ ରାଜ୍ୟର ରାଜସ୍ୱ ବ୍ରିଟିଶ ସରକାରଙ୍କ ହାତକୁ ଯାଉଥିଲା

ତା' ସହିତ ଇଂରେଜମାନଙ୍କର ଏକ ସେନାଛାଉଣୀ ରାଜାମାନେ ନିଜ ଖର୍ଚ୍ଚରେ ରାଜ୍ୟରେ ରଖୁଥିଲେ। ରାଜା ନିଜ ରାଜ୍ୟର ଶାସନଭାର ଓ ବିଚାର ବିଭାଗ ଦାୟିତ୍ୱରେ ଥିଲେ। ଫଳତଃ ରାଜା ଇଂରେଜ ସରକାରଙ୍କୁ ରାଜ୍ୟର ରାଜସ୍ୱ ଦେଇସାରିବା ପରେ ନିଜର ବିଳାସ ଚଳଣି ପାଇଁ ପ୍ରଜାଙ୍କ ଉପରେ ଅଯଥା ନାନା କର ଧାର୍ଯ୍ୟ କରୁଥିଲେ। ଏ ସୁଯୋଗରେ ରାଜକର୍ମଚାରୀଙ୍କ ଦୌରାତ୍ମ୍ୟ ପ୍ରଜାଙ୍କ ଉପରେ ପଡ଼େ। ଗଡ଼ଜାତ ରାଜ୍ୟଗୁଡ଼ିକୁ ତଦାରଖ କରିବାପାଇଁ ଜଣେ ଇଂରେଜ ସରକାରଙ୍କର ପଲିଟିକାଲ ଏଜେଣ୍ଟ ରହୁଥିଲେ। ନୟାଗଡ଼, ରଣପୁର, ନୀଳଗିରି, ଢେଙ୍କାନାଳ, ଖଣ୍ଡପଡ଼ା ରାଜ୍ୟର ପଲିଟିକାଲ ଏଜେଣ୍ଟ ଥିଲେ ଆର.ଏଲ. ବେଜେଲଗେଟ।

ପ୍ରଜାମାନେ ରାଜାଙ୍କୁ ରାଜସ୍ୱ ଦେଇସାରିବା ପରେ ରାଜାଙ୍କର ବେଠିରେ ଖଟନ୍ତି। ନଅର ଜଗିବା ବେଠି, ରାଜ ବିନୋଦନ ପାଇଁ ଶିକାରରେ ଆଡ଼ିକରିବା ବେଠି, ରଥବେଠି, ସରକାରଙ୍କର କ୍ୟାମ୍ପ, ସଡ଼କ ବେଠିରେ ନିରୀହ ପ୍ରଜାର ଦିନ ସରେ। ଏହା ବାଦ୍ ଦୃଷ୍ଟିରେ ପଡ଼ିବା ଭଳି କୌଣସି କାର୍ଯ୍ୟ କରିବାକୁ ହେଲେ ରାଜାଙ୍କର ପରିତୋଷ ପାଇଁ ଉଚ୍ଚମାନର ସଲାମି ଭେଟି ଦେବାକୁ ହୁଏ। ରଣପୁର ରାଜାଙ୍କର ଦେୱାନ ଓ କର୍ମଚାରୀମାନେ ଅସାଧୁ ଉପାୟରେ ପ୍ରଜାଙ୍କୁ ଶୋଷଣ କରୁଥିଲେ। ରାଜ ଶୋଷଣ କଷଣରେ ସାଧାରଣ ପ୍ରଜା ଅତିଷ୍ଠ ହୋଇଉଠୁଥିଲେ। ରାଜ ଚାପାରେ ସେମାନେ ଚାପିହୋଇ ରହୁଥିଲେ।

ରାଜାଙ୍କର ରକ୍ତପଟାଭୋଗୀ ଶଙ୍ଖୀକଟା ରାତିରେ ଅବା ନିର୍ଜନ ପଥରେ ମଣିଷର ଶଙ୍ଖୀକାଟି ତାଜା ରକ୍ତ ନେଇ ରାଜାଙ୍କର ଇଷ୍ଟଦେବୀ ମଣିନାଗ ଠାକୁରାଣୀକୁ ମାଘମାସରେ ରକ୍ତଦାନ କରୁଥିଲେ। ଏ କୁତ୍ସିତ ପ୍ରଥାରେ ଲୋକେ ଡରିଯାଉଥିଲେ। ରାଜାଙ୍କ ବିପକ୍ଷରେ କଥା ଉଠାଇଲେ ଲୋକଟି ଧରାପଡ଼ିଲେ ମଲା। ବନ୍ଦୀଶାଳାରେ ଦୋଷୀକୁ କଡ଼ାଦଣ୍ଡ। ସମୟେ ସମୟେ ବନ୍ଦୀକୁ ଖାଦ୍ୟ ପାଣି ନଦେଇ ପିଠିରେ ନିସ୍ଥୁକ ଚାବୁକ ପ୍ରହାର, ଠେଙ୍ଗେଣୀ ପ୍ରହାର, ତତଲା ଛଡ଼ରେ ଚେଙ୍ଗ, ତତଲା ତମ୍ବା ପଇସାର ଚେଙ୍ଗ, ଖୋଲା ଦେହରେ ଜାଡ଼ ଶୀତରେ ବସାଇବା, ଡହ ଡହ ଖରା ତାତିଲା ପଥରରେ ବସାଇବା, ଘଣାରେ ତେଲ ପେଡ଼ିବା ଆଦି କଠିନ ଦଣ୍ଡରେ ମଣିଷ ପଥର ସହିନପାରି କେତେକ ବନ୍ଦୀଗୃହରେ ମରନ୍ତି।

ରଣପୁର ରାଜ୍ୟର ପ୍ରତ୍ୟେକ ଦ୍ରବ୍ୟ ରାଜଭୋଗ୍ୟ କୌଣସିଟା ପ୍ରଜାଙ୍କ ଅଧୀନରେ ନଥାଏ। ରାଜାଙ୍କର ଅନ୍ୟାୟ, ଅତ୍ୟାଚାର, ଶୋଷଣ, କଷଣର ପରସ୍ତ ପରସ୍ତ ଆବରଣ ତଳୁ ପ୍ରଜାଙ୍କର ପ୍ରତିବାଦର ନିଆଁଝୁଲ ବାହାରକୁ ଭେଦୀ ନପାରିଲେହେଁ ଲିଭିଯାଏନି। ପାଉଁଶ ତଳର ନିଆଁ ଜଳିବାର ତାତି ରଖିଥାଏ। ଦିନେ ଧୂଆଁ ବାହାରେ। ସେ ସଦୃଶ ରାଜ୍ୟର ପୁରପଲ୍ଲୀରେ ଗୋପନରେ ଗୁମୁରି ଗୁମୁରି ଲୋକ ପ୍ରତିବାଦ

ଶବ୍ଦ କାନରୁ କାନ ସଞ୍ଚାରିତ ହେଲା। ଯୁବକ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା ଏହି ପ୍ରତିବାଦର ମୁକ୍ତୁଳିତ ସ୍ୱର ହେଲେ। ରାଜବିରୋଧୀ ପ୍ରତିବାଦ ଗୀତ ଗାଇ ଲୋକଙ୍କୁ ଏକଜୁଟ କରାଇ ରଣପୁରରେ ପ୍ରଜା ଆନ୍ଦୋଳନ ବାଟ ଫିଟାଇଲେ। ସେମାନଙ୍କ ଜାତୀୟ ମୁକ୍ତି ଡାକରା-

ରଣପୁର ଭାଇ ଜାଗିଉଠ ଆଜି
ଶୋଷଣ କଷଣ ବନ୍ଦୀଶାଳେ
ଭାଙ୍ଗିଦିଅରେ ବଣ ଜଙ୍ଗଲର
ଗଡ଼ଜାତି ରାଜା ବାହୁବଳେ
ଗାନ୍ଧିଜୀ ସ୍ୱରାଜ ଡାକରା ଦେଇଚି
ଜାଗି ଉଠିଲାଣି ଖାସ୍ ମାଲ୍
ରଣପୁର ପ୍ରଜା ଉଲ୍ଲସି ଉଠରେ
ଦେଖାଇବା ଆମ କରବଳ
ଶାସନ ନାହିଁ ରାମର ଶାସନ
ପାପୀ ରାବଣର ଶାସନରେ
ଅତି ଦୁରାଚରୀ ରାଷ୍ଟ୍ର କର୍ମଚରୀ
ରାଜ୍ୟ ଚାଲେ ଚାବୁକ ପ୍ରହାରେ।

ବଣଜଙ୍ଗଲ ଘେରା ରଣପୁର ରାଜ୍ୟର ଗ୍ରାମେ ଗ୍ରାମେ ପ୍ରଜା ଆନ୍ଦୋଳନ ଧ୍ୱନୀ ପ୍ରତିଧ୍ୱନିତ ହେଲା। ପ୍ରଜାମାନେ ଏକଜୁଟ ହେବାରେ ଲାଗିଲେ।

ଅସହଯୋଗ ଆନ୍ଦୋଳନ ଅସଫଳ ପରେ ୧୯୨୯ ଡିସେମ୍ବରରେ ଜାତୀୟ କଂଗ୍ରେସ ଲାହୋର ଅଧିବେଶନରେ ନିଷ୍ପତ୍ତି ନେଲା ଆଇନ୍ ଅମାନ୍ୟ ଆନ୍ଦୋଳନ ଦ୍ୱାରା ଦେଶର ସ୍ୱାଧୀନତା ଆସିବ। ଏହାକୁ ଲକ୍ଷ୍ୟ ରଖି ୧୯୩୦ ଜାନୁୟାରୀ ୩୦ରେ ଭାରତର ବିଭିନ୍ନ ପ୍ରଦେଶରେ ସ୍ୱାଧୀନତା ଦିବସ ପାଳନ କରାଗଲା। ଗାନ୍ଧିଜୀ ୧୯୩୦ ଅପ୍ରିଲ ୬ତାରିଖରେ ଗୁଜୁରାଟ ଦାଣ୍ଡି ଉପକୂଳରେ ହଜାର ହଜାର ନରନାରୀଙ୍କ ଦ୍ୱାରା ଲୁଣ ମାରି ଆଇନ୍ ଅମାନ୍ୟ ଆନ୍ଦୋଳନକୁ ସଫଳ କରାଇଲେ। ତା’ପରେ ୧୯୩୧ ମସିହାରେ କଟକଠାରେ ପ୍ରଥମ ପ୍ରଜାମଣ୍ଡଳ ବୈଠକ ନିଷ୍ପତ୍ତି ନେଲା ପ୍ରଜାଙ୍କ ସର୍ତ୍ତ ରାଜାମାନେ ମାନିନିଅନ୍ତୁ। ପ୍ରଜାମଣ୍ଡଳ ସଂଗଠନର ଏ ନିଷ୍ପତ୍ତି ଅନୁସାରେ ଗଡ଼ଜାତର ସଂଗଠିତ ପ୍ରଜାମଣ୍ଡଳ ସେମାନଙ୍କର ଦାବି ରାଜାଙ୍କ ନିକଟରେ ଉପସ୍ଥାପନା କଲେ। ଖୋଲାଖୋଲି ଭାବରେ ପ୍ରଜାମଣ୍ଡଳ ଆନ୍ଦୋଳନ ରାଜତନ୍ତ୍ର ବିରୁଦ୍ଧରେ ତେଜିଉଠିଲା।

୧୯୩୮ ମସିହା ଦ୍ୱିତୀୟାର୍ଦ୍ଧ ବେଳକୁ ରଣପୁର ପ୍ରଜାମଣ୍ଡଳ ଗଠନ ସରିଥିଲା। ଏହାର କର୍ମକର୍ତ୍ତାମାନେ ବନମାଳୀ ରାମ ସଭାପତି, କୃପାସିନ୍ଧୁ ମିଶ୍ର ଉପସଭାପତି,

ରଘୁନାଥ ମହାନ୍ତି ସଂପାଦକ, ଦିବାକର ପରିଡ଼ା ସଂଗଠନ ସଭାପତି, ଅଗାଧୁ ବରାଳ କୋଷାଧକ୍ଷ। ରାଜାଙ୍କର ଅମାନୁଷ ଦମନକୁ ଭ୍ରୂକ୍ଷେପ ନକରି ଗ୍ରାମେ ଗ୍ରାମେ ପ୍ରଜାମାନଙ୍କୁ ଆନ୍ଦୋଳନ ଆଡ଼କୁ ଆଗୁଆର କଲେ। ରଣପୁର ଗଣବିପ୍ଳବ ତେଜସ୍କ୍ରିୟ ହେଲା। ଏହି ସମୟରେ ନୀଳଗିରି, ଢେଙ୍କାନାଳ, ତାଳଚେର, ନୟାଗଡ଼ ପ୍ରଜା ଆନ୍ଦୋଳନ ତୀବ୍ର ରୂପ ଧାରଣ କରିଥାଏ। ରଣପୁର ପ୍ରଜାମଣ୍ଡଳ ସଭାପତି ବନମାଳି ରାମ ରଣପୁର ରାଜଦରବାରରେ ପ୍ରଜାଙ୍କର ଦାବିପତ୍ର ଦାଖଲ କଲେ। ଦାବିପତ୍ରରେ ଶୋଷିତ ପ୍ରଜାଙ୍କର ଦାବି ଥିଲା- ପ୍ରଜାଙ୍କର ସ୍ୱାଧୀନତା, ବେଠି ଓ ଭେଟିରୁ ମୁକ୍ତ ହେବା, ଖବରକାଗଜ ପଢ଼ିବାରେ ସ୍ୱାଧୀନତା, ଗଛମାଛ ଶସ୍ୟ ଉପରେ ଅଧିକାର। ରୟତି ସତ୍ତ୍ୱ ଦେବତ୍ତର ଜମି ଉପରେ ମାର୍ଫତଦାର, ଜଙ୍ଗଲଜାତ ଦ୍ରବ୍ୟ ଉପରେ ଅଧିକାର। ରାଜା କ୍ରୋଧ ହୋଇ ବନମାଳି ରାମକୁ ଗିରଫ କଲେ।

ବନମାଳି ରାମଙ୍କ ଗିରଫରେ ରଣପୁରବାସୀ ଉତ୍‌କ୍ଷିପ୍ତ। ରଘୁଦିବାକର ନେତୃତ୍ୱରେ ଗାଁମାନଙ୍କରୁ ଶହ ଶହ ଲୋକ ରଣପୁର ରାଜନଅର ସମ୍ମୁଖରେ ବନମାଳି ରାମଙ୍କ ଖଲାସ ଦାବିରେ ବିକ୍ଷୋଭ କଲେ। ବିଦ୍ରୋହୀମାନଙ୍କ ସମ୍ମିଳିତ ସ୍ୱରରେ ପ୍ରକମ୍ପିତ ହେଲା ରଣପୁରଗଡ଼।

ଛାଡ଼ିଦିଅ ଆମ ନ୍ୟାଯ୍ୟ ଅଧିକାର<br>
ମାଲିକ ଆମେରେ ଏ ରାଜ୍ୟ ଆମର<br>
ମାର ତୁ ଯେତେ ଗୁଳି<br>
ହୁଙ୍କାପିଟା ଶାସନ ଆମେ<br>
ଗୋଡ଼ରେ ଦେବୁ ଦଳି<br>
ରଖ ତୋ ଲାଠି କାଠର ଲାଠି<br>
ହାଡ଼ର ଆମ ଛାତି<br>
ମରଣ ଆମ ମୈତ୍ର ଜାଣ<br>
କଷଣ ଆମ ସାଥୀ।

ରାଜା ଭୟରେ ବନମାଳିରାମଙ୍କୁ ଖଲାସ କଲେ। ରାଜଦରବାର ତରଫରୁ ଚତୁରପଣରେ ଆସିଷ୍ଟାଣ୍ଟ ଦେୱାନ ଚଣ୍ଡେଶ୍ୱର ମିଶ୍ର ତିନି ନମ୍ବର ବୁଲେଟିନ୍‌ରେ ଏକ ଘୋଷଣାନାମା ପ୍ରକାଶ କଲେ- ବନମାଳିରାମଙ୍କ ଦରଖାସ୍ତରେ ଦିଆଯାଇଥିବା ଦାବିପତ୍ର ପଛରେ ଜନ ସମର୍ଥନ ଅଛି କି ନାହିଁ ଜାଣିବା ପାଇଁ ୨୦.୧୧.୧୯୩୮ରେ ଦରବାର ବସିବ। ବନମାଳି ରାମଙ୍କୁ ନୋଟିସ ହେଲା ଦରବାରରେ ଉପସ୍ଥିତ ରହି ଏ ଦାବିପତ୍ର ଦାଖଲ କରିବା ପାଇଁ। ରାଜ ଘୋଷଣାକୁ ସମର୍ଥନ କରି ରଘୁ-ଦିବାକରଙ୍କ ନେତୃତ୍ୱରେ ମୁକ୍ତିର ଗୀତ ଗାଇ ବିଦ୍ରୋହୀ ଜନତା ରଣପୁର ଗଡ଼କୁ ମାଡ଼ି ଆସୁଥିବା ଜାଣି ଦେୱାନ୍ ଜଗନ୍ନାଥ ମହାନ୍ତି ରଣପୁର ଛାଡ଼ି ଲୁଚି ପଳାଇଗଲେ।

ଏହି ସମୟରେ ସାରଙ୍ଗଧର ଦାଶ ଯାହାଙ୍କୁ ଓଡ଼ିଶାର ଗାନ୍ଧି କହନ୍ତି ତାଙ୍କ ନେତୃତ୍ୱରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ଭୟଙ୍କର ରୂପ ଧାରଣ କରିଥାଏ। ଢେଙ୍କାନାଳ ରାଜା ଭୀତତ୍ରସ୍ତ ହୋଇ ଆନ୍ଦୋଳନ ଦମନ କରିବାପାଇଁ ବ୍ରିଟିଶ ପ୍ରତିନିଧି ବେଜେଲଗେଟ ସାହେବଙ୍କୁ ଆହ୍ୱାନ କରିଥାନ୍ତି। ବେଜଲଗେଟର ନରସଂହାର ଚାଲିଲା ଢେଙ୍କାନାଳ ରାଜ୍ୟରେ। ନରହନ୍ତାଙ୍କ ଫିରିଙ୍ଗ ସିପାହୀ ନରନାରୀ ଉପେକ୍ଷା ନକରି ଅତ୍ୟାଚାର କରିଚାଲିଲେ। ବ୍ରାହ୍ମଣୀ ନଦୀ ପାରିକରି ନଦେବାରୁ ଆରକୂଳ ଘାଟ ନାଉରିଆ ୧୨ବର୍ଷର ବାଳକ ବାଜି ରାଉତକୁ ଫଉଜ ଗୁଳିକରି ମାରିଦେଲେ। ବେଜଲଗେଟ ଦମନଲୀଳାରେ ଉତ୍ୟକ୍ତ ହୋଇଉଠିଲେ ରଣପୁର ଜନତା। ରଣପୁର ପ୍ରଜା ଆନ୍ଦୋଳନ ବେଗଗାମୀ ହେଲା। କ୍ଷୁବ୍ଧ ହୋଇ ରାଜା ରଣପୁର ପ୍ରଜାମଣ୍ଡଳର ଉପସଭାପତି କୃପାସିନ୍ଧୁ ମିଶ୍ରଙ୍କୁ ଗିରଫ କଲେ।

କୃପାସିନ୍ଧୁ ମିଶ୍ରଙ୍କ ଗିରଫରେ ରଣପୁର ପ୍ରଜା ଆନ୍ଦୋଳନ ପ୍ରଳୟଙ୍କରୀ ଝଡ଼ର ସଙ୍କେତ ଦେଲା। ବିଦ୍ରୋହର ଚରମ ଶିଖରୀରେ ପହଞ୍ଚିଲା ପରେ ବିଦ୍ରୋହୀ କ'ଣ ପଛକୁ ଫେରେ... ? ରଘୁ-ଦିବାକର ରଣପୁର ଜନଗଣଙ୍କୁ ଦାସତ୍ୱରୁ ମୁକ୍ତ କରିବାର ଦୁଇଟି ଅଗ୍ନିଶିଖା। ଏହି ଦୁଇ ଅଗ୍ନିଶିଖା ଅନ୍ଧାରମୂଳକ ରଣପୁର ଜନଜାଗରଣର ଆଲୋକବର୍ତ୍ତିକା। ଜାତିର ମୁକ୍ତିଗୀତ ଗାଇ ମୁକ୍ତିର ମଶାଲ ଧରି ରଘୁ-ଦିବାକର ରଣପୁର ରାଜନଅର ଅଭିମୂଖେ ଆଗୁଆର ହେଲେ। ଶହ ଶହ ରଣପୁରବାସୀ ଜୀବନ ବାଜି ଲଗାଇ ଗାଁ ଗହଳରୁ ଛୁଟିଲେ ରାଜନଅର ଆଡ଼କୁ। ବିଦ୍ରୋହୀ ଜନତା କହିଚାଲିଥିଲେ- କୃପାସିନ୍ଧୁ ମିଶ୍ରଙ୍କୁ ଖଲାସ କର- ରାଜଜୁଲମ ବନ୍ଦ କର। ବିପ୍ଳବୀ ରଘୁ-ଦିବାକରଙ୍କ ଉଦ୍‌ବୋଧନରେ ପ୍ରଜାମେଳି ଉତ୍ତେଜିତ ଶକ୍ତିଶାଳୀ ହୋଇଉଠୁଥିଲେ। ତାଙ୍କର ତତଲା ଭାଷଣ ପ୍ରଜାଶକ୍ତି ଆଗରେ ରାଜଶକ୍ତି ଗୌଣ ପ୍ରଜାର ନ୍ୟାଯ୍ୟ ଦାବି ହାସଲ କରିବାର ଶକ୍ତି- ପ୍ରଜାଶକ୍ତିର ବିଜୟ...ବିଜୟ...। ଚାହୁଁ ଚାହୁଁ ପୁରପଲ୍ଲୀର ଜନଗଣ ରଣପୁର ରାଜନଅର ଆଗରେ ସମବେତ।

୧୯୩୯ ମସିହା ଜାନୁଆରୀ ୫ତାରିଖ ବିଦ୍ରୋହୀ ପ୍ରଜାମାନେ ରଣପୁର ଗଡ଼ରେ ଭର୍ତ୍ତି। ଜନ କୋଳାହଳରେ ଦୁଲୁକୁଛି ଗଡ଼। ଜନତାଙ୍କ ଦାବିପତ୍ର ନେଇ ରଘୁ-ଦିବାକର ରାଜଦ୍ୱାର ଆଡ଼କୁ ଆଗେଇଛନ୍ତି। ଏ ବିଶାଳ ଜନସମାବେଶ ଦେଖି ଭୟରେ ଦେଓ୍ୱାନ ଚଣ୍ଡେଶ୍ୱର ମିଶ୍ର ଫିରିଙ୍ଗ ସାହେବ ଆର.ଏଲ୍. ବେଜଲଗେଟଙ୍କୁ ରଣପୁର ପ୍ରଜା ଆନ୍ଦୋଳନ ଦମନ କରିବାକୁ ଆହ୍ୱାନ କଲେ।

ବେଜଲଗେଟ ଢେଙ୍କାନାଳରେ ନରସଂହାର କରି ବିଜୟ ଉଲ୍ଲାସରେ ନୟାଗଡ଼ ରାଜପ୍ରାସାଦରେ ଅବସ୍ଥାନ କରୁଥାନ୍ତି। ରଣପୁର ପ୍ରଜା ଆନ୍ଦୋଳନ ବାର୍ତ୍ତା ପାଇ ଆନ୍ଦୋଳନ ଦମନ ପାଇଁ ସାହେବ କ୍ରୋଧିତ ହୋଇ ବାହାରିପଡ଼ିଲେ। ଇଟାମାଟି, ରାଜସୁନାଖଳା, ରଣପୁର ରାସ୍ତାରେ ଗଲାବେଳେ ଲୋଧାଚୁଆଠାରେ ବିପ୍ଳବୀମାନେ

ଗଛ କାଟି ରାସ୍ତା ଅବରୋଧ କରିଥିଲେ। ଅବରୋଧକାରୀ ଭୋବନୀ ପୃଷ୍ଟି, ନାଥ ଭୋଳ, କାଶି ରାଉତ ସାହେବଙ୍କ ଆଦେଶ ଅବମାନନା କରିବାରୁ ସୈନିକମାନେ ସେମାନଙ୍କୁ ପିଟିପିଟି ରକ୍ତାକ୍ତ କରିଦେଲେ। ସାହେବ ରାସ୍ତା ସଫାକରି ରଣପୁର ଗଡ଼ରେ ପହଞ୍ଚିଲେ। ରଣପୁର ଗଡ଼ରେ ଲୋକାରଣ୍ୟ ଦେଖି ସାହେବ ସ୍ତମ୍ଭୀଭୂତ।

ଭୟଙ୍କର ପ୍ରଜାମେଳି ଦେଖି ବେଜଲଗେଟ ବିଚାରଶୂନ୍ୟ ହୋଇ ଆନ୍ଦୋଳନ ଦମନ କରିବାକୁ ସିପାହୀଙ୍କୁ ଆଦେଶ କଲେ। ଠିକ୍ ଏହି ସମୟକୁ ବିଦ୍ରୋହୀମାନେ ଭୋବନୀ ପୃଷ୍ଟି, ନାଥ ଭୋଳ, କାଶୀ ରାଉତକୁ ଶଗଡ଼ରେ ପକାଇ ଟାଣି ଟାଣି ରଣପୁର ଗଡ଼ରେ ପହଞ୍ଚିଗଲେ। ମଣିଷ ଦ୍ୱାରା ଟଣାହୋଇ ଆସୁଥିବା ଶଗଡ଼କୁ ଉତ୍ୟକ୍ତ ଜନତା କହିଉଠିଲେ ସାହେବ ଆମ ଲୋକଙ୍କୁ ମାରିଦେଲେରେ। ଏ ସ୍ୱରରେ ହିଂସ୍ର ହୋଇଉଠିଲେ ଆନ୍ଦୋଳନକାରୀ। ଉତ୍ୟକ୍ତ ଜନତାଙ୍କ ଧକ୍କାରେ ସାହେବ ବେଜଲଗେଟ ସୈନ୍ୟମାନଙ୍କଠାରୁ ଦୂରେଇ ଯାଇଥିଲେ। ଜୀବନ ବିକଳରେ ସାହେବ ଗୁଳି କଲେ। ଗୁଳିରେ ଅର୍ଜୁନ ରାଉତ ମଲେ। ଆନ୍ଦୋଳନ ଦବିଲା ନାହିଁ ଅଧିକ ତେଜସ୍ୱିୟ ହେଲା, ଯାହା ଆୟତ୍ତ ବାହାରେ। ଭୟବ୍ୟାକୁଳ ବେଜେଲଗେଟ ଊତଃସ୍ତତ ପଳାୟନ କାଳେ ବାଉଁଶ ଠେଙ୍ଗା ପ୍ରହାରରେ ତଳେ ପଡ଼ିଗଲେ। ଉତ୍ୟକ୍ତ ଜନତା ଠେଙ୍ଗାରେ ବାଡ଼େଇ ବାଡ଼େଇ ସାହେବଙ୍କୁ ମାରିଦେଲେ। ରକ୍ତମୁଖା ପ୍ରଜାଙ୍କ ଆକ୍ରମଣରେ ରାଜଫାଟକ ପଡ଼ିଗଲା।

ବେଜଲଗେଟ ହତ୍ୟା ପରେ ଫିରିଙ୍ଗ ସୈନ୍ୟ ଛାଉଣୀ ବେଜଲଗେଟ ହତ୍ୟା ଅପରାଧୀଙ୍କୁ ଧରିବାପାଇଁ ରଣପୁର ଘାଣ୍ଟଚକଟା ଆରମ୍ଭ କରିଦେଲେ। ଘର ଛାଡ଼ି ଯିଏ ଯୁଆଡ଼େ ପଳାଇଗଲେ। ରଣପୁର ଜନଶୂନ୍ୟ ହୋଇଗଲା। ଫିରିଙ୍ଗ ଫୌଜ ଦୁଇ ବିପ୍ଳବୀ ବୀର ରଘୁ-ଦିବାକରଙ୍କୁ ଗିରଫ କଲେ।

ରଘୁ-ଦିବାକରଙ୍କୁ ଦଣ୍ଡାଦେଶ ପାଇଁ ଗୋରା ସାହେବଙ୍କର ଅଦାଲତ ବସିଲା। ଭାରତୀୟଙ୍କୁ କି ବିଚାର ଦେବେ ଫିରିଙ୍ଗ ବିଚାରକ ? ବେଜେଲଗେଟ ହତ୍ୟାରେ ରଘୁ-ଦିବାକର ନିର୍ଦ୍ଦୋଷ ଥିଲେ ହେଁ ବିଚାରରେ ତାଙ୍କୁ ଫାଶୀଦଣ୍ଡ ରାୟ ମିଳିଲା। ଦୁଇ ବୀର ବିପ୍ଳବୀ ହସିହସି ବିଚାର ରାୟ ମାନିନେଲେ। ରଘୁ-ଦିବାକରଙ୍କୁ ବିହାରର ଭାଗଲପୁର ଜେଲ୍‌କୁ ଆଦେଶ ହୋଇଗଲା।

ରଘୁ ଦିବାକରଙ୍କୁ ସିପାହୀମାନେ ରଣପୁରର କାଳୁପଡ଼ା ଷ୍ଟେସନ ଦେଇ ଭାଗଲପୁର ଜେଲ୍‌କୁ ନେଇଯାଉଥିଲେ। ରଣପୁରଠାରୁ କାଳୁପଡ଼ା ଯାଏ ରାସ୍ତାକଡ଼ରେ ଆବାଳବୃଦ୍ଧବନିତା ଅଶ୍ରୁପୂର୍ଣ୍ଣ ନୟନରେ ଦୁଇ ବୀର ବିପ୍ଳବୀଙ୍କର ଶେଷଦର୍ଶନ କରୁଥିଲେ। ସ୍ତ୍ରୀମାନେ ଭୂଇଁ ଦରାଣ୍ଡି କାନ୍ଦି ଗଡୁଥିଲେ।

୧୯୪୧ ଅପ୍ରିଲ୍ ୪ତାରିଖ ପ୍ରଭାତ ରଘୁ-ଦିବାକରଙ୍କ ଫାଶୀ ଦିବସ। ଦୁଇ ବିଦଗ୍ଧ ବିପ୍ଳବୀ ଭାଗଲପୁର ଜେଲ୍‌ର ଫାଶୀଖୁଣ୍ଟ ଦଉଡ଼ିରେ ହସି ହସି ମୁଣ୍ଡ

ଗଳାଇଦେଲେ । ସେଦିନ ନିସ୍ତବ୍ଧ ଭାରତବର୍ଷ । ରଘୁଦିବାକର ଦେଶ ପାଇଁ ଜନତାଙ୍କ ପାଇଁ ଶହୀଦ ହେଲେ । ଜୀବ ମୃତ୍ୟୁର କବଳିତ । ତା'ର ମରଣ ସତ୍ୟ । ହେଲେ ରଘୁନାଥ ମହାନ୍ତି ଦିବାକର ପରିଡ଼ାଙ୍କର ଦେଶ ପାଇଁ ବଳିଦାନ ଦେଶମୁଖରେ ଯୁଗେ ଯୁଗେ ଅମର ।

ରଣପୁର ଜନତା ବେଜେଲଗେଟକୁ ବାଉଁଶ ଠେଙ୍ଗାରେ ପିଟି ମାରିଦେଲେ । ନିଷ୍ପେଷିତ ନିର୍ଯାତନା ରଣପୁର ରାଜ୍ୟର ଜନତାଙ୍କ ମୁକ୍ତି ପାଇଁ ରାଜତନ୍ତ୍ର ବିରୋଧରେ ବିଦ୍ରୋହ କରି ରଘୁ-ଦିବାକର ଫାଶୀ ପାଇଲେ । ଏହି ଦୁଇ ଜାତୀୟ ବିପ୍ଳବୀ ଏକତ୍ର ଗୋଟିଏ ଦିନରେ ଗୋଟିଏ ସମୟରେ ଶହୀଦ ହେବା ଇତିହାସରେ ଏକ ଅଭିନବ ଘଟଣା । ଏ ଇତିହାସ କେବଳ ଭାରତବର୍ଷ ନୁହେଁ ବିଶ୍ୱ ଇତିହାସର ଏକ ଚମକପ୍ରଦ ଅଧ୍ୟାୟ ।

<u>ରଣପୁର ରାଜ୍ୟର ଶେଷ ରାଜମାତା ବସନ୍ତ ମଞ୍ଜରୀ ଦେବୀ :</u> ବସନ୍ତ ମଞ୍ଜରୀ ଦେବୀ ନୀଳଗିରି ଗଡ଼ଜାତର ରାଜଜେମା । ତାଙ୍କର କଲିକତାରେ ଅଧ୍ୟୟନ କାଳରେ ରଣପୁର ଯୁବରାଜ ବିରଞ୍ଚିନାରାୟଣଙ୍କର ସହପାଠୀ ଥିଲେ । ପରବର୍ତ୍ତୀ ସମୟରେ ବିରଞ୍ଚିନାରାୟଣଙ୍କୁ ବିବାହ କରି ରଣପୁର ରାଜ୍ୟର ରାଜବଧୂ ହେଲେ ବସନ୍ତମଞ୍ଜରୀ ଦେବୀ । ବସନ୍ତମଞ୍ଜରୀଙ୍କ ୩୮ ବର୍ଷ ବୟସରେ ଯୁବରାଜ ବିରଞ୍ଚିନାରାୟଣ ଯକ୍ଷ୍ମା ରୋଗରେ ପୀଡ଼ିତ ହୋଇ ମୃତ୍ୟୁବରଣ କଲେ । ୧୯୪୫ ମସିହା ଜୁନ୍ ୨୧ରେ ରଣପୁର ରାଜା କୃଷ୍ଣଚନ୍ଦ୍ର ସିଂ ବୀରବର ବଜ୍ରଧର ନରେନ୍ଦ୍ର ମହାପାତ୍ରଙ୍କର ବିୟୋଗ ହେଲା । ଯୁବରାଜ ବ୍ରଜେନ୍ଦ୍ର ଚନ୍ଦ୍ର ନାବାଳକ । ଏହା ପୂର୍ବରୁ ୧୯୪୧ ମସିହା ଅପ୍ରିଲ ୪ତାରିଖରେ ରଣଭୂମି ରଣପୁରର ଦୁଇ ବିପ୍ଳବୀ ରଘୁ-ଦିବାକର ଫାଶୀ ପାଇଥାନ୍ତି । ଭାରତବର୍ଷ ସ୍ୱାଧୀନାଭିମୁଖୀ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ବସନ୍ତମଞ୍ଜରୀ ଦେବୀ ରଣପୁର ରାଜ୍ୟର ପ୍ରଶାସିକା ଦାୟିତ୍ୱ ବହନ କଲେ ।



ଭାରତ ସ୍ୱାଧୀନ ହେଲା । ଓଡ଼ିଶାର ଗଡ଼ଜାତଗୁଡ଼ିକୁ ମିଶ୍ରଣ କରାଯାଇ ଓଡ଼ିଶାକୁ ଜନରାଜ୍ୟରେ ପ୍ରତିଷ୍ଠା କରାଗଲା । ଜନରାଜ୍ୟ ଓଡ଼ିଶାର ପ୍ରଥମ ସାଧାରଣ ନିର୍ବାଚନରେ (୧୯୫୨) ବସନ୍ତମଞ୍ଜରୀ କଂଗ୍ରେସ ତରଫରୁ ବିଜୟଲାଭ କରି ଓଡ଼ିଶାର ପ୍ରଥମ ମହିଳା ମନ୍ତ୍ରୀ ଭାବେ ଡ. ହରେକୃଷ୍ଣ ମହତାବଙ୍କ ମନ୍ତ୍ରୀମଣ୍ଡଳରେ ଯୋଗଦାନ କଲେ ସ୍ୱାସ୍ଥ୍ୟ ବିଭାଗର ଉପମନ୍ତ୍ରୀ ପଦରେ । ୧୯୫୭ ଦ୍ୱିତୀୟ

ସାଧାରଣ ନିର୍ବାଚନରେ ବସନ୍ତମଞ୍ଜରୀ ବିଜୟୀ ହୋଇ ମହତାବଜୀଙ୍କ ମନ୍ତ୍ରୀମଣ୍ଡଳରେ ସ୍ୱାସ୍ଥ୍ୟ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ହେଲେ ।

ମନ୍ତ୍ରୀ ବସନ୍ତମଞ୍ଜରୀ ଦେବୀ ସ୍ୱାମୀ ଯୁବରାଜ ବିରଞ୍ଚିନାରାୟଣଙ୍କ ଯକ୍ଷ୍ମା ରୋଗରେ ମୃତ୍ୟୁ ତାଙ୍କୁ ବିଚଳିତ କରିଥିଲା । ଯକ୍ଷ୍ମା ଭଳି ଦୁଃସାଧ ରୋଗର ପ୍ରତିକାର ପାଇଁ ରଣପୁର ଗଡ଼ଜାତରେ ଯକ୍ଷ୍ମା ଚିକିତ୍ସାଳୟ ପ୍ରତିଷ୍ଠା ପାଇଁ ମନ୍ତ୍ରୀମଣ୍ଡଳରେ ପ୍ରସ୍ତାବ ଦେଲେ । ଯକ୍ଷ୍ମାରୋଗ ଭୟାବହତା ରୂପ ଦେଖି ରଣପୁର ଜନସାଧାରଣ ଯକ୍ଷ୍ମା ଚିକିତ୍ସାଳୟ ନହେବା ପାଇଁ ପ୍ରତିବାଦ ଉଠାଇଲେ । ଚାନ୍ଦପୁର, ଜେମାଦେଇପୁର, କନ୍ଧ ନୟାଗଡ଼ମାନଙ୍କରେ ପ୍ରବଳ ବିରୋଧ ଦେଖାଦେଲା । ମନ୍ତ୍ରୀ ବସନ୍ତମଞ୍ଜରୀଦେବୀ ଅଞ୍ଚଳର ଜନସାଧାରଣଙ୍କୁ ବୁଝାସୁଝା କରାଇ ଜନସ୍ୱାର୍ଥ ନିହିତ ଏ ମହତ କାର୍ଯ୍ୟକୁ ଫଳବତୀ କରାଇଲେ । ନିଜର ଗ୍ରୀଷ୍ମନିବାସ କନ୍ଧନୟାଗଡ଼ ଅଞ୍ଚଳରେ ଚାନ୍ଦପୁରଠାରେ "ରାଣୀ ବସନ୍ତମଞ୍ଜରୀ ସ୍ୱାସ୍ଥ୍ୟ ନିବାସ" ପ୍ରତିଷ୍ଠା କଲେ । ଯକ୍ଷ୍ମା ରୋଗୀର ଏହା ସ୍ୱତନ୍ତ୍ର ଚିକିତ୍ସା ଚିକିତ୍ସାଳୟ । ଓଡ଼ିଶା ରାଜ୍ୟର ଏହା ଏକମାତ୍ର ଯକ୍ଷ୍ମା ଚିକିତ୍ସାଳୟ । ଏ ଚିକିତ୍ସାଳୟ ଜନବସତିଠାରୁ ବହୁ ଦୂରରେ ଅବସ୍ଥିତ । ୨୦୨୦-୨୧ ମସିହାର ମହାମାରୀ କୋଭିଡ୍-୧୯ର ପ୍ରତିରୋଧ ପାଇଁ ଅଧୁନା 'ରାଣୀ ବସନ୍ତମଞ୍ଜରୀ ସ୍ୱାସ୍ଥ୍ୟନିବାସ, ଚାନ୍ଦପୁର' ମୁଖ୍ୟ ଭୂମିକା ଗ୍ରହଣ କରିଛି । ଏହା ବ୍ୟତୀତ ରାଣୀ ବସନ୍ତମଞ୍ଜରୀଙ୍କ ସହାୟତାରେ ଜି.ସି. ହାଇସ୍କୁଲ ରଣପୁର, ବସନ୍ତ ମଞ୍ଜରୀ ବାଳିକା ବିଦ୍ୟାଳୟ, ରଣପୁର ଗଡ଼ରେ ଡାକ୍ତରଖାନା, ଜଗନ୍ନାଥ ମାର୍କେଟ, କୁଷ୍ଠାଶ୍ରମ, ମଙ୍ଗରାଜପୁର, ରାଜସୁନାଖଳା ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ଚିଲ୍ଡ୍ରେନ୍ ପାର୍କ ଅନେକ ସ୍ଥାନରେ ମାତୃମଙ୍ଗଳ ସମିତି ଗଢ଼ିଉଠିଛି । ରଣପୁର ଗଡ଼ଜାତର ସ୍ୱଚ୍ଛ ବିକାଶଧାରା ଦେଶ ସ୍ୱାଧୀନତାର ପ୍ରଥମ ଭାଗରେ ରାଣୀ ବସନ୍ତ ମଞ୍ଜରୀଙ୍କର ଦୃଢ଼ ଇଚ୍ଛାଶକ୍ତିର ସଫଳତା ।

**ଚାଷୀ ମୂଲିଆ ସାଥୀ ରମେଶ ଚନ୍ଦ୍ର ପଣ୍ଡା :** ଚାଷୀ ମୂଲିଆ ସାଥୀ ରଣପୁର ନିର୍ବାଚନମଣ୍ଡଳୀର ଲୋକପ୍ରତିନିଧି ରମେଶ ଚନ୍ଦ୍ର ପଣ୍ଡା ମୟୂରଝଲିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ କମ୍ୟୁନିଷ୍ଟ ଦଳରୁ ୧୯୭୧, ୧୯୭୪, ୧୯୭୭ ତିନିଥର ବିଧାୟକ ହୋଇ ଓଡ଼ିଶା ବିଧାନସଭାରେ ଯୋଗଦାନ କରିଥିଲେ । ତାଙ୍କ ସମୟରେ ରଣପୁର ଏକ ଦୁର୍ଜୟ ଗଡ଼ ଥିଲା କମ୍ୟୁନିଷ୍ଟ ଦଳର । ୧୯୮୦ ମସିହା ସାଧାରଣ ନିର୍ବାଚନରେ ଏହି କମ୍ୟୁନିଷ୍ଟ ଦଳର ବିପର୍ଯ୍ୟୟ ଘଟିଥିଲା । ରମେଶ ଚନ୍ଦ୍ର ପଣ୍ଡା ରଣପୁରର ଲୋକପ୍ରିୟ ଲୋକପ୍ରତିନିଧି ଥିଲେ । ରଣପୁର ଲୋକପ୍ରତିନିଧି ରମେଶ ଚନ୍ଦ୍ର ପଣ୍ଡା ଭେଟବର ପ୍ରୋଜେକ୍ଟ ଓ ଦାନ୍ତକାଠିଆ କ୍ଷୁଦ୍ର ଜଳସେଚନ ନିର୍ମାଣ କରିଥିଲେ ।

**ଲୋଧାଚୁଆ ନିକଟସ୍ଥ ଐତିହାସିକ କାଠପୋଲ :** ଲୋଧାଚୁଆରୁ ରଣପୁର ରାସ୍ତା ଉପରେ ନଦୀ ଉପରେ ଥିବା କାଠପୋଲ ଐତିହାସିକ ସେତୁର ମାନ୍ୟତା

ବହନ କରେ। ଏହି ସେତୁଦେଇ ଇଂରେଜ ପ୍ରଶାସକ ବେଜେଲଗେଟ୍ ରଣପୁର ଗଡ଼ରେ ପ୍ରବେଶ କରିଥିଲେ। ଏହି କାଠ ଶଙ୍ଘ ଦେଶ ସ୍ୱାଧୀନତା ପରେ ଦୀର୍ଘ ୩୦ ବର୍ଷରୁ ଊର୍ଦ୍ଧ୍ୱକାଳ ସେହି କାଠ ଶଙ୍ଘରେ ପଡ଼ି ରହିଥିଲା। କାରଣ ରାଜ୍ୟ ସରକାରଙ୍କର ସପକ୍ଷ ଦଳ ରଣପୁର ନିର୍ବାଚନମଣ୍ଡଳୀରୁ ରାଜମାତା ବସନ୍ତମଞ୍ଜରୀଙ୍କ ପରେ ଧାରାବାହିକ ଭାବରେ ନିର୍ବାଚିତ ହେଉନଥିଲେ। ଏ ଅଞ୍ଚଳ କମ୍ୟୁନିଷ୍ଟ ଦୁର୍ଗ ହୋଇ ରହିଗଲା। ନୟାଗଡ଼ ଜନଶ୍ରୁତିରୁ ଶୁଣାଯାଏ- ରଣପୁର କମ୍ୟୁନିଷ୍ଟ ଜାଗା କାଠପୋଲ ପରିବର୍ତ୍ତନ ଆସିବ ନାହିଁ। କଂଗ୍ରେସ ପ୍ରତିନିଧି ରମାକାନ୍ତ ମିଶ୍ର ରଣପୁର ବିଧାୟକ ହେବା ସମୟରେ ଲୋଧାଚୁଆ, ରଣପୁର ଗଡ଼ ମଧ୍ୟସ୍ଥ ଐତିହାସିକ କାଠସେତୁ ଉଠାଯାଇ କଂକ୍ରିଟ ସେତୁ ନିର୍ମିତ ହେଲା।

<u>ବୈଷ୍ଣବ କବି ଭକ୍ତଚରଣ ଦାସ :</u> ଭକ୍ତ ଚରଣ ଦାସ ଓଡ଼ିଆ ସାହିତ୍ୟରେ ରୀତିଯୁଗ ବା କାବ୍ୟ ଯୁଗର ଶେଷପାଦ ତଥା ସଂଗୀତ ଯୁଗର ପ୍ରଥମ ପାଦର କବି। ରୀତିଯୁଗର କବି ହେଲେ ହେଁ ସେ ଭଞ୍ଜୀୟ କାବ୍ୟଧାରାର ଶବ୍ଦାଡ଼ମ୍ବର, କ୍ଲିଷ୍ଟ ପଦବିନ୍ୟାସ, ଆଳଙ୍କାରିକତା ଓ କାଳ୍ପନିକତାକୁ ପରିହାର କରି ସରସ, ସୁନ୍ଦର, ଲଳିତ, କୋମଳ ପଦ୍‌ବିନ୍ୟାସ ଦ୍ୱାରା ନିଜର କାବ୍ୟ କବିତାକୁ ଅପେକ୍ଷାକୃତ ସରଳ ସାବଲୀଳ କରିଥିବାରୁ ତାହା ସର୍ବଜନାଦୃତ ହୋଇପାରିଛି। ଜଣେ ଗୌଡ଼ୀୟ ବୈଷ୍ଣବ କବି ଭାବରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି, ଯାହା ତାଙ୍କ 'ମଥୁରା ମଙ୍ଗଳ କାବ୍ୟ'ରୁ ଜଣାଯାଏ। ଓଡ଼ିଆ ବିଭାଗର ପ୍ରାଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ପ୍ରବନ୍ଧ 'ଓଡ଼ିଆ ବୈଷ୍ଣବ କାବ୍ୟ ପରମ୍ପରା ଓ କବି ଭକ୍ତଚରଣ ଦାସ' ଶିରୋନାମାରେ ଆଲୋଚିତ କବି ବୈଷ୍ଣବ ଧର୍ମ ପ୍ରତି ଆକୃଷ୍ଟ ହୋଇ ସଂସାରର ଅସାରତା ଉପଲବ୍ଧି କରି ସନ୍ନ୍ୟାସ ନେବାପରେ ତାଙ୍କ କାବ୍ୟକବିତା (ମନବୋଧ ଚଉତିଶା)ରୁ ବହୁଳ ଭାବେ ମିଳିଥାଏ- କବି ସମ୍ଭ୍ରାନ୍ତ ପରିବାରରେ ଜନ୍ମ ହୋଇଥିଲେ ଏବଂ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନିଜ ନାମକୁ ବୈରାଗୀ ଚରଣ ପଟ୍ଟନାୟକରୁ ଭକ୍ତ ଚରଣ ଦାସ କରିଥିଲେ। ଏହି ନାମରେ ସେ କାବ୍ୟ ଜଗତରେ ସୁପରିଚିତ। କବି କୃଷ୍ଣ ଭକ୍ତିରସରେ ନିମଜ୍ଜିତ ହୋଇ ଶ୍ରୀକୃଷ୍ଣ ନାମ କୀର୍ତ୍ତନ କରିବାକୁ ବିଭିନ୍ନ ସ୍ଥାନରେ ମଠ ନିର୍ମାଣ କରିଥିଲେ, ମାତ୍ର ନୟାଗଡ଼ ଜିଲ୍ଲା ସୁନାଖଳା ମଠରେ ବହୁବର୍ଷ ଅତିବାହିତ କରିଥିଲେ। କବି ଭକ୍ତ ଚରଣ ଦାସ ୧୭୪୩ରୁ ୧୮୨୮ ମଧ୍ୟରେ ଜୀବିତ ଥିବାର ଜଣାଯାଏ। କିନ୍ତୁ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଭକ୍ତ ଚରଣ ଦାଶଙ୍କ ଆବିର୍ଭାବ ୧୭୮୦ ମସିହାରେ ସୁନାଖଳା ନିକଟସ୍ଥ ସାନପଦର ଗ୍ରାମରେ ବୋଲି ମତବ୍ୟକ୍ତ କରନ୍ତି।

ଭକ୍ତ ଚରଣ ଦାଶଙ୍କ କବିତ୍ୱ, ପାଣ୍ଡିତ୍ୟ କବି ପ୍ରତିଭା ଲାଗି ଯେପରି ଓଡ଼ିଆ ସାହିତ୍ୟର କାବ୍ୟ ଜଗତରେ ପରିଚିତ ସେହିପରି ତାଙ୍କର କୋମଳ ମଧୁର

ପଦ୍ୟାବଳୀ ରଚନା ପାଇଁ ଓଡ଼ିଶାର ପୁରପଲ୍ଲୀର ଘରେ ଘରେ ସୁପରିଚିତ । ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ସ୍ୱଳ୍ପ ହେଲେ ହେଁ ମଥୁରା ମଙ୍ଗଳ କାବ୍ୟ, ମନବୋଧ ଚଉତିଶା ଓ କଳା କଳେବର ଚଉତିଶା ଗୀତି ଉଜ୍ଜଳତା ଓଡ଼ିଶାର ଜନମାନସକୁ ସଦା ଆବୋରି ରହିଥାଏ । କବି ଭକ୍ତଚରଣ ଦାସଙ୍କର ମଥୁରା ମଙ୍ଗଳ କାବ୍ୟ ଓ ଚଉତିଶାର ଗାନ ଏତେ ମଧୁର ଯେ ସେହି ସମୟ ଓ ପରବର୍ତ୍ତୀ ସମୟରେ ଗାୟକ, ଶ୍ରୋତା ରସକଲ୍ଲୋଳ (ଦୀନକୃଷ୍ଣ ଦାସ), ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି' କାବ୍ୟକୁ ଭୁଲିଯାଇଥିଲେ । ଚଉତିଶାଗୁଡ଼ିକ ଖଞ୍ଜଣି ତାଳରେ ଗାଁ ଭାଗବତ ଟୁଙ୍ଗିରେ ଗାନ କରିବା ଜୀବନଚର୍ଯ୍ୟାର ଗଭୀର ଆତ୍ମପ୍ରକାଶ କରେ । ଚାଟଶାଳୀ ପାଠଶାଳାରେ ମଥୁରାମଙ୍ଗଳ ଗାନ କରିଦେଲେ ଚାଟଶାଳୀ ବିଦ୍ୟା ସମାପନ ହୁଏ । ଘରକୁ ବୋହୂଟିଏ ଆଣିବା ପୂର୍ବରୁ ତା' ମୁହଁରୁ ମଥୁରା ମଙ୍ଗଳରୁ ପଦେ ଗୋପୀଭାଷା ଶୁଣିବାକୁ ହୁଏ । ଏଥିରୁ ଭକ୍ତଚରଣ ଦାଶଙ୍କର କବି ପ୍ରତିଭାର ଲୋକପ୍ରିୟତାର ପ୍ରମାଣ ମିଳେ ।

କବି ଭକ୍ତଚରଣ ଦାଶ ବହୁ ସ୍ଥାନରେ ମଠ ସ୍ଥାପନ କରିଥିଲେ । ତାଙ୍କର ସନ୍ନ୍ୟାସ ଜୀବନ କେଉଁଠାରେ ସ୍ଥାୟୀ ହୋଇ ରହିନଥିଲା । ପଦବ୍ରଜରେ ସାରା ଭାରତବର୍ଷ ଭ୍ରମଣ କରିଥିଲେ ଏବଂ ଶ୍ରୀକ୍ଷେତ୍ରରେ କୃଷ୍ଣନାମ କୀର୍ତ୍ତନ କରି ଶେଷନିଃଶ୍ୱାସ ତ୍ୟାଗ କରିଥିଲେ ବୋଲି ସମାଲୋଚକମାନେ ମତବ୍ୟକ୍ତ କରନ୍ତି ।

<u>ଗାୟକ ସମ୍ରାଟ ବିଶ୍ୱନାଥ ପଟ୍ଟଯୋଶୀ :</u> ପାଲାଗାୟକ ସମ୍ରାଟ ବିଶ୍ୱନାଥ ପାଟ୍ଟଯୋଶୀ ନୟାଗଡ଼ ଜିଲ୍ଲାର ଗର୍ବଗୌରବ । କାବ୍ୟ ସାହିତ୍ୟ ଆଲୋଚନାରେ ସୁନାମଧନ୍ୟ ପଣ୍ଡିତ ଗାୟକ । ବିଶ୍ୱନାଥ ପାଟ୍ଟଯୋଶୀ ସୁନାଖଳା ନିକଟସ୍ଥ ରମ୍ଭାବେଲି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପାଲା ନୟାଗଡ଼ ଜିଲ୍ଲାର ଏକ ସ୍ୱତନ୍ତ୍ର ମଞ୍ଚକଳା । ମଧ୍ୟଯୁଗୀୟ କାବ୍ୟ ସାହିତ୍ୟକୁ ପ୍ରଚ୍ଚର କରିବାରେ ଆଲୋଚନାଧର୍ମୀ ମଞ୍ଚକଳା । ଏହା ରାଜନ୍ୟବର୍ଗଙ୍କ ପୃଷ୍ଠପୋଷକତାରେ ସମାଜରେ ଆଦରଲାଭ କରିଥିଲା । ଏଣୁ ପାଲା ରାଜଦରବାର ଅଭିମୁଖୀ ଥିଲା । ସ୍ୱାଧୀନତା ପୂର୍ବରୁ ଓଡ଼ିଶାର ପ୍ରଥମ ପାଲାକାର ସ୍ୱର୍ଗତ ତ୍ରିଲୋଚନ ରାୟଗୁରୁ ନୟାଗଡ଼ର ହିଁ ଥିଲେ । ଏହାଙ୍କ ପରେ ଗାୟକ ସମ୍ରାଟ ବିଶ୍ୱନାଥ ପାଟ୍ଟଯୋଶୀ ପାଲାକାରଙ୍କ ମଧ୍ୟରେ ମଧ୍ୟାହ୍ନ ମାର୍ତ୍ତଣ୍ଡତୁଲ୍ୟ ବିରାଜମାନ ହୋଇ ତାଙ୍କର ପାଣ୍ଡିତ୍ୟ ବିଦ୍‌ବତ୍ତାରେ ଦର୍ଶକ ଶ୍ରୋତାଙ୍କର ମନ ମୋହିଥିଲେ । ଓଡ଼ିଶାରେ ଯେଉଁ କତିପୟ ପାଲାକାର ଦୃଷ୍ଟିଗୋଚର ହୁଅନ୍ତି, ସେମାନେ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ ବିଶ୍ୱନାଥ ପାଟ୍ଟଯୋଶୀଙ୍କ ଦ୍ୱାରା ପ୍ରଭାବିତ । ଯେପରି ସଂସ୍କୃତରେ କଥିତ ଅଛି ବାଣୋଚ୍ଛିଷ୍ଟମିଦଂ ଜଗତ ସେହିପରି କୁହାଯାଇପାରେ ରଘ୍ୟେଚ୍ଛିଷ୍ଟମିଦଂ ଜଗତ । ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ବିଶ୍ୱନାଥଙ୍କ ସର୍ବୋତ ତିଷ୍ଠତି । ବିଶ୍ୱନାଥ ପାଟ୍ଟଯୋଶୀଙ୍କ ସଂସ୍କୃତ କାବ୍ୟ କାଳିଦାସ, ମମଟ, ଭବଭୂତି, ଶ୍ରୀହର୍ଷ, ଭାରବୀଙ୍କ କାବ୍ୟ ସମ୍ଭାରରେ ଅଗାଧ

ପାଣ୍ଡିତ୍ୟ ଥିଲା। ସଂସ୍କୃତ ସାହିତ୍ୟକୁ ପାଥେୟ କରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଭକ୍ତକବି ଦୀନକୃଷ୍ଣ ଦାସ, ଉତ୍କଳଘଣ୍ଟ କବି ଯଦୁମଣି ମହାପାତ୍ର କାବ୍ୟ କବିତା ବିପୁଳ ଭାବରେ ଚର୍ଚ୍ଚା କରୁଥିଲେ। ବିଶ୍ୱନାଥ ପାଟଯୋଶୀଙ୍କର ପ୍ରଗଲ୍‌ଭ ଗାଉଣା ବାଜଣାରେ ଶ୍ରୋତା ସମାଜ ଅଭିଭୂତ ହେଉଥିଲେ। କଥା ମାଧୁର୍ଯ୍ୟରେ କାବ୍ୟକଳାକୁ ଏପରି ମଜାଇ ଦେଉଥିଲେ ଯେ ଶ୍ରୋତାସମାଜ କାବ୍ୟ ରସରେ ମୌନ ଓ ବଶ। ଯେଉଁଠାରେ ଯେଉଁ ମଞ୍ଚରେ ବିଶ୍ୱନାଥ ପାଟଯୋଶୀଙ୍କ ପାଖକୁ ଯେତେ ପ୍ରଶ୍ନ ଆସିଛି ତାକୁ ସରଳ ବୋଧଗମ୍ୟ ଭାଷାରେ ବୁଝାଇଦେବାରେ ସେ ଧୂରୀଣ ପଣ୍ଡିତ ଗାୟକ। ଏଣୁ ବିଶ୍ୱନାଥ ପାଟଯୋଶୀଙ୍କର ପାଲା ଶୁଣୁଥିଲେ ଦେଖୁଥିଲେ ଉଠିଯିବାକୁ ଇଚ୍ଛା ହୁଏନି।

ପ୍ରାୟତଃ କଟକୀ ପାଲା ଗାୟକ ଏବଂ ପୁରୀ ପାଲା ଗାୟକଙ୍କ ମଧ୍ୟରେ ବିବାଦୀୟ ପାଲା ମଞ୍ଚରେ ୫/୬/୭ ଦିନ ଧରି ପାଲା ବାଦୀ ଚାଲେ। କଟକୀ ପାଲାକାରଙ୍କର କାବ୍ୟ ପ୍ରବେଶ ନହେଲେ ହେଁ କହିବା ଚାତୁରୀ ବଡ଼ ଠଣର। ଏକଦା କଟକୀ ପାଲାକାର ପୁରୀ ପାଲାକାରଙ୍କର ବାଦୀ ପାଲା ଥିଲା। ପୁରୀ ପାଲାକାରମାନେ ଏକତ୍ରିତ ଗୋଟିଏ ପାଲାମେଳ ଗଠନ କରି ସେ ବାଦୀ ମଞ୍ଚରେ ପାଲା ଗାୟନ କଲେ। ଏ ଦଳର ଗାୟକ ହେଲେ ବିଶ୍ୱନାଥ ପାଟଯୋଶୀ, ପାଳିଆମାନେ ହେଲେ ଲୋକନାଥ୍ କର, ମାର୍କଣ୍ଡ ବାହିନୀପତି, ଧର୍ମାନନ୍ଦ ଦୀକ୍ଷିତ୍, ତାରେଶ୍ୱର, ବାୟକ ଗୋବର୍ଦ୍ଧନ। ଏ ବାଦୀପାଲାରେ ପାଳିଆମାନେ ଥାକ ପକାଇ କଟକୀ ପାଲାକାରଙ୍କୁ ନାକେଦମ୍ କରିଦେଲେ। ବାଦୀର ଶେଷଦିନରେ ବିଶ୍ୱନାଥ ପାଟଯୋଶୀ ମଞ୍ଚରେ ଠିଆ ହେଲାବେଳକୁ କଟକୀ ପାଲାକାର ଆଣ୍ଠେଇ ପଡ଼ିଲେଣି। କଟକୀ ପାଲାକାରଙ୍କଠାରୁ ପୁରୀ ପାଲାକାରମାନଙ୍କର ବିଷୟଗତ କାବ୍ୟରସର ଆଘ୍ରାଣ ସ୍ୱତନ୍ତ୍ରତା ଥାଏ।

ଓଡ଼ିଶା ପାଲାଗାୟକଙ୍କ ମଧ୍ୟରେ ବିଶ୍ୱନାଥ ପାଟଯୋଶୀଙ୍କ ଗାୟନ ଶୈଳୀ କଥନଶୈଳୀ କାବ୍ୟରସରେ ସନ୍ତରଣ ପଣ୍ଡିତ ଶ୍ରୋତାମଣ୍ଡଳୀକୁ ବିମୁଗ୍ଧ କରେ। ଏଣୁ ଓଡ଼ିଶା ପାଲା ଜଗତରେ ବିଶ୍ୱନାଥ ପାଟଯୋଶୀଙ୍କୁ ଓଡ଼ିଶାର ପାଲାଗାୟକ ସମ୍ରାଟ ଉପାଧି ପ୍ରାପ୍ତ ହୋଇଥିଲା।

ଓଡ଼ିଶାରେ 'ଶ୍ରୀ ଶ୍ରୀ ନୀଳାଚଳ ନିଖିଳ ଉତ୍କଳ ପାଲାଗାୟକ ପରିଷଦ' ଗାୟକ ସମ୍ରାଟ ବିଶ୍ୱନାଥ ପାଟଯୋଶୀ ଓ ଓଡ଼ିଶାର ଲାଇବ୍ରେରୀ ମାର୍କଣ୍ଡ ବାହିନୀପତି ନେତୃତ୍ୱରେ ଗଠନ କରାଯାଇଥିଲା। ରାଜ୍ୟ ପାଲାଗାୟକ ପରିଷଦ ଗଠନ ହେବା ପୂର୍ବରୁ ପ୍ରଥମେ ନୟାଗଡ଼ରେ 'ମା' ଦକ୍ଷିଣକାଳୀ ପାଲାଗାୟକ ମଣ୍ଡଳ' ନୟାଗଡ଼ରେ ଗଠନ ହୋଇଥିଲା। ଏହାର ସଭାପତି ଥିଲେ ଗାୟକ ସମ୍ରାଟ ବିଶ୍ୱନାଥ ପାଟଯୋଶୀ।

ଗାୟକ ସମ୍ରାଟ ବିଶ୍ୱନାଥ ପାଟଯୋଶୀଙ୍କର ପାଲା ନୟାଗଡ଼ ପାଲା ମଞ୍ଚରେ ଦେଖିଛି (ଲେଖକ)। ତାଙ୍କର ପାଲା ପରିବେଷଣ ବହୁତ ଉଚ୍ଚମାନର ପ୍ରଶ୍ନଟାଏ

ପଚାରିଦେଲେ ତୁରନ୍ତ ବୋଧଗମ୍ୟ ହେଲାଭଳି ସରଳ ମଧୁର ଭାଷାରେ ଉତ୍ତର ଦେଇଦିଅନ୍ତି। କାବ୍ୟଯୁଗର ସେଭଳି ପଣ୍ଡିତ ଗାୟକ କେବେ ଜନ୍ମ ନେବେ ଏ ମାଟିରେ ମାଟି ଅପେକ୍ଷା କରେ।

ନୟାଗଡ଼ର ଶୁଖୁଆ ବଜାର- ସୁନାଖଳା : ନୟାଗଡ଼ର ଶୁଖୁଆ ବଜାର ହେଉଛି ସୁନାଖଳା। ଏହା ଭୁବନେଶ୍ୱର ବଲାଙ୍ଗୀର ରାଜପଥ ଉପରେ ଅବସ୍ଥିତ। ଏହି ରାଜପଥର ଉଭୟପାର୍ଶ୍ୱରେ ଶୁଖୁଆ ଗୋଦାମମାନ ଠିଆହୋଇଛି। ଏହି ସ୍ଥାନ ଅତିକ୍ରମ କଲାବେଳେ ଶୁଖୁଆ ଗନ୍ଧରେ ନାକ ଚୁଣ୍ଟି ହୋଇଯାଏ। ଯାତ୍ରୀଟି ବାରିଦିଏ ଯେ ଆମେ ନୟାଗଡ଼ ଶୁଖୁଆ ବଜାରରେ ପହଞ୍ଚିଗଲୁ। ଏ ବଜାରରେ ଚିଲିକାର ଛୋଟ ମାଛ ଠାରୁ ବଡ଼ ପର୍ଯ୍ୟନ୍ତ ଲୁଣି ଖାରା ଶୁଖୁଆ ମିଳେ। ଲୁଣି ଶୁଖୁଆ, ଶାଳ, ଖଇଙ୍ଗା, କଣି, ଭେକଟି, ଖାରପାଣିଆ, ଶିଙ୍ଗୀ, କଣ୍ଟିଆ ଖାରା ଶୁଖୁଆ ଚିଙ୍ଗୁଡ଼ି, ତାମ୍ପଡ଼ା, ମହୁରାଡ଼ି, ପିତା ଶୁଖୁଆ, କେରାଣ୍ଡି, କଉ ଇତ୍ୟାଦି ଇତ୍ୟାଦି ହରେକ ଜାତିର ଏହି ବଜାରରୁ ମିଳେ। ଶୁଖୁଆବେପାର ଏହିବଜାରର ପ୍ରଧାନ ବେପାର। ଦୂରଦୂରାନ୍ତର ଶୁଖୁଆ ବେପାରୀମାନେ ଏହି ବଜାରରୁ ଶୁଖୁଆ ନେଇ ଗ୍ରାମାଞ୍ଚଳରେ ବୁଲି ବୁଲି ଶୁଖୁଆ ବ୍ୟବସାୟ କରନ୍ତି।

ତାତିଲା ମାଟିର ବ୍ୟକ୍ତିତ୍ୱର ଗୌରବ ସତ୍ୟବାଦୀ ବଳିଆର ସିଂ : ତାତିଲା ମାଟି ରଣପୁର ବ୍ୟକ୍ତିତ୍ୱର ଗୌରବ ସତ୍ୟବାଦୀ ବଳିଆର ସିଂ ନୟାଗଡ଼ ଜିଲ୍ଲା ରଣପୁର ଥାନା ଅଧୀନସ୍ଥ ଗଡ଼ବାଣୀକିଲୋ ଗ୍ରାମରେ ପିତା ବିଶ୍ୱନାଥ ଓ ମାତା ତୁଳସୀଙ୍କ କୋଳରେ ଜନ୍ମଲାଭ କରିଥିଲେ। ତାଙ୍କର କର୍ମମୟ ଜୀବନ ଥିଲା ଶିକ୍ଷକତା। ସତ୍ୟ ଆଧାରିତ ତଥ୍ୟରେ ସେ ରଚନା କରିଛନ୍ତି ଏକାଧିକ ଐତିହାସିକ ପୁସ୍ତକ। ତାଙ୍କର ରଚନାବଳୀ- ଶହୀଦ ରଘୁଦିବାକର-୧୯୮୩, ରଣପୁର ବିଦ୍ରୋହ-୧୯୮୫, ରଣପୁର ଇତିହାସ-୧୯୮୭, ଲାଲମାଟିର କବିତା-୨୦୦୧, ଜାତିର ଏକତା ତ୍ରିରଙ୍ଗା ପତାକା-୨୦୦୧, ନିର୍ବାଚନ ଖୋର୍ଦ୍ଧା ଜିଲ୍ଲା-୨୦୦୨, ଅତୀତରୁ ଏଯାବତ୍- ଖୋର୍ଦ୍ଧା ଜିଲ୍ଲା ନିର୍ବାଚନ-୨୦୦୬, ପର୍ଯ୍ୟଟନରେ ଓଡ଼ିଶାର ଶାକ୍ତ ଓ ଶୈବ ପୀଠ-୨୦୧୨, ଦୀନ ଜନତାର ସାଥୀ ହୃଷିକେଶ ମୁଖୀ ୨୦୧୭, ଅନାଇ ରହିଛି ଗଡ଼ ଗଡ଼ଖାଇ-୨୦୧୯, ଖୋର୍ଦ୍ଧା ଇତିହାସର ଏକ୍ତୁଡ଼ିଶାଳ, ବରୁଣେଇ-୨୦୨୧। ଅନେକ ପତ୍ରପତ୍ରିକାରେ ଶତାଧିକ ସ୍ତମ୍ଭ ଓ ପ୍ରବନ୍ଧ ତାଙ୍କର ପ୍ରକାଶିତ। ତାଙ୍କର ରଚନାବଳୀ ପାଇଁ ବହୁ ଅନୁଷ୍ଠାନରୁ ବ୍ୟକ୍ତିତ୍ୱର ଗୌରବ ସମ୍ମାନରେ ଭୂଷିତ ହୋଇଛନ୍ତି।



## ଦଶମ ଅଧ୍ୟାୟ

# ନୟାଗଡ଼ ସମତଳ



**ଶିବାଜୀ ପଟ୍ଟନାୟକ:** କମ୍ରେଡ୍ ଶିବାଜୀ ପଟ୍ଟନାୟକ ସାମ୍ୟବାଦର ଜଣେ ତୁଙ୍ଗନେତା । ପିତା କୃପାସିନ୍ଧୁ ପଟ୍ଟନାୟକ ମାତା ଲାବଣ୍ୟବତୀଙ୍କ କୋଳରେ ଖୋର୍ଦ୍ଧା ଓଳସିଂ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । କୃପାସିନ୍ଧୁ ପଟ୍ଟନାୟକ ନୟାଗଡ଼ ଗଡ଼ଜାତର ସରକାରୀ ଓକିଲ ଥିବାରୁ ସେ ନୟାଗଡ଼ ଅମଲାପଡ଼ାରେ ୧୯୪୦ ମସିହାରୁ ରହି ଆସୁଥିଲେ । ଶିବାଜୀ ପଟ୍ଟନାୟକ ଛାତ୍ର ବୟସରୁ ?୧୩

ସଂଗଠକ ଥିଲେ । ୧୯୪୨ ମସିହା ନୟାଗଡ଼ ପ୍ରଜା ଆନ୍ଦୋଳନରେ ଜେଲ ଯାଇଥିବା ପ୍ରମୁଖ ନେତା ନାରାୟଣ ନନ୍ଦ, ବାଞ୍ଛାନିଧି ସେନାପତି, ଶ୍ରୀଧର ଦାଶ, ଲକ୍ଷ୍ମଣ ମହାରଣା ଓ ନରସିଂହ ନନ୍ଦ ନୟାଗଡ଼ର ଖଲାସ ଦିନ ଶିକ୍ଷକଙ୍କ ତାଗିଦ୍ ସତ୍ତ୍ୱେ ଶିବାଜୀ ପଟ୍ଟନାୟକ କେତେକ ସାଥୀଙ୍କ ସହିତ ଶିବାଜୀ ଗୃହ ଛାଡ଼ି ନୟାଗଡ଼ର ଏଇ ହିରୋମାନଙ୍କୁ ଦେଖିବାକୁ ବାହାରି ଯାଇଥିଲେ । ୧୯୪୬ରେ ଶିବାଜୀ ସଭ୍ୟ ଫିସ୍ ଆଠଅଣା ଏବଂ ସ୍ୱେଚ୍ଛାସେବୀ ଫିସ୍ ଆଠଅଣା ଦେଇ ନୟାଗଡ଼ ପ୍ରଜାମଣ୍ଡଳ ଆନ୍ଦୋଳନର ସଭ୍ୟ ହୋଇଥିଲେ । ଏହି ସ୍ଥିତି ଉପରୁ ଶିବାଜୀ ଆନ୍ତର୍ଜାତୀୟ ସ୍ତରରେ ସିପିଆଇ(ଏମ୍)ର ଜଣେ ସାଲିସ୍ ବିହୀନ ନେତା ଓ ସଂଗଠକ ଭାବରେ ଦେଶ ବିଦେଶରେ ବେଶ୍ ଜଣାଶୁଣା ।

ଶିବାଜୀ ପଟ୍ଟନାୟକ ତାଙ୍କର ପୁସ୍ତକ ସଂଘର୍ଷ ଓ ସଂକଳ୍ପ ପଥରେ ପ୍ରକାଶ କରନ୍ତି "ସମାଜର ଶ୍ରମିକ, କୃଷକ, କାରିଗର, କଳାକାର, ବୈଜ୍ଞାନିକ, ଲେଖକ ଓ ଶିଳ୍ପୀଙ୍କ ବିପୁଳ ଅବଦାନ ସତ୍ତ୍ୱେ ମାନବ ସମାଜ କୁତ୍ସିତ, କଦାକାର, କଳୁଷିତ କାହିଁକି !!! ଭରି ରହୁଛି ଅଭାବ, ଅନଟନ, ଅନଗ୍ରସରତା, ଅସାମ୍ୟ, ହିଂସା, ଦ୍ୱେଷ, ପରିଶ୍ରୀକାତରତା, ଠକାମି, ଜୁଆ, ଚୋରୀ ନାନାଦି ବ୍ୟାଧି । ତା ମୂଳରେ ରହିଛି ମଣିଷ ଉପରେ ମଣିଷର ଶୋଷଣ । ଏ ଶୋଷଣରୁ ଶ୍ରମଜୀବୀ ମଣିଷର ମୁକ୍ତି ପାଇଁ ସମାଜବାଦ ଦିଗରେ ଆଗେଇ ଯିବାରେ ସେ ତାଙ୍କର ସର୍ବଶକ୍ତି ଢାଳି ଦେଇଛନ୍ତି ମାନବ ସମାଜ ଓ ତା'ର ସଭ୍ୟତା ସର୍ବାଙ୍ଗ ସୁନ୍ଦର ହେବା ଦିଗରେ ।

୧୯୭୭ ଓ ୧୯୮୯ରେ ଦୁଇଥର ସଂସଦକୁ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ସାଂସଦ ଭାବେ ନିର୍ବାଚିତ ହୋଇଛନ୍ତି ଶିବାଜୀ ପଟ୍ଟନାୟକ । ସେ ନୟାଗଡ଼ର ବିକାଶ ପାଇଁ ବୃତ୍ତଙ୍ଗ ଜଳସେଚନ ବ୍ୟବସ୍ଥା, ଦଶପଲ୍ଲାରେ କାଗଜ କାରଖାନା, ନୟାଗଡ଼ରେ ଚିନିକଳ ସ୍ଥାପନା ଓ ଖୋର୍ଦ୍ଧା-ବଲାଙ୍ଗୀର ରେଳପଥ ନିର୍ମାଣ ସଂସଦରେ ଦୃଢ଼ ଉପସ୍ଥାପନା ଉଠାଇଥିଲେ । ବହୁ ବ୍ୟବଧାନ ପରେ ତାଙ୍କର ଗୋଟିଏ ପ୍ରସ୍ତାବ ଖୋର୍ଦ୍ଧା-ବଲାଙ୍ଗୀର ରେଳପଥ ନିର୍ମାଣ ସାକାର ରୂପ ନେଇଛି । ତାଙ୍କରି ପ୍ରେରଣା ସହଯୋଗରେ ନୟାଗଡ଼ ପୁରୁଣାସହର ଦାଣ୍ଡସାହିର ରଘୁନାଥ ଦାଶ ନୟାଗଡ଼ ଏନ୍‌ଏସିର ଚେୟାରମ୍ୟାନ୍ ଥିବା ସମୟରେ ସହରର ଅନେକ ବିକାଶମୂଳକ କାର୍ଯ୍ୟ ଜାରି ରହିଛି । ରଣପୁର ନିର୍ବାଚନମଣ୍ଡଳୀର ଗୋଲକ ମୁଦୁଲୀ, ଦଶପଲ୍ଲା ନିର୍ବାଚନ ମଣ୍ଡଳୀର ଆଇନଜୀବୀ ଶରତ ବେହେରା, ନୟାଗଡ଼ ନିର୍ବାଚନ ମଣ୍ଡଳୀର ବିଶ୍ୱନାଥ ମହାପାତ୍ର ଋଷୀ, ଶ୍ରମିକ, ନିର୍ମାଣ କାରିଗରଙ୍କର ଦୁଃଖ କଷଣର ପ୍ରତିବାଦ ପ୍ରସ୍ତାବ ଦାବୀ ସରକାରଙ୍କ ନିକଟରେ ଉପସ୍ଥାପନା କରିଚାଲିଛନ୍ତି । ଋଷୀ ମୂଲିଆର ସାଥୀ ଶିବାଜୀ ପଟ୍ଟନାୟକ ପ୍ରାକ୍ତନ ବୟସରେ ବି ନେତୃତ୍ୱ ଦେଇଚାଲିଛନ୍ତି ।

**ଲୋକପ୍ରିୟ ବିଧାୟକ ଡକ୍ଟର ଅରୁଣ କୁମାର ସାହୁ :** ନୟାଗଡ଼ର ଲୋକପ୍ରିୟ ବିଧାୟକ ଡକ୍ଟର ଅରୁଣ କୁମାର ସାହୁ ଯେ କି ନବୀନ ପଟ୍ଟନାୟକଙ୍କ କ୍ୟାବିନେଟ ମନ୍ତ୍ରୀ ପଦରେ ଓଡ଼ିଶାର ଜନସେବା କରିଆସୁଛନ୍ତି। ସେ ମହାମହିମ ଲୋକ ପ୍ରତିନିଧି କଳା, ସଂସ୍କୃତି ଅନୁରାଗୀ ଜଣେ ନିଛକ କବି ଏବଂ ପ୍ରଗଳ୍‌ଭ ବକ୍ତା। ସଭାମଂଚରେ ଭାଷଣ ଦେଉଥିବାବେଳେ ସଭା ସ୍ଥାନ ଛାଡ଼ିଯିବାକୁ ଇଚ୍ଛା ହୁଏ ନାହିଁ। ତାଙ୍କର ଲୋକସଂପର୍କ ନିକଟର ଆପଣାର। ୨୦୧୪ ନୟାଗଡ଼ ଜିଲ୍ଲା ମହୋତ୍ସବ ଆରଣ୍ୟକରେ ଡକ୍ଟର ଅରୁଣ ସାହୁଙ୍କର ବାର୍ତ୍ତା ନୟାଗଡ଼ ନଭଶ୍ଚୁମ୍ବି ଚେତନାଟିଏ। କଳା, ସ୍ଥାପତ୍ୟ,ଭାସ୍କର୍ଯ୍ୟ, ଲୋକାଚାର ମଣ୍ଡିତ ଏହି ଭୂଖଣ୍ଡର ମହନୀୟତା ରହିଛି ଯୁଗଯୁଗାନ୍ତରରେ। ବରେଣ୍ୟ ମନ୍ତ୍ରୀ ମହୋଦୟ ଡକ୍ଟର ଅରୁଣ କୁମାର ସାହୁ ଓଡ଼ିଶାକୁ ପ୍ରତିନିଧିତ୍ୱ କରୁଥିବାରୁ ଏହାହିଁ ନୟାଗଡ଼ର ମର୍ଯ୍ୟାଦା।

**ସାହିତ୍ୟ ଅନୁରାଗୀ ଅଧ୍ୟକ୍ଷ ଅଶୋକ କୁମାର ନାୟକ:** ସାହିତ୍ୟ ଅନୁରାଗୀ ଅଶୋକ କୁମାର ନାୟକଙ୍କର ଜନ୍ମସ୍ଥାନ ଇଟାମାଟି। ସେ ଇଟାମାଟି ବୈଷୟିକ ମହାବିଦ୍ୟାଳୟର ଅଧ୍ୟକ୍ଷ ସୁନ୍ଦର ଭାବରେ ମହାବିଦ୍ୟାଳୟକୁ ଗଢ଼ିଆଣିଛନ୍ତି। ଯଦୁମଣି କ୍ଲବ୍ ଇଟାମାଟିର ସେ ସ୍ଥାୟୀ ସଭାପତି। ପ୍ରତିବର୍ଷ ଜାନୁୟାରୀ ୮ ତାରିଖରେ ଯଦୁମଣି କ୍ଲବ୍ ଆନୁକୁଲ୍ୟରେ ରାଜ୍ୟସ୍ତରୀୟ ଯଦୁମଣି ଜୟନ୍ତୀ ଉତ୍ସବ ପାଳନ କରାଯାଏ। ଏହାର ସମସ୍ତ ଆୟୋଜନର ବ୍ୟବସ୍ଥାପକ ଅଶୋକ କୁମାର ନାୟକ। ନୟାଗଡ଼ର ସାହିତ୍ୟିକମାନେ ଏ ଜୟନ୍ତୀ ଉତ୍ସବରେ ଯୋଗଦାନ କରିଥାନ୍ତି। ଶ୍ରୀଯୁକ୍ତ ଅଶୋକ କୁମାର ନାୟକ ନୟାଗଡ଼ ଜିଲ୍ଲାରୁ ଓଡ଼ିଶା ସାହିତ୍ୟ ଏକାଡ଼େମୀକୁ ପ୍ରତିନିଧିତ୍ୱ

କରୁଛନ୍ତି ।

**ସାହିତ୍ୟ ପ୍ରାଣ ଅନ୍ନଦା ମିଶ୍ର:** ନୟାଗଡ଼ ଆଞ୍ଚଳିକ ସାହିତ୍ୟ ସମାଜର ସଂପାଦକ ଇଂରାଜୀ ଅଧ୍ୟାପକ ଅନ୍ନଦା ପ୍ରସାଦ ମିଶ୍ରଙ୍କର ବାସସ୍ଥାନ ନୂଆ ରାଜବାଟୀ ସାମ୍ନା ରାଣୀବନ୍ଧ ସମ୍ମୁଖ ଗଳିରେ । ତାଙ୍କର ପିତା କୃଷ୍ଣଚନ୍ଦ୍ର ମିଶ୍ର ମାଇନର ସ୍କୁଲରେ ଶିକ୍ଷକ ଥିଲେ । ନୟାଗଡ଼ ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ହରିହର ମିଶ୍ରଙ୍କର ପ୍ରେରଣାରେ ୧୯୮୫-୮୬ ମଧ୍ୟରେ ନୟାଗଡ଼ ଆଞ୍ଚଳିକ ସାହିତ୍ୟ ସମାଜ ଗଢ଼ି ଉଠିଥିଲା । ଏ ସାହିତ୍ୟ ଅନୁଷ୍ଠାନର ମଙ୍ଗ ଧରିଥିଲେ ଅନ୍ନଦା ପ୍ରସାଦ ମିଶ୍ର । ଏହି ସାହିତ୍ୟ ଅନୁଷ୍ଠାନର ସହଯୋଗୀ କର୍ମୀମାନେ ହରିହର ମିଶ୍ର, ବିଜୟ କୁମାର ଚୌଧୁରୀ, ଅନ୍ନଦା ପ୍ରସାଦ ମିଶ୍ର, ପାଣ୍ଡବ ନାୟକ, ଗୋଟିସାହି, ସୁଦର୍ଶନ ରାଉତ (ଦକ୍ଷିଣକାଳୀ ସାହି) କମଳ ଦାସ, ପୁରୁଣା ସହର କରଣ ସାହି, ନିର୍ମଳ ଚନ୍ଦ୍ର ସୁରଦେଓ ପୁରୁଣା ସହର ଶୂରଦେଓ ଶିଳ୍ପୀ ଭବନ, ସୁରେନ୍ଦ୍ର କୁମାର ମିଶ୍ର ଘଡୁଆଳ, ଅମୂଲ୍ୟ ଚନ୍ଦ୍ର ସ୍ୱାଇଁ ଗୋପାଳପୁର, ପ୍ରକାଶ ପାଣିଗ୍ରାହୀ, କ୍ରିଦାଶପୁର । ଅନ୍ନଦା ମିଶ୍ରଙ୍କର ପରିଚାଳନାରେ ନୟାଗଡ଼ ସହରରେ ମାସିକ ସାହିତ୍ୟ ଆସର ବୈଠକ ବସେ । ଏପରିକି ଭ୍ରାମ୍ୟମାଣ ରୀତିରେ ବୋଲଗଡ଼, ଓଡ଼ଗାଁ, ଖଣ୍ଡପଡ଼ା, ବାହାଡ଼ାଝୋଲାଠାରେ କବିତା ଆସର ସଭା ଅନୁଷ୍ଠିତ ହୋଇଥିଲା । ଅନ୍ନଦା ପ୍ରସାଦ ମିଶ୍ରଙ୍କ ସଂପାଦନାରେ ଆଞ୍ଚଳିକ ସାହିତ୍ୟ ସମାଜର ୯ ଗୋଟି ମୁଖପତ୍ର ପ୍ରକାଶ ପାଇଛି । କର୍ମକର୍ତ୍ତାମାନଙ୍କର କର୍ମଜୀବନ ଦୂରଦୂରାନ୍ତରରେ ରହିବାରୁ ଏ ସାହିତ୍ୟ ଅନୁଷ୍ଠାନ ମଉଳି ପଡ଼ିଲା । ନୟାଗଡ଼ ସହରରେ ନୂତନ ଅନୁଷ୍ଠାନମାନ ଗଢ଼ିଉଠିଲା । ନୟାଗଡ଼ ଆଞ୍ଚଳିକ ସାହିତ୍ୟ ସମାଜ ପୃଷ୍ଠ ଉପରୁ ଅନେକ କବି, ଗାଳ୍ପିକ,ପ୍ରାବନ୍ଧିକ, ନାଟ୍ୟକାର ଏବେ ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠିତ । ନୟାଗଡ଼ ଆଞ୍ଚଳିକ ସାହିତ୍ୟ ସମାଜ ଅନୁଷ୍ଠାନ ଏଯାଏ ଯଦି ଥାଆନ୍ତା ଓଡ଼ିଶା ସାହିତ୍ୟ ଅନୁଷ୍ଠାନ ସ୍ଥାନରେ ଏକ ବଳିଷ୍ଠ ଅନୁଷ୍ଠାନ ହୋଇ ଠିଆ ହୋଇଥାନ୍ତା ।

**ବାଉଁଶିଆ ପଡ଼ାରୁ ଆରମ୍ଭ ନୟାଗଡ଼ ସମତଳ:** ବାଉଁଶିଆପଡ଼ା ନୟାଗଡ଼ ଗଡ଼ଜାତର କୁସୁମୀ ନଦୀର ତଳ ଶଯ୍ୟାରେ ନଦୀର ପୂର୍ବ ଦାଢ଼କୁ ବିସ୍ତାରୀ ରହିଥିବା ନିମ୍ନ ସମତଳଭୂମି । ଏ ସମତଳଭୂମି ଶୁକରମଲ୍ଲର ପଶ୍ଚିମ ପାର୍ଶ୍ୱରୁ ବନମାଟି ଓ କୁସୁମୀର ପଟୁମାଟି ଦ୍ୱାରା ଗଠିତ । ଏ ପଡ଼ାର ପୂର୍ବକୁ ଲାଗି ବିଜିପୁର ଏକ ଖଣ୍ଡାୟତ ଗାଁ ନୟାଗଡ଼ ପୂର୍ବସୀମା ସରହଦକୁ ଲାଗି ରହିଛି । ବିଜିପୁର ୩୦ ପୋଲିଆ ଶଙ୍କର ବୃହତ ଜଳଧାରା ଏ ସମତଳଭୂମିରେ ପ୍ରବାହିତ ହୁଏ । ବାଉଁଶିଆପଡ଼ା ନୟାଗଡ଼ର ଏକ ବୃହତ ବିକାଶଶୀଳ ଗାଁ । ଏ ଗାଁରେ ସବୁବର୍ଗର ସବୁ ଜାତିର ଲୋକ ବାସକରନ୍ତି । ଯଥା- ବ୍ରାହ୍ମଣ, କରଣ, ମୁସଲମାନ, ଚାଷୀ, ତେଲି, ଗୁଡ଼ିଆ, ଧୋବା, ଭଣ୍ଡାରୀ, ହାଡ଼ି, ପାଣ, କେଉଟ, ତିଅର । ଏ ସମତଳଭୂମିର ମୁଖ୍ୟ କୃଷି

ଆଖୁ, ଧାନ, ଛଣ। ବିସ୍ତାର ଭୂମିରେ ଆଖୁଚାଷ ହୁଏ। ବାଉଁଶିଆପଡ଼ା ରାଜରାସ୍ତା ଛକ ଉପରେ ବର୍ଷସାରା ଆଖୁରସ ମିଳେ। ବାଉଁଶିଆପଡ଼ାର ଗୋଟେ ଶିରିପଣ ରହିଛି। ଏ ପଡ଼ାର ସର୍ବରାକାରଙ୍କର ରାଜଦେୟ ଖଜଣାକର ଦଶପଲ୍ଲା ରାଜାଙ୍କର ଖଜଣା କରଠାରୁ ଗୋଟାଏ ପଇସା ଅଧିକ ଥିଲା। ଏଣୁ ବାଉଁଶିଆପଡ଼ାର ସର୍ବରାକାର ଦଶପଲ୍ଲା ରାଜାଙ୍କୁ ମାନ୍ୟତା ପ୍ରଦାନ କରନ୍ତି ନାହିଁ। ଏହି ପଡ଼ାକୁ ଲାଗି ବଳରାମପୁର, ଅଭିମାନପୁର ଲାଗି ରହିଛି।

**ବ୍ୟଙ୍ଗ କବି ସତ୍ୟାନାଶ:** ଓଡ଼ିଶାର ପ୍ରଖ୍ୟାତ ବ୍ୟଙ୍ଗକବି ସତ୍ୟାନାଶ (ପ୍ରଭାକର ନାୟକ)ଙ୍କ ଜନ୍ମସ୍ଥାନ ବାଉଁଶିଆପଡ଼ା। ସତ୍ୟାନାଶ ଓଡ଼ିଶାର ଚହଳ ପକାଇଥିବା ବ୍ୟଙ୍ଗକବି। ତାଙ୍କ ବ୍ୟଙ୍ଗ ଶବ୍ଦର ଶାଣଧାର ହାସ୍ୟରସ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସାମାଜିକ ଦୁର୍ନୀତିକୁ ସମାଲୋଚନା କରେ। ସେ ଏକାଧାରରେ କବି, ପ୍ରାବନ୍ଧିକ, ଅଭିନେତା, ଦକ୍ଷ ସଂଗଠକ। ତାଙ୍କର ଶବ୍ଦରେ ନୟାଗଡ଼ ଚମତ୍କାର ନାଟ୍ୟ ସଂସ୍ଥା ଗଢ଼ି ଉଠିଛି। ଦୂରଦର୍ଶନରେ ତାଙ୍କର ଭାଷ୍ୟ ସମାଜର ବିଭିନ୍ନ ଦିଗକୁ ଆକ୍ଷେପ କରି ସଂସ୍କାର ଆଣିବାର ପରିପ୍ରକାଶ।

**ଇଟାମାଟି-ନୟାଗଡ଼ର ବାଣିଜ୍ୟ କେନ୍ଦ୍ର:** ଇଟାମାଟି ନୟାଗଡ଼ ଜିଲ୍ଲାର ପ୍ରଧାନ ବାଣିଜ୍ୟ କେନ୍ଦ୍ର। ଏଠାରେ ମାଢୁଆଳି, କଂସାରୀ, ସୁନାରୀ,ଏବଂ ଅନ୍ୟ ବର୍ଗର ବ୍ୟବସାୟୀମାନେ ବାସକରନ୍ତି। ଏହା ନୟାଗଡ଼ର ଏକ ଜନଗହଳ ସ୍ଥାନ। ଏଠାରେ ଲୁହା, ସୁନା,ଷ୍ଟିଲ, ସିଲଭର, କଂସାବାସନ ଏବଂ ତେଜରାତିର ବଡ଼ ବଡ଼ ଦୋକାନ ରହିଛି ଏବଂ ସବୁଦିନିଆ ପରିବା ବଜାର ରହିଛି। ଇଟାମାଟି ବ୍ୟବସାୟର ଏକ ପେଣ୍ଠ ସ୍ଥଳ ନୟାଗଡ଼ ଜିଲ୍ଲାର।



**ହାସ୍ୟରସର ଆଶୁକବି ଉତ୍କଳଘଣ୍ଟ ଯଦୁମଣି ମହାପାତ୍ର :** ଲୋକହାସ୍ୟ ସଞ୍ଚାରୀ ତୁରନ୍ତ ପ୍ରତ୍ୟୁତ୍ପନ୍ନମତି ନିର୍ଭୀକ ବ୍ୟଙ୍ଗକବି ତଥା ବିଦଗ୍ଧ କାବ୍ୟ ରାଘବ ବିଳାସ ଓ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରର କାବ୍ୟକାର ଉତ୍କଳ ଘଣ୍ଟ ଯଦୁମଣି ମହାପାତ୍ର ୧୭୮୧ ମସିହା ଜାନୁଆରୀ ୮ ତାରିଖରେ ଘୁମୁସର ଆଠଗଡ଼ ମଥୁରା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ଜନ୍ମ ସ୍ଥାନ ଆଠଗଡ଼ କିନ୍ତୁ କର୍ମଭୂମି ଥିଲା ନୟାଗଡ଼ ଇଟାମାଟି। ତାଙ୍କର ପିତା ମୁକୁନ୍ଦ ମହାପାତ୍ର ଏବଂ ମାତା ଶୋଭାଦେଈ। ମୁକୁନ୍ଦ ମହାପାତ୍ର ଶିଶୁପୁତ୍ର ଯଦୁମଣିଙ୍କୁ ଧରି ସପରିବାର ଆସି ଇଟାମାଟିରେ ରହିଗଲେ। ଏଣୁ ଇଟାମାଟି ହେଉଛି ଉତ୍କଳ ଘଣ୍ଟ ଯଦୁମଣି ମହାପାତ୍ରଙ୍କର ଜୀବନଚର୍ଯ୍ୟାର କର୍ମଭୂମି ବାସସ୍ଥାନ। ପ୍ରତିବର୍ଷ ଜାନୁଆରୀ ୮

ତାରିଖରେ ଇଟାମାଟି ଯଦୁମଣି କ୍ଲବ୍ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ମିଳିତ ସହଯୋଗରେ ଉତ୍କଳ ଘଣ୍ଟ କବି ଯଦୁମଣି ମହାପାତ୍ରଙ୍କର ଜୟନ୍ତୀ ଉତ୍ସବ ବୈଷୟିକ ମହାବିଦ୍ୟାଳୟର ଅଧ୍ୟକ୍ଷ ଅଶୋକ ନାୟକଙ୍କ ଅଧ୍ୟକ୍ଷତାରେ ମହା ସମାରୋହରେ ପାଳିତ ହୁଏ। ଏ କାର୍ଯ୍ୟକ୍ରମରେ ଯଦୁମଣିଙ୍କର ପ୍ରଶସ୍ତି ଗାନରେ ଦିନରୁ ରାତିଯାଏ ଲାଗିରହେ। ଏହି ଉତ୍ସବରେ ନୟାଗଡ଼ ଜିଲ୍ଲା ତଥା ବାହାରୁ ଆସିଥିବା କବିମାନଙ୍କର କବିତା ପଢ଼ିବା ସଙ୍ଗେ ସଙ୍ଗେ ପ୍ରତିବର୍ଷ ଏହି ଜାନୁଆରୀ ୦୮ ତାରିଖରେ ବିଶିଷ୍ଟ ପ୍ରଗଲ୍‌ଭ ବକ୍ତାମାନେ ଯଦୁମଣିଙ୍କର କବିତା ଓ କାବ୍ୟ ଉପରେ ଆଧାରିତ ବକ୍ତବ୍ୟ ପ୍ରଦାନ କରିଥାନ୍ତି। ଯଦୁମଣି ଜାତିରେ ବଢ଼େଇ। ସେ ଥିଲେ ସିଦ୍ଧହସ୍ତ କାଠଶିଳ୍ପୀ ଓ ସୁନ୍ଦର ଚିତ୍ରକର। ବାସ୍ତବରେ ଶିଳ୍ପୀର ଅନ୍ତଦର୍ଶନରେ କାବ୍ୟିକ ସତ୍ତା ଉପଲବ୍‌ଧି ହୁଏ। ମୂର୍ତ୍ତି ଗଢ଼ଣ ଓ ଚିତ୍ରଅଙ୍କାରେ କବିଦର୍ଶନ ରେଖାଙ୍କିତ ହୁଏ। ଏହାହିଁ ତାଙ୍କ କାବ୍ୟଦର୍ଶନର ସ୍ୱପ୍ନର ଆଧାର। ଏଣୁ ନିଜେ ସେ ତାଙ୍କର ସ୍ୱୀକାରୋକ୍ତିରେ ପ୍ରକାଶ କରନ୍ତି।

ସର୍ବଦା ଜୀବିକା ମୋ ଠକ୍‌ଠକ୍
ସଂଖାଳି ମୋର ବାରିସି ପଟକ।।

କବି ଯଦୁମଣି ମହାପାତ୍ର ଉତ୍କଳ ଘଣ୍ଟ ପଦବୀ କୌଣସି ରାଜନ୍ୟବର୍ଗଙ୍କ ଅନୁଗ୍ରହ ଉପାଧିଦତ୍ତ ପଦ ନୁହେଁ ସେ ବି ଏ ଅନୁଗ୍ରହ ଉପାଧି ଚାହୁଁ ନଥିଲେ। ସେ ନିଜେ ଉତ୍କଳଘଣ୍ଟ ପଦକୁ ନିଜ ନାମ ଆଗରେ ସ୍ଥାପନ କରିଥିଲେ। ଉତ୍କଳଘଣ୍ଟ ଯଦୁମଣିଙ୍କୁ ଓଡ଼ିଆ କାବ୍ୟ ଜଗତରେ ଗ୍ରାମରୁ ନଗର ଯାଏ କିଏ ନଜାଣେ? ଯଦୁମଣି ଦରବାରୀ ସାହିତ୍ୟ ଯୁଗରେ ତାଙ୍କର ବ୍ୟଙ୍ଗୋକ୍ତି ଚାତୁରୀର ଶବ୍ଦଭେଦୀ ତୀର କାହା ହୃଦୟକୁ ବିଦ୍ଧ ନକରିଛି ଯେ ତାଙ୍କୁ କିଏ ବା ଏତେବଡ଼ ଉପାଧି ପ୍ରଦାନ କରନ୍ତା। ତାଙ୍କର ମର୍ମଭେଦୀ ଶବ୍ଦବାଣ ତାଙ୍କୁହିଁ ଉତ୍କଳଘଣ୍ଟ କବିର ମର୍ଯ୍ୟାଦା ପ୍ରଦାନ କରିଛି। କାବ୍ୟ ଯୁଗର କବିମାନେ ନିଜ କାବ୍ୟ ସାଧନା ସିଦ୍ଧି ପାଇଁ ଜଣାଶୁଣା ଦେବଦେବୀଙ୍କର ଆଶ୍ରୟ ନେଇଥାନ୍ତି। ସେ ରାମକୃଷ୍ଣ ଜଗନ୍ନାଥ କି ମା ସାରଳା କି ଭଗବତୀ ଅବା ଚଣ୍ଡୀ ହୁଅନ୍ତୁ। ଯଦୁମଣି ହୟଗ୍ରୀବ ବିଷ୍ଣୁଙ୍କର ଆଶ୍ରୟରେ ଘଣ୍ଟପିଟା ଶବ୍ଦ କାବ୍ୟ କବିତାରେ ପ୍ରୟୋଗ କରି କାବ୍ୟଯୁଗର କାବ୍ୟକଳାରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି। ନୟାଗଡ଼ ସାହିତ୍ୟିକ ମାଟିର ବାସ୍ନା ଏତେ ମୋହାଚ୍ଛନ୍ନ କରେ ଘୁମୁସର ରାଜ୍ୟର ଦୁଇପୁତ୍ରଙ୍କୁ ରାଜପୁତ୍ର ଉପେନ୍ଦ୍ରଭଂଜ ଓ ବଢ଼େଇପୁତ୍ର ଯଦୁମଣି ମହାପାତ୍ର ଓଡ଼ିଶା ସାହିତ୍ୟଭୂମିର ଜଣେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଆରଜଣଙ୍କ ଉତ୍କଳଘଣ୍ଟ ଯଦୁମଣି ମହାପାତ୍ର। ଉପେନ୍ଦ୍ରଭଞ୍ଜଙ୍କର ରାଜଦତ୍ତ ଉପାଧି ଏବଂ ଯଦୁମଣିଙ୍କର ପ୍ରଚଣ୍ଡ କବିପ୍ରତିଭାର ନିଜକୁ ନିଜେ ଘୋଷଣା କରିଥିବା ଉତ୍କଳଘଣ୍ଟ ପଦ କାବ୍ୟ ଆଲୋଚକ ସମାଲୋଚକ ମଧ୍ୟରେ ସ୍ୱୀକୃତି ପ୍ରାପ୍ତ। ପୁନଶ୍ଚ

କବି ଯଦୁମଣି ହୟଗ୍ରୀବ ବିଷ୍ଣୁଙ୍କର ଉପାସନାରେ ତାଙ୍କର କବିତ୍ୱ ପରିପ୍ରକାଶ। ହୟଗ୍ରୀବଙ୍କର ଉପାସନା ପୀଠ ଓଡ଼ିଶା ରାଜ୍ୟରେ ବିରଳ ହେଲେହେଁ ହୟଗ୍ରୀବଙ୍କ କୃପାରୁ ତାଙ୍କର କବିତ୍ୱ ପ୍ରାପ୍ତ। ଏ ସତ୍ୟତାକୁ ଦୃଢ଼ କରିବା ପାଇଁ ଦୈନିକ ଖବର କାଗଜ ସାହିତ୍ୟ ସ୍ତମ୍ଭରେ ଉତ୍କଳ ଘଣ୍ଟ କବି ଯଦୁମଣି ଶୀର୍ଷକରେ ଡ: ଉଦ୍ଧବ ଚରଣ ନାୟକ ପ୍ରକାଶ କରିଛନ୍ତି ଯଦୁମଣିଙ୍କ ଭକ୍ତି ଆରଧନାରେ ତୋଷ ହୋଇ ହୟଗ୍ରୀବ ବିଷ୍ଣୁ ଶଙ୍ଖ ଚକ୍ର ଗଦା ପଦ୍ମ ଧାରଣ କରି ତାଙ୍କ ପୂର୍ଣ୍ଣାଙ୍ଗ ରୂପର ଦର୍ଶନ ଦେଇଛନ୍ତି। ନିର୍ଭିକ ଯଦୁମଣି ହସିଦେଇ ପଚାରିଦେଇଛନ୍ତି ପ୍ରଭୁ ତୁମ ଚାରି ହାତରେ ଶଙ୍ଖଚକ୍ରଗଦାପଦ୍ମ ରହିଛି। ଆପଣଙ୍କ ନାକ ସଦାବେଳେ ସୁଡୁବୁଡୁ ହେଉଛି। କେଉଁ ହାତରେ ସିଂଘାଣି ପୋଛୁଛନ୍ତି। ସ୍ମିତ ହସରେ ହୟଗ୍ରୀବ ବିଷ୍ଣୁ ପ୍ରସନ୍ନ ହୋଇ କହିଲେ ବସ୍ତ ତୋର ପରିହାସପୂର୍ଣ୍ଣ କଥା ଶୁଣି ମୋର ବାମ ଅଙ୍ଗରେ ବିରାଜମାନ କରିଥିବା ପଦ୍ମାଳୟା ଲକ୍ଷ୍ମୀ ଫେରିଗଲେଣି। ହେଲେ ସରସ୍ୱତୀ ତୋତେ ବରଦାୟକ ହେବେ। ତୁ ମହାନ୍ ପଣ୍ଡିତ ତଥା ଉପସ୍ଥିତ ବୁଦ୍ଧିସମ୍ପନ୍ନ ବ୍ୟକ୍ତି ଭାବରେ ପୂଜା ପାଇବୁ। ତୋଠାରେ କବିତ୍ୱ ପ୍ରକାଶ ପାଇବ। ଏଣୁ ଯଦୁମଣିଙ୍କର ହାସ୍ୟରସିକ ଭଙ୍ଗୀ ଏବଂ ମହାନ ଭକ୍ତିବତା କବିସତ୍ତା ବିଭୁଦତ୍ତ।

ଥରେ ପୁରୀରେ ଯଦୁମଣିଙ୍କ ସହ ପୁରୀର ଅନ୍ୟତମ ପଣ୍ଡିତ ଜଗନ୍ନାଥ ରାୟଗୁରୁଙ୍କର ଭେଟ ହେଲା। ସେ କହିଲେ ଯଦୁମଣି। ତୁମଠାରେ ଅନନ୍ୟ ପ୍ରତିଭା ପୁରି ରହିଛି। ପୁରୀ ଗଜପତି ରାଜା ଉତ୍ତମ ଗୁଣସମ୍ପନ୍ନ ବ୍ୟକ୍ତିଙ୍କୁ ଉପାଧି ପ୍ରଦାନ କରନ୍ତି। ତୁମେ ରାଜାଙ୍କଠାରୁ ଗୋଟିଏ ପଦବୀ ଗ୍ରହଣ କର। ଏଥିରେ ତୁମର ଯଶ ବଢ଼ିଯିବ। ଯଦୁମଣି ହସି ହସି କହିଲେ ମୋର ପଦପଦବୀ ଲୋଡ଼ା ନାହିଁ କହି ଗୀତଟିଏ ଗାଇଲେ–

ହୟଗ୍ରୀବ ମହାପ୍ରଭୁ ପ୍ରତାପେ<br>
ଥୋଡ଼ା ନୁହେଁ ଲୋଡ଼ା କରନ୍ତି ଭୂପେ<br>
ଯୋଡ଼ା ହେବା ମୋର ପ୍ରୌଢ଼ା କବିତାକୁ<br>
ବଳି ବଳି ରସଦାନୀ କର୍ଣ୍ଣକୁ<br>
ଭଲେ ଭଲ ଖଣ୍ଡେ ଖଣ୍ଡ ଯେ<br>
ନବଦୁର୍ବାଦଳ ଶ୍ୟାମଳ କୃପାରୁ<br>
ମୋ ନାମ ଉତ୍କଳ ଘଣ୍ଟ ଯେ।।

ଯଦୁମଣିଙ୍କ କବିତାର ଅର୍ଥକୁ ଜଗନ୍ନାଥ ରାୟଗୁରୁ ଠିକ୍ ଭାବେ ବୁଝିଗଲେ। କହିଲେ ତୁମେ ଠିକ୍ କହିଛ ମହାପାତ୍ରେ। ଘଣ୍ଟ ଧ୍ୱନିରେ ଯେପରି ଦୁନିଆ ଚମକି ଉଠେ ତୁମ କାବ୍ୟ ଧ୍ୱନିରେ ଚାରିଆଡ଼େ ଚମକ ସୃଷ୍ଟି ହେଉଛି। ତୁମର କାବ୍ୟ କବିତା ପ୍ରକୃତରେ ପ୍ରୌଢ଼ ବା ଶ୍ରେଷ୍ଠ। ତୁମେ ଉତ୍କଳଘଣ୍ଟ ଏଥିରେ ସନ୍ଦେହ ନାହିଁ।

ଯଦୁମଣିଙ୍କର ଚପଳ ବୟସରୁ କବିତା ଗାଇବା ଆରମ୍ଭ ହୋଇଥିଲା। ତାଙ୍କ ଗୀତିକବିତା ଲୋକମୁଖରେ ପ୍ରସାରିତ ହେଉଥିଲା। ଏକେତ ନୟାଗଡ଼ ରାଜପରିବାର ସାହିତ୍ୟ ଅନୁରାଗୀ। ରାଜଦରବାରକୁ ବିଶିଷ୍ଟ କବିମାନଙ୍କୁ ଆମନ୍ତ୍ରଣ କରାଯାଉଥିଲା। ଗଞ୍ଜାମ ଖେମଣ୍ଡି ପଣ୍ଡିତ କବି ବକ୍ରବାକ ଚକ୍ରପାଣି ପଟ୍ଟନାୟକଙ୍କୁ ରାଜା ବିନାୟକ ସିଂ ମାନଧାତା ସାହିତ୍ୟ ଦରବାରକୁ ଆମନ୍ତ୍ରଣ କରିଥିଲେ। ଚକ୍ରପାଣି ପଟ୍ଟନାୟକଙ୍କ ପ୍ରତ୍ୟେକ କଥାରେ ବକ୍ରୋକ୍ତି ପଡୁଥିବାରୁ ତାଙ୍କୁ ବକ୍ରବାକ ଚକ୍ରପାଣି ନାମରେ ଅବିହିତ କରାଯାଇଥିଲା। ବକ୍ରବାକ ଚକ୍ରପାଣିଙ୍କର ନୟାଗଡ଼ ରାଜଦରବାରକୁ ଆସି ଥିବାରୁ ଯଦୁମଣି ତାଙ୍କୁ ସାକ୍ଷାତ କରିବାକୁ ଅପେକ୍ଷା କରିଥିଲେ। ପଣ୍ଡିତ ଠାଣିରେ ରାଜବାଟୀକୁ ପ୍ରବେଶ କରୁଥିବା ବ୍ୟକ୍ତିଙ୍କୁ ଦେଖି ଯଦୁମଣି ପଚାରିଲେ ମାହାତ୍ମା ଆପଣଙ୍କ ପରିଚୟ। ସମ୍ଭ୍ରାନ୍ତ ବକ୍ରବାକ ଚକ୍ରପାଣି କିଛି ସମୟ ଏ ଅଜଣା ଯୁବକଙ୍କୁ ଚାହିଁଲେ ତାପରେ ପାଣ୍ଡିତ୍ୟ ଦେଖାଇ ଅବଜ୍ଞା ଭାବରେ କହିଲେ-"ଆମ୍ଭ ନାମ କୋଷ ଗ୍ରନ୍ଥର ବିଷ୍ଣୁ ପର୍ଯ୍ୟାୟରେ ଖୋଜିଲେ ପାଇବ, ଯଦୁମଣି କ୍ଷଣେ ଭାବି କହିଲେ -"ତେବେ ଆପଣଙ୍କ ନାମ ଗୁହ କହି ଠୋ ଠୋ ହସିବାକୁ ଲାଗିଲେ। କବି ଚକ୍ରପାଣି ବିସ୍ମିତ ହୋଇଗଲେ। ସତେତ ବିଷ୍ଣୁଙ୍କ ନାମ ଗୁହ। ଏ ନାମ ଅମର କୋଷରେ ଅଛି। ତା ପରେ ସେ କହିଲେ - ଯୁବକ ତୁମେ ଯଦୁମଣି। ଯଦୁମଣି ବିନମ୍ରରେ କହିଲେ ମହାଶୟ ଏ ଅକିଞ୍ଚନକୁ କ'ଣ ଆପଣ ଜାଣନ୍ତି। ବକ୍ରବାକ ଚକ୍ରପାଣି ପଟ୍ଟନାୟକ କହିଲେ ତୁମକୁ ଏବେ ଜାଣିଲି କିନ୍ତୁ ତୁମର କେତେଖଣ୍ଡ କବିତା ଶୁଣିଛି। ସେ ଗୁଡ଼ିକ ମୋର ଅତିପ୍ରିୟ। ଆସ ମୋ ସହିତ ରାଜ ଦରବାରକୁ ଯିବା।

ରାଜା ବିନାୟକ ସିଂ ମାନଧାତାଙ୍କ ସାହିତ୍ୟ ଦରବାର। ବକ୍ରବାକ ଚକ୍ରପାଣି ପଟ୍ଟନାୟକ ରାଜାଙ୍କୁ ଅନୁରୋଧ କଲେ ଆଜି ଆପଣଙ୍କ ରାଜ୍ୟର ଯଦୁମଣିଙ୍କ ସହିତ ମୋର ସାହିତ୍ୟ ଆଲୋଚନା ହେବ। ପାରିଷଦ ବର୍ଗ ଆଶ୍ଚର୍ଯ୍ୟ ! ବଢ଼େଇ ଛୁଆ ପଣ୍ଡିତ ଚକ୍ରପାଣିଙ୍କ ସହିତ ଆଲୋଚନା ପ୍ରତିବାଦୀ ହେବ। ପଣ୍ଡିତଙ୍କ କଥାରେ ରାଜା ରାଜିହୋଇ ଅନୁମତି ଦେଲେ। ବକ୍ରବାକ ଚକ୍ରପାଣି ପ୍ରଥମେ ପ୍ରଶ୍ନ କଲେ-

ପ୍ରମତ୍ତ କେଶରୀ କରୀ-କପୋଳକୁ
　　　　ନଚିରଇ କହିଁ ସ୍ଥିତେ ?

ଯଦୁମଣି ଉତ୍ତର କଲେ-

ମହିଷାରୀ-ରଥ ଗରନାଥ ମାଥ
　　　　କଇଳାସ ପରବତେ।

କବି ଚକ୍ରପାଣିଙ୍କ ପ୍ରଶ୍ନ-

କିମ୍ବା ପ୍ରଶଂସିବା ପ୍ରଶଂସା ପଦବୀ

ଅଛି ବୋଲି ବଳା ରାତିରେ ?

ଯଦୁମଣି ଉତ୍ତର କଲେ-

ମୂକ କରିଅଛି ଯେ ବାଳା ମଣିର

ଶ୍ରୀ ଚରଣେ ବଳା ରାତିରେ ।

କବି ଚକ୍ରପାଣି -ଯଦୁମଣିଙ୍କୁ ପାଦ ପୂରଣ କରିବାକୁ ପଦର ଅଂଶଟିଏ ପ୍ରକାଶ କଲେ-

ସେହି ସମୟରେ ବଧୂ ଶ୍ୱଶୁର ସଙ୍ଗ ଇଚ୍ଛା କରେ..... ।

ଯଦୁମଣିଙ୍କ ଉତ୍ତର ଥିଲା-

ଦ୍ରୁପଦ ନନ୍ଦିନୀ ଚାରୁ ସୁକେଶୀ

ଭୀମବୀର ସଙ୍ଗେ ସୁରତେ ରସି

ଗବାକ୍ଷ ମାର୍ଗରେ ବସି ବିରସେ

ଲୋଡ଼େ ଯେତେବେଳେ ପବନକୁ ସେ

ସେହି ସମୟରେ

ବଧୂ ଶ୍ୱଶୁର ସଙ୍ଗ ଇଚ୍ଛା କରେ ।

ପୁନର୍ବାର ଚକ୍ରପାଣି ଯଦୁମଣିଙ୍କୁ ଶେଷ ପ୍ରଶ୍ନ କଲେ-

'କାଣି ଗଣିକା' ଏ ପଦକୁ ଉଭୟ ପାର୍ଶ୍ୱରୁ ପଠନ କଲେ ଏକା ରହେ । ଏପରି ସମାନ ସଂଖ୍ୟକ ବର୍ଣ୍ଣବିନ୍ୟାସ କରି ତଦ୍ରୂପ ବାକ୍ୟ ରଚନା କର ।

ଯଦୁମଣି ଲେଖିଦେଲେ- କଡ଼ାକୁ କାଣି ଗଣିକାକୁ ଡ଼ାକ ।

ଯଦୁମଣିଙ୍କର ତୁରନ୍ତ ଉତ୍ତର ଦେବାରେ ରାଜା ବିନାୟକ ସିଂ ମାନଧାତା କହିଦେଲେ ମୋ ରାଜ୍ୟରେ ଏପରି ବିଦ୍ୱାନ ପଣ୍ଡିତ ଅଛନ୍ତି । ଖୁସି ହୋଇ ରାଜା ତରୁଣ ଯଦୁମଣିଙ୍କୁ ପାଟବସ୍ତ୍ର, ସ୍ୱର୍ଣ୍ଣକୁଣ୍ଡଳ ପ୍ରଦାନ କରି ରାଜକବିରେ ସମ୍ମାନୀତ କଲେ । ରାଜା ଏଥର ବକ୍ରବାକ ଚକ୍ରପାଣି ପଟ୍ଟନାୟକଙ୍କୁ ଯଦୁମଣିଙ୍କ ପ୍ରଶ୍ନର ଉତ୍ତର ଦେବାକୁ କହିଲେ ।

ଯଦୁମଣିଙ୍କ ପ୍ରଶ୍ନ ସ୍ୱନାମଧନ୍ୟ କବି ବକ୍ରବାକ ଚକ୍ରପାଣିଙ୍କୁ- ମୋ ପ୍ରଶ୍ନରେ ଥିବା ପ୍ରତ୍ୟେକ ପାଦର ଉତ୍ତର ଗୋଟିଏ ଶବ୍ଦରେ ଉତ୍ତର ଦେବ ।

ଛବିରେ କେଜିଣେ ନବରବିକୁ -

କେ ପେଟ ପୋଷେ ଧନୁଶର ବିକି

ଜଳଠାରେ ଭୀତି କାହାର କତି

କାର ଭୟ ନାହିଁ ଉରଗ ପ୍ରତି ।

ଏ ପଦର ପାଦମାନଙ୍କର ଉତ୍ତର ଦେଇପାରି ନଥିଲେ ବକ୍ରବାକ ଚକ୍ରପାଣି ପଟ୍ଟନାୟକ । ରାଜଦରବାରରେ ଯଦୁମଣିଙ୍କର ଆଶୁ କବି ପ୍ରତିଭାର ଭୂୟସୀ ପ୍ରଶଂସା

କରିଥିଲେ ।

ଯଦୁମଣିଙ୍କର କଥା ଉବାଚ ବକ୍ରୋକ୍ତିରେ ଚାତୁର୍ଯ୍ୟପୂର୍ଣ୍ଣ ନିର୍ଭିକ ସମାଲୋଚନା ସଂସ୍କାର ଧର୍ମୀ । ସାମନ୍ତ, ରାଜକର୍ମଚାରୀ, ରାଜା ମହାରାଜା, ସୁଧଖୋର ମହାଜନ ସମସ୍ତେ ଯଦୁମଣିଙ୍କ ଉପହାସର ସରବ୍ୟ । ତାଙ୍କ ଶବ୍ଦ ବ୍ୟଞ୍ଜନର ବାହ୍ୟ ଅର୍ଥ କଠୋର କର୍କଶ ଭିତିରି ଭାବ ଶୀତଳ କୋମଳ । ବୁଦ୍ଧିର ଚମତ୍କାର ଚତୁର ବଚନରେ ବ୍ୟଙ୍ଗ ପରିହାସ ଉପସ୍ଥାପନ କରିବାରେ ଯଦୁମଣି ଥିଲେ ଅଦ୍ୱିତୀୟ ବିଦ୍ଧାଣୀ ।

ଗଜ ପୃଷ୍ଠରେ ଥାଇ ନୟାଗଡ଼ ରାଜା ପ୍ରଶ୍ନ କଲେ ମୋ ଆଉ ତୁମ ମଧ୍ୟରେ ବଡ଼ କିଏ ?

ଯଦୁମଣି ଉତ୍ତର ଦେଲେ–ନିକିତି ତଉଲ ସାନ ବଡ଼କୁ

ଭାରି ହୁଏ ଯେହୁ ରହେ ତଳକୁ ।

ଯଦୁମଣିଙ୍କ ଘର ଛପର ପବନରେ ଉଡ଼ିଯାଇଥିଲା । ଆଉ ଯାହାଟା ଥିଲା ହନୁମାଙ୍କଡ଼ ଡିଆଁଡେଇଁରେ ମେଲା । ଯଦୁମଣି ଚାଳ ଛପରରେ ଲାଗିଥାଆନ୍ତି । ଏହି ସମୟରେ ରାଜଦରବାରରୁ ଡାକରା ଆସିଲା । ଚାଳ ଉପରୁ ଯଦୁମଣି ଉତ୍ତର ଦେଲେ ବୋପା ଶଳାର ଯୋଉ ବୁଦ୍ଧି, ପୁଅ ଶଳାର ସେଇ ବୁଦ୍ଧି । ଯଦୁମଣିଙ୍କର ଏ ଉବାଚ ରାଜାଙ୍କୁ କେତେ କଷ୍ଟ ଲାଗିଥିବ । ଯଦୁମଣିଙ୍କୁ କୈଫିୟତ୍ ଦେବାକୁ ପଡ଼ିଥିଲା । ମହାରାଜା ତୁମେ ମୋର ଅନ୍ନଦାତା ମୁଁ ଯାହାଟା କହିଛି ସେଥିରେ ଗାଳିଦେବାର କିଛି ନାହିଁ । ପବନ ଆଜ୍ଞା ମୋ ଚାଳଖଣ୍ଡିକ ଉଡ଼ାଇ ନେଇଥିଲା । ତା'ର ପୁଅ ହନୁମାଙ୍କଡ଼ ଆଉ ଯାହାଟା ଥିଲା ଭଙ୍ଗାରୁଜା କଲା । ମୁଁ ତ ଏପରି ଭାବରେ କହିଛି । ଏହିପରି ଅନେକ ବଚନିକା ଉବାଚ ଯଦୁମଣିଙ୍କର ଗାଁ ଲୋକମୁଖରୁ ଶୁଣାଯାଏ ।

ନୟାଗଡ଼ ରାଜାଙ୍କର ଭୂମି ଦାନକୁ ଆକ୍ଷେପ କରି ଯଦୁମଣି ଗାଇଛନ୍ତି- ରାଜା ଯାହା ଦେଲେ ହରଷେ / ପାଉ ପାଉ ଗଲା ବରଷେ,ଏମନ୍ତ ଭୂଇଁ ଚାକୁଣ୍ଡା ବୁଣିଲେ ଉଠଇ ନାହିଁ ।

ନୟାଗଡ଼ ରାଜାଙ୍କୁ ଏପରି କା ମଧ ଗାଇଛନ୍ତି- ନବଦୁର୍ଗ ରାଣ, ଇଷ୍ଟ ଦେବତାଙ୍କ ପରି ଆଚରଣ ।

ପ୍ରବଳ ପ୍ରତାପୀ ରଣପୁର ରାଜାଙ୍କର ଉଦ୍ଦେଶ୍ୟରେ ଆକ୍ଷେପ କରିଛନ୍ତି–

ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହସ୍ତରେ ଦେଲି ଗୋଧନ ଟେକି
ଜଡ଼ା ମଧୁରେ ଖଡ଼ା କଲି ରନ୍ଧନ
କାମୁଡ଼ା ଘୋଡ଼ାମୁଖେ ଦେଲି ଚୁମ୍ବନ

ହେ ରାଜା ! କି କଲ ?
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲ ।
ଦଶପଲ୍ଲା ରାଜାଙ୍କୁ ଆକ୍ଷେପ କରି ଗାଇଛନ୍ତି-
କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ
ରଥ ବୋଲି ଭଣ୍ଡିଦେବେ, ଶଗଡ଼େ ବସାଇ
ଭୋଗ ବୋଲି ଖଞ୍ଜିଦେବେ କଡ଼ିକିଆ ମୁଆଁ
ଧୂପ ବୋଲି ମାଡ଼ିଦେବେ ନିଆଁ ଖୁଣ୍ଟା ଧୂଆଁ ।

ଖୋର୍ଦ୍ଧା ଅନ୍ତର୍ଗତ ବଡ଼ପାରି ଗ୍ରାମର ସର୍ବରକାର ଯଦୁମଣିଙ୍କୁ ଅଣ୍ଡିରା ବାଛୁରଟିଏ ଦେବେବୋଲି କଥା ଦେଇ ନଦେବାରୁ ଯଦୁମଣି ସର୍ବରାକାରଙ୍କୁ ଆକ୍ଷେପ କରିଥିଲେ-

ଗଡ଼ ବଡ଼ପାରି ଓଡ଼ ଭ୍ରମର
ବଡ଼ ଭାଡ଼ି ଶୁଆ ମୋଡ଼ା ଭଅଁର
ହସ୍ତେ ଅଟା ବାଡ଼ି ମୁଖେ କାହାଳୀ
ନିର୍ଧୁମ ଧୂଆଁ ଦେଉଥାନ୍ତି ଗିଳି ।।

ନୟାଗଡ଼ ରାଜମାତାଙ୍କର ମୃତ୍ୟୁ ପୂର୍ବରୁ କଷି ଆମ୍ବ ଚଟଣୀ ଖାଇବାର ଇଚ୍ଛା ଥିଲା । ଆମ୍ବ ଦିନ ନଥିବାରୁ ରାଜମାତାଙ୍କର ଇଚ୍ଛା ପୂରଣ ହୋଇନଥିଲା । ସ୍ମୃତି ଶାସ୍ତ୍ର ଅନୁସାରେ ବ୍ରାହ୍ମଣମାନେ ରାଜାଙ୍କୁ ପ୍ରବର୍ତ୍ତାଇଥିଲେ ରାଣୀମାଙ୍କର ଶେଷ ଇଚ୍ଛା ପୂରଣ ନହେଲେ ତାଙ୍କ ଆତ୍ମାର ସଦ୍‌ଗତି ହେବନାହିଁ । ଏଣୁ ରାଜା ଶ୍ରାଦ୍ଧ ଦିବସରେ ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣ ଆମ୍ବ ଦାନ କରିବେ । ରାଣୀ ମା'ଙ୍କ ଶ୍ରାଦ୍ଧ ଦିବସରେ ରାଜା ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣ ଆମ୍ବ ଦାନ କରିଥିଲେ । ଯଦୁମଣି ବ୍ରାହ୍ମଣମାନଙ୍କର ଏ ଅପସଂସ୍କୃତିରେ କ୍ଷୋଭ ପ୍ରକାଶ କରିଥିଲେ । ଯଦୁମଣି ତାଙ୍କ ମା'ଙ୍କ ଶ୍ରାଦ୍ଧ ଦିବସକୁ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କଲେ । ବ୍ରାହ୍ମଣ ଭୋଜନ ପରେ ଯଦୁମଣି ବ୍ରାହ୍ମଣଙ୍କୁ ବିନମ୍ର ହୋଇ କହିଲେ, ମୋ ମା'ର ମୁଣ୍ଡବ୍ୟଥା ବେମାର ଥିଲା । ତା' କପାଳରେ ଚଟୁକାଠିରେ ଦାଗ ଦେଲେ ମୁଣ୍ଡବିନ୍ଧା ଉପଶମ ହେଉଥିଲା । ଏ କଥା ଶୁଣି ବ୍ରାହ୍ମଣମାନେ ନିରୁତ୍ତର । ଯଦୁମଣି ବ୍ରାହ୍ମଣଙ୍କ କପାଳରେ ତାତିଲା ଚଟୁ ଚେଙ୍ଗ ଦେଇଥିଲେ । ଏହା କମ୍ ରହସ୍ୟର କଥା ନୁହେଁ । ଯଦୁମଣି ନିଜ ସମାଲୋଚନାରେ ଆରାଧ୍ୟ ଦେବ ଜଗନ୍ନାଥଙ୍କୁ ମଧ୍ୟ ଛାଡ଼ି ନାହାନ୍ତି । କେତେ ଦୁଃସାହସିକ କବି ସେ-

ପ୍ରାଣ ମିତଣୀରେ ଦେଖିଲେ ରହୁଛି ଲାଖି
ଭାଲୁଣୀ ପରାଏ କାଳିଆ ମୁହଁକୁ ଚାଲୁଣୀ ପରାଏ ଆଖି ।
ଘଣ୍ଟା ରନ୍ଧାଭାତ ଗଣ୍ଡାକ ସେ ଯେବେ
ନୟନେ ଦିଅଇ ଦେଖି

ଭଣ୍ଡାରି ବୁହନ୍ତି ତାଙ୍କଠାରୁ ନେଇ
ବ୍ରାହ୍ମଣ ଦିଅନ୍ତି ଚାଖି
ଜଗତ ଯାକ  ଭାବୁଥାନ୍ତି ତାହାକୁ
କେଉଁ ଗୁଣ ତା'ର ଦେଖି
ପୁରତେ ନରତେ ବସିଛି ଯାହାର
ଦିଗୁଣ ଶାଗୁଣା ପକ୍ଷୀ
ସେପରି ଯଦୁମଣି ନିଜ ସଂଗାତୁଣୀଙ୍କୁ ପରିହାସ କରି ଗାଇଛନ୍ତି-
ଦାନ୍ତେ ବାଜନ୍ତେ ଗୁଡୁମୁଡୁ ବାଜିଲା
ଘୁଡୁଘୁଡୁ ବେଳରୁ ଓହ୍ଲାଇ ଥିଲା
ଦରାଣ୍ଡି ଆଣିଥିଲା କେରାଣ୍ଡି ମାଛ
କେ, ରାଣ୍ଡି ରାନ୍ଧିଅଛି ଦିଶଇ ସ୍ୱଚ୍ଛ ।

ଯଦୁମଣି ରସିକ ଶୃଙ୍ଗାରୀ କବିଥିଲେ । ଯଦୁମଣି ଦଶପଲ୍ଲା ଗଡ଼ର ଧୂରୀଣ ଶିଳ୍ପୀ ରଘୁନାଥ ସୂତାରଙ୍କ ଜ୍ୟେଷ୍ଠା କନ୍ୟା ଖଂଜନାକୁ ବିବାହ କରିଥିଲେ । କବି ମାନସୀ ଖଂଜନା ପରମା ସୁନ୍ଦରୀ ଥିଲେ । ନିଜ ପତ୍ନୀ ଖଂଜନାକୁ ଲକ୍ଷ୍ୟକରି କବିତା ଗାଇଥିଲେ-

ତୁ ମୋ ପ୍ରୀତି ମୋଦକି ପସରାରେ
ସନମାନଟି ତୋ ଛେନା କାକରା ।
ଇଙ୍ଗିତ ଭଙ୍ଗୀ ତୋ ସୁରସ ଆରିସା
ସମାଦର ସରପୁଳି ସାକରା ।
ଗାଳି ପଦକ ତୋ ମଧୁରସାବଳୀ
ରୁଷାଣୀ ଠାଣିଟି ବଲ୍ଲଭ କୋରା
ପରିରମ୍ଭଣ ତୋ କାନ୍ତାରୀ ଦୋରୁଅ
ମଦନ ତୃଷାହାରୀ ମନୋହରା ।
ଲାବଣ୍ୟ ଜଳଧି ଭାବହାବ ଲାଭ
ଆଶେ ଯଦୁମଣି ମନ ଟକରା ।

ଯଦୁମଣି ନିଜ ଶାଳୀକୁ ରସିକତା ଛଳରେ ପରିହାସ -

ଝଟକ ମଣିକି ଅଟକ ଯା କଲି
ଛଟକେ ତାକୁ ଦେଖିଲି
ଘୋଟକ ଶାଳାରେ ବିନୟ ହୋଇଣ
ପରିହାସ କେତେ କଲି ।

ଯଦୁମଣି ପୁରୀ ରଥଯାତ୍ରା ସମୟରେ ଜଣେ ନବଯୁବତୀ ବଧୂକୁ ଦେଖି ମୁଗ୍ଧ

ହୋଇ ଯାଇଥିଲେ। ସେ ବଧୂକୁ ଆକ୍ଷେପ କରି ଗାଇଛନ୍ତି-

ତୋର ମୁଁ ହୁଅନ୍ତି ଦିଅର ଥରେ
କଥା କହୁଥାନ୍ତି ଦି ଥର ଥରେ।
ବିଜେ କରିଛନ୍ତି ଦିଅଁ ରଥରେ
ସଂକଳପ କରି ଦିଅ ରଥରେ।

ଚତୁରୀ ଯୁବତୀ ଯଦୁମଣିଙ୍କ ହାତକୁ ଭିଡ଼ିଆଣି ରଥଚକ ଛୁଆଁଇ କହିଛି ତୁମେ ଆଜିଠାରୁ ମୋର ଦିଅର ହେଲ।

ରାଘବ ବିଳାସ କାବ୍ୟରେ କବି ଯଦୁମଣିଙ୍କ ଶୃଙ୍ଗାର ରସ ଅବତାରଣା ପ୍ରମୋଦ ବିନୋଦିନୀ। ଯେତେବେଳେ ଜରତା ବେଶ୍ୟାର ସଖୀମାନେ ରଷ୍ୟଶୃଙ୍ଗ ମୁନିଙ୍କୁ ସନ୍ତୁଷ୍ଟ କରିବାରେ ସକ୍ଷମ ହେଉଛନ୍ତି ରଷ୍ୟଶୃଙ୍ଗ ସଖୀମାନଙ୍କୁ ପ୍ରଶ୍ନ କରିଛନ୍ତି କେଉଁ ମନ୍ତ୍ର ତଥା କିପରି ସେମାନେ ସେମାନଙ୍କର ଆରାଧ ଦେବତାଙ୍କୁ ପରିତୋଷ କରିଥାନ୍ତି। ସଖୀମାନେ ଉତ୍ତରରେ ଗାଇଛନ୍ତି-

ପାଣି ଅଭିଷେକେ ତୁଷ୍ଟ ସେ ଶମ୍ଭୁ ଦେବତା
ପାଣି ମୁନିକର ଦେଇ ଦେଖାଇ ବନୀତା।

ଅର୍ଥାତ୍ ଶମ୍ଭୁ ଦେବତା ପାଣି ଅଭିଷେକରେ ତୋଷ ହୁଅନ୍ତି- ଏପରି କହି ଯୁବତୀମାନେ ମୁନିଙ୍କ ହାତକୁ ପାଣି ଭାବରେ ନେଇ ନିଜ ନିଜର ଉଚାଙ୍ଗ ବକ୍ଷରେ ଲଗାଇଛନ୍ତି।

ଉତ୍କଳ ଘଣ୍ଟ କବି ଯଦୁମଣି ମହାପାତ୍ର ରୀତିକାଳର ସର୍ବଶେଷ ଓ ସର୍ବଶ୍ରେଷ୍ଠ ବିନ୍ଧାଣୀ। କବିଙ୍କର ଶେଷ ବୟସରେ ରାଘବ ବିଳାସ ଓ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ମହାନ କାବ୍ୟଦ୍ୱୟ ରଚିତ। 'ରାଘବ ବିଳାସ' ରାମକାବ୍ୟ ଏବଂ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର କୃଷ୍ଣ କାବ୍ୟ। ଏ ଦୁଇ କାବ୍ୟରେ କବିଙ୍କର ପାଣ୍ଡିତ୍ୟ ଓ କବିତ୍ୱର ମଣିକାଂଚନର ସଂଯୋଗ ଘଟିଛି। କବି ଯଦୁମଣି ରାଘବ ବିଳାସ କାବ୍ୟକୁ ରାଣୀ କୁମୁଦିନୀଙ୍କ ଅନୁରୋଧରେ ରାଜା ବିନାୟକଙ୍କର ଯଶଗାନ ପାଇଁ 'ବୈଦେହୀଶ ବିଳାସ' ଅନୁସରଣରେ ତଥା ପତ୍ନୀ ଖଂଜନାଙ୍କ ଅଳିଯୋଗୁ ବ୍ରାହ୍ମଣଙ୍କ ଅଭିଶାପରୁ ମୁକ୍ତି ପାଇଁ ରଚନା କରିଥିଲେ। ରାଘବ ବିଳାସ କାବ୍ୟକୁ କବି ରାଜା ବିନାୟକ ସିଂ ମାନଧାତାଙ୍କ ନାମରେ ଭଣିତି କରିଥିଲେ। ଦ୍ୱିତୀୟ କାବ୍ୟ ରଚନା କାଳକୁ ଯଦୁମଣି ରାଜବଂଷରୁ ମୁହଁ ଫେରାଇ ଆଣିଥିଲେ। ଏଣୁ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ରସ ପ୍ରଧାନ, ଅଳଙ୍କାର ପ୍ରଧାନ ଓ ଭାବ ପ୍ରଧାନ, କାବ୍ୟକୁ ଶ୍ରୀକୃଷ୍ଣ ଓ ଶ୍ରୀ ଜଗନ୍ନାଥଙ୍କ ଅଭେଦ କଳ୍ପନା ପୂର୍ବକ ଶ୍ରୀ ଜଗନ୍ନାଥଙ୍କୁ ଉତ୍ସର୍ଗ କରିଛନ୍ତି। ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଶ୍ରୀକୃଷ୍ଣ ରୁକ୍ମଣୀ ସମ୍ବନ୍ଧୀୟ ରସକାବ୍ୟ। ରଥଯାତ୍ରା ସମୟରେ ଠାକୁରଙ୍କୁ ସ୍ତୁତି କରିଛନ୍ତି। ଠାକୁରଙ୍କର ରଥଯାତ୍ରା ନଅଦିନ ବିଧି ଥିଲେହେଁ ପ୍ରଥମ ଦିନ ଶ୍ରୀମନ୍ଦିରରେ ଠାକୁରଙ୍କର

ଭୋଗ ସେବା ପରେ ଠାକୁର ମାନେ ରଥାରୂଢ଼ ହୁଅନ୍ତି। ଏଣୁ ମନ୍ଦିରରେ ଆଠଦିନ ଅନୁପସ୍ଥିତ ରୁହନ୍ତି। ସେହି ଆଠଦିନ ପାଇଁ କବି ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରରେ ଆଠଟି ଛାନ୍ଦ ଆଠକଳାରେ ନିରୁପିତ ଭାବେ ସ୍ତୁତି କରି କହିଛନ୍ତି।

ପ୍ରଥମ କଳାରେ-

ଚତୁର୍ଦ୍ଦଶ ଦୁଇଦଶ ଷୋଡ଼ଷ
ଚକ୍ର ଚଳନ୍ତୁ ଜାତ ହେବା ଘୋଷ
ଶ୍ରୀ ଗୁଣ୍ଡିଚା ବାହୁଡ଼ାରେ ଚୌରାଶୀ
ଜୟଶଙ୍ଖ ପରି ଯାଏ ଆଭାସି ସେ
ଏମନ୍ତ ଉତ୍ସବ ଇଛି ଯେ
ଦିବସ ରଜନୀ ଏ ଭାବେ ଭଜନୀ
ଗ୍ରନ୍ଥକାର ହୋଇ ଅଛି ଯେ।

କବି ଶ୍ରୀକୃଷ୍ଣଙ୍କୁ ପ୍ରତ୍ୟକ୍ଷ ଜଗନ୍ନାଥ ଭାବେ ଗ୍ରହଣ କରିଛନ୍ତି। ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ୪ର୍ଥ ସ୍କନ୍ଧର ୨୦ ପଦରେ ନାରଦଙ୍କ ଉକ୍ତିରେ-

ମଞ୍ଜୁଳ ନୀଳ ନିଚୋଳ ଚୋଳ ମେଳ
କୁଚ ନୀଳାଦ୍ରୀ ଶଙ୍ଖ ଗୋଳ
ଲପତନ ଶତଦଳ କମଳ
ରତ୍ନ ସିଂହାସନ ଯତନ ଅଧର ମଧୁର ବିଶ୍ରାମ ସ୍ଥଳ
ହେ ମାଧବ !

ହେ ମାଧବ ! ରୂପସୀ ରୁକ୍ମଣୀଙ୍କର ସୁନ୍ଦର ନୀଳଶାଢ଼ୀ ସାଥୀକୁ କାଞ୍ଚୁଲା ଯେଉଁଠି ଏକତ୍ର ହୋଇଛି ସେହି କୁଚ ଯୁଗ ତୁମର ନୀଳଶୈଳ ପ୍ରାୟ। ତାଙ୍କର ମୁଖ ମଣ୍ଡଳ ତୁମର ଶତଦଳ କମଳାସନ ପରି। ତାଙ୍କର ସୁନ୍ଦର ଅଧର ମିଷ୍ଟତାର ବିଶ୍ରାମ ସ୍ଥଳ ହେତୁ ତୁମର ରତ୍ନ ସିଂହାସନ ସଦୃଶ ଅଟେ।

ଭକ୍ତ ଯଦୁମଣି ପତ୍ନୀ ଖଂଜନାଙ୍କ ସହିତ ଗରୁଡ଼ ସ୍ତମ୍ଭ ପାଖରେ ଏକମାତ୍ର ପୁତ୍ର ବିଛେଦରେ ମର୍ମାହତ ହୋଇ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଛନ୍ତି-

ନୀଳାଚଳ କଳାକାର ସତ କି ଏ ମିଛ
ଦେଲ ଯାହା ନେଲ ତାହା
ଏଥକୁ କିମ୍ପାଇଁ ମହାଦାତା ପଣେ ପତାକା ବାନ୍ଧିଛ ?
ଗୋକୁଳ କଳ ଧଉତ ଗଉରାଙ୍ଗୀଙ୍କ ମହତ୍ୱ
ନେଇଥିବା ସକାଶରୁ କରି
ଦ୍ରୁପଦ-ନୃପ-ନନ୍ଦିନୀ ମହତ୍ୱ ହର ବେଦନା
ବିନାଶନେ ହେଉ ଧନ୍ୱନ୍ତରୀ।

ପାତକୀ-ମୁକୁଟ ଶ୍ରେଣୀ ଶିରୋମଣୀ ଯଦୁମଣି
ମନତଳେ ନେଇ ପାରିବ
ଏହା ଉଦ୍ଧାର ଯେ ଯେବେ ଚିତ୍ତ ଦେଇ ପାର ଲବେ
ଦେଲେ ସିନା ଦାତା ବୋଲାଇବ ।।

ରାଜ ପରିତୋଷ ପାଇଁ କବିଙ୍କ ସୃଜନ୍ୟରେ ବିଳାସୀ ଅନୁରାଗୀ ରୀତିଯୁଗୀୟ ଦରବାରୀ କାବ୍ୟକଳାର ବ୍ୟତିକ୍ରମ ରୀତିକାବ୍ୟ ସ୍ରଷ୍ଟା ଉତ୍କଳଘଣ୍ଟ କବି ଯଦୁମଣି ମହାପାତ୍ର ଏକ ବିସ୍ମୟ। ତାଙ୍କ ତୁଣ୍ଡ ଖୋଲିଲେ ସେ ଅନର୍ଗଳ ତାଙ୍କ କାବ୍ୟ କବିତା ଚାଟୁକାର ବଚନ ଶୈଳି ନୁହେଁ ପରନ୍ତୁ ଗଣଧର୍ମୀ, ସଂସ୍କାର ଧର୍ମୀ, ସମାଲୋଚନା ଧର୍ମ ରୀତି ସଂଯୁକ୍ତ କାବ୍ୟକଳା। ତାଙ୍କର ଶବ୍ଦ ଗୁମ୍ଫନରେ ବ୍ୟାହିକ ଭାବ ଯେତେ କର୍କଶ ହେଲେ ହେଁ ତାଙ୍କର ସୃଷ୍ଟି ଚନ୍ଦନ ବାସର ଶୀତଳତା ପ୍ରଦାନ କରେ। ଯଦୁମଣି କାବ୍ୟଯୁଗର ଶେଷ ପର୍ଯ୍ୟାୟର କବି ହେଲେହେଁ ତାଙ୍କର ସୃଷ୍ଟି କାବ୍ୟଯୁଗର କାଳଜୟୀ କାବ୍ୟକଳା। ଅମ୍ଳାନ କାବ୍ୟ ପ୍ରତିଭାର ଅଧିକାରୀ ଉତ୍କଳଘଣ୍ଟ କବି ଯଦୁମଣିଙ୍କର ମହାପ୍ରୟାଣ ଘଟିଲା ୧୮୬୬ ମସିହା ଜୁଲାଇ ୨ ତରିଖରେ ମହାପ୍ରଭୁ ଜଗନ୍ନାଥଙ୍କ ଶ୍ରୀଗୁଣ୍ଡିଚା ଘୋଷଯାତ୍ରା କାଳରେ। ସେ ସମୟରେ ତାଙ୍କ ଓଠରୁ ଥରି ଥରି ଖସି ପଡୁଥିଲା ମହାକବିଙ୍କର ପୂର୍ଣ୍ଣତା ଶେଷ ଶବ୍ଦ ଗୁଡ଼ିକ 'ଓଜଶୀଳ ଭୋଜଗଜ ଜୀବନ ହରଣେ ତେଜ...' ।।

<u>ଚଳଚିତ୍ରରେ ଅଭିନେତା ଅଭିନେତ୍ରୀ:</u> ଗୋପୀନାଥ ସାମନ୍ତରାୟ ଶରଣକୂଳ ନିକଟସ୍ଥ ଚଢ଼େୟାପଲ୍ଲୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ସେ କଣ୍ଢେଇ ନାଚର ଜଣେ ଓସ୍ତାଦ୍ ଏବଂ କଳାକୁଞ୍ଜ ନିର୍ମାତା। ପ୍ରଥମେ ନୟାଗଡ଼ ସହରରେ କମଳା ଟକିଜ ନାମରେ ସିନେମା ହଲ କରିଥିଲେ। ନୟାଗଡ଼ବାସୀଙ୍କୁ ପ୍ରଥମେ ଚଳଚିତ୍ର ଦେଖାଇଥିଲେ। ସେ ମହାଲକ୍ଷ୍ମୀ ଚଳଚିତ୍ରରେ ଅଭିନୟ କରିଥିଲେ। ଚଳଚିତ୍ରରେ ଅଭିନୟ କରିଥିବା ଦ୍ୱିତୀୟ ବ୍ୟକ୍ତି ବାଞ୍ଛାନିଧି ଶତପଥି। ସେ ରାବେରା ଗ୍ରାମର। ଏକକ କଳାର ସ୍ରଷ୍ଟା ଶ୍ରୀ ଲୋକନାଥ ଚଳଚିତ୍ରରେ ଅଭିନୟ କରିଥିଲେ। ଗଣିଆ ବ୍ଲକ୍ ଅନ୍ତର୍ଗତ ଢ଼ୋଲମରା ଗ୍ରାମରେ ସଚ୍ଚିପଣ୍ଡା ଜନ୍ମଗ୍ରହଣ କରିଥିଲେ ସେ 'ପିପାସା' ଚଳଚିତ୍ରରେ ନାୟକ ଭୂମିକାରେ ଅଭିନୟ କରିଥିଲେ। ଚନ୍ଦନା ରାୟ ଓ ଅସୀମା ରାୟ ଦୁଇଭଉଣୀ 'ଧରିତ୍ରୀ' ଚଳଚିତ୍ରରେ ଅଭିନେତ୍ରୀ ଥିଲେ। ଏମାନଙ୍କ ସହିତ ଲେଖକଙ୍କର ଭଲଭାବେ ଯୋଗାଯୋଗ ଥିଲା।

<u>ବଂଶୀଧର ସାହୁ ବିଧାୟକ :</u> ବଂଶୀଧର ସାହୁ ଇଟାମାଟିରେ ଜନ୍ମଗ୍ରହଣ କରିଥିଲେ। ଜେ ଜଣେ ବିଶିଷ୍ଟ ସାହିତ୍ୟିକ ନାଟ୍ୟକାର, କବି, ଭ୍ରମଣ କାହାଣୀ ରଚୟିତା। ବଂଶୀଧର ସାହୁ ୧୯୮୦ ରାଜ୍ୟ ନିର୍ବାଚନରେ ଜାନକୀ ପଟ୍ଟନାୟକଙ୍କ ନେତୃତ୍ୱରେ ଇନ୍ଦିରା କଂଗ୍ରେସ (INC) ତରଫରୁ ନୟାଗଡ଼ ନିର୍ବାଚନ ମଣ୍ଡଳୀରୁ

ବିଜୟଲାଭ କରି ଓଡ଼ିଶା ବିଧାନ ସଭାର ବିଧାୟକ ଥିଲେ । ଜାନକୀ ପଟ୍ଟନାୟକ ସରକାରରେ ବିଧାୟକ ଥିଲାବେଳେ ପାଣିପଇଲାଠାରେ ବୃହତ୍ ଚିନି କାରଖାନା ପ୍ରତିଷ୍ଠା ହୋଇଥିଲା । ଫଳରେ ନୟାଗଡ଼ର ଆଖୁଚାଷୀମାନେ ପର୍ଯ୍ୟାପ୍ତ ଆୟତନର ଆଖୁଚାଷ କରି ଲାଭବାନ ହେଲେ । ନୟାଗଡ଼ ଜିଲ୍ଲାର ଏକମାତ୍ର ଅର୍ଥକାରୀ ଫସଲ ହେଉଛି ଆଖୁଚାଷ । ବଂଶୀଧର ସାହୁ ବିସ୍ତାର ଆଖୁଚାଷ ସଫଳତା ଆଣି ନୟାଗଡ଼ ଜିଲ୍ଲାରେ ସବୁଜ ବିପ୍ଳବ ଆଣିଥିଲେ । ତାଙ୍କ ଅମଳରେ ଇଟାମାଟିଠାରେ ଦୁଗ୍ଧଜାତ ଦ୍ରବ୍ୟର ଉତ୍ପନ୍ନ ପାଇଁ ଚିଲିଂ ପ୍ଲାଣ୍ଟ ପ୍ରତିଷ୍ଠା ହୋଇଥିଲା । ବଂଶୀଧର ସାହୁ ଶିକ୍ଷାପ୍ରେମୀ ରାଜନେତା ଥିଲେ । ଇଟାମାଟି ଅଞ୍ଚଳର ଶିକ୍ଷା ବିକାଶ ପାଇଁ ଇଟାମାଟିଠାରେ କଳାବିଭାଗ ମହାବିଦ୍ୟାଳୟ ସ୍ଥାପନ କରିଥିଲେ । ତାହା ବଂଶୀଧର ମହାବିଦ୍ୟାଳୟ ନାମରେ ନାମିତ । ବଂଶୀଧର ସାହୁ ସାହିତ୍ୟପ୍ରେମୀ ଜନପ୍ରିୟ ଲୋକ ପ୍ରତିନିଧି । ସେ ପ୍ରତିବର୍ଷ ଓଡ଼ିଆ ପଂଜିକାର ଆରମ୍ଭ ଦିନ ବିଷୁବ ସଂକ୍ରାନ୍ତିରେ ନିଜ ପ୍ରଚେଷ୍ଟାରେ ମହାବିଦ୍ୟାଳୟ ପରିସରରେ କବି, ଲେଖକଙ୍କ ରାଜ୍ୟସ୍ତରୀୟ ସମାବେଶ କରାଇ ବିଷୁବ ମିଳନରେ ଓଡ଼ିଆ ନବବର୍ଷ ପାଳନ କରୁଥିଲେ । ବଂଶୀଧର ସାହୁଙ୍କର ସ୍ୱର୍ଗବାସ ହେଲେହେଁ ତାଙ୍କର ଉତ୍ତରାଧିକାରୀମାନେ ଆଗକୁ ଏ ପର୍ବ ପାଳନ କରିଚାଲିଛନ୍ତି ।

<u>ଚମକ ପୁରୁଷ ପି.ଏଲ୍. ସୁନ୍ଦରକା:</u> ପି.ଏଲ. ସୁନ୍ଦରକାଙ୍କ ଜନ୍ମସ୍ଥାନ ଇଟାମାଟି । ଯାଦୁବିଦ୍ୟାରେ ସିଦ୍ଧହସ୍ତ ନୟାଗଡ଼ ଜିଲ୍ଲାର ଚମକପୁରୁଷ ଭାବେ ଚର୍ଚ୍ଚିତ ଯାଦୁକର ପି.ଏଲ.ସୁନ୍ଦରକା । ସେ ବିଶ୍ୱ ପ୍ରସିଦ୍ଧ ଯାଦୁକର ପି.ସି ସରକାରଙ୍କ ଯାଦୁବିଦ୍ୟାକୁ ଅନୁସରଣ ଭିତ୍ତିରେ ତାଙ୍କର ଯାଦୁବିଦ୍ୟା ପ୍ରଦର୍ଶନ କରୁଥିଲେ । ସେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଦର୍ଶକଙ୍କୁ ଚମକାଇବାରେ ପ୍ରସିଦ୍ଧ ଯାଦୁକର । ଆମ ସମୟର ଗୋପୀନାଥ ସାନ୍ତରାଙ୍କ ସିନେମା ହଲରେ ପି.ଏଲ. ସୁନ୍ଦରକା ଯାଦୁଖେଳ ଦେଖାଇବାର ପ୍ରାରମ୍ଭରେ ସେ ଦେଇଥିବା ସମୟ ଗଡ଼ିଗଲାଣି । ପି.ଏଲ ସୁନ୍ଦରକା ଯାଦୁମଂଚରେ ଆବିର୍ଭାବ ହୋଇ ଦର୍ଶକଙ୍କୁ ବିନମ୍ରରେ ସ୍ୱାଗତ କଲେ ମୁଁ ଆପଣମାନଙ୍କୁ ନିର୍ଦ୍ଦିଷ୍ଟ ସମୟ ଦେଇଥିଲି ଘଣ୍ଟା ଦେଖନ୍ତୁ ସେ ସମୟ ହେଲାତ । ଦର୍ଶକମାନେ ନିଜ ନିଜ ଘଣ୍ଟା ଦେଖି ଯାଦୁକର ଦେଇଥିବା ସମୟ ଠିକ୍ ଦେଖି ଆଶ୍ଚର୍ଯ୍ୟ ହୋଇ ମ୍ୟାଜିକ୍ ଦେଖିବାରେ ଏକଲୟୀ ହେଲେ । ତାପରେ ଯାଦୁକର ନିଜ ଶୈଳୀରେ ଯାଦୁଖେଳ ପ୍ରଦର୍ଶନ କଲେ । ଦର୍ଶକଙ୍କୁ ଶୂନ୍ୟ ବାକ୍ସ ଦେଖାଇ ପାରା ଉଡ଼ାଇଲେ । ଜିଅନ୍ତା ମଣିଷକୁ ଖଣ୍ଡାରେ ଦୁଇଖଣ୍ଡ କରିବାର ଦୃଶ୍ୟ ଦର୍ଶକଙ୍କୁ ଚମକାଇ ଥିଲା । ଏହିପରି ଅନେକ ଚମକପ୍ରଦ ଯାଦୁ ଦେଖାଇ ଦର୍ଶକଙ୍କୁ ବିସ୍ମୟ କରାଇଥିଲେ । ପି.ଏଲ.ସୁନ୍ଦରକା ଯାଦୁକଳା ପରିବେଷଣ କରି ରାଜ୍ୟରେ ଜନସେବା ପାଣ୍ଠିକୁ ଅର୍ଥଦାନ କରୁଥିଲେ । ପି.ଏଲ. ସୁନ୍ଦରକା ନୟାଗଡ଼ ଜିଲ୍ଲାର ଜଣେ ଗୌରବର ବ୍ୟକ୍ତିତ୍ୱ ଥିଲେ ।

**ଶିକ୍ଷକ ଏସ୍.ଏମ୍. ସୁଲେମାନ:** ଆଦର୍ଶ ଶିକ୍ଷକନେତା ଏସ୍.ଏମ୍. ସୁଲେମାନ ନୟାଗଡ଼ ସିନ୍ଦୁରିଆ ଗ୍ରାମରେ ଏକ ରକ୍ଷଣଶୀଳ ମୁସଲମାନ ପରିବାରରେ ଜନ୍ମ ଗ୍ରହଣ କରିଥିଲେ। ସେ ଇଂରାଜୀ ଭାଷାରେ ମାଷ୍ଟର ଡିଗ୍ରୀ ହାସଲ କରିଥିଲେ। ନିଜ ଗ୍ରାମ ମଧ୍ୟଇଂରାଜୀ ବିଦ୍ୟାଳୟଟିକୁ ଗଢ଼ି ନେବା ପାଇଁ ପ୍ରଧାନ ଶିକ୍ଷକ ଦାୟିତ୍ୱ ବହନ କରିଥିଲେ। ଦେଶ ସ୍ୱାଧିନତା ହେବାର ଏକ ଦଶନ୍ଧି ପରେ ଗ୍ରାମାଚଂଳ ଶିକ୍ଷା ବିକାଶ ପାଇଁ ଗ୍ରାମ ମାନଙ୍କରେ ପ୍ରାଥମିକ ବିଦ୍ୟାଳୟ, ମଧ୍ୟ ଇଂରାଜୀ ବିଦ୍ୟାଳୟ, ଉଚ୍ଚବିଦ୍ୟାଳୟମାନ ଗଢ଼ି ଉଠିଲା। ଏ ବିଦ୍ୟାଳୟଗୁଡ଼ିକ ଆରମ୍ଭରୁ ବେସରକାରୀ। ମାତ୍ର ସରକାରଙ୍କ କିଛିମାତ୍ରା ଅନୁଦାନରେ ଏ ବିଦ୍ୟାଳୟଗୁଡ଼ିକ ଚାଲୁଥିଲା। ସ୍କୁଲର ମ୍ୟାନେଜମେଣ୍ଟ ଗ୍ରାମବାସୀଙ୍କ ଆର୍ଥିକ ସହଯୋଗରେ ବିଦ୍ୟାଳୟଗୁଡ଼ିକ ଚାଲୁଥିଲା। ଶିକ୍ଷକ ନିଯୁକ୍ତି ସଂପୂର୍ଣ୍ଣ ବିଦ୍ୟାଳୟ ପରିଚାଳନା ଅଧୀନରେ ଥିଲା। କେତେବେଳେ ଶିକ୍ଷକଙ୍କୁ ବାହାର କରାଯାଉଥିଲା, ରଖାଯାଉଥିଲା ତାହା ସଭାପତି ଓ ସମ୍ପାଦକଙ୍କ ଅନୁକମ୍ପାର ବିଷୟ। ଶିକ୍ଷକ ମାନଙ୍କର ଚାକିରୀରେ ନିରାପତ୍ତା ନଥିଲା। ବିଦ୍ୟାଳୟ କର୍ମଚାରୀଙ୍କର ଏ ଦୁର୍ଦ୍ଦିନରେ ରାଜ୍ୟରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ, ଉଚ୍ଚ ମାଧ୍ୟମିକ ଶିକ୍ଷକ ସଂଘ ଗଢ଼ିଉଠିଲା। ନିମ୍ନମାଧ୍ୟମିକ ଶିକ୍ଷକ ସଂଘର ଶିକ୍ଷକ ଗୌରବ ବନମାଳୀ ବ୍ରହ୍ମଚାରୀ ସଭାପତି ଥିଲେ ଶିକ୍ଷକ ଜାତିର ଚିରନମସ୍ୟ। ସଂଘ ମାଧ୍ୟମରେ ବିଦ୍ୟାଳୟ ତଥା ବିଦ୍ୟାଳୟ କର୍ମଚାରୀମାନଙ୍କ ଚାକିରୀ ନିରାପତ୍ତା ଆସିଲା।

ନୟାଗଡ଼ ଶିକ୍ଷା ଜିଲ୍ଲାର ଶିକ୍ଷକମାନଙ୍କର ନେତୃତ୍ୱ ନେଇଥିଲେ ଏସ୍.ଏମ୍. ସୁଲେମାନ ସିନ୍ଦୁରିଆ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ। ସିନ୍ଦୁରିଆ ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା ଶିକ୍ଷକ ମାନଙ୍କ ସମସ୍ୟା ଆଲୋଚନାର କେନ୍ଦ୍ରସ୍ଥଳ। ନୟାଗଡ଼ ଜିଲ୍ଲାର ଆଠଟା ବ୍ଲକ୍‌ର ନିମ୍ନ ମାଧ୍ୟମିକ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ଏକତା ଆଣି ଶିକ୍ଷକ ସଂଗଠନକୁ ମଜବୁତ୍ କରିଥିଲେ ସରଳ ନମ୍ର ଗାନ୍ଧୀବାଦୀ ସମାଜସେବୀ ଏସ୍.ଏମ୍. ସୁଲେମାନ। ନୟାଗଡ଼ ଜିଲ୍ଲାର ପ୍ରତିବ୍ଲକ୍ ଜୋନ୍‌ର ନେତୃତ୍ୱ ନେଇଥିବା ଶିକ୍ଷକ ବନ୍ଧୁମାନେ ପ୍ରଫୁଲ୍ଲ ଲେଙ୍କା, ଜଗନ୍ନାଥ ବାରିକ, ଦଶପଲ୍ଲା ଖମାରୀ ସାହି ପ୍ରଧାନ ଶିକ୍ଷକ, ମାଳିସାହି ସ୍କୁଲର ଅଲେଖ ବେହେରା, ନିରଂଜନ ମିଶ୍ର, ସାରଙ୍ଗ ନାୟକ, କାଦୁଆ ଏମ୍‌ଇ ସ୍କୁଲ ପ୍ରଧାନ ଶିକ୍ଷକ କବିର ପଲେଇ, ରଣପୁରର ମହାଦେବ ମହାରଣା, ନୟାଗଡ଼ର ଭିଖାରୀ ବେହେରା, ସୋମନାଥ ସାହୁ, ଭରତ ପାତ୍ର, ବ୍ରଜକିଶୋର ବାଡ଼ତିଆ, ଓଡ଼ଗାଁରୁ ଜଗନ୍ନାଥ ପଟ୍ଟନାୟକ, ଅଇଁଠି ସେଠୀ, ଜନାର୍ଦ୍ଦନ, ଶେଷଦେବ ସାହୁ, ସିନ୍ଦୁରିଆ ଏମ୍‌ଇ ସ୍କୁଲରେ ସମବେତ ହୋଇ ବିଭିନ୍ନ ବିଦ୍ୟାଳୟରେ ଶିକ୍ଷକ ବନ୍ଧୁଙ୍କ ସମସ୍ୟା ଆଲୋଚନା କରି ଏସ୍.ଏମ୍. ସୁଲେମାନଙ୍କ ନେତୃତ୍ୱରେ ସେ ସ୍କୁଲର ପରିଚାଳନା କମିଟି ସହିତ ସରଳ ଆଲୋଚନା ମାଧ୍ୟମରେ ସମସ୍ୟା

ସମାଧାନ କରି ଦେଉଥିଲେ। ଏସ୍.ଏମ୍. ସୁଲେମାନ ଶିକ୍ଷକ ଜାତିର ନମସ୍ୟ।

ଭୁଲି ହୁଏନି ସୁଲେମାନଙ୍କ ସଂଗଠନକୁ। ସରକାରଙ୍କଠାରେ ଦାବିପତ୍ର ନେଇ ଯେତେ ଶିକ୍ଷକ ଆନ୍ଦୋଳନ ଉଠିଛି ରାଜଧାନୀରେ ସେ ସୁଲେମାନଙ୍କ ନେତୃତ୍ୱରେ ସର୍ବାଧିକ ଶିକ୍ଷକ ଆନ୍ଦୋଳନ ମଇଦାନରେ ଠିଆ ହୋଇଛନ୍ତି ଏବଂ ସରକାରଙ୍କଠାରେ ଶିକ୍ଷକ ଦାବି ପୂରଣ ହୋଇଛି। ବିଜୁ ପଟ୍ଟନାୟକଙ୍କ ସରକାର ସମୟରେ ବେସରକାରୀଙ୍କୁ ସରକାରୀକରଣ ଦାବିରେ ରାଜଧାନୀରେ ଯେଉଁ ବିପୁଳ ସମାବେଶ ଶିକ୍ଷକ ଶିକ୍ଷୟତ୍ରୀଙ୍କର ଶିକ୍ଷକ ମଞ୍ଚ ଉପରୁ ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ଗୋଟିଏ ପଦରେ ମଂଜୁରୀ ଘୋଷଣା କରିଦେଲେ ମୋର ଶିକ୍ଷକମାନେ ଆଜିଠାରୁ ସରକାରୀ ହେଲେ। ମୁଖ୍ୟମନ୍ତ୍ରୀଙ୍କର ଏ ଘୋଷଣାରେ କି ଆନନ୍ଦ ଶିକ୍ଷକମାନଙ୍କର। ସେଦିନ ଶିକ୍ଷକମାନେ ସୁଲେମାନଙ୍କୁ କାନ୍ଧରେ ବସାଇ ଶୋଭାଯାତ୍ରା କରିଥିଲେ। ଏହି ବିପ୍ଳବୀ ଶିକ୍ଷକ ନେତା ମାନଙ୍କ ଯୋଗୁଁ ଶିକ୍ଷକ ଶିକ୍ଷୟିତ୍ରୀମାନେ ପୂର୍ଣ୍ଣ ଦରମା ଓ ଅବସରକାଳୀନ ଭତ୍ତା ପାଇବାରେ ସକ୍ଷମ ହୋଇଛନ୍ତି।

କି ମହାନ ସଂଗଠନର ବ୍ୟକ୍ତିତ୍ୱ ଏସ୍.ଏମ୍ ସୁଲେମାନଙ୍କର। ଯେଉଁଦିନ ଏସ୍.ଏମ୍ ସୁଲେମାନଙ୍କର ଦେହାନ୍ତ ହେଲା ଶୋକର ଛାୟା ଆବୋରିଗଲା ଶିକ୍ଷକ ଜାତିରେ। ତାଙ୍କର ଶବ ଯେତେବେଳେ ଯାଉଥିଲା କବରପୀଠକୁ ତାଙ୍କ ପଛରେ ନୟାଗଡ଼ ଜିଲ୍ଲାଟା ଯାକର ଶିକ୍ଷକମାନେ ଶବ ଶୋଭାଯାତ୍ରାରେ ସୁଲେମାନ ଅମର ରହେ ଶବ୍ଦରେ ନୟାଗଡ଼ ଚମକି ପଡ଼ିଥିଲା। ଶିକ୍ଷକ ବନ୍ଧୁ ସୁଲେମାନଙ୍କର କି ନିସ୍ୱାର୍ଥ ସେବା।

**ସ୍ୱର୍ଣ୍ଣପଦକ ପ୍ରାପ୍ତ ଆଦର୍ଶ ଶିକ୍ଷକ ବାଳକୃଷ୍ଣ ମିଶ୍ର:**

ଆଦର୍ଶ ଶିକ୍ଷକ ବାଳକୃଷ୍ଣ ମିଶ୍ର ନୟାଗଡ଼ର ମାଛିପଡ଼ା ନିକଟସ୍ଥ ପଦ୍ମାଦେଇପୁର ବ୍ରାହ୍ମଣ ଶାସନରେ ଜନ୍ମ ଗ୍ରହଣ କରିଥିଲେ । ଅଧୁନା ନୟାଗଡ଼ ସହରର ପାଟଚଣ୍ଡୀ ମନ୍ଦିରର ବିପରୀତ ପାର୍ଶ୍ୱରେ ନିଜ ବାସଗୃହରେ ରହୁଛନ୍ତି । ସେ ଛାତ୍ରବତ୍ସଳ ଆତ୍ମୀୟ ଶିକ୍ଷକ ସୁନ୍ଦର ଶିକ୍ଷଣୀୟ ପରିବେଶ ମଧ୍ୟରେ ଶିକ୍ଷାୟତନକୁ ସଜାଇ ରଖୁଥିଲେ । ସେ ଯେଉଁ ଉଚ୍ଚ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଥିଲେ ପ୍ରବୀଣ ଛାତ୍ରୀଛାତ୍ର ଉତ୍ତାରିଛନ୍ତି । ତାଙ୍କଦ୍ୱାରା ରଚିତ 'ବ୍ୟାଧିରାଜ ବଧ' ନାଟକ, ଗୀତିନାଟ୍ୟ ଓ ଗୀତ ମାଧ୍ୟମରେ ବିଜ୍ଞାନକୁ ଲୋକପ୍ରିୟ କରାଇଥିଲେ । ସେ ୧୯୯୨ରେ ରାଜ୍ୟପାଳଙ୍କଠାରୁ ପୁରସ୍କୃତ ହୋଇଥିଲେ ଏବଂ ୧୯୯୪ରେ ରାଷ୍ଟ୍ରପତିଙ୍କଠାରୁ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ ।

**କୁଇଜ ମାଷ୍ଟର ଚନ୍ଦ୍ରବିଜୟୀ ମିଶ୍ର:** ସୁନାମଧନ୍ୟ ଶିକ୍ଷକ ରାଜ୍ୟସରକାରଙ୍କର ସ୍ୱର୍ଣ୍ଣପଦକ ପୁରସ୍କାରପ୍ରାପ୍ତ ଶିକ୍ଷକ ବାଳକୃଷ୍ଣ ମିଶ୍ରଙ୍କର ପ୍ରଥମ ପୁତ୍ର ହେଉଛନ୍ତି ଚନ୍ଦ୍ରବିଜୟୀ ମିଶ୍ର। ଚନ୍ଦ୍ର ବିଜୟୀ ମିଶ୍ର କାହା ଅଧୀନରେ ଚାକିରୀ କରି ଅର୍ଥ ଉପାର୍ଜନକୁ ପସନ୍ଦ କରୁନଥିଲେ। ସ୍ୱାଧୀନ ଜୀବନ ଅତିବାହିତ ପାଇଁ ଜନସେବାରେ



ନିଜକୁ ସାମିଲ କରାଇ ଆଇନ୍‌ଜୀବି ଜୀବନ ଆପଣେଇଲେ। ଛାତ୍ର ବୟସରୁ ମୁଁ (ଲେଖକ ନିଜେ) ତାଙ୍କୁ ଜାଣିଛି। ଆମେ ଗଢ଼ିଥିବା ନୟାଗଡ଼ ଆଂଚଳିକ ସାହିତ୍ୟ ସମାଜର ସେ ଜଣେ ବାଲୁତ କବି ଥିଲେ। ଏବେତ ଚନ୍ଦ୍ର ବିଜୟୀ ମିଶ୍ର ସାହିତ୍ୟର ପ୍ରତ୍ୟେକ ଦିଗରେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ। ସେ ଏକାଧାରାରେ କବି, ଗାଳ୍ପିକ, ପ୍ରାବନ୍ଧିକ, ବିଚକ୍ଷଣ କୁଇଜ୍ ମାଷ୍ଟର ଯାଦୁକର। ରାଜ୍ୟର ଜିଲ୍ଲା ମହୋତ୍ସବ କାର୍ଯ୍ୟକ୍ରମ ତାଙ୍କର ଚତୁର କୁଇଜ୍ ସଂଚାଳନ କାର୍ଯ୍ୟକ୍ରମରୁ ଆରମ୍ଭ ହୋଇଥାଏ। ଉତ୍ସବରେ ତାଙ୍କ କୁଇଜ୍ କାର୍ଯ୍ୟକ୍ରମରେ ଛାତ୍ରଛାତ୍ରୀ ଜ୍ଞାନୀଗୁଣୀ ମହିଳା ପୁରୁଷ ବହୁସଂଖ୍ୟାରେ ଯୋଗ ଦେଇଥାନ୍ତି। ଚନ୍ଦ୍ରବିଜୟୀଙ୍କର କୁଇଜ ପରିଚାଳନା ଶୈଳୀ, ଠାଣିରେ ଭାଗନେଉଥିବା ଶ୍ରୋତାମାନେ ଅଭିଭୂତ। ନୟାଗଡ଼ ସମ୍ବଳିତ ଅନେକ ଐତିହାସିକ ପ୍ରବନ୍ଧମାନ ତାଙ୍କ ପାଖରେ ପାଣ୍ଡୁଲିପି ଆକାରରେ ଗଚ୍ଛିତ। ଚନ୍ଦ୍ରବିଜୟୀ ମିଶ୍ର ସାହିତ୍ୟର ପ୍ରଚାର ପ୍ରସାର ପାଇଁ ନିଜ ଗୃହରେ 'ମୋ ପ୍ରେସ୍' ନାମରେ ଏକ ମୁଦ୍ରଣଶିଳ୍ପ ପ୍ରତିଷ୍ଠା କରିଥିଲେ। ସେ ନିଜେ 'ଶବ୍ଦ ସମୁଦ୍ର' ନାମରେ ଏକ ସାହିତ୍ୟ ପତ୍ରିକା ସଂପାଦନ କରୁଥିଲେ। ତାଙ୍କର ସାହିତ୍ୟ ପରିକ୍ରମାର ଗଭୀରତା ଭିତରକୁ ପ୍ରବେଶ କରିହୁଏନି। ଏହା ସତ୍ତ୍ୱେ ଚନ୍ଦ୍ର ବିଜୟୀ ଜଣେ ଦକ୍ଷ ଆଇନଜୀବି। ଏ ହେଉଛି ତାଙ୍କ ତରୁଣ ଜୀବନ ପ୍ରବାହର ଗତି ପ୍ରଗତି ଆଗରେ ତ ଅନେକ ବାଟ ବାକି ଅଛି...

**କଳାର ପୂଜାରୀ ଗୋପୀନାଥ ସାମନ୍ତରାୟ:**

ଗୋପୀନାଥ ସାମନ୍ତରାୟ ଓଡ଼ଗାଁ ମଣ୍ଡଳ ଅଧୀନସ୍ଥ ଚଢ଼େୟାପଲ୍ଲୀ ଗ୍ରାମରେ ଏକ ରକ୍ଷଣଶୀଳ ପରିବାରରେ ଜନ୍ମଗ୍ରହଣ କରିଥିଲେ । କିଶୋର ବୟସରୁ ସେ ରଙ୍ଗିଲା ନାଚୁଆ । ଗ୍ରାମ ନାଟ୍ୟମଞ୍ଚରୁ ଚଳଚ୍ଚିତ୍ର ପରଦାରେ ସେ ଉଚ୍ଚ ପ୍ରଶଂସିତ କଳାକାର । ତାଙ୍କର ଜୀବନଧାରା କଳାଯାତ୍ରାରେ କଟିଛି । ତରୁଣ ସମୟରୁ ସେ କଣ୍ଢେଇନାଟ୍ୟ ଅନୁଷ୍ଠାନ ଗଠନ କରି ରାଜ୍ୟ ତଥା ରାଜ୍ୟବାହାରେ କଣ୍ଢେଇ ନାଚ ପରିବେଷଣ କରିଥିଲେ । ଓଡ଼ିଶାର ବଡ଼ବଡ଼ ଯାତ୍ରା ଉତ୍ସବ ମାନଙ୍କରେ କଳାକୁଞ୍ଜ ପ୍ରଦର୍ଶନ କରାଇଥିଲେ । ସେ ନାଟ୍ୟକଳା ସହିତ ଏପରି ଜଡ଼ିତ ଥିଲେ ନୟାଗଡ଼ ଗୁଣ୍ଡିଚା ମଣ୍ଡପ ଉଠାଣି ଢ଼ିପରେ କମଳା ଟକିଜ ନାମରେ ଏକ ଚଳଚ୍ଚିତ୍ର ପ୍ରେକ୍ଷାଳୟ ନିର୍ମାଣ କରି ନୟାଗଡ଼ବାସୀଙ୍କୁ ଚଳଚ୍ଚିତ୍ର ପ୍ରଥମେ ଦେଖାଇଥିଲେ । ଏପରି ଜଣେ କଳାନିପୁଣ ପୁରୁଷ ଗୋପୀନାଥ ସାମନ୍ତରାୟଙ୍କୁ ନୟାଗଡ଼ ଝୁରେ ।

**ନୟାଗଡ଼ ମହାବିଦ୍ୟାଳୟ ପ୍ରତିଷ୍ଠାର ଉଦ୍ୟୋଗୀ ମନୀଷୀ - ଅକ୍ରୁର**

ମହାପାତ୍ର, ରଘୁନାଥ ମହାପାତ୍ର, ଭ୍ରମରବର ଜେନା, (S.D.O) ଗୋପାଳଚନ୍ଦ୍ର ପଟ୍ଟନାୟକ ।

ଅକ୍ରୁର ମହାପାତ୍ର: ଅକ୍ରୁର ମହାପାତ୍ର ନୟାଗଡ଼ ଅଦାଲତର ଜଣେ ଜଣାଶୁଣା ନାମୀ ଆଇନ୍‌ଜୀବି । ସେ ନୟାଗଡ଼ ବାଲୁଗାଁ ନିକଟସ୍ଥ କ୍ରିଦାସପୁର ବ୍ରାହ୍ମଣ ଶାସନରେ ଜନ୍ମଗ୍ରହଣ କରିଥିଲେ । ୧୯୪୭ ମସିହାରେ ଇଂରାଜୀରେ ଏମ୍.ଏ ଡିଗ୍ରୀ ହାସଲ କରିଥିଲେ ଏବଂ ୧୯୪୮ ରେ ବି.ଏଲ ଡିଗ୍ରୀ ଲାଭ କରିଥିଲେ । ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ ସେ ଭାବୁଥିଲେ ନୟାଗଡ଼ରେ ଯଦି ଏକ କଲେଜ ଖୋଲନ୍ତା ନୟାଗଡ଼ ଅଂଚଳର ଗରିବ ମେଧାବୀ ଛାତ୍ରଛାତ୍ରୀମାନେ ଉଚ୍ଚଶିକ୍ଷା ଲାଭକରିବାରେ ସହଜ ହୁଅନ୍ତା । ଅକ୍ରୁର ମହାପାତ୍ର ନୟାଗଡ଼ରେ ଓକିଲାତି କଲେ । ନୟାଗଡ଼ରେ କଲେଜ ଖୋଲାଯିବା ପାଇଁ ସମଗ୍ର ନୟାଗଡ଼ ସବଡ଼ିଭିଜନର ବିଜ୍ଞ ବ୍ୟକ୍ତିଙ୍କ ସହମତିରେ କଲେଜ ଏଷ୍ଟାବ୍ଲିସମେଣ୍ଟ କମିଟି ଗଠନ କରାଗଲା । ଏ କମିଟିର ସମ୍ପାଦକ ଅକ୍ରୁର ମହାପାତ୍ର ରହିଲେ । ସେ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କୁ ଏ କମିଟି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ମୁଖ୍ୟମନ୍ତ୍ରୀଙ୍କ ସମ୍ମତି ସତ୍ତ୍ୱେ ଦୁର୍ଭାଗ୍ୟ ବିଷୟ କଲେଜ ନିର୍ମାଣର କୌଣସି ଦିଗ ଆଗେଇଲା ନାହିଁ ।

୧୯୬୦ ମସିହା ପୂଜା ସମୟରେ ନୟାଗଡ଼ ସବ୍-ଡ଼ିଭିଜନରେ (S.D.O) ଭ୍ରମରବର ଜେନାଙ୍କୁ ଆଲୋଚନା ସୂତ୍ରରେ ପ୍ରସ୍ତାବ ଦେଲୁ ନୟାଗଡ଼ ସବ୍‌ଡ଼ିଭିଜନରେ ଶିକ୍ଷାବିକାଶ ପାଇଁ ନୟାଗଡ଼ କଲେଜ ଖୋଲିବା ପାଇଁ । S.D.O ଭ୍ରମରବର ଜେନା ଉତ୍ସାହ ପ୍ରକାଶ କରି ସହମତି ଦେଲେ । ନୟାଗଡ଼ ସବ୍‌ଡ଼ିଭିଜନର ଜନସାଧାରଣଙ୍କ ଦାନରେ ଗଢ଼ିଉଠିବ ନୟାଗଡ଼ କଲେଜ ଆପଣଙ୍କ ନେତୃତ୍ୱ ପ୍ରେରଣାରେ । କଲେଜ ଗଢ଼ିବାର ଅନୁକୂଳ ପର୍ଯ୍ୟାୟ । ସମଗ୍ର ଡ଼ିଭିଜନର ସରପଞ୍ଚ ଏବଂ ଗୁଣୀଲୋକଙ୍କୁ ନେଇ ୬୫ ଜଣିଆ କମିଟି ଗଠନ କରାଗଲା । ଏ କମିଟିର ସଂପାଦକ ଥିଲେ ଅକ୍ରୁର ମହାପାତ୍ର । ତା'ପରେ ୧୫ ଜଣିଆ ସଦସ୍ୟଙ୍କୁ ନେଇ କଲେଜର Governing Body ଗଠନ କରାଗଲା । Governing Bodyର ସଭାପତି ଭ୍ରମରବର ଜେନା S.D.O, ସଂପାଦକ ଅକ୍ରୁର ମହାପାତ୍ର , D.F.O ନୟାଗଡ଼ ସଦସ୍ୟ, S.D.O (P.W.D) ନୟାଗଡ଼ ସଦସ୍ୟ ଏବଂ ଅନ୍ୟ ସଦସ୍ୟ ବୃନ୍ଦ । Governing Body ନିଷ୍ପତ୍ତି ନେଲା ଜୁଲାଇ ୧୯୬୧ରେ ନୟାଗଡ଼ କଲେଜ ଆରମ୍ଭ ହେବ ।

ନୟାଗଡ଼ କଲେଜ ଗୃହ ନିର୍ମାଣ ପାଇଁ ଏଯାଏଁ ହାତରେ ପାଣ୍ଠି ନଥିଲା । ନୟାଗଡ଼ ରାଜା ସାହେବଙ୍କୁ ଅନୁରୋଧ କରାଗଲା ତାଙ୍କ ରାଜବାଟୀରୁ କିଛି ଅଂଶ ଦେଲେ କଲେଜ ଆରମ୍ଭ ହୋଇଯିବ କିନ୍ତୁ ତାହା ହେଲା ନାହିଁ । ସଂକଳ୍ପ ମନ ପଛକୁ ଫେରେନା । ନିଷ୍ପତି ହୋଇଛି ଜୁଲାଇ ୧୯୬୧ରେ କଲେଜ ଆରମ୍ଭ ହେବ । ଏ

ଯାଏଁ ଜନସାଧାରଣଙ୍କ ଦେୟ ହାତକୁ ଆସିଲା ନାହିଁ। ରକ୍ଷୀ ପର୍ବତର ଦକ୍ଷିଣ ପାଦ ଦେଶରେ କଲେଜ ନିର୍ମାଣ ଭୂମି ନିର୍ଦ୍ଧାରଣ କରାଗଲା। P.W.D କଣ୍ଟ୍ରାକ୍ଟର ବେଣୁଧର ମହାପାତ୍ରଙ୍କୁ ଅନୁରୋଧ କରାଗଲା କଲେଜ ଗୃହର ପ୍ଲିନ୍ଥ ପର୍ଯ୍ୟନ୍ତ ନିର୍ମାଣ କରିବାକୁ। କଲେଜ ଗୃହ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା Governing Body ସଦସ୍ୟ ରଘୁନାଥ ମହାପାତ୍ରଙ୍କ ଦାୟିତ୍ୱରେ। କାର୍ଯ୍ୟ ତଦାରଖ କରିବା ପାଇଁ ଜଣେ ସରକାରୀ ଓ୍ୱାର୍କ ସରକାର ନିଯୁକ୍ତି ହେଲେ। ଏ ସମୟରେ ଜନସାଧାରଣଙ୍କର ଦେୟ ପାଣ୍ଠି ହସ୍ତଗତ ହେଲା। ନିର୍ମାଣ କାର୍ଯ୍ୟ ଅଟକିଲା ନାହିଁ।

୧୯୬୧ ମେ ୧୪ରେ ଶ୍ରୀଯୁକ୍ତ ବିଜୁପଟ୍ଟନାୟକ ଦକ୍ଷିଣକାଳୀ ମନ୍ଦିର ପାଖରେ ଏକ ନିର୍ବାଚନୀ ସଭା କରିଥିଲେ। ସଭାଶେଷରେ ଅକ୍ରୁର ମହାପାତ୍ର ବିଜୁପଟ୍ଟନାୟକଙ୍କୁ ସାକ୍ଷାତ କରି ନୟାଗଡ଼ କଲେଜ ନିର୍ମାଣ ସମ୍ବନ୍ଧରେ ଆଲୋଚନା କଲେ। ବିଜୁ ପଟ୍ଟନାୟକ ସେହି ସନ୍ଧ୍ୟାରେ ଅକ୍ରୁର ମହାପାତ୍ରଙ୍କୁ ନିଜ କାରରେ ବସାଇ କଲେଜ ପରିସର ଦେଖିବାକୁ ଗଲେ। ପଛରେ ଅକ୍ରୁର ମହାପାତ୍ରଙ୍କ କାର ଓ ରଘୁନାଥ ମହାପାତ୍ରଙ୍କ କାର କଲେଜ ନିର୍ମାଣ ସ୍ଥାନକୁ ଗଲା। କାର ଲାଇଟରେ କଲେଜ ପରିସର ବିଜୁପଟ୍ଟନାୟକଙ୍କୁ ଦେଖାଇଲେ। ବିଜୁ ପଟ୍ଟନାୟକ ସେ ସ୍ଥାନକୁ ଦେଖି ଖୁସୀ ହୋଇଗଲେ ଏବଂ କଥା ଦେଲେ ଏ ହେଉଛି କଲେଜ ପାଇଁ ସୁନ୍ଦର ସୁସ୍ଥ ପରିବେଶ। ଏଠି କଲେଜ ଗଢ଼ା ହେବ। ଏ ଉତ୍ସାହରେ କଲେଜ ନିର୍ମାଣ କାର୍ଯ୍ୟ ବେଗଗାମୀ ହେଲା। କଲେଜରେ କଳା ଓ ବିଜ୍ଞାନ ଉଭୟ ବିଭାଗ ଖୋଲାଯିବାର ନିଷ୍ପତ୍ତି ନିଆଗଲା।

୧୯୬୧ ଜୁଲାଇ ୬ ତାରିଖରେ ଉଭୟ କଳା ଓ ବିଜ୍ଞାନ କ୍ଷେତ୍ରରେ କଲେଜରେ ନାମ ଲେଖା ହେବାପାଇଁ ଛାତ୍ରୀଛାତ୍ରଙ୍କ ଠାରୁ ଦରଖାସ୍ତ ଗ୍ରହଣ କରିବାର ବିଜ୍ଞାପନ ପ୍ରକାଶ ହେଲା। ଜୁଲାଇ ୨ ରେ D.P.Iଙ୍କ କଟକ ବାସଭବନରେ ଉଭୟ ବିଭାଗର ଅଧ୍ୟାପକ ନିଯୁକ୍ତି ପାଇଁ ଉଚ୍ଚଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ବ୍ୟକ୍ତିଙ୍କୁ ବଛାଗଲା। ଅଧ୍ୟାପକ ମାନଙ୍କର ନିଯୁକ୍ତି ପରେ D.P.I ମହୋଦୟଙ୍କୁ ଅନୁରୋଧ କରାଗଲା ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କୁ କଲେଜର ଅଧ୍ୟକ୍ଷ ଭାବେ ପଠାନ୍ତୁ। ଏ ପ୍ରସ୍ତାବରେ D.P.I ରାଜି ହେଲେ ନାହିଁ କାରଣ ସେ ହେଉଛନ୍ତି କନିଷ୍ଠ ଅଧ୍ୟାପକ। ଗୋପାଳ ଚନ୍ଦ୍ର ପଟ୍ଟନାୟକ ଅଧ୍ୟାପକ ନିଯୁକ୍ତିରେ ସହଯୋଗ କରୁଥିଲେ। ସେ ପୁରୀ ଫେରିଗଲେ। ଅକ୍ରୁର ମହାପାତ୍ର ଏବଂ ରଘୁନାଥ ମହାପାତ୍ର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ତାଙ୍କ ତୁଳସୀପୁର ବାସଭବନରେ ସାକ୍ଷାତ କଲେ। ସମୟ ଭଲ ଥିଲା। ବିଜୁ ପଟ୍ଟନାୟକଙ୍କୁ ନିବେଦନ କଲୁ ଆପଣଙ୍କ କଥା ରଖି କଲେଜ କାମ ଶେଷ କରି ଶିକ୍ଷାବର୍ଷ ଜୁଲାଇରେ ଆମେ କଲେଜ ଆରମ୍ଭ କରିବୁ ଛାତ୍ରୀଛାତ୍ରଙ୍କର ନାମ ଲେଖା ହେବ ଜୁଲାଇ ୬ ତାରିଖରେ। ଆଜି ତାରିଖରେ ଉଭୟ କଳା ଓ ବିଜ୍ଞାନ ବିଭାଗର ଅଧ୍ୟାପକ ନିଯୁକ୍ତି ହୋଇସାରିଲେଣି। ନିବେଦନ କରୁଛୁ ଗୋପାଳ

ଚନ୍ଦ୍ରପଟ୍ଟନାୟକ ଆମର ସ୍ଥାନୀୟ ଲୋକ ଯେ କି ପୁରୀ S.C.S College ରେ ଅଧ୍ୟାପକ ଅଛନ୍ତି । ଆମ୍ଭେ ତାଙ୍କୁ କଲେଜର ଅଧ୍ୟକ୍ଷ ପଦରେ ଚାହୁଁଛୁ । D.P.I ମନା କରୁଛନ୍ତି କାରଣ ସେ କଲେଜରେ କନିଷ୍ଠ ଅଧ୍ୟାପକ ।

Immediately sri Biju pattnaik rang the D.P.I and said " well the Nayagarh boys have come to me they are my boys, they want to take Gopal ch. Pattnaik as their principal . why donot you leave him? He replied that he was a junior man. Biju pattnaik shouted back. They want that junior man, you relieve tomorrow on the phone and intimate me that you have relieved him.

୧୯୬୧ ଜୁଲାଇ ୬ ତାରିଖରେ ନୟାଗଡ଼ କଲେଜରେ ନାମ ଲେଖାଇବା ପାଇଁ ଛାତ୍ରୀଛାତ୍ର ଅକ୍ରୁର ମହାପାତ୍ରଙ୍କ ଦୁଆରେ ଭିଡ଼ କଲେ । ସେଦିନ ପୂର୍ବାହ୍ନ ୧୧ଟା ସମୟରେ ଗୋପାଳ ଚନ୍ଦ୍ର ପଟ୍ଟନାୟକ ତାଙ୍କ ଘରେ ପହଞ୍ଚି ତାଙ୍କ ଅଫିସରେ ଛାତ୍ରୀଛାତ୍ରଙ୍କର ନାମ ପଞ୍ଜିକୃତ କଲେ । କଳାବିଜ୍ଞାନ ବିଭାଗର ଅଧ୍ୟାପକମାନେ ମଧ୍ୟ କଲେଜରେ ପ୍ରବେଶ କଲେ । ନୟାଗଡ଼ ଅଞ୍ଚଳବାସୀ ସେଦିନ କେତେ ଖୁସୀ ହୋଇନଥିବେ । ଉଦ୍ୟୋକ୍ତାମାନେ ଉତ୍ସାହୀ ହେଲ । ସେଦିନର କଲେଜ ଆଜି କେତେବଡ଼ କଲେଜ ହୋଇ ଠିଆ ହୋଇଛି ରକ୍ଷୀ ପର୍ବତ ପାଦ ଦେଶରେ । କଲେଜରେ ପ୍ରଥମ ବର୍ଷ (P.U Arts) ରାଜନୀତି ବିଜ୍ଞାନର ଛାତ୍ର ସୁବାସ ହଜାରୀ (କେଶରପୁର ଗ୍ରାମ) ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ରାଜ୍ୟରେ କଲେଜର ପ୍ରଶଂସା ଆଣିଥିଲେ । ବର୍ତ୍ତମାନ ନୟାଗଡ଼ କଲେଜ ସ୍ୱୟଂଶାସିତ କଲେଜର ସ୍ଥାନ ଅଧିକାର କରିଅଛି ।

ସହଯୋଗ ନିବନ୍ଧ ଅକ୍ରୁର ମହାପାତ୍ରଙ୍କ ଦ୍ୱାରା ଲିଖିତ
ସ୍ମରଣିକା, ନୟାଗଡ଼ ମହୋତ୍ସବ-୨୦୦୨

<u>ସବୁଜ ବିପ୍ଳବର ନାୟକ ରଘୁନାଥ ମହାପାତ୍ର:</u> ନୟାଗଡ଼ ରକ୍ଷୀ ପାହାଡ଼ ପାଦଦେଶରେ ଓଡ଼ଗାଁ ଛକ ଉପରେ ଆଧୁନିକ ରୁଚିର ଯେଉଁ ଚାଳଘରଟି ପ୍ରଥମେ ଥିଲା ସେହିଘର ହେଉଛି ରଘୁନାଥ ମହାପାତ୍ରଙ୍କର ବାସସ୍ଥାନ । ସେ ଜଣେ ସ୍ୱାଭିମାନର ଅମାୟିକ ପୁରୁଷ ତଥା କୃଷି ବିକାଶର ସବୁଜ ବିପ୍ଳବୀ । ପାଣିପଇଲା ବନ୍ଧ ନିକଟସ୍ଥ କୋଶକା ଫାର୍ମ ତାଙ୍କର କୃଷି ବିକାଶର ପଥପ୍ରଦର୍ଶକ କ୍ଷେତ୍ର । ଏହି ଫାର୍ମରେ ସେ ସବୁଜାତୀୟ କୃଷିର ପରୀକ୍ଷା ନିରୀକ୍ଷା କରି ସଫଳତା ପାଇଥିଲେ । ସେ ଜଣେ ବିଶିଷ୍ଟ କୃଷି ବିଶେଷଜ୍ଞ । ତାଙ୍କ ଫାର୍ମରେ ଫଳ ବଗିଚା, ଆଖୁଚାଷ, ଧାନଚାଷ, ଅନ୍ୟାନ୍ୟ କୃଷିର ଅଧିକ ଅମଳକ୍ଷମ ଆଧୁନିକ ପ୍ରଣାଳୀର । ଆଖୁଚାଷର ମନ୍ଦା ପ୍ରଣାଳୀ ଚାଷୀମାନଙ୍କୁ ଦେଖାଇ ଆଖୁଚାଷରେ ଅଦ୍‌ଭୁତ ପରିବର୍ତ୍ତନ

ଆଣିଥିଲେ । ତାଙ୍କ ପ୍ରକାଶ୍ୟରୁ (Y.L. Yadav)ଙ୍କ ଆକଳନରୁ ସାରା ପୃଥିବୀରେ ସବୁଦେଶ ଏକର ପିଛା ୪୦ ଟନ୍ ଆଖୁ ଆଦାୟ କରନ୍ତି କିନ୍ତୁ ତାଙ୍କ ଅନୁସାରେ ଏକର ପିଛା ୧୯୪ ଟନ୍ ଆଖୁ ଆଦାୟ ହେବା କଥା । ତେଣୁ ସେ ମହାଶୟ ପୁରୁଣା ଚାଷ ପ୍ରଣାଳୀ ଛାଡ଼ି ମନ୍ଦା ପ୍ରଣାଳୀରେ ଆଖୁଚାଷ କରି ତାଙ୍କ ସତ୍ୟତାର ସଫଳ ରୂପଦେଇ କୃଷିକ୍ଷେତ୍ରରେ ଅଭିନବ ସବୁଜ ବିପ୍ଳବ ଆଣିଥିଲେ । ଆଖୁଚାଷରେ ଏ ଉନ୍ନତ ପ୍ରଣାଳୀ ବୈଜ୍ଞାନିକ ପ୍ରଣାଳୀରୁ ନୁହେଁ ଏହା ତାଙ୍କ ଗବେଷଣାର ପ୍ରସୁତ ଫଳ ।

ନୟାଗଡ଼ର ଶିକ୍ଷାବିକାଶରେ ତାଙ୍କର ଗୁରୁତ୍ୱ ରହିଛି । ନୟାଗଡ଼ ମହାବିଦ୍ୟାଳୟର ପ୍ରାରମ୍ଭ ପ୍ରକାଶକ ସେ ଅଟନ୍ତି । ନିଜେ ଠିଆ ହୋଇ ନୟାଗଡ଼ ମହାବିଦ୍ୟାଳୟର ବିଲ୍‌ଡିଂ ଠିଆ କରାଇଛନ୍ତି । ସେ ନୟାଗଡ଼ରେ ବୃହତ୍ କରତକଳ ସ୍ଥାପନ କରିଥିଲେ । ସେ ନୟାଗଡ଼ ବିକାଶର ଜଣେ ଅଗ୍ରଣୀ ପୁରୁଷ ।

<u>**କୀର୍ତ୍ତିମାନ ପ୍ରଶାସକ ଭ୍ରମରବର ଜେନା (S.D.O) ନୟାଗଡ଼:**</u>

୧୯୬୦-୬୧ ମସିହାରେ ଭ୍ରମରବର ଜେନା ନୟାଗଡ଼ ସବଡ଼ିଭିଜନର ଏସ୍.ଡ଼ି.ଓ । ତାଙ୍କର ପ୍ରଶାସନିକ ସମୟରେ ନୟାଗଡ଼ର ବୁଦ୍ଧିଜୀବିମାନେ ନିଷ୍ପତ୍ତି ନେଇଥିଲେ ଉଚ୍ଚଶିକ୍ଷାର ବିକାଶ ପାଇଁ ନୟାଗଡ଼ରେ ମହାବିଦ୍ୟାଳୟ ସ୍ଥାପନ କରିବା ପାଇଁ । ଏ କ୍ଷେତ୍ରରେ ପ୍ରମୁଖ ଭୂମିକା ବହନ କରିଥିଲେ ଆଇନ୍‌ଜୀବି ଅକ୍ରୁର ମହାପାତ୍ର, କୃଷିବିତ୍ ରଘୁନାଥ ମହାପାତ୍ର । ଏ ସଂକ୍ରାନ୍ତରେ ଏସ୍.ଡ଼ି.ଓ ଭ୍ରମରବର ଜେନାଙ୍କ ସହ ଆଲୋଚନା ହେଲା । ଏ ସାଧୁ ପ୍ରସ୍ତାବକୁ ଏସ୍.ଡ଼ି.ଓ ଭ୍ରମରବର ଜେନା ମହୋଦୟ ଗ୍ରହଣ କରିନେଲେ । ନୟାଗଡ଼ ବିସ୍ତାର ଇଲାକା ମଧ୍ୟରେ ଉଚ୍ଚଶିକ୍ଷା ବିକାଶ ଦିଗରେ କଲେଜ ନାହିଁ । ଏ ଅଞ୍ଚଳ ପାଇଁ ଏକ ମହାବିଦ୍ୟାଳୟ ଗଢ଼ାହେବା ନିହାତି ଜରୁରୀ । ଏସ୍.ଡ଼ି.ଓ ମହୋଦୟ କଲେଜ ନିର୍ମାଣର ସରଳ ନକ୍‌ସା ଆଙ୍କିଲେ । ସବଡ଼ିଭିଜନ ଜନସାଧାରଣଙ୍କ ଅନୁଦାନରେ ଏ କଲେଜ ଗଢ଼ାହେବ । ଏଥିପାଇଁ ସର୍ବସାଧାରଣ ଲୋକ ଅବଗତ ହେବା ଜରୁରୀ । ସମଗ୍ର ନୟାଗଡ଼ ଅଞ୍ଚଳର ସରପଞ୍ଚ ମାନଙ୍କୁ ନିର୍ଦ୍ଦେଶନାମା ହେଲା ନୟାଗଡ଼ କଲେଜ ନିର୍ମାଣରେ ଜନସାଧାରଣଙ୍କୁ ସଂପୃକ୍ତି କରାଯାଉ । ଜନସାଧାରଣ ନୟାଗଡ଼ରେ କଲେଜ ହେବାପାଇଁ ଉତ୍ସାହୀ ହେଲେ । ଏଣୁ ପ୍ରଶାସକ ସୂତ୍ର ବାହାର କଲେ ପ୍ରଜାଙ୍କର ଖଜଣା ଦେୟ ଦ୍ୱିଗୁଣ ହେବ । ସର୍ବରାକାର ମାନେ ସରକାର ନିର୍ଦ୍ଧାରିତ ଖଜଣା ସରକାରୀ ପାଣ୍ଠିକୁ ପୈଠ କରିବେ ଏବଂ ସେହି ପରିମାଣର ଅର୍ଥ ପ୍ରଜାଙ୍କ ଅନୁଦାନ ସ୍ୱରୂପ କଲେଜ ପାଣ୍ଠିରେ ପୈଠ କରିବେ । ଏ ପ୍ରସ୍ତାବ ସାଦରେ ଗ୍ରହଣ କରାଗଲା । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ସ୍ୱତନ୍ତ୍ର କଲେଜ ଅନୁଦାନ ରସିଦ୍ ପୁସ୍ତିକା ପ୍ରତ୍ୟେକ ସର୍ବରାକାରଙ୍କୁ ଧରାଇ ଦିଆଗଲା । ଜନସାଧାରଣଙ୍କଠାରୁ କଲେଜ ଦାନ ପରିମାଣ ତହସିଲକୁ ଆସିଲା । ନୟାଗଡ଼ କଲେଜର ଗଭର୍ଣ୍ଣିଂବଡ଼ି ଗଠନ

ହେଲା । ୧୫ ଜଣ ସଦସ୍ୟଙ୍କୁ ନେଇ । ଗଭର୍ଣ୍ଣିଂବଡ଼ିର ସଭାପତି ପ୍ରଶାସକ ଭ୍ରମରବର ଜେନା (ଏସ୍.ଡ଼ି.ଓ) ସଂପାଦକ ଅକ୍ରୁର ମହାପାତ୍ର (ଆଇନ୍‌ଜୀବି) ସଦସ୍ୟ (ଡ଼ି.ଏଫ୍.ଓ) ନୟାଗଡ଼ ସଦସ୍ୟ (ପି.ଡ଼ବ୍ଲ୍ୟୁ.ଡ଼ି ଏସ୍.ଡ଼ି.ଓ) ନୟାଗଡ଼ ଏବଂ ଅନ୍ୟ ସଦସ୍ୟମାନେ । କଲେଜ ଗୃହ ନିର୍ମାଣ ଦାୟିତ୍ୱରେ ରହିଲେ ସଦସ୍ୟ ରଘୁନାଥ ମହାପାତ୍ର । ନିର୍ମାଣ କାର୍ଯ୍ୟ ତଦାରଖ କରିବା ପାଇଁ ପ୍ରଶାସନ ତରଫରୁ ଜଣେ ଓ୍ୱାର୍କ ସରକାର ନିଯୁକ୍ତି ହେଲା । ନୟାଗଡ଼ ମହାବିଦ୍ୟାଳୟ ଗଢ଼ି ଉଠିଲା । ୧୯୬୧ ଜୁଲାଇ ୬ରେ ଶିକ୍ଷାବର୍ଷ ଆରମ୍ଭରେ ନୟାଗଡ଼ ମହାବିଦ୍ୟାଳୟର ଦୁଇ ବିଭାଗରେ (କଳା ଓ ବିଜ୍ଞାନ) ଛାତ୍ରଛାତ୍ରୀଙ୍କର ଶିକ୍ଷା ଆରମ୍ଭ ହେଲା । ଇତ୍ୟବସରରେ ନୟାଗଡ଼ ମହାବିଦ୍ୟାଳୟ ତା'ର ରୌପ୍ୟଜୟନ୍ତୀ ଏବଂ ସୁବର୍ଣ୍ଣଜୟନ୍ତୀ ପାଳନ କରିସାରିଲାଣି । କିର୍ତ୍ତୀମାନ ପ୍ରଶାସକ ତତ୍‌କାଳୀନ ଏସ୍.ଡ଼ି.ଓ ଭ୍ରମରବର ଜେନାଙ୍କର ସ୍ମରଣାର୍ଥେ ନୟାଗଡ଼ ମହାବିଦ୍ୟାଳୟ ପରିସର ଦ୍ୱାରଦେଶରେ ତାଙ୍କର ପୂର୍ଣ୍ଣ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି ।

**କାଳଜୟୀ ପୁରୁଷ ପ୍ରବୀଣ ଅଧ୍ୟକ୍ଷ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକ:** ନୟାଗଡ଼ ମହାବିଦ୍ୟାଳୟର ପ୍ରବୀଣ ଅଧ୍ୟକ୍ଷ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକ ମହୋଦୟଙ୍କ ଜନ୍ମସ୍ଥାନ ନୟାଗଡ଼ କଳାହାଣ୍ଡି (ଝୁମ୍ପୁରୀ) ଗ୍ରାମରେ । ସେ ବିଶ୍ୱବିଦ୍ୟାଳୟ ଉପାଧି ପାଇବା ପରେ ପୁରୀ (ଏସ୍.ସି.ଏସ୍) ମହାବିଦ୍ୟାଳୟରେ ଅଧ୍ୟାପକ ଥିଲେ । ନୂତନ ପ୍ରତିଷ୍ଠା ହେଉଥିବା ନୟାଗଡ଼ ମହାବିଦ୍ୟାଳୟର ସୁପରିଚାଳନା ଦୃଷ୍ଟିରୁ ନୟାଗଡ଼ ବୁଦ୍ଧିଜିବୀ ମାନ୍ୟବର ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକଙ୍କୁ ନିବେଦନ କଲାରୁ ସରକାରୀ ସ୍ତରରୁ ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କୁ ନୟାଗଡ଼ ମହାବିଦ୍ୟାଳୟକୁ ଅଧ୍ୟକ୍ଷ ପଦରେ ପଠାଇଥିଲେ । ପ୍ରିନ୍‌ସିପାଲ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ନୟାଗଡ଼ କଲେଜ ଗଢ଼ି ଉଠିଲା । କଲେଜର ଉଭୟ ବିଭାଗ କଳା ଏବଂ ବିଜ୍ଞାନ ଅଧ୍ୟକ୍ଷଙ୍କ ସମଦୃଷ୍ଟିରେ ବିକଶିତ ହେଲା । ବିଶ୍ୱବିଦ୍ୟାଳୟରୁ ଉଚ୍ଚସ୍ଥାନ ଅଧିକାର କରିଥିବା ପ୍ରବୀଣ ଅଧ୍ୟାପକଙ୍କୁ ସେ ନିଯୁକ୍ତି ଦେଉଥିଲେ । ୧୯୬୨ ମାର୍ଚ୍ଚରେ ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ନୟାଗଡ଼ ମହାବିଦ୍ୟାଳୟକୁ ୨ଲକ୍ଷ ଟଙ୍କା ବିଲଡ଼ିଂ ଗ୍ରାଣ୍ଟ ମଂଜୁର କରିଥିଲେ । ତାଙ୍କର ନିଷ୍ଠାର ହେପାଜତରେ ରକ୍ଷୀ ପର୍ବତର ଦକ୍ଷିଣ ପାଦଦେଶରେ (Flying Aeroplane style)ରେ ନୟାଗଡ଼ ମହାବିଦ୍ୟାଳୟ ଛାତ୍ରଛାତ୍ରୀ ଉ ାରିବାରେ ବ୍ୟସ୍ତ ।

ଅଧ୍ୟକ୍ଷ ମହୋଦୟଙ୍କ ଦୂରଦୃଷ୍ଟିରେ କଲେଜର ବିରାଟ ପରିସର ମଧ୍ୟରେ ସ୍ୱତନ୍ତ୍ର ବିଜ୍ଞାନ ବିଭାଗ ସହିତ ଯୋଡ଼ି ହୋଇ ରହିଥିବା କେମେଷ୍ଟ୍ରି, ଜୁଲୋଜି, ବଟାନି ଲାବୋରେଟୋରୀ, ଶିକ୍ଷାଦାନ ଶ୍ରେଣୀଗୃହ ଗୁଡ଼ିକ ବେଶ୍ ଆକର୍ଷଣୀୟ ହୋଇଥିଲା ।

୧୯୬୨ ମସିହା ଆରମ୍ଭ ବେଳକୁ କଲେଜ ବିଲିଡ଼ିଙ୍ଗ ପ୍ରାୟତଃ ପୂର୍ଣ୍ଣାଙ୍ଗ ଅବସ୍ଥାକୁ ଆସିଗଲାଣି। ୧୯୬୨ ଫେବ୍ରୁଆରୀ ୧୦ରେ ରାଜ୍ୟର ମହାମାନ୍ୟ ରାଜ୍ୟପାଳ ଅଯୋଧ୍ୟାନାଥ ଖୋସଲା କଲେଜ ବିଲିଡ଼ିଙ୍ଗ ଉଦ୍‌ଘାଟନ କରିଥିଲେ। ଏ ଉଦ୍‌ଘାଟନୀ ସଭାରେ ନୟାଗଡ଼ ଅଂଚଳର ଜନସାଧାରଣ ବହୁଳ ଭାବରେ ଯୋଗଦାନ କରି ଉତ୍ସବକୁ ସାଫଲ୍ୟ ମଣ୍ଡିତ କରିଥିଲେ। ଜନସମାଗମର ଉତ୍ସାହକୁ ଦେଖି ମହାମାନ୍ୟ ରାଜ୍ୟପାଳ ଖୁସି ହୋଇଯାଇଥିଲେ। ଜ୍ଞାନୀ ଗୁଣୀ ଅଧ୍ୟକ୍ଷ ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ନୟାଗଡ଼ ମହାବିଦ୍ୟାଳୟକୁ ଗଢ଼ି ନେବାର ଉଦ୍ୟମକୁ ପ୍ରଶଂସା କରିବାରେ ଭାଷା ନିଅଣ୍ଟ ପଡ଼େ। ଏତେବଡ଼ ଶିକ୍ଷା କ୍ଷେତ୍ରକୁ ସୁନ୍ଦରକରି ଠିଆ କରାଇ ନୟାଗଡ଼ ଶିକ୍ଷା ଦିଗରେ ସେ ମହୋଦୟ ଏକ ଦିଗବାରେଣୀ ସ୍ତମ୍ଭ। ଯାହାଙ୍କ ପ୍ରତିଭା ପ୍ରବାହରେ ନୟାଗଡ଼ ମହାବିଦ୍ୟାଳୟରେ ଶିକ୍ଷାର ସବୁ ବିଭାଗ ଖୋଲିଯାଇଛି। ନୟାଗଡ଼ ମହାବିଦ୍ୟାଳୟ ସ୍ୱୟଂଶାସିତ ମହାବିଦ୍ୟାଳୟର ପ୍ରତିଷ୍ଠା ନେଇଛି। ଏପରିକି ଏହି ମହାବିଦ୍ୟାଳୟର ଛାତ୍ର ଛାତ୍ରୀ ଏମ୍.ଏ ଏବଂ ଏମ୍.ଏ.ସି ଉପାଧି ହାସଲ କରି ପାରୁଛନ୍ତି।

**ଲୋକଙ୍କ ଚକ୍ଷୁ ଚିକିତ୍ସକ ମହାପ୍ରାଣ ଅରବିନ୍ଦ ଦାସ:** ଚକ୍ଷୁ ଚିକିତ୍ସକ ଅରବିନ୍ଦ ଦାସଙ୍କର ଜନ୍ମସ୍ଥାନ ନୟାଗଡ଼ ନିକଟସ୍ଥ କଳାହାଣ୍ଡି (ଝୁମ୍ପୁରୀ)ଗ୍ରାମରେ। ତାଙ୍କର ପିତା ନୃସିଂହ ଚରଣ ଦାସ ସୁନାମଧନ୍ୟ ପ୍ରଧାନ ଶିକ୍ଷକ ଥିଲେ। ଛାତ୍ରମାନେ ଶିକ୍ଷକମାନେ ତାଙ୍କ ବୋଉଙ୍କୁ ପାଳିଅପା ବୋଲି ଡ଼ାକୁଥିଲେ। ପିତାମାତା ଗୁଣୀ ପୁଅକୁ କୋଳରେ ପାଇ କୃତ୍ୟ କୃତ୍ୟ ହେଉଥିଲେ। ଚକ୍ଷୁ ଚିକିତ୍ସକ ଅରବିନ୍ଦ ଦାସ ସରକାରୀ ଚିକିତ୍ସାଳୟରେ ଚିକିତ୍ସକ ହେଲେ, ସରକାରୀ ସମୟ ବାଦ ଅନ୍ୟସମୟରେ ରୋଗୀ ସେବାରେ ନିଜକୁ ନିୟୋଜିତ କରିଥାନ୍ତି। ତାଙ୍କ ପକ୍ଷରେ ସମ୍ଭ୍ରାନ୍ତ ଶ୍ରେଣୀୟ ହୁଅନ୍ତୁ ଅବା ଅତି ସାଧାରଣ ଖଟିଖିଆ ଲୋକଟିଏ ହେଉ ଏକା ଆଦରରେ ରୋଗୀର ଚିକିତ୍ସା କରନ୍ତି। ରୋଗୀ ଠାରୁ ପାଉଣା ଗ୍ରହଣ କରନ୍ତି ନାହିଁ। ତାଙ୍କର ଧୀର ବଚନରେ ରୋଗୀମାନେ ତୃପ୍ତ। ନୟାଗଡ଼ ଚିକିତ୍ସାଳୟରେ ଯେତେ ଚିକିତ୍ସକ ଅଛନ୍ତି ଶିଶୁ ଚିକିତ୍ସା ଠାରୁ ଅନ୍ୟ ରୋଗର ଚିକିତ୍ସକ ନିଜ ବାସଗୃହରେ ରୋଗୀଙ୍କୁ ଦେଖିଲା ବେଳେ ରୋଗୀଠାରୁ ବିପୁଳ ଅର୍ଥ ଶୋଷଣ କରନ୍ତି। କିନ୍ତୁ ଅରବିନ୍ଦ ଦାସ ଚିକିତ୍ସକ ମହୋଦୟ ରୋଗୀଙ୍କୁ ମୁକ୍ତ ଚିକିତ୍ସା କରିଥାନ୍ତି। ରୋଗୀଠାରୁ ଅର୍ଥପାଇବା ଲାଳସା ତାଙ୍କର ଆଦୌ ନାହିଁ। ସେ ମହାପ୍ରାଣ ଆଦର୍ଶ ଲୋକସେବାର ଚକ୍ଷୁ ଚିକିତ୍ସକ ରୋଗୀଙ୍କର ଅତି ଆପଣାର।

**ବୈଷ୍ଣବ ସାହିତ୍ୟର ପ୍ରତିଭାବାନ ପୁରୁଷ ଗାଛିକ, ଏବେର ବିଷ୍ଣୁଶର୍ମା ଆଦର୍ଶ ପ୍ରଧାପକ ନିମାଇଁ ପଟ୍ଟନାୟକ:** ବୈଷ୍ଣବ ସାହିତ୍ୟର ପ୍ରତିଭାବାନ ପୁରୁଷ ଗାଛିକ, ଆଦର୍ଶ ପ୍ରଧାପକ ନିମାଇଁ ପଟ୍ଟନାୟକଙ୍କୁ ନୟାଗଡ଼ ଅଂଚଳ ତଥା ବିଶ୍ୱବିଦ୍ୟାଳୟ ସ୍ତରରେ କିଏ ବା ନ ଜାଣେ। ବାହାରେ କୌଣସି ସଭାରେ ଭାଷଣ



ଦେଲାବେଳେ, ଶ୍ରେଣୀ ପ୍ରକୋଷ୍ଠରେ ପାଠଦାନ ବେଳେ ଯେବା ସେ ପାଖ ଦେଇ ଯାଏ ଅଟକି ଭାଷଣ ଶୁଣେ। ଏପରି କି ତାଙ୍କର ଶିକ୍ଷାଦାନ କୋଠରୀକୁ ଅନ୍ୟ ବିଭାଗର ଛାତ୍ରଛାତ୍ରୀ ଆସି ନିରବରେ ଶୁଣନ୍ତି। ନିମାଇଁ ପଟ୍ଟନାୟକଙ୍କ ଶିକ୍ଷାଦାନ ଗୃହ (pin drop silent) ସଦାକାଳେ। କି ଯାଦୁର କହିବା ଚାତୁରୀ ତାଙ୍କ ପାଖରେ ଥିଲା ଯେ କେହି ବଶ ହୁଏ।

ପ୍ରତିଭାପୁରୁଷ ନିମାଇଁ ପଟ୍ଟନାୟକ ନୟାଗଡ଼ ଜିଲ୍ଲାର ବଉଳସାହି ଗ୍ରାମରେ ରକ୍ଷଣଶୀଳ କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ୧୯୩୭ ମସିହା ଚୈତ୍ର କୃଷ୍ଣ ଚତୁର୍ଦ୍ଦଶୀ ନିଶାର୍ଦ୍ଧ ଶୁକ୍ରବାରରେ ମାତା ନିଶାମଣୀ ପିତା ମାଗୁଣୀ ଚରଣ ପଟ୍ଟନାୟକ ବୈଷ୍ଣବଧର୍ମୀ ଦମ୍ପତିଙ୍କ କୋଳରେ। ଆଦର୍ଶ ଶିକ୍ଷକ ପିତା ବୈରାଗୀ ଚରଣଙ୍କ ପ୍ରେରଣାରେ ପ୍ରାଥମିକ କାଳରୁ ରାଧାନାଥ, ଗଙ୍ଗାଧର, ମଧୁସୂଦନ, ବିଷ୍ଣୁଶର୍ମା କଥାଗ୍ରନ୍ଥ, ଦଣ୍ଡିଙ୍କ ଦଶକୁମାର ଚରିତ, ଅବୋଲକରା କାହାଣୀ ପାଠ କରି ସାହିତ୍ୟ କ୍ଷେତ୍ରରେ ମଜ୍ଜି ଯାଉଥିଲେ। ଦଶମ ଶ୍ରେଣୀରେ ଅଧ୍ୟୟନ କାଳରେ 'କୁସୁମ' ପତ୍ରିକା ସଂପାଦନ କରିଥିଲେ। ସେ ରେଭେନ୍‌ସା ମହାବିଦ୍ୟାଳୟରୁ 'ସ୍ନାତକୋତ୍ତର' ଉପାଧି ଲାଭକରି ୧୯୬୧ ମସିହାରେ ନୂତନ ନୟାଗଡ଼ ମହାବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଥମ ଅଧ୍ୟାପକ ଭାବେ ଯୋଗଦାନ କରିଥିଲେ। ପ୍ରଖ୍ୟାତ ଗବେଷକ ଡ. ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଂସ୍ପର୍ଶରେ ଆସି ସାରଳା ମହାଭାରତର ଶୁଦ୍ଧକରଣ କରିଥିଲେ।

ନିମାଇଁ ପଟ୍ଟନାୟକ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ଜୀବନ ଗୀତିକାର କଥା ସାହିତ୍ୟର ଜଣେ କୁଶଳୀ ବିନ୍ଧାଣୀ-

ଚାନ୍ଦ ଯେବେ ମରିଯାଏ<br>
ନୀଳିମ ଭଗାରେ<br>
ଆକାଶ ମୁକୁତା ଛାତିରେ<br>
ସେ କି ତାକୁ ଠେଲି ଦେଇ ପାରେ ?<br>
ଅଳି ଯଦି ମରିଯାଏ<br>
ନରମ ସନ୍ଧ୍ୟାରେ<br>
କୁସୁମର କୋମଳ ଛାତିରେ<br>
ସେ କି ତାକୁ ପର କରିପାରେ ?<br>
ମନ ଯଦି ମରିଯାଏ

ବ୍ୟଥା ନିରାଶରେ
ମଧୁଭରା ଦେହ ଉପକୂଳେ
ସେକି ତାକୁ ଛାଡ଼ି ଦେଇ ପାରେ ?
ମୁଁ ଯଦି ମରିଯାଏ
ନିଥର ରାତିରେ
ଦିଗହରା ବଇଁଶୀର ବିଭୋର ବେଳାରେ
ତୁମର ସେ ନିଥର ଛାତିରେ
ତୁମେ କିବା ଠେଲିଦେବ ମୋତେ ଅବହେଳେ ?
ଜୀବନଟା ଜ୍ୟାମିତି ନୁହେଁ ଯେ କେଉଁ ଉପପାଦ୍ୟ ବଳରେ
ଲେଖିହେବ ତାର ସଂଜ୍ଞା ।
ଜୀବନଟା ନଈ ନୁହେଁ ଯେ ସ୍ୱଚ୍ଛନ୍ଦରେ ବହିଯାଇ
ମିଶିଯିବ ନୀଳ ସାଗରରେ ।
ଜୀବନ ବି ସଂଗୀତ ନୁହେଁ ଯେ ତାର ପଦ୍ମତୋଳାରେ
ବଶ କରିହେବ ଚାରିପାଖର ସାପକୁ ।
ଢ଼େର ଢ଼େର କଥା କୁହାଗଲାଣି ଏ ଜୀବନ ବିଷୟରେ-
ରାଶିରାଶି କବିତା, ଗଳ୍ପ, ଉପନ୍ୟାସ ଓ ନାଟକରେ
ତଥାପି ଲାଗୁଛି ତା'ର ରହସ୍ୟର ସବୁଦ୍ୱାର ଏ ଯାଏଁ ଖୋଲି ନାହିଁ....
ଲାଗୁଛି ଆହୁରି ଅନେକ କଥା ବାକି ଅଛି ।

ପ୍ରଧାପକ ନିମାଇଁ ପଟ୍ଟନାୟକ ଏକାଧାରରେ କବି, ଗାଳ୍ପିକ, ପ୍ରବନ୍ଧିକ, ସମାଲୋଚକ,ଏକାଙ୍କିକାକାର, ନାଟ୍ୟ ନିର୍ଦ୍ଦେଶକ, ଅଭିନେତା, ଚିତ୍ରଶିଳ୍ପୀ, ଫଟୋଗ୍ରାଫର, ସୁବକ୍ତା, ପ୍ରବଚକ, ସୁନାମଧନ୍ୟ ଅଧ୍ୟାପକ । ମନସ୍ତତ୍ୱ ଭିତରେ ଚିନ୍ତାଚେତନାର ସନ୍ତୁଳନ ମଧ୍ୟରେ ନିମାଇଁ ପଟ୍ଟନାୟକଙ୍କ ଗଳ୍ପ ମାନସ ରଚିତ ଚରିତ୍ର ମାନେ । ତାଙ୍କର ଗଳ୍ପ ପୁସ୍ତକ- ପଦ୍ମତୋଳା, ଅନ୍ଧାରର ମୁହଁ, ନିଜ ସହ ନିଜର ସଂପର୍କ, ନୀଳ ସପନର ଅଭିଷେକ, ନାଟକ ଗେଣ୍ଡା -ବିଶ୍ୱବିଦ୍ୟାଳୟର ପଠିତ ବିଷୟ ରୂପେ ଗୃହୀତ ।

ପ୍ରଧାପକ ନିମାଇଁ ପଟ୍ଟନାୟକ ବିଶ୍ୱବିଦ୍ୟାଳୟମାନଙ୍କର ପାଠ୍ୟଚକ୍ରରେ ବିମୁଗ୍ଧ ଆଲୋଚକ ପ୍ରଗଳ୍ଭ ବକ୍ତା । ବିଶେଷ କରି ବୈଷ୍ଣବ ସାହିତ୍ୟ ଉପରେ ତାଙ୍କର ଗଭୀର ଆଲୋଚନାକୁ ଆକଳନ କରିହୁଏନି । ବିମୁଗ୍ଧ ଶ୍ରୋତାମାନେ ତାଙ୍କର ଆଲୋଚନାର ଶବ୍ଦ ସହିତ ଏପରି ନିମଗ୍ନ ବ୍ୟକ୍ତବ୍ୟ ସରିଥିଲେ ହେଁ ନୀରବତା ଭାଙ୍ଗେ ନାହିଁ । ସେ ପି.ଏଚ୍.ଡ଼ି ସନ୍ଦର୍ଭର ଜଣେ ସଫଳ ପରୀକ୍ଷକ ଥିଲେ । ନିମାଇଁ ପଟ୍ଟନାୟକ ବହୁ ସାହିତ୍ୟ ଅନୁଷ୍ଠାନରୁ ପୁରସ୍କୃତ ହୋଇଥିଲେ । ସପ୍ତଧାରା ନାଟ୍ୟଧାରା

ସଂସ୍ଥା ୧୯୭୧ ରେ ସମ୍ମାନୀତ କରିଥିଲେ। ୧୯୮୩ରେ କଟକ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ଗଳ୍ପ ପାଇଁ ବିଷୁବ ପୁରସ୍କାର, ପୁନର୍ନବା ଗଳ୍ପ ପୁରସ୍କାର, ନୟାଗଡ଼ରୁ ସାମନ୍ତ ଚନ୍ଦ୍ରଶେଖର ସମ୍ମାନ, ଦାରୁଭୂତ ସମ୍ମାନ, ନୂଆଗାଁ ଉଦୟପୁରରୁ ବାଞ୍ଛାନିଧି ପାଠାଗାର, ଅରବିନ୍ଦ ଗବେଷଣାଗାର ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ 'ଅତିବଡ଼ି' ସମ୍ମାନର ଅଧିକାରୀ ଥିଲେ।

ପ୍ରଧାପକ ନିମାଇଁ ପଟ୍ଟନାୟକ ନୟାଗଡ଼ ମହାବିଦ୍ୟାଳୟରେ ପ୍ରଥମେ ଘରୋଇଭାବେ ଓଡ଼ିଆ ଏମ୍.ଏ କ୍ଲାସ ଖୋଲିଥିଲେ। ମୁଁ (ଲେଖକ) ତାଙ୍କଦ୍ୱାରା ଖୋଲାଯାଇଥିବା ଓଡ଼ିଆ ସ୍ନାତକୋତ୍ତର ପ୍ରଥମ ବର୍ଷର ଛାତ୍ର ଥିଲି। ତାଙ୍କରି ପ୍ରଚେଷ୍ଟାରେ ବିଶ୍ୱବିଦ୍ୟାଳୟ ମାନଙ୍କରୁ ଉଚ୍ଚମାନର ପ୍ରଫେସରମାନଙ୍କୁ ନିମନ୍ତ୍ରଣ କରି ଯେଉଁ ସେମିନାର କ୍ଲାସ ମାନ ହୁଏ କେବେ ହିଁ ଭୁଲି ହେବନି। ନିମାଇଁ ପଟ୍ଟନାୟକଙ୍କ ଉଦ୍ୟମରେ ଅଧ୍ୟୟନ କରୁଥିବା ଏମ୍.ଏ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ପାଇଁ ସ୍ୱତନ୍ତ୍ର ଲାଇବ୍ରେରୀ ଗଢ଼ିଥିଲେ। ଏ ଲାଇବ୍ରେରୀରେ ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ପୁସ୍ତକ ମିଳେ। ସେ ଥିଲେ ନୟାଗଡ଼ ଶିକ୍ଷାର ପ୍ରାଣପୁରୁଷ।

ଶିକ୍ଷାର ପ୍ରାଣ ପୁରୁଷ ନିମାଇଁ ପଟ୍ଟନାୟକଙ୍କର ଦେହାନ୍ତ ୨୮.୩.୨୦୧୪ ଚୈତ୍ର ଶୁକ୍ଳ ତ୍ରୟୋଦଶୀ ଶୁକ୍ରବାର ନିଷାର୍ଦ୍ଧରେ ଘଟିଥିଲା। ସେ ସିନା ଅମର ନିବାସୀ ହେଲେ ନୟାଗଡ଼ ମାଟି ତାଙ୍କୁ ଝୁରେ। ନିମାଇଁ ପଟ୍ଟନାୟକ ନିଜଗ୍ରାମ ବଉଳ ସାହିରେ ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ସଫଳ କରିଥିଲେ।

**ନୟାଗଡ଼ର ମାନସିଂ କବି ରାଜକିଶୋର ପଟ୍ଟନାୟକ:** ନୟାଗଡ଼ର ମାନସିଂ କବି ରାଜକିଶୋର ପଟ୍ଟନାୟକ ପ୍ରେମିକ କବି ମାନସିଂଙ୍କ ଧାରାରେ ମଧୁର ଚୋରା ଶବ୍ଦ କବିତାରେ ଗୁମ୍ଫନ କରି ପ୍ରୀତି ମନାସନ୍ତି। ସେ ରାଶି ରାଶି ଛାନ୍ଦ, ଚଉପଦୀ, ଓଡ଼ିଶୀ, ଭଜନ, ଗୀତିକବିତା ରଚନା କରିଯାଇଛନ୍ତି। ତାଙ୍କର କବିତା ରାଜଦରବାରୀ ବାଟ ଭାଙ୍ଗି ଗ୍ରାମ୍ୟ ଲଳନାଙ୍କର ସାନିଧ୍ୟ ଲାଭ କରିଛି। ତାଙ୍କ ଗୀତି କବିତା ଗୁଡ଼ିକ ସ୍ୱରଗନ୍ଧର୍ବ ନବକିଶୋର ମିଶ୍ର (ନୟାଗଡ଼) ଭିକାରୀ ମହମଦ (ଖଣ୍ଡପଡ଼ା) ରୁବେନ୍ ସିଂ (ନୟାଗଡ଼) ପ୍ରାୟତଃ ସବୁ ଗୀତର କଣ୍ଠସ୍ୱର ପ୍ରଦୀପ୍ତ କୁମାର ପଟ୍ଟନାୟକ (ନୟାଗଡ଼) କଣ୍ଠଦାନରେ ନୟାଗଡ଼ ସଂଗୀତ ଆସରରେ ସମବେତ ହେଉଥିବା ଉମେଶ ପଟ୍ଟନାୟକ,ଗୋପାଳ ପଟ୍ଟନାୟକ, ଅକ୍ରୁର ମହାପାତ୍ର, ନିମାଇଁ ପଟ୍ଟନାୟକ, ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି, ହରିହର ମିଶ୍ର, ସଂସାରୀ ଖିଲାର, ରୁବେନ୍ ସିଂଙ୍କୁ ରସାଇ ମଜାଇ ଥାଏ। କେତେ ମଧୁର ସରଳ ରସାଳ ସଜଫୁଲର ଶବ୍ଦ ଗୁନ୍ଥା ତାଙ୍କ ଗୀତିକବିତାମାନଙ୍କରେ।

କବି ରାଜକିଶୋର ପଟ୍ଟନାୟକ ନୟାଗଡ଼ ପୁରୁଣା ସହର ଏମ୍.ଆଇ କଲୋନୀ ନିବାସରେ ତା ୧୭.୧୨.୧୯୨୦ ମସିହାରେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କ

ଘର ସହିତ ମୋର ନିବିଡ଼ ସଂପର୍କ । କବି ରାଜକିଶୋର ପଟ୍ଟନାୟକଙ୍କର ୧୯୫୪ ମସିହାରେ କବିତା ସଂକଳନ ପୁସ୍ତିକା 'କବିପ୍ରିୟା' 'ମହାକବିର ସନ୍ଧ୍ୟା' ତା ୨୦,୦୬,୨୦୦୬ ମସିହାରେ 'ରାତ୍ରୀର କବରୀ' ପ୍ରକାଶ ଲାଭ କରିଥିଲା ।

ପ୍ରେମିକର ପ୍ରଥମ ପରଶ ତୁମେ
ରାତ୍ରୀର କବରୀ
ପ୍ରୀତିର ପ୍ରଥମ ନୈବେଦ୍ୟ
ଅନିନ୍ଦ୍ୟ ସୁନ୍ଦରୀ
......
ମୃଗାକ୍ଷୀର ଚିବୁକରେ
ମଧୁର ଚୁମ୍ବନ
ଫୁଟି ଉଠେ ରୋମାଞ୍ଚରେ
ତୁମରି ଦର୍ଶନ
....... ରାତ୍ରୀର କବରୀ ।

ଭୁଲିଯାଅ ଭୁଲିଯାଅ ପ୍ରିୟତମେ
ଶିଳ୍ପୀ କେ ଜଣେ ଆଙ୍କି ଯାଇଥିଲା
ପାଷାଣରେ ଭାଷା ଦିନେ ।
ପାଷାଣ ନୁହେଁ ସେ କୋଣାର୍କର ଶିଳା
ଭାଷା ଥିଲା ତାର ଚାରୁ- କୀର୍ତ୍ତି -କଳା
ଶିଳ୍ପୀ ଥିଲା ସେ ପାନ୍ଥଶାଳାର
ତରୁଣ ପ୍ରେମିକ ଜଣେ ।
....
ଭଲ-ମନ୍ଦକୁ -ଦାୟୀ ହେବ କିଏ ..... ପାଥେୟ
ନାରୀ ଜନ୍ମ ଯୋଗୁ ମୋର
ବିଚାରୀ କହେ ଗୋପନେ
ଏଇ ମୋ ଚୁମ୍ବନ ନିଅ
ଜୀବନ ଯାକର ପିପାସାର ଦାହ ଛିନ୍ନ କରାଇ ଦିଅ ।
କବିଙ୍କର ସବିତା ଅପା ଚିଠିରେ -
କବିତା ଗୋଟିଏ ପଠାଇବି ବୋଲି
ଦେଇଥିଲି ତାକୁ କଥା
ଖୋଜି ଖୋଜି ଆଜି ହାଲିଆ ହେଲିଣି

ହଜି ଯାଇଛି ସେ ଖାତା ।।

..... ...

କାଗଜ କଲମ କବିତା ନୁହେଁ ସେ
ମଗଜ ହଜିବା ଗୀତା
ଅଲେଖା କାଳିରେ ଲେଖା ସରମର
ଅଲିଭା ମରମ କଥା ।।

**ଭାବ ଆବେଗର ଯଶସ୍ୱୀ କବି ଦୁର୍ଗାମାଧବ ମିଶ୍ର:** ଭାବ ଆବେଗର ଯଶସ୍ୱୀ କବି ଦୁର୍ଗାମାଧବ ମିଶ୍ରଙ୍କର ଜନ୍ମସ୍ଥାନ ନୟାଗଡ଼ ପୁରୁଣା ସହର ବ୍ରାହ୍ମଣ ସାହିରେ। ଉତ୍ତର ପଚାଶ କାଳର ଜଣେ ପ୍ରତିଷ୍ଠିତ ଜୀବନଦର୍ଶନର ମାନବବାଦୀ କବି। ସେ କବିତା ଓ ଗଳ୍ପର ଦକ୍ଷ ବିନ୍ଧାଣୀ। ଅର୍ଥନୀତିରେ ସ୍ନାତକୋତ୍ତର ଲାଭକରି ସେ ଭାରତୀୟ ପୋଲିସ ସେବାରେ ଯୋଗଦାନ କରି ପୋଲିସ ବିଭାଗର ଉଚ୍ଚପଦାଧିକାରୀ ଭାବରେ କର୍ମମୟ ଜୀବନ ଅତିବାହିତ କରିଥିଲେ। ସେ ତାଙ୍କ କବିତାରେ ସମାଜର ଦରଦୀ ପ୍ରାଣର ମଣିଷକୁ ଖୋଜୁଥିଲେ। ତାଙ୍କର ପ୍ରଥମ ସୃଷ୍ଟି 'ମୁଠିଏ ମାଟି ଚେନାଏ ଆକାଶ' କବିତା ସଂକଳନ ୧୯୬୧ ମସିହାରେ ପ୍ରକାଶ ଲାଭ କରିଥିଲା। 'ବୃତ୍ତ ଆବର୍ତ୍ତ' ୧୯୭୭ ମସିହା, ଉଗ୍ରସେନ ଉବାଚ ୧୯୮୫ ମସିହା, 'ମୌନମୁଖର' ୧୯୮୬ ମସିହାରେ ଆତ୍ମପ୍ରକାଶ କରିଥିଲା। ତାଙ୍କର ପ୍ରଥମ କବିତା ସଂକଳନ ମୁଖ୍ୟତଃ ଛନ୍ଦାଶ୍ରୟୀ ଥିଲା। ଏ ସଂକଳନରେ ବିଶେଷ କରି ନିଜ ପାଖା ପାଖି ପଲ୍ଲୀ ଜୀବନ ପ୍ରକୃତି କୋଳରେ ତାର ହସ କାନ୍ଦର ରହସ୍ୟକୁ କବି ଦୁର୍ଗାମାଧବ ମିଶ୍ର କବିତାରେ ଉପସ୍ଥାପନ କରିଥିଲେ। 'ମୁଠାଏ ମାଟି ଚେନାଏ ଆକାଶ'ରେ 'ଯାଆରେ ନାନୀ' କବିତାରେ-

"ମୋ ରାଣ ନାନୀ କାନ୍ଦେନାଲୋ , ହୀନି କପାଳତ ଆମେ
ଭଗବାନ ପରା ବଧିର ହେଲେଣି ଏ ବେ ନୀଳାଚଳ ଧାମେ
ଯାଆ ଚାଲି ନାନୀ, ହଁ ଶୁଣି ଯାଆ ସରଦି ହୋଇଛି ତତେ
ତବତ ଦି'ଟା ଖାଇଦେବୁ ଯାଇ ମନେ ରଖିଥିବୁ ସତେ।
ଯାଆ ନାନୀ ବେଗେ ଯାଆ
ଲେଉଟିଲା ବେଳେ ଯେମିତି ନାନୀଲୋ, ହୋଇ ଆସିଥିବୁ ମା" ।।

ବୃତ୍ତ ଆବୃତ୍ତ କବିତା ସଂକଳନରେ 'ସକାଳ ଗାଡ଼ି' କବିତାରେ ଛାନ୍ଦରୁ ଓହରି ଆସି ଆଧୁନିକ ଶୈଳୀରେ ଜଂଜାଳଗ୍ରସ୍ତ ଜୀବନକୁ ସମୟ ସହିତ ସାମିଲ କରି କବି ଗାଇଛନ୍ତି....

ଏ ସକାଳ

ଗୋଟାଏ ପରିଚିତ ବ୍ୟାଧିର କଂକାଳ
ସମ୍ମୁଖୀନ ହେବାକୁ ପଡ଼ିବ
ସକାଳ ଆସିଛି ଓ ଆସିବ ।

କବିଙ୍କର 'ଉଗ୍ରସେନ ଉବାଚ' କବିତା ସଂକଳନରେ ମଣିଷ ଖୋଜିବା ଏବଂ ତାର ଜୀବନର ପ୍ରତିକ୍ରିୟା ଅଗ୍ନିଧାରକୁ ଟାଣିଛନ୍ତି.... 'ଉଗ୍ରସେନ ଉବାଚ'ରେ ସଚେତନ ପ୍ରହରୀ ଉଗ୍ରସେନର ଅନ୍ୱେଷା ...

କର୍ତ୍ତବ୍ୟ ମୁଁ କରୁଥିଲି ଉଗ୍ରସେନ ସମଦଶାପନ୍ନ
ଯୁଦ୍ଧ କଲି ରକ୍ତ ଦେଲି ସମାପ୍ତିତ ହୋଇ ଆସନ୍ନ
ନିଷ୍ପ୍ରଭ ନୟନ ଜ୍ୟୋତି, ତଥାପି ମୁଁ ପୃଷ୍ଠ ଓଲଟାଏ
ଉଗ୍ରସେନ କେଣେଗଲା ଆଜିସୁଦ୍ଧା ଖୋଜି ମୁଁ ନପାଏ ।

ଦୁର୍ଗା ମା କବିତାରେ ....

ଅଜସ୍ର ନଗ୍ନତନୁ
ଯେଉଁମାନେ ଦେଖୁଛନ୍ତି
ସେମାନଙ୍କୁ ପଚାର
କେତେ ଜଣ ମରିଛନ୍ତି
କେତେ ନଗ୍ନ ବାହାରୁ
ଉଦ୍ଭୁତ ହୋଇଛି
ବର୍ଚ୍ଛା.... ?

ନୟାଗଡ଼ କବିତାରେ କବି ମର୍ମ ସନ୍ତୁଳନ କାଳରେ ନିଜର ଜନ୍ମମାଟି ନୟାଗଡ଼କୁ ଖୋଜିଛନ୍ତି.....

ଖୋଜିଲି ମୁଁ କେତେ ମୋ ନୟାଗଡ଼ କେଣେ ଗଲା ମୋତେ ନିସ୍ୱ କରି
ଆଗାମୀ ଯୁଗର ବଂଶଧର ହସୁଥିଲା ମୋତେ ଟାପରା କରି ।
ପରାଜୟ ନାହିଁ ଜୀବନରେ ଆଉ ଆଗେଇ ଚାଲିବ ଅଗ୍ରଗାମୀ
ଦୁର୍ଗା ମାଧବ ଆଶିଷ ଦିଏ ଅଶ୍ରୁଝରାଇ ଦିବସ ଯାମି ।

'ମୌନ ମୁଖର କବିତା ସଂକଳନର ଅନ୍ତର୍ଦାହ କବିତାରେ କବି ଦୁର୍ଗାମାଧବ ମିଶ୍ର ଜୀବନର ଅନ୍ତର୍ଦାହର ଚିରନ୍ତନ ଅନୁଭବରେ ଅନ୍ତର୍ଦାହ...

କିପରି ମୁଁ ଭୁଲିଯିବି ଅନାୟର ତୀବ୍ର ଅନ୍ତର୍ଦାହ ?
କିପରି ମୁଁ ମାନି ନେବି ଦୁଃଶାସନ ତୀବ୍ର ବାହାସ୍ଫୋଟ ?
କିପରି ମୁଁ ସମର୍ପିବି ତୁମ ପାଶେ ପ୍ରତିଶୋଧ ମୋର ?
କିପରି ମୁଁ ହସୁଥିବି ବକ୍ଷେଧରି ତୀବ୍ର କାଳକୂଟ ? ? ?



କବି ଦୁର୍ଗାମାଧବ ମିଶ୍ର ଏ ଦୁର୍ବିସହ ସମାଜର ଆକୁଳରେ ଆକୁଳିତ । ତାଙ୍କର କବିତାର ଅନ୍ୱେଷୀ ସାମାଜିକ ଅବବୋଧର ମାନସର ପରିବର୍ତ୍ତନରେ ଶାନ୍ତ ସୁସ୍ଥ ସମାଜ ଆସିବ କେବେ ?

**କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ:** ରୀତିରତ୍ନ କବି ସମ୍ରାଟ ଉପେନ୍ଦ୍ରଭଂଜ ଘୁମୁସରର ପ୍ରତାପୀରାଜା ଧନଞ୍ଜୟ ଭଂଜଙ୍କର ନାତି ନୀଳକଣ୍ଠ ଭଂଜଙ୍କର ପୁତ୍ର ବିଳାସପୂର୍ଣ୍ଣ ରାଜପ୍ରସାଦ କୁଳାଡ଼ ଗଡ଼ରେ ଜନ୍ମ ଲାଭ କରିଥିଲେ । ଧନଞ୍ଜୟ ଭଞ୍ଜ ରସିକ କାମ ବିଳାସୀ ତଥା ଶାସ୍ତ୍ରଜ୍ଞ ପଣ୍ଡିତ ରାଜାଥିଲେ । କବି ଧନଞ୍ଜୟଙ୍କର ସାତରାଣୀ ଓ ପାଞ୍ଚଜଣ ଗନ୍ଧର୍ବ କଳା ନିପୁଣା ରମଣୀଙ୍କୁ ଅନ୍ତପୁର ବାସିନୀ କରି ସେମାନଙ୍କ ସହ ବିଳାସ କରୁଥିଲେ । ଚତୁର୍ଥରାଣୀ ନୟାଗଡ଼ ରାଜନନ୍ଦିନୀ ମଣ୍ଡାଦେଈ ଧନଞ୍ଜୟଙ୍କର ଅତ୍ୟନ୍ତ ପ୍ରିୟବତୀ ଥିଲେ । ମଣ୍ଡାଦେଈଙ୍କ ଗର୍ଭରୁ ନୀଳକଣ୍ଠ,ବିକ୍ରମ ଓ ପ୍ରତାପ ତିନିପୁତ୍ର ଜନ୍ମ ଗ୍ରହଣ କରିଥିଲେ । ଧନଞ୍ଜୟଙ୍କର ସାତ ରାଣୀଙ୍କଠାରୁ ତେର ପୁତ୍ର ଜାତ ହୋଇଥିଲେ । ଏଣୁ ଧନଞ୍ଜୟଙ୍କର ରାଜ୍ୟପ୍ରାପ୍ତି ନିମନ୍ତେ ପୁତ୍ରମାନଙ୍କ ମଧ୍ୟରେ ତୁମୁଳ ରାଜନୈତିକ ଝଡ଼ ସୃଷ୍ଟି ହୋଇଥିଲା । ଧନଞ୍ଜୟଙ୍କ ପରେ ମଣ୍ଡାଦେଈଙ୍କ ପୁତ୍ର ନୀଳକଣ୍ଠ ଭଞ୍ଜ ଘୁମୁସର ରାଜ୍ୟର ରାଜା ହୋଇଥିଲେ । ଖ୍ରୀ.ଅ. ୧୭୦୧ଠାରୁ ୧୭୦୩ ମଧ୍ୟରେ । ନୀଳକଣ୍ଠ ଭଞ୍ଜ ଘୁମୁସର ରାଜ୍ୟର ଭାତୃକନ୍ଦଳର ରାଜନୈତିକ ଝଡ଼କୁ ସମ୍ମୁଖୀନ କରିନପାରି ମାତା ମଣ୍ଡା ଦେଈଙ୍କ ସହ ସପରିବାର ଧରି ନୟାଗଡ଼ର ରାଜାଙ୍କର ଆଶ୍ରୟ ନେଇ ମାଳିସାହି ଗ୍ରାମ ଖମାର ପ୍ରାପ୍ତ ହୋଇ ସେଠାରେ ବାସକଲେ ଉପେନ୍ଦ୍ରଭଞ୍ଜଙ୍କ କିଶୋର କାଳରେ ।

**ଉପେନ୍ଦ୍ରଭଞ୍ଜଙ୍କର ଜନ୍ମ:** ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଉପେନ୍ଦ୍ରଭଞ୍ଜଙ୍କର ଦୁଇଟି ଜନ୍ମ ଜାତକୁ ଆଲୋଚନା କରିଛନ୍ତି । ସାହୁ ମହୋଦୟ ଉପେନ୍ଦ୍ରଭଞ୍ଜଙ୍କ ବଂଶଧର କୁଳାଡ଼ ଗଡ଼ ନିବାସୀ ଜନୈକ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କଠାରୁ ପ୍ରାପ୍ତ ଉପେନ୍ଦ୍ରଭଞ୍ଜଙ୍କ ଜାତକ ବୋଲି କଳିଙ୍ଗ ଭାରତୀ ଭଞ୍ଜ ଜୟନ୍ତୀ ଅବକାଶରେ ୧୯୨୯ରେ ଭାଷଣରେ ପ୍ରକାଶ କରିଥିଲେ ଏବଂ ଉପେନ୍ଦ୍ର ଭଞ୍ଜଙ୍କର ଜୀବନକାଳ ୧୬୮୫ ରୁ ୧୭୨୫ ବୋଲି ଉଲ୍ଲେଖ କରିଥିଲେ । ଏହାପରେ ଶ୍ରୀଧର ଶତପଥୀଙ୍କର- 'ଅମର ସନ୍ତାନ- କବି ଉପେନ୍ଦ୍ରଭଞ୍ଜ (୧୯୬୯)ରେ ପୂର୍ବଜାତକ ଠାରୁ ସଂପୂର୍ଣ୍ଣ ଅଲଗା ଆଉ ଏକ ଜାତକ ପ୍ରକାଶ କରିଛନ୍ତି । ଉଭୟ ଜାତକରେ କୌଣସି ତାଳମେଳ ନଥିବାରୁ ଭଞ୍ଜଙ୍କର କାବ୍ୟ ଲାବଣ୍ୟବତୀର ବିବାହ ଦିନଟିକୁ ଭଞ୍ଜୀୟ ପ୍ରତିଭାର ମହୋତ୍ସବ ଦିନ ବା ଜୟନ୍ତୀ ବୋଲି ମେ ୧୮ ତାରିଖଟିକୁ ପାଳନ କରାଯିବା ବରଂ ଯୁକ୍ତିଯୁକ୍ତ ଓ ଶୋଭନୀୟ ।

ଓଡ଼ିଶା ଇତିହାସ କଂଗ୍ରେସର ସଭ୍ୟା ତଥା ନୟାଗଡ଼ ସ୍ୱୟଂଶାସିତ

ମହାବିଦ୍ୟାଳୟର ଅବସର ପ୍ରାପ୍ତ ଅଧକ୍ଷା ଶ୍ରୀମତୀ ଗୀତା ଦେବୀ ଶ୍ରୀଯୁକ୍ତ ରଜତ କୁମାର କର ମହୋଦୟଙ୍କର ଭଞ୍ଜଙ୍କର ସମୟସୀମା ୧୬୮୫ ଖ୍ରୀ.ଅରୁ ୧୭୫୬ ଏବଂ ପଣ୍ଡିତ ନୀଳମଣି ମିଶ୍ରଙ୍କର ଓଡ଼ିଆ ସାହିତ୍ୟ ଇତିହାସ ୨ୟଭାଗ ପୃ-୩୪୩ ଭଞ୍ଜଙ୍କର ସମୟସୀମା ଖ୍ରୀ.ଅ ୧୬୮୫ ରୁ ୧୭୫୫ ଉଦ୍ଧାର କରି ତର୍ଜମା କରିଛନ୍ତି। ନୟାଗଡ଼ ରାଜା ମୃତ୍ୟୁଞ୍ଜୟ ସିଂହ ମାନଧାତା ବେଳକୁ ଭଞ୍ଜ ଜୀବିତ ଥିଲେ ଏବଂ ତାଙ୍କ ଜୀବଦଶାରେ ୧୭୬୩ ଖ୍ରୀ.ଅରେ ଓଡ଼ଗାଁ ରଘୁନାଥ ଜୀଉ ପ୍ରତିଷ୍ଠା ଲାଭ କରିଥିଲେ। ଏଣୁ ଉପେନ୍ଦ୍ରଭଞ୍ଜଙ୍କର ଶେଷ ବର୍ଷକୁ ୧୭୬୫ ଖ୍ରୀ.ଅ ଧାର୍ଯ୍ୟ କରିଛନ୍ତି। ଗବେଷିକା ଗୀତା ଦେବୀ ଉପେନ୍ଦ୍ରଭଞ୍ଜଙ୍କର ସମୟସୀମାକୁ ଖ୍ରୀ.ଅ ୧୬୮୫ ଠାରୁ ୧୭୬୫ ମଧରେ ସିଦ୍ଧାନ୍ତ କରିଛନ୍ତି। ଏ ସମୟକୁ ଅଧିକ ବୈଧ କରିବା ପାଇଁ ଉପେନ୍ଦ୍ର ଭଞ୍ଜଙ୍କର ବହୁ ସଂଖ୍ୟାର କାବ୍ୟକୃତି ଏକ ଦୀର୍ଘ କାଳୀନ ଅଧବସାୟର ଫଳ। ଭଞ୍ଜ ଦୀର୍ଘଜୀବି ଥିଲେ ନୀଳାଦ୍ରୀଶ ଚଉତିଶାରୁ ପ୍ରମାଣ ମିଳେ।

"ହେ ନୀଳାଦ୍ରୀଶ
କ୍ଷୟତ ହେଲାଣି ପିଣ୍ଡ
କ୍ଷାଳ ମୋ ଜଞ୍ଜାଳର ଦଣ୍ଡ"

ଉପେନ୍ଦ୍ର ଭଞ୍ଜଙ୍କର ମାଳିସାହିରେ ରହଣିକାଳ ତାଙ୍କର କୁମାର ବୟସରେ। ଏଣୁ ଭଞ୍ଜଙ୍କର ଲେଖନୀ ଚାଳନାର ସର୍ବାଧିକ ବୟସ ନୟାଗଡ଼ରେ କଟିଥିଲା। ଉପେନ୍ଦ୍ରଭଞ୍ଜଙ୍କର କାବ୍ୟକୃତି ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସରେ ୬୨ ସଂଖ୍ୟାରେ ସ୍ଥାପିତ। ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକଙ୍କ ମହାକବି ଉପେନ୍ଦ୍ରଭଞ୍ଜ ଆଲୋଚ୍ୟ ପ୍ରବନ୍ଧରେ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟକୃତିକୁ ବିଭାଗୀ କରଣ କରି ରାମ ବିଷୟକ ପ୍ରକାଶିତ କାବ୍ୟ- ବୈଦେହୀଶ ବିଳାସ, ଶ୍ରୀରାମ ଲୀଳାମୃତ, ଅବନା ରସତରଙ୍ଗ,

କୃଷ୍ଣ ବିଷୟକ ପ୍ରକାଶିତ କାବ୍ୟ – ବ୍ରଜଲୀଳା ମୂଳକ 'ଛାନ୍ଦ ଭୂଷଣ', କଳା କଉତୁକ, ସୁଭଦ୍ରା ପରିଣୟ

ଅନୁପଲବ୍ଧ ଓ ଅପ୍ରକାଶିତ କାବ୍ୟ- କୁଞ୍ଜବିହାର, ପୁରୁଷୋତ୍ତମ ମାହାତ୍ମ୍ୟ

କାଳ୍ପନିକ ପ୍ରକାଶିତ କାବ୍ୟ- ଭଗବତୀ, ରସଲେଖା, ରସିକ ହାରାବଳୀ, ପ୍ରେମ ସୁଧାନିଧି, ଲାବଣ୍ୟବତୀ,କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଚିତ୍ର ଲେଖା, ହେମ ମଞ୍ଜରୀ, କାମକଳା, ମନୋରମା, ପ୍ରେମଲତା,ମୁକ୍ତାବଳୀ, ତ୍ରୈଲୋକ୍ୟ ମୋହିନୀ, ଷଡ଼ଋତୁ।

ଅଳଙ୍କାର ବିଷୟକ- ରସ ପଞ୍ଚକ, ଚିତ୍ରକାବ୍ୟ ବନ୍ଧୋଦୟ

ଅଭିଧାନ- ପ୍ରକାଶିତ ଗୀତା ବିଧାନ

ଭଞ୍ଜଙ୍କର ଚିତ୍ରକାବ୍ୟ ବନ୍ଧୋଦୟ ବାହାରେ କେତେକ ଗ୍ରନ୍ଥ ଦୃଷ୍ଟି ଗୋଚର ହୁଏ। କାଞ୍ଚନିକ କାବ୍ୟ, ସୁବର୍ଣ୍ଣ ରେଖା, ଲାବଣ୍ୟ ନିଧି, ଚନ୍ଦ୍ରରେଖା, ଛଉତିଷା ଚଉପଦୀ, ଚୌପଦୀ ଚନ୍ଦ୍ର, ଚୌପଦୀ ଭୂଷଣ, ଚଉପହରା, ରସିକାନୁଚିନ୍ତା, ବଜାର ବୋଲି, ଯମକରାଜ ଚଉତିଷା, ଚିଟାଉ ଛାନ୍ଦ, ଛପୋଇ, ଦଶପୋଇ, ଷୋଳପୋଇ, ନୀଳାଦିଶ ଚଉତିଶା, ପଞ୍ଚଶାୟକ, ରସ ମଂଜରୀ, ନାରାଜ ପୁରାଣ ପ୍ରଭୃତି।

ଉପେନ୍ଦ୍ରଭଞ୍ଜ ମାଳିସାହି ସନ୍ନିକଟ ଢ଼େଙ୍କଣା ରଘୁନାଥଙ୍କର ଭକ୍ତ ଥିଲେ। ସେ ରାମତାରକ ମନ୍ତ୍ର ସାଧନ କରି ଏତେବଡ଼ କବିତ୍ୱ ପ୍ରାପ୍ତ ହୋଇଥିଲେ। କବି ଲାବଣ୍ୟବତୀ କାବ୍ୟରେ ପ୍ରକାଶ କରିଛନ୍ତି :-

ଉପେନ୍ଦଭଞ୍ଜ ଚିତ୍ତ କୁମୁଦ ବିଚିତ୍ରକର୍ମା ଶ୍ରୀରାମ ଚନ୍ଦ୍ର
ରଜନୀ ଦିବସେ ବିଳାସ କରି ଅଧିକ ପଦ ଏଣୁ ବିହରି"।

ଉପେନ୍ଦ୍ରଭଞ୍ଜ ଶ୍ରୀଶ୍ରୀ ରଘୁନାଥଙ୍କ କୃପାରୁ ଓଡ଼ିଆ ସାହିତ୍ୟ ଇଲାକାରେ ସ୍ୱତନ୍ତ୍ର କାବ୍ୟଯୁଗ (ରୀତିଯୁଗ) ସୃଷ୍ଟି କରିଛନ୍ତି। କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ବିନା ରୀତି ଯୁଗର ସ୍ଥିତି ନାହିଁ। ଉପେନ୍ଦ୍ରଭଞ୍ଜ ରୀତି ଯୁଗର କବିଙ୍କୁ ପ୍ରଭାବିତ କରିଛନ୍ତି। ମହାକବି କାଳିଦାସ ସମକ୍ଷକ କବି ହେଉଛନ୍ତି ଉପେନ୍ଦ୍ରଭଞ୍ଜ। ଉପେନ୍ଦ୍ର ଭଞ୍ଜ ଘୁମୁସର ଭୂମିର କବି। କିନ୍ତୁ ତାଙ୍କର କାବ୍ୟକୃତି ବିକଶିତ ହୋଇଛି ନୟାଗଡ଼ରେ ରହଣି କାଳରେ। ନୟାଗଡ଼ ଉପେନ୍ଦ୍ରଭଞ୍ଜଙ୍କୁ ନିଜ ମାଟିରେ ପାଇ ଗୌରବାନ୍ୱିତ।

ଭଞ୍ଜ କାବ୍ୟ, ସଂଗୀତ, ଛତିଶା, ଚିତ୍ର ବନ୍ଧୋଦୟ ଶବ୍ଦ ସଂରଚନା ଅସୀମ ଶବ୍ଦ ସମୁଦ୍ରକୁ ଅତିକ୍ରମି ଯାଇଛି। ଏଣୁ କବିସମ୍ରାଟ ତାଙ୍କର କାବ୍ୟର ଶବ୍ଦଟୀକା ଅଭିଧାନ ଲେଖି କାବ୍ୟରେ ଥିବା କ୍ଲିଷ୍ଟତାକୁ ଦୂର କରିଛନ୍ତି। ଭଞ୍ଜଙ୍କର ସଂଗୀତ ପଥିକକୁ ଅଟକାଇ ଦିଏ। ଭଂଜ ସାହିତ୍ୟ ସର୍ବଜନ ଆଦୃତ ସାହିତ୍ୟ। ଗୋପବନ୍ଧୁ ଦାସ ଗାଇଛନ୍ତି-

ଗାଏ ତବ ଗୀତ ସଭାରେ ପଣ୍ଡିତ
ପଥ ପାନ୍ଥେ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଂଗେ ବାରଙ୍ଗନା।।

**ଅନ୍ଧାରି ଶାସନ ପ୍ରତିବାଦରେ ଦିନରେ ଲଣ୍ଠନ ଜାଳି ଗାଁରେ ବୁଲିବା, ନୟାଗଡ଼ କଚେରୀରେ ଆଇନ ଖୋଜିବା, ଅଟଳ ପୁରୁଷ ଗତି ମଙ୍ଗରାଜ:**

ଅଟଳପୁରୁଷ ଗତି ମଙ୍ଗରାଜ ନୟାଗଡ଼ ରାଜବାଟୀ ବଳରାମ ପାହାଡ଼ର ଉତ୍ତରଦିଗରେ ମାଳିସାହି ଗ୍ରାମର ପଶ୍ଚିମରେ ୩ କିଲୋମିଟର ଦୂର ହୀରାଦେଇପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ବାପାଙ୍କର ନାମ ଭାଇଗ ସୁବୁଦ୍ଧି ମହାପାତ୍ର। ତାଙ୍କ ମା ମାଳିସାହି ଗତିକେଶ୍ୱର ମହଦେବଙ୍କ କୃପାରୁ ତାଙ୍କୁ ଜନ୍ମ ଦେଇଥିବାରୁ

ପୁଅର ନାମ ଗତି ରଖିଥିଲେ। ନୟାଗଡ଼ ରାଜା ନାରାୟଣ ସିଂହ ମାନଧାତାଙ୍କ ଶାସନ କାଳରେ ପ୍ରଜାମାନେ ବିଭିନ୍ନ କାର୍ଯ୍ୟକ୍ଷେତ୍ରରେ ବେଠିଖଟି ନିର୍ଯ୍ୟାତିତ ହେଉଥିଲେ। ଗତି ମଙ୍ଗରାଜ ଲୋକଙ୍କର ଏ ନିଷ୍ଠୁର ବେଠି ଖଟାକୁ ପ୍ରତିବାଦ କରିଥିଲେ। ଏଣୁ ଗତି ମଙ୍ଗରାଜ ରାଜରୋଷର ଶିକାର ହୋଇ ଗିରଫ ହୋଇଥିଲେ। ଏହା ନୟାଗଡ଼ ପ୍ରଜା ଆନ୍ଦୋଳନର ବହୁ ପୂର୍ବର ଘଟଣା। ଏହି ଗିରଫର ପ୍ରତିବାଦକରି ଏହାକୁ ଅନ୍ଧାରୀ ଶାସନ ବୋଲି ମଙ୍ଗରାଜ ଆକ୍ଷେପ କରିଥିଲେ। ଗତି ମଙ୍ଗରାଜ ତାଙ୍କ ଅଂଚଳରେ ଜଣେ ଖ୍ୟାତନାମା ବିଚାରବନ୍ତ ପୁରୁଷ। ଆଦିବାସୀ ଅଧୁଷିତ ମାଳିସାହି ଅଂଚଳରେ ଯେ କୌଣସି ସମସ୍ୟାର ସମାଧାନ ଗତି ମଙ୍ଗରାଜଙ୍କ ନ୍ୟାୟ ନିଷ୍ପତିରେ ଛିଡୁଥିଲା। ମଙ୍ଗରାଜଙ୍କୁ ଅଂଚଳବାସୀଙ୍କର ମାନ୍ୟତା ଥିଲା। ରାଜତନ୍ତ୍ରର ଅନ୍ଧାରୀ ଶାସନ ବିରୁଦ୍ଧରେ ମଙ୍ଗରାଜଙ୍କ ନେତୃତ୍ୱରେ ମେଳି ସଂଗଠିତ ହୋଇଥିଲା। ଏହି ମେଳିର ବିଚାର ଚକାପଥର ଗାଁ ନିକଟସ୍ଥ ସମତଳ ପ୍ରଶସ୍ଥ ପଥର ଚଟାଣ ଉପରେ ରାଜ ଦୃଷ୍ଟିର ନିକାଞ୍ଚନରେ ପଡ଼େ। ଏଣୁ ଏ ପଥର ଚଟାଣର ନାମ 'ବିଚାର ପଥ' ବା 'ବିଚାର ପଥର' ବୋଲି ଲୋକ ମୁଖରୁ ଜଣାପଡ଼େ। ରାଜକର୍ମଚାରୀଙ୍କ ଅତ୍ୟାଚାର ଏ ଅନ୍ଧାରୀ ମୂଳକରେ ସହ୍ୟକରି ନପାରି ଗତିମଙ୍ଗରାଜ ଦିନବେଳେ ଲଣ୍ଠନ ଜାଳି ଗାଁ ଗାଁ ବୁଲିଲେ। ମଙ୍ଗରାଜଙ୍କର ଏ ପ୍ରକାର ପ୍ରତିବାଦରେ ରାଜା ଅପମାନିତ ହୋଇଥିଲେ। ଏହାର କଟକଣା ସ୍ୱରୂପ ରାଜ ନିର୍ଦ୍ଦେଶ ଗତିମଙ୍ଗରାଜଙ୍କୁ ରାଜ୍ୟରୁ ବିତାଡ଼ିତ କରାଗଲା। ଗତି ମଙ୍ଗରାଜ ବଡ଼ମ୍ବା ନରସିଂହପୁର ଅଂଚଳକୁ ପଳାଇ ଯାଇଥିବାର ଜଣାପଡ଼େ। ପର ମୁହୂର୍ତ୍ତରେ ତାଙ୍କୁ ସମ୍ବଲପୁର ଇଷ୍ଟେଟରେ ୧୯୨୯ ମସିହାରେ ହତ୍ୟାକରାଯାଇଥିବାର ଜନଶ୍ରୁତିରୁ ସୂଚନାମିଳେ।

<u>ଓଡ଼ିଆ ଭାଷା ସାହିତ୍ୟ, ସଂସ୍କୃତି ଗବେଷଣାର ସାରସ୍ୱତ ସାଧକ ଡ଼କ୍ଟର ପ୍ରେମାନନ୍ଦ ମହାପାତ୍ର:</u> ଡ଼କ୍ଟର ପ୍ରେମାନନ୍ଦ ମହାପାତ୍ର 'ପ୍ରାଧାପକ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ' ଓଡ଼ିଆ ଭାଷା ଓ ସାହିତ୍ୟ ସଂସ୍କୃତିର ଗବେଷଣାର ଜଣେ ପ୍ରତିଭାମାନ ସାରସ୍ୱତ ସାଧକ। ଏହି ପ୍ରଜ୍ଞାଦୀପ୍ତ ସାଧକଙ୍କର ଜନ୍ମସ୍ଥାନ ନୟାଗଡ଼ ସହରର ବଳରାମ ପର୍ବତର ଉତ୍ତର ଦିଗରେ ୫/୬ କି.ମି ଦୂରରେ ଅବସ୍ଥିତ ଉପେନ୍ଦ୍ର ଭଂଜଙ୍କର ସାଧନା ପୀଠ ପ୍ରସିଦ୍ଧ ମାଳିସାହି ଗ୍ରାମରେ। ତାଙ୍କର ପୂଜ୍ୟ ନନା ବୋଉ ହେଉଛନ୍ତି ଶ୍ରୀଯୁକ୍ତ ତ୍ରିନାଥ ମହାପାତ୍ର ଓ ଶୁଶୀଳା ମହାପାତ୍ର।

ପ୍ରାଧାପକ ଡ଼କ୍ଟର ପ୍ରେମାନନ୍ଦ ମହାପାତ୍ର 'ଓଡ଼ିଆ ସାହିତ୍ୟକୁ ନୟାଗଡ଼ ଜିଲ୍ଲାର ଅବଦାନ' ଶୀର୍ଷକ ସନ୍ଦର୍ଭ ରଚନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି ଡ଼ିଗ୍ରୀ ଲାଭ କରିଛନ୍ତି। ହଜିଯାଉଥିବା ଲୁଚି ଯାଉଥିବା ସଂସ୍କୃତିକୁ ସାଉଁଣ୍ଟି ଆଣିବା ତାଙ୍କର ସାଧନା। ସେ ଓଡ଼ିଶା ସରକାରଙ୍କ ଉଚ୍ଚ ଶିକ୍ଷା ବିଭାଗରେ ଅଧାପନା କରିଆସୁଛନ୍ତି।

ତାଙ୍କ ସାଥିରେ ମୁଁ (ଲେଖକ ନିଜେ) ଯେତେଟା ମିଶିଛି ସେ ମହାଭାଗ ନୟାଗଡ଼ ଜିଲ୍ଲା କଳା ସଂସ୍କୃତି ଉପରେ ଦଣ୍ଡନାଚ, ଲୋକକଳା, ଜିଲ୍ଲାରେ ପୂଜା ପାଉଥିବା ଠାକୁର ଠାକୁରାଣୀ ବିଜେପୀଠ ଉପରେ ସହଯୋଗ ଚାହିଁଛନ୍ତି ସାଧ୍ୟମତେ ମୁଁ ତାହା ଯୋଗାଇଛି। ତାଙ୍କର ଅବିଶ୍ରାମ ସାହିତ୍ୟ ସାଧନା ଅଜସ୍ର ସ୍ରାବୀ କଲମ ପୁନ ଚିରସ୍ରୋତା ନଦୀରଧାର।

ଯଶସ୍ୱୀ ଲେଖକ ଡ଼କ୍ଟର ମହାପାତ୍ର ନୟାଗଡ଼ର ବିଗତ ଦିନର ତଥା ଆଜିର ସାହିତ୍ୟ କୃତି, ଲୋକଭାଷା, ଲୋକ ଚଳଣୀକୁ ପରିଷ୍କାର ଭାବେ ତାଙ୍କ ପ୍ରବନ୍ଧମାନଙ୍କରେ ଉଜାଗର ରଖିଛନ୍ତି। ତାଙ୍କର ଲିଖିତ ପ୍ରବନ୍ଧଗୁଡ଼ିକ 'ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା', ମନୀଷୀ ସାମନ୍ତ ଚନ୍ଦ୍ରଶେଖର, ଭାବ ଆବେଗର କବି ଦୁର୍ଗାମାଧବ ମିଶ୍ର, ଓଡ଼ିଆ ନାଟ୍ୟସାହିତ୍ୟକୁ ନାଟ୍ୟକାର ତ୍ରୟୀଙ୍କ ଅବଦାନ, ନୟାଗଡ଼ ରାଜବଂଶର ସାହିତ୍ୟ ସଂଗୀତ ଚର୍ଚ୍ଚା, ନୟାଗଡ଼ ନାଟ୍ୟ ପରମ୍ପରା, ନୟାଗଡ଼ ସାଂପ୍ରତିକ କବି ଓ କବିତା ରେ ନୟାଗଡ଼ ଜିଲ୍ଲାର ସାଂସ୍କୃତିକ ବୈଭବକୁ ପ୍ରକାଶ କରାଏ ଓ ତାହା ବେଶ୍ ସୁଖପାଠ୍ୟ। ଏତାଦୃଶ ତାଙ୍କର ଲଳିତ ନିବନ୍ଧଗୁଡ଼ିକ ଓଡ଼ିଶାର ବିଭିନ୍ନ ପତ୍ରିକାମାନଙ୍କରେ ପ୍ରକାଶିତ। 'ମନସ୍ୱୀ ସାଧକ ପଣ୍ଡିତ ବିନାୟକ ମିଶ୍ର' ଗବେଷଣାଧର୍ମୀ ଗ୍ରନ୍ଥ ରଚନା କରି ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ପୁରସ୍କୃତ ଓ ସମ୍ମାନୀତ। ନୟାଗଡ଼ କଥିତ ଭାଷା ଉପରେ ଶ୍ରୀଯୁକ୍ତ ମହାପାତ୍ରଙ୍କର ରଚିତ ଗ୍ରନ୍ଥ 'ନୟାଗଡ଼ ଜିଲ୍ଲାର କଥିତ ଭାଷା' ଏକ ସର୍ବେକ୍ଷଣରେ ପ୍ରାଞ୍ଜଳ ଭାବରେ ନୟାଗଡ଼ର ଲୋକ ଭାଷାକୁ ଉତ୍ଥାପନ କରିଛନ୍ତି। ତାଙ୍କର ଅନେକ ପାଣ୍ଡୁଲିପି ପ୍ରକାଶନ ଅପେକ୍ଷାରେ ରହିଛି। ତାଙ୍କର ସଦ୍ୟ ପ୍ରକାଶିତ ପୁସ୍ତକ 'ନୟାଗଡ଼ ଇତିହାସ' ।

<u>ଗବେଷିକା ଗୀତାଦେବୀ:</u> ଗୀତାଦେବୀ ବାଙ୍କି ପାଟପୁର ଗ୍ରାମର ନୈଷ୍ଟିକ ବ୍ରାହ୍ମଣ ପରିବାର ପିତା ଭଗବାନ ମହାପାତ୍ରଙ୍କର ସୁକନ୍ୟା । ନୟାଗଡ଼ର ବଧୂ । ନୟାଗଡ଼ ପୁରୁମା ସହର ଶ୍ରୀଧର ମିଶ୍ରଙ୍କର ଧର୍ମପତ୍ନୀ । ଉଭୟେ ନୟାଗଡ଼ ସ୍ୱୟଂଶାସିତ ମହାବିଦ୍ୟାଳୟର ଅର୍ଥନୀତି ବିଭାଗର ଅଧ୍ୟାପକ ଅଧ୍ୟାପିକା ଥିଲେ । ଅଧୁନା ଅଧ୍ୟକ୍ଷ ପଦରୁ ଅବସର ନେଇଛନ୍ତି । ଗୀତାଦେବୀ ଓଡ଼ିଶା ଇତିହାସ କଂଗ୍ରେସର ସଭ୍ୟା । ତାଙ୍କର ଗବେଷଣାଧର୍ମୀ ନିବନ୍ଧଗୁଡ଼ିକ ସତ୍ୟ ଉପରେ ଆଧାରିତ ବେଶ୍ ଯୁକ୍ତିଯୁକ୍ତ । ନୟାଗଡ଼ ଉପରେ ତାଙ୍କର ପ୍ରବନ୍ଧ - ନୟାଗଡ଼ରୁ ପ୍ରାପ୍ତ ନେତ ଭଞ୍ଜଙ୍କ ତାମ୍ର ଫଳକ, ନେତ ଭଞ୍ଜଙ୍କ କୋମଣ୍ଡ ତାମ୍ର ଫଳକ, ନୟାଗଡ଼ରେ ଭଞ୍ଜଙ୍କ ସମୟ ସୀମା, ସମୁଦ୍ରଗୁପ୍ତଙ୍କ କୌରୀଳକ ଓ ନୟାଗଡ଼ର କୁରାଳ ପ୍ରାଞ୍ଜଳ ଗବେଷଣାର ପରିପ୍ରକାଶ ।

<u>ଚରଣ ବସନ୍ତ ପଣ୍ଡା:</u> ଚରଣ ବସନ୍ତ ପଣ୍ଡା ପଞ୍ଚୁଡ଼ା ମାନପୁର 'ଶ୍ରୀପୁରୁଷୋତ୍ତମ ଚେତନା ତତ୍ତ୍ୱ' ଉପରେ ଆଧାରିତ ତାଙ୍କର ୩୬୯ ପ୍ରବନ୍ଧ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ଅଧୁନା ଶ୍ରୀ ପୁରୁଷୋତ୍ତମ ଚେତନା ତତ୍ତ୍ୱ ଉପରେ

ଗବେଷଣାରତ । ପୁରୀ ଗୁଣ୍ଡିଚା ରଥ ଯାତ୍ରାରେ ଧାରା ବିବରଣୀ ଦେବାରେ ନୟାଗଡ଼ ଜିଲ୍ଲାର ପ୍ରଥମ ଘୋଷକ ।

ମଞ୍ଚଭୋଗୀ ନୟାଗଡ଼ ବିକାଶ ଅନୁଚିନ୍ତକ ପ୍ରମୋଦ ପଟ୍ଟନାୟକ (ବନୁଭାଇ) : ମଞ୍ଚଭୋଗୀ ନୟାଗଡ଼ ବିକାଶ ଅନୁଚିନ୍ତକ ପ୍ରମୋଦ ପଟ୍ଟନାୟକ (ବନୁଭାଇ)ଙ୍କ ନୟାଗଡ଼ ପୁରୁଣା ସହର ଦାଣ୍ଡସାହିରେ। ପ୍ରମୋଦ ପଟ୍ଟନାୟକ ଜଣେ ବରିଷ୍ଠ ସାମ୍ବାଦିକ। ସେ ମହୋଦୟ ନୟାଗଡ଼ ଜିଲ୍ଲାର ଯେତେ ସାଂସ୍କୃତିକ ତଥା ନୟାଗଡ଼ ବିକାଶ ମଞ୍ଚରେ ଯେତେ ଆଲୋଚନା ସଭା ଓ ସାଂଗଠନିକ କାର୍ଯ୍ୟକ୍ରମରେ ମୁଖ୍ୟାଂଶରେ ଥାଆନ୍ତି। ପ୍ରମୋଦ ପଟ୍ଟନାୟକଙ୍କର ଜନସେବାରେ ଏକ ମହନୀୟ କାର୍ଯ୍ୟ ସେବା ଅନୁଷ୍ଠାନର ପ୍ରତିଷ୍ଠା। ତାଙ୍କର ଆନନ୍ଦ ଉଦ୍ୟମରେ ନୟାଗଡ଼ ପୁରୁଣା ସହରର ନୂଆ ବସଷ୍ଟାଣ୍ଡ ପାର୍ଶ୍ୱରେ ଏକ ପ୍ରଶସ୍ତ କ୍ଷେତ୍ରରେ ସେବା ଅନୁଷ୍ଠାନ ପ୍ରତିଷ୍ଠା ଲାଭ କରିଛି। ଏ ସେବାୟତନରେ ମାନସିକ ଅନଗ୍ରସର ବିଦ୍ୟାଳୟ, ସ୍ୱାମୀ ପରିତ୍ୟକ୍ତା ମହିଳାଙ୍କ ପାଇଁ ସୁଧାର ଗୃହ, ଫାମିଲି କାଉନ୍‌ସେଲିଂ ସେଣ୍ଟର, ନିଶା ନିବାରଣ ବ୍ୟବସ୍ଥା ରହିଛି। ସେବା ଭିତରକୁ ପଶିଗଲେ ଭିନ୍ନକ୍ଷମ ଆବାସିକ ଚଳଣି ଚମତ୍କାର ଲାଗେ। ସମାଜରେ ଏଇମାନଙ୍କ ଥଇଥାନରେ ସେବା ସଂସ୍ଥା।

ଶୁକରମଲ୍ଲ ପର୍ବତମାଳା: ଶୁକରମଲ୍ଲ ପର୍ବତମାଳା ନୟାଗଡ଼ ଜିଲ୍ଲାର ପୂର୍ବଦିଗରେ ସାତଗୋଟି ପାହାଡ଼କୁ ଧରି ଖୋର୍ଦ୍ଧା ଜିଲ୍ଲା ସରହଦ ଛୁଇଁ ଠିଆହୋଇଛି। ଏହାର ସର୍ବାଧିକ ଆରଣ୍ୟକ ଭୂମି ନୟାଗଡ଼ ଜିଲ୍ଲା ଅନ୍ତର୍ଭୁକ୍ତ। ଏହି ପର୍ବତର ଉତ୍ତର ପାଦଦେଶର ଅର୍ଦ୍ଧେକ ସମତଳ ଖୋର୍ଦ୍ଧା ଏବଂ ନୟାଗଡ଼ ଜିଲ୍ଲାର। ପଶ୍ଚିମ, ଦକ୍ଷିଣ ପୂର୍ବାଚଂଳ ଏ ପର୍ବତମାଳା ନୟାଗଡ଼ ଜିଲ୍ଲାର। ଏ ପର୍ବତମାଳାର ଆଭ୍ୟନ୍ତରୀଣ ପଲ୍ଲୀବାସୀ ଆଦିବାସୀ। କୋଦାଳ ପଲ୍ଲୀ; ଗୁଣ୍ଡର ବାରୀ, ହାତୀବାରୀ, ସିନ୍ଦୁରିଆ, ସୁରୁକାବାଡ଼ି, ବରପଲ୍ଲୀ, ବାଦମାଳ ପଲ୍ଲୀ ଗୁଡ଼ିକ ଶୁକରମଲ୍ଲ କନ୍ଧପଲ୍ଲୀ। ଶୁକରମଲ୍ଲ ବିରାଟକାୟ ଉଚ୍ଚା ଜଙ୍ଗଲ। ଏହି ଜଙ୍ଗଲ ଏହାର ଚତୁଃପାର୍ଶ୍ୱରେ ବିଶାଳ ଜନବସତିକୁ କାଠ, ବାଉଁଶ, ଔଷଧ ଯୋଗାଏ। ଏହି ଅରଣ୍ୟର ବର୍ଷାଜଳ ହଡ଼ା ନଈରେ ବହିଯାଇ ସୁନାଖଳା ପୂର୍ବରୁ ଖୋର୍ଦ୍ଧା ସରହଦରେ ଉତ୍ତରପଥକୁ ଗତି କରିଛି। ଏହାର ପାଦଦେଶ ଗହୀର ମାଳରେ ଧାନ, ଆଖୁ, ଚଣା, ବିରି, ମୁଗ, ଚାଷ କରାଯାଏ। କନ୍ଧପଲ୍ଲୀମାନଙ୍କରେ ପଦାଧାନ, ମକା, ରାଶି ଆଦି ବର୍ଷାଦିନିଆ ଢ଼ିପ ଫସଲ ଚାଷ ହୁଏ। ଶୁକରମଲ୍ଲ ପର୍ବତ ଉପରେ ଜନସମାଗମର ଦୁଇଟି ପ୍ରସିଦ୍ଧ ସ୍ଥାନ ଝରଦେଇ ଏବଂ ଝିକିମିକି।

ଝରଦେଇ: ଝରଦେଇ ଶୁକରମଲ୍ଲ ଦକ୍ଷିଣ କନ୍ଦରରେ ବହିଯାଉଥିବା ଚିରସ୍ରୋତା ଝରଣାର ଏକ ପ୍ରଶସ୍ତ ଖୋଲ। ଝରଦେଇ ବାବା ଏଠାରେ ଏକ ମଠ

ନିର୍ମାଣ କରି ବୃକ୍ଷଲତାର ସୁରକ୍ଷାରେ ଏ ସ୍ଥାନକୁ ଅତୀବ ରମଣୀୟ କରିଥିଲେ। ଏହା ଏକ ଶକ୍ତିପୀଠ କ୍ଷେତ୍ର। ବର୍ଷର ସବୁ ସମୟ ଏଠାର ପରିବେଶ ଭ୍ରମଣକାରୀଙ୍କୁ ଆକର୍ଷଣ କରେ। ଏଠାରେ ରହିବା ପାଇଁ ଠାକୁର ଠାକୁରାଣୀ ବାସସ୍ଥଳୀ ବ୍ୟତିରେକ ବାସଗୃହ ରହିଛି। ବିଶେଷ କରି ଶୀତରତୁରେ ବିଦ୍ୟାଳୟ ଛାତ୍ରଛାତ୍ରୀମାନେ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଗହଣରେ ବନ ବିହାରରେ ବଣଭୋଜି କରିବାକୁ ଆସନ୍ତି। ଏହା ନୟାଗଡ଼ ଜିଲ୍ଲାର ଅନ୍ୟତମ ପର୍ଯ୍ୟଟନ କ୍ଷେତ୍ର। ଏ ସ୍ଥାନକୁ ଯିବା ପାଇଁ ଈକିରି ଠାରୁ ପକ୍କା ସଡ଼କ ପଡ଼ିଛି।

ଝିକିମିକି: ଶୁକରମଲ୍ଲ ପର୍ବତର ପଶ୍ଚିମ ଶୀର୍ଷରେ ଝିକିମିକି ଏକ ପ୍ରଶସ୍ତ ବିସ୍ତାର ଥଳି। ଏଠାରେ ଗୃହୀ ବାବାଜୀ ବସବାସ କରନ୍ତି। ବାବାଙ୍କର ଚାଷବାସ ଅଛି। ଗାଈଗୋରୁ ଅଛନ୍ତି। ଏ ଥଳିରେ ରଘୁନାଥ ପୂଜା ପାଆନ୍ତି। ପ୍ରତିବର୍ଷ ଶ୍ରୀରାମ ନବମୀ ଜନ୍ମତିଥିରେ ଏଠାରେ ବଡ଼ ଧରଣର ଯାତ୍ରାହୁଏ। ଯାତ୍ରାରେ ଆଞ୍ଚଳିକ ଜନସମାଗମ ଦେଖାଯାଏ। ଏଠାରେ ଯାତ୍ରୀଙ୍କ ପାଇଁ ଖାଇବାର ବନ୍ଦୋବସ୍ତ କରାଯାଇଥାଏ। ପର୍ବତ ଶିଖର ଥଳିରେ ଏ ମେଳା ଉତ୍ସବ ଭାରି ଚିତ୍ତାକର୍ଷକ। ଏ ପୀଠକୁ ଅଧିକ ଆଡ଼ମ୍ବର ପୂର୍ଣ୍ଣ କରିବାରେ ଅଂଚଳବାସୀଙ୍କ ଅର୍ଥଦେୟରେ ନିର୍ମାଣ କାର୍ଯ୍ୟ ଚାଲିଛି। ସୁଉଚ୍ଚ ଥଳିକୁ ଯିବା ପାଇଁ ସୁଗମ ପଥ ନିର୍ମାଣ ରଘୁନାଥଙ୍କର ମନ୍ଦିରର ସୁଷମା ଦର୍ଶନ କରିବାରେ ପ୍ରୟାସୀ ଦାତାମାନଙ୍କର ମନଯୋଗ ରହିଛି। ନୟାଗଡ଼ ଜିଲ୍ଲାର ବିଜିପୁର ଗେଟ୍ ଠାରୁ ଦକ୍ଷିଣକୁ କାଉତରା ରାସ୍ତା ଦେଇ ଝିକିମିକି ପର୍ଯ୍ୟଟନ ସ୍ଥଳୀକୁ ଯାଇହେବ।

ନୟାଗଡ଼ ଜିଲ୍ଲାର ସୁଦୀର୍ଘ ୩୦ ପୋଲିଆ ଶଙ୍ଖ : ଦଶପଲ୍ଲା ବୌଦ୍ଧ ବଲାଙ୍ଗୀର ରାଜପଥରେ ନୟାଗଡ଼ ଜିଲ୍ଲାକୁ ପ୍ରବେଶ ଦ୍ୱାରରେ ଅର୍ଥାତ୍ ବିଜିପୁର ଗେଟ୍ ଠାରୁ ପଶ୍ଚିମରେ ୧ କିଲୋମିଟର ରାଜପଥ ଅତିକ୍ରମ କଲାପରେ ୩୦ ପୋଲିଆ ବିଜିପୁର ଶଂଖ ପଡ଼େ। ଏହା ନୟାଗଡ଼ ଜିଲ୍ଲାର ଦୀର୍ଘତମ ସେତୁ। ଏ ସେତୁରେ ଶୁକରମଲ୍ଲ ପର୍ବତର ଜଳଧାରା ତଥା ତତ୍ କାଳୀନ କୁସୁମୀ ନଦୀର ବାଡ଼ଡେଇଁ ପ୍ରବାହିତ ବନ୍ୟାଜଳ ନିଷ୍କାସିତ ହୁଏ। ଦୁଇ ଦୁଇଟା ବନ୍ୟା ପ୍ରକୋପ ମୁଁ (ଲେଖକ) ନିଜେ ଅଙ୍ଗେ ନିଭେଇଛି। ସୁନାନଟୀ ଠାରେ କୁସୁମୀ ନଦୀ ଘାଇକରି ଜହ୍ନିପଦା, ହରେକୃଷ୍ଣପୁର,ପୁରୁଷୋତ୍ତମପୁର, ଅଭିମାନପୁର, ବାଉଁଶିଆ ପଡ଼ା, ବଳରାମପୁର, ବିଜିପୁରରେ ବନ୍ୟା ବିପତ୍ତି ସୃଷ୍ଟି କରିଛି। ୩୦ଟା ପୋଲରେ ବନ୍ୟାଜଳ ନିଷ୍କାସିତ ହୋଇନପାରି ରାଜରାସ୍ତାରେ ବନ୍ୟାଜଳ ଯାଇ ଗମନା ଗମନ ପଥ ବନ୍ଦକରି ଦେଉଥିଲା। ସେବନ୍ୟାରେ ବିଜିପୁରର ଅନେକ ଘର ଭାଙ୍ଗି ଯାଇଛି। ମୋର ମାମୁଁ ଘର ବି ଭାସି ଯାଇଛି। ଏ ବନ୍ୟା ବିପତ୍ତିକୁ ଦୃଷ୍ଟିରେ ରଖି ବ୍ରିଟିଶ୍ ସରକାର ୩୦ ପୋଲ ବିଶିଷ୍ଟ ଦୀର୍ଘ ସେତୁ ନିର୍ମାଣ କରିଥିଲେ।

ବ୍ରିଟିଶ୍ ଅମଳର ଲୁହା ଶଙ୍ଖ/ ବଡ଼ପଣ୍ଡୁସର ଲୁହା ଶଙ୍ଖ : ରାଜପଥ ଉପରେ କୁସୁମୀ ନଦୀ ଉପରେ ବଡ଼ପଣ୍ଡୁସରଠାରେ ସୁଉଚ୍ଚ ଲୌହସ୍ତମ୍ଭରେ ବ୍ରିଟିଶ୍ ଅମଳର ଲୌହ ସେତୁ। ଏ ସେତୁରେ ନୟାଗଡ଼ ଜିଲ୍ଲାର ପୂର୍ବ ଓ ଦକ୍ଷିଣ ପଶ୍ଚିମର ବର୍ଷାଜଳ ନିଷ୍କାସିତ ହୁଏ।

ମହୀପୁର ଲୁହାଶଙ୍ଖ: ରାଜପଥ ଉପରେ ମହୀପୁର ଠାରେ ଡ଼ାହୁକା ନଦୀର ଜଳ ନିଷ୍କାସନ ପାଇଁ ଇଂରେଜ ସରକାରଙ୍କ ସମୟରେ ଲୌହ ସେତୁ ନିର୍ମିତ ହୋଇଥିଲା। ଏହି ସେତୁରେ ରତାଦେଇ ପର୍ବତର ଜଳଧାରା ଗୁମିମାଳ ଗୁହାଳର ଜଳରାଶି ନିଷ୍କାସିତ ହୋଇ ନିମ୍ନଗାମୀ ହୁଏ।

ଦଶପଲ୍ଲା ପାଟନା ଲୁହା ଶଙ୍ଖ: ରାଜପଥ ଉପରେ ଦଶପଲ୍ଲା ପାଟନା ଛକ ଠାରେ କୁଆଁରିଆ ନଦୀ ଉପରେ ବ୍ରିଟିଶ୍ ଅମଳରୁ ଠିଆ ହୋଇଥିଲା । ଏ ସେତୁରେ ଦଶପଲ୍ଲାର ଦକ୍ଷିଣପୂର୍ବ ପ୍ରବଳ ଜଳଧାରା ନିଷ୍କାସିତ ହୁଏ।

ବ୍ରିଟିଶ ଅମଳର ଉପରୋକ୍ତ ଚାରୋଟି ପ୍ରାଚୀନ ସେତୁ ମଜଭୁତ ଓ ଆକର୍ଷଣୀୟ ଥିଲା। ନୟାଗଡ଼ ଅତିକ୍ରମ କରିବାକୁ ହେଲେ ଏ ଚାରୋଟି ସେତୁର ପ୍ରାଧ୍ୟାନ୍ୟ ରହିଛି। ଏ ସେତୁ ମାନଙ୍କର ନିର୍ମାଣ କୌଶଳ ବହୁତ ଶକ୍ତିଶାଳୀ ଥିଲା। ଏ ସେତୁ ଗୁଡ଼ିକ ଭାଙ୍ଗିଯାଇ ଦେଶୀୟ ଜ୍ଞାନ କୌଶଳରେ ନିର୍ମିତ ହେଲେ ହେଁ ଏ ସେପରି ସୁଦୃଢ଼ ନୁହେଁ। ଦେଖୁ ଦେଖୁ ଦୁଇ ଦୁଇଥର ସେତୁଗୁଡ଼ିକ ମରାମତି ହୋଇସାରିଲାଣି।

ଏହି ଲୁହା ଝୁଲନ୍ତା ଶଙ୍ଖ (Bridge) ୧୮୨୩ ମସିହାରେ ଇଂରେଜ ସରକାରଙ୍କ 'ଜୋସେଫ୍ ଏଣ୍ଡ ସନ୍' କମ୍ପାନୀ ଦ୍ୱାରା ନିର୍ମିତ ହୋଇଥିଲା।

ଶହୀଦପୀଠ ଥୁଆବାରୀ- କୁଶବିଦ୍ଧା : ୧୮୦୩ ଖ୍ରୀ.ଅ.ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ। ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକ ଇଂରେଜ ଶାସନ ଅଧୀନସ୍ଥ ହେଲେ। ଫଳରେ ଗଡ଼ଜାତ ରାଜ୍ୟମାନଙ୍କରେ ଦୁଇଟା ଶାସନ ଚାଲିଲା। ରାଜାମାନଙ୍କ ଉପରେ ଇଂରେଜ ଶାସକର ଶାସନ ପ୍ରଜାଙ୍କ ଉପରେ ରାଜାଙ୍କ ଶାସନ। ରାଜାମାନେ ଇଂରେଜମାନଙ୍କୁ ଉଚ୍ଚା ରାଜକର ଦିଅନ୍ତି ଏବଂ ନିଜ ବିଳାସ ଚଳଣୀ ନିମିତ୍ତ ପ୍ରଜାଙ୍କ ଉପରେ ମନଇଚ୍ଛା କର ଧାର୍ଯ୍ୟ କରନ୍ତି। ପ୍ରଜାମାନେ ପ୍ରତିବାଦ କରିପାରିବେ ନାହିଁ। ତାଙ୍କର କୌଣସିଟା ଅଧିକାର ନାହିଁ। ରାଜସେବା ରାଜବେଠିରେ ପ୍ରଜାମାନେ ହନ୍ତସନ୍ତ ହେଉଥିଲେ। ରାଜକର ଦେଇସାରିବା ପରେ ରାଜକର୍ମଚାରୀ, ଗ୍ରାମ ସର୍ବରାକାର, ପୋଲିସ୍, ଚୌକିଆର ଶୋଷଣ ଜୁଲମରେ ପ୍ରଜାମାନେ ଅତିଷ୍ଠ କିନ୍ତୁ ମୂକ। ଦୁଇଟା ଶାସନର ନିର୍ମମ କଷାଘାତ ସହୁଥିଲେ ପ୍ରଜାମାନେ।

୧୮୮୫ ଖ୍ରୀ.ଅ.ରେ ଭାରତର ଜାତୀୟ କଂଗ୍ରେସ ପ୍ରତିଷ୍ଠା ହୋଇ ଦେଶର ସ୍ୱାଧୀନତା ଆଣିବା ପାଇଁ ସ୍ୱର ଉଠାଇଲା। ସ୍ୱାଧୀନତା ପାଇଁ ଭାରତବାସୀ ଜାଗ୍ରତ

ହେଲେ। ମହାତ୍ମାଗାନ୍ଧିଙ୍କର ଓଡ଼ିଶା ଆଗମନ ୧୯୨୧ ମାର୍ଚ୍ଚ ୨୩ରୁ କଟକ- ୧୯୨୫, ଅଗଷ୍ଟ ୨୯ କଟକ-୧୯୨୭ ଡିସେମ୍ବର ୪ରୁ୨୧ ବ୍ରହ୍ମପୁର- ୧.୯୨୮ ଡିସେମ୍ବର ଝାରସୁଗୁଡ଼ା, ସମ୍ବଲପୁର- ୧୯୩୪ ମଇ ୨୧ରୁ ଜୁନ୍ ୮ କଟକ, ବାଲେଶ୍ୱର ଅଞ୍ଚଳ-୧୯୩୫ ମଇ ୫ ଝାରସୁଗୁଡ଼ା, ସମ୍ବଲପୁର, ଆଠମଲ୍ଲିକ, ଅନୁଗୁଳ ଏବଂ ପୁରୀରୁ ପ୍ରଥମ ପଦଯାତ୍ରା ସମଗ୍ର ଓଡ଼ିଶାବାସୀଙ୍କୁ ଜନଜାଗରଣରେ ଏକଜୁଟ କଲା। ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳ ସଂଗଠନ ଗଢ଼ାହୋଇ ପ୍ରଜାମଣ୍ଡଳ ଆନ୍ଦୋଳନ ମୁଣ୍ଡ ଟେକିଲା। ନୟାଗଡ଼ ଗଡ଼ଜାତ ଶାସନ ଉଚ୍ଛେଦ ପାଇଁ ନୟାଗଡ଼ ପ୍ରଜା ଆନ୍ଦୋଳନରେ ପ୍ରମୁଖ ଭୂମିକା ନେଇଥିଲା ଥୁଆବାରୀ ଗାଁ। ଥୁଆବାରୀ ପାଖ କନ୍ଧପଲ୍ଲୀ କୁଶବିଡ଼ା ବିପ୍ଳବୀ କଷ୍ଟିଡାକୁଆ ପୋଲିସ ଗୁଳିରେ ଶହୀଦ ହେଲେ ତା.୧୦.୧୦.୧୯୪୨ ମସିହାରେ। ନୟାଗଡ଼ ବନ୍ଦୀଶାଳାରେ ୧୯୪୩ ମସିହାରେ ଥୁଆବାରୀ ଗ୍ରାମର କସ୍ତୁରୀ ପରିଡ଼ା ଓ ତାଙ୍କର ପୁତ୍ର ବୁଦ୍ଧି ପରିଡ଼ା ଓ ଦୟା ବେହେରା ଶହୀଦ ହେଲେ। ଜେଲ୍‌ର ନିର୍ମମ ଦଣ୍ଡରେ ଲିଙ୍ଗା ନାୟକ ଅନ୍ଧ ହେଲେ- ହରି ସାହୁ ପାଗଳ ହେଲେ। ଖଡି ସାହୁଙ୍କୁ କି ଦଣ୍ଡାଦେଶ ଥିଲା ଯେ ସେ ଏଯାବତ୍ ନିଖୋଜ ରହିଲେ, ତାଙ୍କର ଠିକଣା ମିଳେନି। ନୟାଗଡ଼ ଥୁଆବାରୀ ଭାରତ ସ୍ୱାଧୀନତା ସଂଗ୍ରାମର ଏକ ପ୍ରସିଦ୍ଧ ଶହୀଦ ପୀଠ। ଏ ମାଟିରେ ଠିଆହେଲେ ନୟାଗଡ଼ିଆ ଭାବ ଗର୍ବରେ ଯେତିକି ମଥା ଉନ୍ନତ ହୁଏ ଭାରତ ମୁକ୍ତି ଆନ୍ଦୋଳନରେ ଝାସ ଦେଇଥିବା ଗ୍ରାମବାସୀଙ୍କ ଆଗରେ ଭକ୍ତି ଶ୍ରଦ୍ଧାରେ ମଥା ଆନତ ହୋଇପଡ଼େ। ବାସ୍ତବରେ ଥୁଆବାରୀ ସ୍ୱାଧୀନତା ପଥର ଏକ ତୀର୍ଥକ୍ଷେତ୍ର। ଏ ମାଟି ଚିର ବନ୍ଦନୀୟା କପାଳର ଚନ୍ଦନ ଟିପା।

ଥୁଆବାରୀ କୋରଡ଼ା ମାଳଗୁହାଳର ଏ ପଲ୍ଲୀ ଗାଁ। ୫୭ ନମ୍ବର ଜାତୀୟ ରାଜପଥ ମହୀପୁର ଛକଠାରୁ ପଶ୍ଚିମକୁ ମହୀପୁର ଗ୍ରାମପଥ ଦେଇ ଡାହୁକା ନଦୀକୁ ଅତିକ୍ରମ କରି ବାଲଣ୍ଡା ମାଳରାସ୍ତାରେ ରାସ୍ତାର ବାମପାର୍ଶ୍ୱକୁ ଥୁଆବାରୀ ଗାଁ ପଡ଼େ। ଏହା ନୂଆଗାଁ ବ୍ଲକ୍‌ର ଅଧୀନସ୍ଥ ଗାଁ। ଥୁଆବାରୀ ଡାହୁକା ନଦୀର ପଶ୍ଚିମକୂଳରେ ନୟାଗଡ଼ର ଏକ ଶସ୍ୟ ପନିପରିବା ଭୂଇଁ। ଏ ଭୂମିରେ ପ୍ରଚୁର ଶସ୍ୟ ଓ ମଧୁର ଫଳ ଫଳେ।

ଥୁଆବାରୀ ଖଣ୍ଡାୟତ, ତେଲି, ଗଉଡ଼, ଗୁଡ଼ିଆ, ଧୋବା, ଡମ, ପାଣ ଜାତିର ଏକ ଏକଜୁଟ ଗାଁ। ଭାରି ସ୍ୱାଧୀନଚେତା ଗାଁ। ଗାଁ'ଟିରେ ସମସ୍ତଙ୍କ ମନ ଗୋଟିଏ। ଅଗମ୍ୟ ମାଳ ଭିତରେ କନ୍ଧପଲ୍ଲୀ ବାଲଣ୍ଡା, ପାରାଢ଼ିପି, ମଣ୍ଡାଡିହ, କୁଶବିଡ଼ା, ଅଠରଗଣ୍ଡା, କେନ୍ଦୁବଣିଆ ଉପରେ ଥୁଆବାରୀର ପ୍ରଭାବ ଥାଏ। ନୟାଗଡ଼ ରାଜାଙ୍କର ରାଜବେଠି ପ୍ରଥା ଓ ଅକଥନୀୟ ଅର୍ଥ ଶୋଷଣରେ ପ୍ରଜାଏ ଅତିଷ୍ଠ ହେଉଥିଲେ। ଥୁଆବାରୀ ପ୍ରଜା ଏହାକୁ ସହିପାରୁ ନଥିଲେ ରାଜବିରୋଧୀ ପ୍ରତିବାଦ କରୁଥିଲେ।

ଏଣୁ ଥୁଆବାରୀ ରାଜାଙ୍କ କଡ଼ା ନଜରରେ ରହୁଥିଲା। ଥୁଆବାରୀ ପୋଲିସ ଆକଟରେ ରହୁଥିଲା।

ରାଜବେଠି : ରାଜଶାସନର ପ୍ରଜାଟିଏ ୧୦୦ଦିନ ରାଜବେଠି କରିବାକୁ ବାଧ୍ୟ। ରାଜବେଠି କରିବାକୁ ହେବ। ତେଣେ ଛୁଆପିଲା ଉପବାସରେ ଗଡ଼ନ୍ତୁ ପଛେ ରାଜବେଠି କରୁ କରୁ ପ୍ରଜାଙ୍କ ବେଳ ଯାଏ।

ବିଟ୍ ବେଠି ବା ଠେଙ୍ଗାପାଳି : ଠେଙ୍ଗାପାଳିରେ ପ୍ରତ୍ୟେକ ଗାଁ'ରୁ କେତେଜଣ ଲେଖାଏଁ ରାଜନଅରରେ ପହରା ଦେବେ ବଗିଚାରେ କାମ କରିବେ। ଠେଙ୍ଗାଟିଏ ନେଇ ଅପରାହ୍ନରେ କାର୍ଯ୍ୟରେ ଯୋଗଦେବେ। ପରଦିନ ୧୦ଟା ପରେ ଘରକୁ ଫେରିବେ। ନଅରବାସୀ ଘିଅ ମହୁରେ ଭାସୁଥିବାବେଳେ ଏମାନେ ଉପବାସରେ ଖଟନ୍ତି। ପେଟକୁ ଦାନା ନାହିଁ କି ରାଜବେତନ ପାଉଣା ନାହିଁ। ସେଦିନ ପାଇଁ ପଡ଼ିଶାଘର ଚାଳରେ ଠେଙ୍ଗା ଝୁଲାଇଦେବେ। କାର୍ଯ୍ୟର ତନଖି ଚୌକିଦାର କରୁଥାଏ।

ସଡ଼କ ବେଠି : ରାଜ୍ୟରେ ଯେତେ ପୁରାତନ ସଡ଼କ ପଡ଼ିଛି ସବୁ ପ୍ରଜାଙ୍କ ବେଠିରେ ହୋଇଛି। ବିନା ମଜୁରାରେ ଲୋକେ ସଡ଼କ ବେଠି କରନ୍ତି। ସଡ଼କ ଦୁଇକଡ଼ରେ ଜାମୁଗଛ, ଆମ୍ବଗଛ, ବରଗଛ, ନିମ୍ବଗଛ ଲଗାଇ ପାଣିଦେଇ ବଞ୍ଚାଇବେ। ରାଜ ସଡ଼କରେ ଶଗଡ଼ ଯିବା ମନା।

ଜଙ୍ଗଲ ବେଠି : ଲୋକେ ଜଙ୍ଗଲ ସଫା କରିବେ, ଜଙ୍ଗଲରେ ନିଆଁ ଲାଗିଲେ ଲିଭାଇବାକୁ ଯିବେ। ନଗଲେ ପିଠିରେ ପଡ଼େ ବେତମାଡ଼ କୋରଡ଼ା ମାଡ଼। ରାଜା ଶିକାରକୁ ଗଲେ ପ୍ରଜାଏ ହରିଣ, ଶମ୍ବର, କୋଟ୍ରାକୁ ଘଉଡ଼ାଇ ଘେରରେ ଆଡ଼ି ବାଟରେ ଛାଡ଼ିବେ ରାଜା ଗୁଳି କରିବେ। ରାଜାଙ୍କ ବାଘ ଶିକାରରେ ବେଠିଆମାନେ ବାଜା ବଜାଇ ନିଆଁହୁଳା ଜାଳି ବାଘକୁ ରାଜାଙ୍କ ଆଡ଼କୁ ଘଉଡ଼ାଇବେ। ରାଜା ମଞ୍ଚା ଉପରୁ ବାଘକୁ ଗୁଳିକରି ସାହସପଣିଆ ଦେଖାଇବେ। ଜଙ୍ଗଲରେ ଯଦି କାହାକୁ ବାଘ ନେଇଗଲା ରାଜାଙ୍କ ଚିନ୍ତା ନଥାଏ। କିଏ ପଚାରୁଛି ରାଜକାର୍ଯ୍ୟରେ ଯାଇଥିଲା ବାଘ ନେଇଗଲା।

ରଥବେଠି : ଜଗନ୍ନାଥଙ୍କର ଗୁଣ୍ଡିଚା ବାହୁଡ଼ା ଯାତ୍ରାରେ ରଥଟଣା ଲୋକଙ୍କ ବେଠିରେ ଚାଲେ। ଲୋକେ ବେଠିରେ ରାଜକର୍ମଚାରୀଙ୍କୁ ଚୌଧଳରେ ବସାଇ ନେବା ଆଣିବା କରିବେ। ଲୋକେ ରାଜକର୍ମଚାରୀଙ୍କୁ ଦେଖିଲେ ଲୁଚନ୍ତି। ପଦମର୍ଯ୍ୟାଦା ଅନୁଯାୟୀ ହାକିମମାନଙ୍କୁ ଘୋସ୍ ଦେବାକୁ ବାଧ୍ୟ। ନଦେଲେ ବିଭିନ୍ନ ଆଳରେ ଦଣ୍ଡଦେବେ ଜୋରିମାନା ପକାଇବେ।

କ୍ୟାମ୍ପ ବେଠି ଓ ବାଦ୍ ଖର୍ଚ୍ଚ : ସରକାରୀ ଉଚ୍ଚ କର୍ମଚାରୀ କିମ୍ବା ପଲଟିକାଲ୍ ଏଜେଣ୍ଟ ଗସ୍ତରେ ଆସି ରାଜ୍ୟରେ କ୍ୟାମ୍ପ ପକାନ୍ତି। କ୍ୟାମ୍ପର ସମସ୍ତ ଖର୍ଚ୍ଚ ପ୍ରଜାମାନେ ବହନ କରନ୍ତି। ଏହାକୁ ବାଦ୍‌ଖର୍ଚ୍ଚ କହନ୍ତି। ସର୍ବରାକାର ମାନେ ଲୋକଙ୍କଠାରୁ

ବାଧ୍ୟତାମୂଳକ ବାଦ୍‌ଖର୍ଚ୍ଚ ଆଦାୟ କରି କ୍ୟାମ୍ପ ଖର୍ଚ୍ଚ ଭରଣା କରନ୍ତି । ବାଦ୍‌ଖର୍ଚ୍ଚରେ ଲୋକମାନେ ଠେକିଠେକି ଗୁଆଘିଅ ଦୁଧ, ଭାର ଭାର ସରୁ ବାସ୍ନା ଚାଉଳ, ଆଳୁ, କଦଳୀ, କଖାରୁ ଯାବତୀୟ ସୁସ୍ୱାଦ ପରିବା ଓ ଫଳ ସାହେବଙ୍କ ସେବା ପାଇଁ ପଠାଉଥିଲେ । ପୋଲିସ ଓ ବନବିଭାଗୀୟ କର୍ମଚାରୀ ଚାଷୀଠାରୁ ଭଲ ପୋଷା ଖସି ଓ ହରିଜନ ବସ୍ତିରୁ ଅଣ୍ଡା, କୁକୁଡ଼ା ବିନା ମୂଲ୍ୟରେ ଜବରଦସ୍ତ ସାହେବଙ୍କ ଖାଦ୍ୟ ପାଇଁ କ୍ୟାମ୍ପକୁ ପଠାଉଥିଲେ । କ୍ୟାମ୍ପର ନିରାପଦ ପାଇଁ କ୍ୟାମ୍ପ ବେଠିଆ ଜଗୁଆଳି ରହୁଥିଲେ ବିନା ଖାଦ୍ୟ ବିନା ବେତନରେ ।

ଭେଟି ସଲାମି : ରାଜାଙ୍କର ବିନା ଅନୁମତିରେ କୌଣସି ବ୍ୟକ୍ତି ଦୃଷ୍ଟିଆକର୍ଷଣୀୟ କାର୍ଯ୍ୟ କରିପାରିବେ ନାହିଁ । ଯଦି କରିବେ ରାଜାଙ୍କୁ ଭେଟି ସଲାମି ଦେବେ । ଅର୍ଥାତ୍ ରାଜାଙ୍କର ପରିତୋଷ ପାଇଁ ଆକର୍ଷଣୀୟ ଉପହାର ନେଇ ସଲାମ କରିବେ । ଜନୈକ ଧର୍ମଶୀଳ ବ୍ୟକ୍ତି ଦେବାଳୟ, ପୁଷ୍କରିଣୀ କୂଅ ଏପରି ଧର୍ମକାର୍ଯ୍ୟ କରିବାକୁ ଗଲେ ଆଗେ ରାଜାଙ୍କୁ ଭେଟି ସଲାମି ଦେବାକୁ ହୁଏ । ଭେଟି ସଲାମି ଓଜନଦାର ହୋଇଥିବ ନହେଲେ ରାଜାଙ୍କର ଶୁଭଦୃଷ୍ଟି ପଡ଼ିବ ନାହିଁ ।

ଏପରି ବି ରାଜ୍ୟରେ ଆଇନ୍ ଥିଲା ବ୍ରାହ୍ମଣ, କ୍ଷତ୍ରିୟ ଓ କରଣ ବ୍ୟତିରେକ ଅନ୍ୟ କୌଣସି ପ୍ରଜା ସବାରି, ପାଲିଙ୍କି ବ୍ୟବହାର କରିପାରିବେ ନାହିଁ । ଗାଁ'ରେ ଉଚ୍ଚପିଣ୍ଡା, ଦୁଆରେ ଯାଉଁଳି କବାଟ, ଚିକ୍‌କଣ ପାହାଚ କରିପାରିବେ ନାହିଁ । ପ୍ରଜାଙ୍କ ବିକାଶ ଚିନ୍ତା ରାଜାଙ୍କର ନଥିଲା । ରାଜା ରାଜ୍ୟରେ ଭଗବାନ ପରିକା ଆରାଧନା ପାଉଥିଲେ ।

ରାଜାଙ୍କର ଏ ଅନୀତି ଶୋଷଣ ବିରୁଦ୍ଧରେ ଥୁଆବାରୀରୁ ସ୍ୱର ଶୁଭିଲା । ପ୍ରଜାଙ୍କୁ ଆକଟ କରିବାପାଇଁ ଥୁଆବାରୀ, ବାଲଣ୍ଡା, କୁଶବିଡ଼ା, ପାରାଢ଼ିପି, ମଣ୍ଡାଢ଼ିହ, କେନ୍ଦୁବଣିଆ ଗାଁ'ରେ ପୋଲିସ ଡେରା ପଡ଼ିଲା । ଏପରି ଘଟଣା ଥୁଆବାରୀରେ ଘଟିଗଲା- ଲୋକେ ପାଳିକରି ପୋଲିସ ବେଡ଼ିଂ ଗାଁରୁ ଗାଁ ନିଅନ୍ତି । ସେଦିନ ମଙ୍ଗୁଳି ପରିଡ଼ାଙ୍କର ପାଳି ଥିଲା ପୋଲିସ୍ ବେଡ଼ିଂ ଥୁଆବାରୀରୁ ପାରାଢ଼ିପିକୁ ନେବାକୁ । ମଙ୍ଗୁଳି ପରିଡ଼ା ପୋଲିସ ବାବୁଙ୍କୁ ଗୁହାରି କଲେ, "ବାବୁ ଗୋରୁଫିଟା ବେଳ ହେଲାଣି । ଗୋରୁଗୁଡ଼ାକ ଏଥର ହମ୍ବାଳ ଛାଡ଼ି ଗୋରଡ଼ା ଭାଙ୍ଗି ପକେଇବେ । ତାଙ୍କୁ ସମ୍ଭାଳି ହେବନି । ସେ ଏ ଜଞ୍ଜାଳ ଛାଡ଼ି କୁଆଡ଼େ ଯିବେ ।" ଏତିକି କହଣିରେ ପୋଲିସର ଠେଙ୍ଗେଣି ପାହାରରେ ମଙ୍ଗୁଳି ବେହେରାଙ୍କ ମୁଣ୍ଡଫାଟି ଗଭୀର କ୍ଷତ ହୋଇଗଲା । ମଙ୍ଗୁଳି ପରିଡ଼ାଙ୍କ ସ୍ତ୍ରୀ ଗୁରେଇ ଦୌଡ଼ିଆସି କ'ଣ କଲୁରେ କହି ରକ୍ତ ଜୁଡୁବୁଡୁ ସ୍ୱାମୀକୁ ନେଇ ମହୀପୁର ବଙ୍ଗଳା ସାହେବ୍‌ଙ୍କୁ ଦେଖାଇଲା । ସାହେବଙ୍କ ଆଦେଶରେ ଗୁରେଇ ପୋଲିସ୍‌କୁ ଚିହ୍ନଟ କଲା । ସାହେବ ସଙ୍ଗେ ସଙ୍ଗେ ସେ ପୋଲିସ ଦେହରୁ ପୋଷାକ ଉତାରି କାର୍ଯ୍ୟରୁ ବହିଷ୍କାର କଲେ ।

ପୋଲିସ୍ ଡରରେ ଯେଉଁଠି ତାଟି କବାଟ ପଡ଼ିଯାଏ, ଗୁରେଇ ପୁଲିସକୁ ଧମକ ଦବା କମ୍ ଦୁଃସାହସ ! ଏ ହେଉଛି ଥୁଆବାରୀର ପ୍ରତିବାଦ ଶବ୍ଦ ।

୧୯୨୨ ମସିହା ଅସହଯୋଗ ଆନ୍ଦୋଳନ ବ୍ରିଟିଶ ସରକାର ମେରୁହାଡ଼ ଦୋହଲାଇ ଦେଇଥିଲେ ହେଁ ଆନ୍ଦୋଳନ ସଫଳ ହୋଇନଥିଲା । ଦେଶର ଜନଜାଗରଣକୁ ଅଧିକ ସକ୍ରିୟ କଲା । ୧୯୨୯ ମସିହା ଡିସେମ୍ବର ମାସରେ ଜାତୀୟ କଂଗ୍ରେସ ନିଷ୍ପତ୍ତି ନେଲା ଆଇନ୍ ଅମାନ୍ୟ ଆନ୍ଦୋଳନ ଦ୍ଵାରା ଦେଶର ସ୍ଵାଧୀନତା ଆସିବ । ୧୯୩୦ ଜାନୁଆରୀ ୩୦ରେ କଂଗ୍ରେସ ବିଭିନ୍ନ ପ୍ରଦେଶରେ ଦେଶର ସ୍ଵାଧୀନତା ଦିବସ ପାଳନ କଲା । ୧୯୩୦ ଅପ୍ରିଲ ୬ରେ ମହାତ୍ମାଗାନ୍ଧି ସରକାରଙ୍କ ଆଇନ୍ ଅମାନ୍ୟ କରି ହଜାର ହଜାର ନାରୀ ପୁରୁଷ ଗହଣରେ ଗୁଜୁରାଟ ଦାଣ୍ଡିଠାରେ ସମୁଦ୍ରରୁ ଲୁଣ ମାରି ଆଇନ୍ ଅମାନ୍ୟ ଆନ୍ଦୋଳନକୁ ସଫଳ କଲେ । ୧୯୩୦ ଅପ୍ରିଲ ୧୩ରେ ଓଡ଼ିଶାବାସୀ ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହରେ ବିଜୟୀ ହେଲେ । ଏଣୁ ସରକାର ଗଡ଼ଜାତ ରାଜାଙ୍କ ମାଧ୍ୟମରେ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କଲେ । ପ୍ରଜାମାନେ ରାଜାଙ୍କ ଆଦେଶ ଅମାନ୍ୟ କଲେ ସୁଯୋଗ ପାଇଲେ ରାଜକର୍ମଚାରୀଙ୍କୁ ପିଟିଲେ । ପ୍ରଜାଙ୍କର ଜିଦ୍ ରହିଲା । ଦେଶରୁ ବିଦେଶୀଙ୍କୁ ହଟାଇବା ଏବଂ ଗଡ଼ଜାତରୁ ରାଜଶାସନ ଉଚ୍ଛେଦ କରିବା । ୧୯୩୧ ମସିହାରେ ପ୍ରଜାମଣ୍ଡଳର କଟକ ବୈଠକରେ ନିଷ୍ପତ୍ତି ହେଲା ପ୍ରଜାମାନଙ୍କ ସର୍ତ୍ତ ରାଜାମାନେ ମାନିନିଅନ୍ତୁ । ଏ ନିଷ୍ପତ୍ତିରେ ପ୍ରଜାଗଣ ଅଧିକ ବଳୀଆର ହୋଇଉଠିଲେ ।

କସ୍ତୁରୀ ପରିଡ଼ା ଥୁଆବାରୀ ଗ୍ରାମର ମଇଁଷିଆଳ ଜଣେ ସ୍ଵାଧୀନଚେତା ମଣିଷଟିଏ । ଭାରତ ସ୍ଵାଧୀନତା ସଂଗ୍ରାମ ଡାକରାରେ ଉତ୍‌ଫୁଲ୍ଲିତ ହୋଇପଡୁଥିଲେ । ମହାତ୍ମାଗାନ୍ଧିଙ୍କ ଡେଲାଙ୍ଗ ସଭା ବାର୍ତ୍ତା ତାଙ୍କ କାନରେ ପଡ଼ିଲା- "୧୯୩୮ ମାର୍ଚ୍ଚ ୨୫ରୁ ମାର୍ଚ୍ଚ ୩୧ ଡେଲାଙ୍ଗ ଗାନ୍ଧି ସେବା ସଙ୍ଘ ନିକଟସ୍ଥ ବେରବୋଇ ଗ୍ରାମ ସମ୍ମିଳନୀରେ ଗାନ୍ଧିଜୀ ଅଗଣିତ ନରନାରୀଙ୍କୁ ଉଦ୍‌ବୋଧନ ଦେବେ ।" କସ୍ତୁରୀ ପରିଡ଼ା ଦେଶପ୍ରେମରେ ଏତେ ପାଗଳ ଯେ ବାଲଣ୍ଡା ଗାଁ'ର ସାଥୀ ମଙ୍ଗୁଳି ସାହୁକୁ ନେଇ ଡେଲାଙ୍ଗ ଯାତ୍ରା କଲେ । ତାଙ୍କର ସେଇ ମଇଁଷିଆଳ ବେଶ ହାତରେ କେନ୍ଦୁବାଡ଼ି, ପାଦରେ କଠଉ ମୁଣ୍ଡରେ ଝାମ୍ପି ଚିନ୍ତା କରିହୁଏନି ତାଙ୍କର ଜାତୀୟ ଜୀବନକୁ ।

ଡେଲାଙ୍ଗ ସଭାରେ ଗାନ୍ଧିଙ୍କୁ ଦର୍ଶନ କରି କସ୍ତୁରୀ ପରିଡ଼ାଙ୍କ ନେତ୍ର ପବିତ୍ର ହୋଇଗଲା । ଗାନ୍ଧିଜୀ କେତେ ସରଳ ନିର୍ଭୀକ ଅମୃତ ବଚନ ଭାଷୀ ଆତ୍ମୀୟ ମଣିଷ । ଖୋଲା ଦେହର ମଣିଷ । ନିଜ ହାତବୁଣା ଖଦଡ଼ ଲୁଗା ପିନ୍ଧିଛନ୍ତି ଆଣ୍ଠୁ ଲୁଚୁ ନାହିଁ । ଖଦଡ଼ ଲୁଗାଟେ ଘୋଡ଼େଇ ହୋଇଛନ୍ତି । ଠେଙ୍ଗା ଖଣ୍ଡକ ଧରି ଡଗ ଡଗ ହୋଇ ଚାଲିଗଲେ ପଛରେ ଗୋଡ଼େଇ ହବନି । ଅଗଣିତ ନରନାରୀ କାନ

ଡେରି ତାଙ୍କ ଭାଷଣ ଶୁଣୁଛନ୍ତି। ଭାରତମାତାର ଜୟଧ୍ୱନିରେ ଗଗନ ପବନ ମୁଖରିତ ହୋଇପଡୁଛି। ଗାନ୍ଧିଜୀ ମଣିଷ ନୁହନ୍ତି ଭାରତବର୍ଷ ଉଦ୍ଧାର ପାଇଁ ଈଶ୍ୱର ଅବତାର ନେଇଛନ୍ତି। ସେ ଦେବତା ନହୋଇଥିଲେ କିଏ ଚାଳିଶ କୋଟି ଭାରତବାସୀଙ୍କୁ ଏକଜୁଟ କରିଥାନ୍ତା ? ଏଡେ ବଡ଼ ଗହଳ ମଧ୍ୟରେ ଠେଲିହୋଇ ମହାତ୍ମାଜୀଙ୍କର ଚରଣରେଣୁ ସ୍ପର୍ଶକରି ଦେଶ ସ୍ୱାଧୀନତା ସଂଗ୍ରାମର ଜଣେ ସଂଗ୍ରାମୀ ଭାବେ ନିଜକୁ ସମର୍ପଣ କଲେ। ମହାତ୍ମାଜୀ ଜଣେ ସଚ୍ଚା ସଂଗ୍ରାମୀକୁ ପାଇ ଖୁସି ହୋଇଗଲେ।

ଡେଲାଙ୍ଗ ସମ୍ମିଳନୀରେ ନୟାଗଡ଼ ଗଡ଼ଜାତ ଅଞ୍ଚଳର ଶୁକ୍ରୁ ବେହେରା ଭାଲିଆଡ଼ିହି ଶ୍ରୀଧର ଦାଶ ଗୋଡ଼ିପଡ଼ା, ନାରାୟଣ ନନ୍ଦ ଓଡ଼ଗାଁ, ବାଞ୍ଛାନିଧି ସେନାପତି ବାହାଡ଼ାଝୋଲା, ଲକ୍ଷ୍ମଣ ମହାରଣା ଓଡ଼ଗାଁ, ନାରାୟଣ ବେହେରା ଗୋପପୁର, ଭରତ ନାୟକ ସହିତ ଅନେକ ସ୍ୱାଧୀନଚେତା ବ୍ୟକ୍ତି ଯୋଗଦାନ କରିଥିଲେ। କସ୍ତୁରୀ ପରିଡ଼ା ସେମାନଙ୍କ ସହ ମିଳିତ ହେଲେ। ସେତେବେଳକୁ ଓଡ଼ିଶାର ଗଡ଼ଜାତମାନଙ୍କରେ ପ୍ରଜା ଆନ୍ଦୋଳନ ନିଆଁ କୁହୁଳିଲାଣି। ଏହି ସଭାରେ ନୟାଗଡ଼ ଗଡ଼ଜାତ କର୍ମୀମାନେ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ କରି ବେଠି ବେଗାରୀ ଯେତେ ରାଜକଷଣରୁ ପ୍ରଜାଙ୍କୁ ମୁକ୍ତ କରିବାର ନିଷ୍ପତ୍ତି ନେଇ ଫେରିଲେ।

କସ୍ତୁରୀ ପରିଡ଼ା ମହାଜାତୀୟ ଚେତନାରେ ଉଦ୍‌ବୋଧ ହୋଇ ନିଜ ଗାଁ ଥୁଆବାରୀରେ ପହଞ୍ଚିଲେ। କସ୍ତୁରୀ ପରିଡ଼ାଙ୍କୁ ଦେଖି ଥୁଆବାରୀ ଲୋକେ ଗୁଣ୍ଡ ହୋଇଗଲେ। ସେ ଗ୍ରାମବାସୀଙ୍କୁ କହିଲେ- ଯାହାହେଉ ମହାତ୍ମାଗାନ୍ଧିଙ୍କ ସହ ଦେଖା ହୋଇଗଲା। ସେ ମହାତ୍ମା ମଣିଷ ନୁହନ୍ତି 'ଦେବତା'। ଆଶ୍ଚର୍ଯ୍ୟ ଲାଗେ ସେ ଚାଲି ଚାଲି ଲୋକଙ୍କ ପାଖରେ ପହଞ୍ଚି ଯାଉଛନ୍ତି। ତାଙ୍କ ଡାକରାରେ ଲୋକମାନେ ଜାତୀୟ ସଂଗ୍ରାମକୁ ଡେଇଁ ପଡୁଛନ୍ତି। ତାଙ୍କର ଏ ମହାସଂଗ୍ରାମରେ ଏଥର ଦେଶରୁ ବିଦେଶୀ ଶାସନ ହଟିବ ରାଜାରାଜୁଡ଼ା ଶାସନ ଲୋପ ପାଇବ। ଗାଁ'ର ଯୁବକଗୋଷ୍ଠୀ ଆନନ୍ଦ ସ୍ୱାଇଁ, ସୁଦର୍ଶନ ସ୍ୱାଇଁ, ରାମ ସାହୁ, ଗଦେଇ ସାହୁ, ଦଣ୍ଡୁ ସାହୁ, କସ୍ତୁରି ପରିଡ଼ାଙ୍କ ପୁଅ ବାଟି ପରିଡ଼ା, ଭଜି ପରିଡ଼ା ସମସ୍ୱର କହିଉଠିଲେ ଏଥର ଦେଶରୁ ଦି ଫାଙ୍କିଆ ଶାସନ ଉଠିବ। ରାଜାଙ୍କ ଅବିଚାରପଣିଆ ଛାଡ଼ିଯିବ। ମହାତ୍ମାଗାନ୍ଧିଙ୍କ କଥାକୁ କିଏ ନମାନିବ ଯେ ? ଆମ୍ଭମାନଙ୍କର ଦୁର୍ଦ୍ଦଶାର ବେଳ ସରିଲା ବୋଲି ଜାଣ।

କସ୍ତୁରୀ ପରିଡ଼ା ଆନନ୍ଦ ଚନ୍ଦ୍ର ସ୍ୱାଇଁଙ୍କୁ କହିଲେ ଏ ମାଳ ଅଞ୍ଚଳର ଏକଜୁଟ ଦାୟିତ୍ୱ ତୁମର। ଆନନ୍ଦ ଚନ୍ଦ୍ର ନିଜର ସର୍ବରାକାର ଦାୟିତ୍ୱକୁ ବେଖାତିରି କରି ଆନ୍ଦୋଳନରେ ମାତିବାକୁ ପ୍ରସ୍ତୁତ ହୋଇପଡ଼ିଲେ। ଏ ମାଳ ଅଞ୍ଚଳର ଲୋକଙ୍କୁ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବାକୁ ମତାଇଲେ।

<u>ନୟାଗଡ଼, ପ୍ରଜା ଆନ୍ଦୋଳନର ସାଜସଜ୍ଜା ଓ ଆନନ୍ଦ ଚନ୍ଦ୍ର ସ୍ୱାଇଁ :</u> ନୟାଗଡ଼

ପ୍ରଜା ଆନ୍ଦୋଳନର ସାଜସଜ୍ଜା ଚାଲିଲା । ଗୁପ୍ତ ଜାଗାମାନଙ୍କରେ ପ୍ରଜା ସଂଗଠନ ବସିଲା । ନାରାୟଣ ନନ୍ଦ, ନାରଣ ବେହେରା, ବାଞ୍ଛାନିଧି ସେନାପତି, ନରସିଂହ ନନ୍ଦ, ବାସୁଦେବ ପରିଡ଼ା, ଲକ୍ଷ୍ମଣ ମହାରଣା, ଶ୍ରୀଧର ଦାଶ, ଉଦ୍ୟନାଥ ପୃଷ୍ଟି, ଭିକାରୀ ସାହୁ, ଶୁକ୍ରୁ ବେହେରା, ବାସୁଦେବ ମହାପାତ୍ର (ଅଖାରିଆ), କଣ୍ଡୁରୀ ପରିଡ଼ା, ଆନନ୍ଦ ଚନ୍ଦ୍ର ସ୍ୱାଇଁ, ବାସୁଦେବ ଦୋରା (କେଶପାନିଆ) ଦ୍ୱାରିକା ସାହୁ, ଫକୀର ସାହୁ, ସୁଦର୍ଶନ ଦାଶ, ବୀର ସାହୁ, ଯୋଗୀ ସାହୁ, ଲଡ୍ଡୁକେଶ୍ୱର ପ୍ରଧାନ (ହରିହରପୁର), ରାମକୃଷ୍ଣ ମହାନ୍ତି, ଗୋଦାବରିଶ ମିଶ୍ର (କରଡ଼ା) ଗାଁ ଲୋକଙ୍କୁ ସଂଗଠନ ଆଡ଼କୁ ଟାଣିଲେ । ନରସିଂହ ନନ୍ଦ, ଲକ୍ଷ୍ମଣ ମହାରଣାଙ୍କ ରଚିତ 'ଗଡ଼ଜାତ ବିଜୟ ଭେରୀ ସଂଗୀତ' ପୁରପଲ୍ଲୀ ଲୋକଙ୍କ ମଧ୍ୟରେ ନବଜାଗରଣ ସୃଷ୍ଟି କଲା । ପ୍ରଜାମାନେ ରାଜ ବିରୋଧୀ ହୋଇଉଠିଲେ । ଓଡ଼ଗାଁ, ବାହାଡ଼ାଝୋଲା, ନନ୍ଦୀଘୋର, କୁମ୍ଭାପଡ଼ା, ଟାଙ୍ଗୀ ବନ୍ଧ ସଂଗଠନ ସଭାରେ ଶହ ଶହ ଲୋକ ଯୋଗଦେଲେ । ଥୁଆବାରୀ ଆନନ୍ଦ ଚନ୍ଦ୍ର ସ୍ୱାଇଁଙ୍କ ନେତୃତ୍ୱରେ କଣ୍ଡୁରୀ ପରିଡ଼ା, ବୁଦ୍ଧି ପରିଡ଼ା, ଦୟା ବେହେରା, ଭାଗବତ ସ୍ୱାଇଁ, ସୁଦର୍ଶନ ସ୍ୱାଇଁ, ବାଳକୃଷ୍ଣ ସ୍ୱାଇଁ, ଦଣ୍ଡପାଣି ସାହୁ, ସପନି ସାହୁ, ଦନେଇ ସାହୁ, ଅରକ୍ଷିତ ସାହୁ, ଗୁରୁବାରୀ ସାହୁ, ହରି ସାହୁ, ଗଦାଧର ସାହୁ, ରାମ ସାହୁ, ବୁଲା ସେଠୀ, ବିଶ୍ୱନାଥ ସେଠୀ, ଖଲିଆ ସେଠୀ, ଅରକ୍ଷିତ ସେଠୀ, ଖତି ସାହୁ, ଲଛମନ ସାହୁ, କହ୍ନେଇ ନାହାକ, ପୁନିଆ ନାହାକ, ବାହାଦୂର ନାହାକ, ବୁଲା ନାହାକ, ବୈରାଗୀ ନାଏକ, ଜଗା ନାଏକ, ସମ୍ଭାରି ନାଏକ, ଦଣ୍ଡୁ ପରିଡ଼ା, ଦାଶ ପରିଡ଼ା, ବାଟୀ ପରିଡ଼ା, ଗଦେଇ ପରିଡ଼ା, ଖଲି ପରିଡ଼ା, ବିଶ୍ୱନାଥ ନାଏକ, ଲିଙ୍ଗା ନାହାକ, ପ୍ରହଲ୍ଲାଦ ସ୍ୱାଇଁ, ଭଗବାନ ନାଏକ, ଦଣ୍ଡୁ ନାଏକ, ସଦେଇ ନାଏକ, ହରି ନାହାକ, ଲଡୁ ନାହାକ, ବୁଦ୍ଧି ସ୍ୱାଇଁ, ରଘୁ ସାହୁ, ଗାଣ୍ଡୁ ସାହୁ, ସୁଦର୍ଶନ ସାହୁ, ଛାଟିଆ ସାହୁ, ତ୍ରିନାଥ ସାହୁ, ଦନେଇ ସେଠୀ, କହ୍ନେଇ ସେଠୀ, ଉଲ୍ଲା ସେଠୀ, ଗଦେଇ ସେଠୀ, ବୈଦ୍ୟନାଥ ସାହୁ, କ୍ଷେତ୍ର ସାହୁ, ଉଛେଇ ପରିଡ଼ା, ଋଷି ନାଏକ, ବଛି ସେଠୀ, ହଜାରୀ ସାହୁ, ଯୋଗୀ ନାଏକ ପ୍ରଜା ଆନ୍ଦୋଳନ ସଂଗଠନ ସଭାରେ ଯୋଗଦେଇଥିଲେ । ଥୁଆବାରୀ ଗ୍ରାମର ଆବାଳବୃଦ୍ଧବନିତା ଦେଶର ସ୍ୱାଧୀନତା ସଂଗ୍ରାମରେ ସମସ୍ତେ ସାମିଲ । ଭାରତବର୍ଷରେ ଥୁଆବାରୀ ଭଳି ଜାତୀୟ ବିପ୍ଳବୀ ଗାଁ'ଟିଏ ଦେଖିବା ବିରଳ ।

ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ଗାଁ ଥୁଆବାରୀ । ନୟାଗଡ଼ ଆନ୍ଦୋଳନକାରୀ ନେତାମାନେ ଆନନ୍ଦ ଚନ୍ଦ୍ର ସ୍ୱାଇଁଙ୍କ ସହଯୋଗ ସର୍ବଦା ଲୋଡ଼ନ୍ତି । ଏହି ଗାଁ'ରେ ନାରାୟଣ ନନ୍ଦ, ବାଞ୍ଛାନିଧି ସେନାପତି, ନାରଣ ବେହେରା, ଶ୍ରୀଧର ଦାଶ ପ୍ରମୁଖ ନେତାମାନେ ବାରବାର ସଭା କରିଛନ୍ତି । ସଭା ଡାହୁକା ନଦୀତଟ ଗୋଡ଼ି ତୋଟାରେ ବସେ । କଣ୍ଡୁରୀ ପରିଡ଼ା ଆନନ୍ଦ ଚନ୍ଦ୍ର ସ୍ୱାଇଁ ସଭାର ସଫଳତା ପାଇଁ ସମସ୍ତ

ବ୍ୟବସ୍ଥା କରିଥାନ୍ତି। ଗୁପ୍ତ ଚିଠି କିପରି ବାହାରକୁ ପଠାଯିବ ତା'ର ଦାୟିତ୍ୱ ଆନନ୍ଦ ଚନ୍ଦ୍ର ସ୍ୱାଇଁଙ୍କର। ଆଶ୍ଚର୍ଯ୍ୟ ଏକ ଗାଁ ଆନ୍ଦୋଳନ ପ୍ରସ୍ତୁତି ମନ୍ତ୍ରଣା ଏଠି ଚାଲେ କି ପିଲା କି ବଡ଼ କାହା ତୁଣ୍ଡରୁ କଥା ପଦେ ଖସେ ନାହିଁ। ଗାଁ'ର କି ପିଲା କି ବୁଢ଼ା ସମସ୍ତେ ସଂଗ୍ରାମୀ। ଆନନ୍ଦ ଚନ୍ଦ୍ର ସ୍ୱାଇଁ ଏ ବିରାଟ ମାଳବସ୍ତିର ମୁଖ୍ୟ ସଂଯୋଜକ। ସେ ସଂଗ୍ରାମର ଗଭୀର ଜଳର ବେଗ। ତାଙ୍କ ଜାତୀୟ ଭାବରେ ମାଳ ଗୁହାଳର ପ୍ରତ୍ୟେକ ପ୍ରଜା ଏକଜୁଟ୍।

<u>ରାଜ୍ୟରେ ପ୍ରଜା ଆନ୍ଦୋଳନ :</u> ରାଜ୍ୟରେ ପ୍ରଜା ଆନ୍ଦୋଳନ ନିଆଁ ଉଠିଲା। ୧୯୩୮ ମେ' ପହିଲାରେ ନୀଳଗିରି ଅତ୍ୟାଚାରୀ ରାଜାଙ୍କ ବିରୋଧରେ ପ୍ରଜା ଆନ୍ଦୋଳନ ମୁଣ୍ଡ ଟେକିଲା। ୧୯୩୮ ଜୁନ୍ ୨୮ ତାରିଖରେ ନୟାଗଡ଼ ଓଡ଼ଗାଁଠାରେ ଶହ ଶହ କର୍ମୀଙ୍କ ଉପସ୍ଥିତିରେ ନୟାଗଡ଼ ପ୍ରଜାମଣ୍ଡଳ ଗଠନ ହେଲା। ସେପ୍ଟେମ୍ବର ୯ରେ ବାଞ୍ଛାନିଧି ସେନାପତିଙ୍କ ନେତୃତ୍ୱରେ ହଜାର ହଜାର ପ୍ରଜାଙ୍କ ଯୋଗଦାନରେ ପ୍ରଜାମଣ୍ଡଳ ସଂଗଠନ ମଜଭୁତ୍ ହେବାକୁ ଲାଗିଲା। ସେପ୍ଟେମ୍ବର ୧୦ରେ ବାହାଡ଼ାଝୋଲାଠାରେ ସେପ୍ଟେମ୍ବର ୧୩ ତାରିଖରେ ଗୋଡ଼ିପଡ଼ାଠାରେ ପ୍ରଜା ଆନ୍ଦୋଳନକାରୀଙ୍କ ବିପୁଳ ସମାବେଶରେ ନୟାଗଡ଼ ରାଜାଙ୍କର କାର୍ଯ୍ୟକଳାପକୁ ନିନ୍ଦା କରାଗଲା। ସେହି ସେପ୍ଟେମ୍ବରରେ ତାଳଚେର ଏବଂ ଢେଙ୍କାନାଳରେ ପ୍ରଜା ଆନ୍ଦୋଳନ ଭୟଙ୍କର ରୂପ ଧାରଣ କଲା। ନୟାଗଡ଼ ଶେଷ ରାଜା କୃଷ୍ଣଚନ୍ଦ୍ର ସିଂ ମାନଧାତାଙ୍କ ଶାସନକାଳ। ରାଜ ଆଦେଶକୁ କେହି ଖାତିର କଲେନି। ରାଜା ଆନ୍ଦୋଳନ ଦମନ କରିବାକୁ ଯେତେ କୂଟନୀତି ପ୍ରୟୋଗ କଲେ ଆନ୍ଦୋଳନ ଅଧିକ ତେଜିଉଠିଲା।

<u>ରାଜାଙ୍କ ଦମନ ନୀତି :</u> ୧୯୩୮ ମସିହା ଡିସେମ୍ବର ବେଳକୁ ନୟାଗଡ଼ ପ୍ରଜାମଣ୍ଡଳ ଆନ୍ଦୋଳନ ଘମାଘୋଟ ରୂପ ନେଲା। ପ୍ରଜାମାନେ ମେଳିହୋଇ ରାଜାଙ୍କ ମୁହେଁ ମୁହେଁ ଜବାବ ଦେଲେ। ରାଜଦଣ୍ଡକୁ ଖାତିର କଲେନି। ରାଜକର୍ମଚାରୀଙ୍କୁ ମାଡ଼ ଦେଲେ। ରାଜକର ଦେଲେ ନାହିଁ। ଜମି ପଡ଼ିଆ ରଖିଲେ। ରାଜ ଦୌରାତ୍ମ୍ୟକୁ ଭ୍ରୁକ୍ଷେପ କଲେ ନାହିଁ। ରାଜାଙ୍କର ସମସ୍ତ ଉଦ୍ୟମ ବିଫଳ ହେଲାରୁ ରାଜା କିଂକର୍ତ୍ତବ୍ୟବିମୂଢ଼ ହୋଇ ନୟାଗଡ଼ ଷ୍ଟେଟର '୧ନମ୍ବର ଶୃଙ୍ଖଳା ଆଇନ୍ ୬ ରେଗୁଲେସନ' ୧୯୩୮ ମସିହା ଡିସେମ୍ବର ୧୦ତାରିଖରୁ ଜାରି କଲେ। ଏ ଆଇନ୍ ବଳରେ ସାଧାରଣ ସଭାସମିତି, ଶୋଭାଯାତ୍ରା, ଖବରକାଗଜ ପଢ଼ିବା, ବାଣ୍ଟିବା, ପଢ଼ି ଶୁଣାଇବା ନିଷେଧ। ଆନ୍ଦୋଳନକାରୀ ଏହାକୁ ରାଜାଙ୍କର କଳା ଆଇନ୍ ନାମରେ ଆଖ୍ୟା ଦେଲେ। ରାଜାଙ୍କର ଏ କଳା ଆଇନକୁ କେହି ମାନିଲେ ନାହିଁ କି ଆନ୍ଦୋଳନ ଥମିଲା ନାହିଁ। ରାଜା କୃଷ୍ଣଚନ୍ଦ୍ର ସିଂ ମାନଧାତା ଆନ୍ଦୋଳନ ଦମନ କରିବାପାଇଁ ପଲିଟିକାଲ ଏଜେଣ୍ଟ ମେଜର ବେଲେଗେଟଙ୍କ ସାହାଯ୍ୟ

ଲୋଡ଼ିଲେ। ମେଜର ବେଜଲ୍‌ଗେଟ ଢେଙ୍କାନାଳ ପ୍ରଜା ଆନ୍ଦୋଳନରୁ ରକ୍ତମୁଖା ହୋଇ ଫେରିଥିଲେ। ସେ ସଂଖ୍ୟାଧିକ ଫୌଜ ସହ ନୟାଗଡ଼ରେ ଅବସ୍ଥାନ କରି ଆନ୍ଦୋଳନ ଦମନ କଲେ। ରଣପୁରରେ ବେଜଲଗେଟ ହତ୍ୟାକାଣ୍ଡ ପରେ ଆନ୍ଦୋଳନ ଧିମେଇଥିଲେ ହେଁ କେତେବେଳେ ଯେ ଏହାର ବିସ୍ଫୋରଣ ଘଟିବ କହି ହେଉନଥିଲା। ରଘୁ ଦିବାକର ଫାଶି ଆଦେଶରେ ପ୍ରଜାମାନେ ଉତ୍ୟକ୍ତ ହୋଇଉଠିଲେ। ନୟାଗଡ଼ ପ୍ରଜା ଆନ୍ଦୋଳନ ବେଳୁଁବେଳ ଭୟଙ୍କର ରୂପ ନେଲା। ରାଜା କଳା ଆଇନକୁ କଡ଼ାକଡ଼ି ଜାରି କଲେ। ଆନ୍ଦୋଳନକାରୀଙ୍କ ବିରୋଧରେ ମିଛ ଘରପୋଡ଼ି, ତାରଚୋରି, ଡକାୟତି, ମାଡ଼ପିଟି ମକଦମା ରୁଜୁକରି ଜେଲ୍ ଦେଲେ। ୧୯୪୧ ମସିହାରେ ରାଜକର୍ମଚାରୀମାନେ ନିଜେ ମହୀପୁର ଖମାର ପୋଡ଼ିଦେଇ ଥୁଆବାରୀ ଆନନ୍ଦ ଚନ୍ଦ୍ର ସ୍ୱାଇଁ ତାଙ୍କ ଭାଇ ଭାଗବତ ସ୍ୱାଇଁ, ସୁଦର୍ଶନ ସ୍ୱାଇଁ ଓ ରାମ ସାହୁଙ୍କୁ ତିନି ମାସ ଜେଲ୍ ସଜା ଦେଲେ।

<u>ଜେଲ୍ ଦଣ୍ଡ :</u> ବନ୍ଦୀଶାଳାରେ କଏଦୀମାନଙ୍କୁ ଖାଇବାକୁ ନଦେଇ ପୋଖରୀ ଖୋଳାଇବା। ମାଟି ବୁହାଇବା ଧାନ କୁଟାଇବା ନ ମାନିଲେ ନିସ୍ତୁକ ମାଡ଼ଦେବା ଇତ୍ୟାଦି ଇତ୍ୟାଦି ଅସହ୍ୟ ଦଣ୍ଡ।

ନୟାଗଡ଼ ବନ୍ଦୀଶାଳାରେ ତିନି ମାସ ସଜା ଭୋଗି ଭାଗବତ ସ୍ୱାଇଁ, ଆନନ୍ଦ ସ୍ୱାଇଁ, ସୁଦର୍ଶନ ସ୍ୱାଇଁ ଥୁଆବାରୀ ଫେରିଲେ। ରାଜସଜା ଭୋଗି ଆସିଥିବା ପିଲାମାନଙ୍କର ଅସହ୍ୟ ଖଟଣି କାହାଣୀ ଶୁଣି ଥୁଆବାରୀ ପଡ଼ିଲା ଉଠିଲା। ଗାଁ'ର ଆବାଳବୃଦ୍ଧବନିତା ରକ୍ତଚାଉଳ ଚୋବାଇ ଉଠିଲେ। ବାଘ ଘାସ ଖାଏନି। ଏତିକିରେ ଆନ୍ଦୋଳନ ଅଟକି ଯିବନି।

୧୯୪୨ ମସିହା ଦ୍ୱିତୀୟ ବିଶ୍ୱଯୁଦ୍ଧର ଘମାଘୋଟ ଲଢ଼େଇ ବେଳ। ମହାତ୍ମାଗାନ୍ଧି ଭାରତଛାଡ଼ ଆନ୍ଦୋଳନ ପାଇଁ ଦେଶବାସୀଙ୍କୁ ଡାକରା ଦେଲେ କର ବା ମର ଭାରତବର୍ଷର ସ୍ୱାଧୀନତା ଆଣ। ଗାନ୍ଧିଙ୍କ ଡାକରାରେ ନୟାଗଡ଼ ପ୍ରଜା ଆନ୍ଦୋଳନ ଉଗ୍ରରୂପ ଧାରଣ କଲା। ରାଜା କୃଷ୍ଣଚନ୍ଦ୍ର ସିଂ ମାନଧାତା ଆନ୍ଦୋଳନର ନେତା ବାଞ୍ଛାନିଧି ସେନାପତି, ନାରଣ ବେହେରା, ନରସିଂହ ନନ୍ଦ, ଶ୍ରୀଧର ଦାଶ ପ୍ରମୁଖ ନେତାମାନଙ୍କୁ ଗିରଫ କଲେ। ପ୍ରଜାମାନେ ରାଜାଙ୍କର ଏ ପ୍ରତିବନ୍ଧକକୁ ଖାତର କଲେନି। ପ୍ରଜାଙ୍କ ଭିତରେ ମୁକ୍ତିର ନିଆଁ ଜଳୁଛି ଏଥର ଜାଳିଦେବେ। ତା୮.୧୦.୧୯୪୨ରେ ବାହାଡ଼ାଝୋଲା ନିକଟସ୍ଥ ଜଙ୍ଗଲ ମଧୁଆଖଲି ପଡ଼ିଆରେ ପ୍ରଜାମଣ୍ଡଳର ଶହ ଶହ କର୍ମୀ ଯୋଗଦେଇ ନିଷ୍ପତ୍ତି ନେଲେ ପାଞ୍ଚଟି ଶାଖାରେ ଯାଇ ନୟାଗଡ଼ ରାଜବାଟୀ ଅବରୋଧ କରିବେ। ଯା ଭିତରେ ସମସ୍ତ ସରକାରୀ କାର୍ଯ୍ୟାଳୟ ଅବରୋଧ କରିବେ। ନିଷ୍ପତ୍ତି ଶୁଣି ଆଗ୍ନେୟଗିରିରୁ ଲାର୍ଭା ଉଠିଲା ପରି ଆନ୍ଦୋଳନକାରୀ ସଂଗ୍ରାମକୁ ଡେଇଁପଡ଼ିଲେ। ପ୍ରଥମ ଦଳ ଆନନ୍ଦ ଚନ୍ଦ୍ର ସ୍ୱାଇଁ

ଓ ପୂର୍ଣ୍ଣଚନ୍ଦ୍ର ମଲିକଙ୍କ ନେତୃତ୍ୱରେ ବରକୋଳା ଦେଇ ନୂଆଗାଁ ବାଟେ ନୟାଗଡ଼ରେ ପହଞ୍ଚିବେ। ଦ୍ୱିତୀୟ ଦଳ ସୁଦର୍ଶନ ପୃଷ୍ଟି ଓ ଲକ୍ଷ୍ମଣ ସାହୁଙ୍କ ନେତୃତ୍ୱରେ ବାହାଡ଼ାଝୋଲାରୁ ମହୀପୁର ଦେଇ ନୟାଗଡ଼ରେ ପହଞ୍ଚିବେ। ତୃତୀୟ ଦଳ ନାରାୟଣ ଉପାଧ୍ୟାୟଙ୍କ ନେତୃତ୍ୱରେ ଓଡ଼ଗାଁରୁ ଶରଣକୁଳ ଦେଇ ନୟାଗଡ଼ରେ ପହଞ୍ଚିବେ। ଚତୁର୍ଥ ଦଳ ସଦାଶିବ ଷଡ଼ଙ୍ଗୀଙ୍କ ନେତୃତ୍ୱରେ ଗୋଡ଼ିପଡ଼ାରୁ ଇଟାମାଟି ଦେଇ ନୟାଗଡ଼ରେ ପହଞ୍ଚିବେ। ପଞ୍ଚମ ଦଳ କଣ୍ଢୁରୀ ପରିଡ଼ା ସୁଦର୍ଶନଙ୍କ ନେତୃତ୍ୱରେ ମହୀପୁରଠାରୁ ମାଳିସାହି ବାଲୁଗାଁ ଦେଇ ନୟାଗଡ଼ ଯିବେ।

ସଂଗ୍ରାମ ମଇଦାନରୁ ଆନ୍ଦୋଳନକାରୀ ୯.୧୦.୧୯୪୨ରେ ଅଭିଯାନ ଆରମ୍ଭ କରିଥିଲେ। ଏ ସମ୍ବାଦ ପାଇ ରାଜା ଦମନଲୀଳା ଆରମ୍ଭ କରିଥିଲେ। କଣ୍ଢୁରି ପରିଡ଼ା ସୁଦର୍ଶନ ସ୍ୱାଇଁ ତାଙ୍କ ଅଭିଯାନ ପଥରେ ସରକାରୀ କାର୍ଯ୍ୟାଳୟ ପୋଡ଼ି ଦେଉଥିଲେ ବାଟରେ ଗିରଫ ହେଲେ। ଆନନ୍ଦ ଚନ୍ଦ୍ର ସ୍ୱାଇଁ ଓ ପୂର୍ଣ୍ଣଚନ୍ଦ୍ର ମଲିକ ନେତୃତ୍ୱରେ ଥୁଆବାରୀ ପାରାଡ଼ିପି, ବାଲଣ୍ଡା, କୁଶବିନ୍ଧା, କଲିଆ, ବରକୋଳା, ଅଠରଗଣ୍ଡା, କେନ୍ଦୁପାଟଣା, ଶିମିଳିସାହି, କୁସୁମଗାଡ଼ିଆ, ମଣ୍ଡାଡ଼ିହ, କଣ୍ଟିଆମା, ଖାଲମଡ଼ା, କୋରଡ଼ାମାଳ, ପୋକଶୁଙ୍ଘା, କରଡ଼ାପଲ୍ଲୀ, ଗୁଣ୍ଡୁରାସାହି, ମାଣିଆକୋଟ, ରାଣୀଖମା, ଡିମିରିପଲ୍ଲୀ ମାଳ ଅଞ୍ଚଳରୁ ଶହ ଶହ ବିଦ୍ରୋହୀ ଭାରତ ମାତା କି ଜୟ, ତ୍ରିରଙ୍ଗା ପତାକା କି ଜୟ ଉନ୍ମାଦରେ ବରକୋଳା ବଙ୍ଗଳା ଘେରାଉ କଲେ। ଆନ୍ଦୋଳନକାରୀ ବରକୋଳା ବଙ୍ଗଳା ପୋଡ଼ିଦେଇ ବିଦ୍ରୋହୀମାନେ ସେହି ରାତ୍ରିରେ ନୂଆଗାଁ ଅଭିମୁଖେ ଯାତ୍ରା କଲେ।

ରକ୍ତମୁଖା ହୋଇ ବିଦ୍ରୋହୀମାନେ ୧୦.୧୦.୧୯୪୨ ସକାଳ ୮ଟା ସମୟରେ ନୂଆଗାଁ ଥାନା ଘେରାଉ କଲେ। ଆନନ୍ଦ ଚନ୍ଦ୍ର ସ୍ୱାଇଁ ଉତ୍ୟକ୍ତ ଜନତାଙ୍କୁ ନେଇ ମାଡ଼ି ଆସୁଥିବା ଦେଖି ନୂଆଗାଁ ଥାନା ଦାରୋଗା ବେଣୁଧର ପଟ୍ଟନାୟକ ଗୁଳି କଲେ। ଦାରୋଗାଙ୍କ ଗୁଳିରେ କଷ୍ଟିଡ଼ାକୁଆ ଟଳିପଡ଼ିଲେ। କଷ୍ଟିଡାକୁଆ ଚିତ୍କାର କଲେ ଯେତେ ମାରୁଛ ମାର୍ ଭାରତ ମାତାକି ଜୟ... ଶହୀଦ ହୋଇଗଲେ। ବିଦ୍ରୋହ ଦମନ ପାଇଁ ପୋଲିସର ବ୍ଲାଙ୍କ ଫାୟାର ଚାଲିଛି। ଖାଲମଡ଼ା ବାଉରୀ ପରିଡ଼ାଙ୍କ ଦେହରେ ଗୁଳି ବାଜିଛି କୁସୁମଗାଡ଼ିଆ ବଳରାମ ଡାକୁଆଙ୍କ ଜଙ୍ଘରେ ଗୁଳି ବାଜିଛି; ଗୁଳି ମାଡ଼ରେ ମଣ୍ଡାଡ଼ିହ ବାସୁଦେବ ଯାନୀଙ୍କ ଆଙ୍ଗୁଠି ଛିଡ଼ିଯାଇଛି। କମ୍ପୁଛି ନୂଆଗାଁ ପୋଲିସ ଗୁଳି ମାଡ଼ରେ ଡରି ଯାଇଛନ୍ତି ବିଦ୍ରୋହୀମାନେ। ପ୍ରାଣ ବିକଳରେ କେତେ କୁଆଡ଼େ ଛତ୍ରଭଙ୍ଗ ଦେଇଛନ୍ତି। କଷ୍ଟି ଡାକୁଆଙ୍କର ଶବ ପଡ଼ିଛି। ଗିରଫ ହୋଇଥିବା ବିଦ୍ରୋହୀମାନେ ତାଙ୍କୁ ସଲାମ କରୁଛନ୍ତି। ବିଦ୍ରୋହର ଅଗ୍ନି ଲିଭି ଲିଭି ଯାଉଛି- ବିଦ୍ରୋହୀମାନେ ନୟାଗଡ଼ ଜେଲ୍‌କୁ ଯାଉଛନ୍ତି। ସେଦିନ ଥୁଆବାରୀ ଅରୁଥିଲା ତା'ର ବୀରପୁତ୍ରମାନେ ବିଜୟୀ ହୋଇପାରିଲେ ନାହିଁ।

ଭାଗବତ ସ୍ୱାଇଁ, ଆନନ୍ଦ ଚନ୍ଦ୍ର ସ୍ୱାଇଁ, ସୁଦର୍ଶନ ସ୍ୱାଇଁ, ପ୍ରହଲ୍ଲାଦ ସ୍ୱାଇଁ ଲୁଚିଛପି

ଗଞ୍ଜାମ ଅଞ୍ଚଳକୁ ଚାଲିଗଲେ । ଖଡି ସାହୁ ଏକଲା ହୋଇ କୁଆଡ଼େ ନିଖୋଜ ହୋଇଗଲେ ଯେ ଏଯାଏ ତାଙ୍କର ଖୋଜ୍‌ଖବର ନାହିଁ । ୧୯୪୨ ମସିହା ଅକ୍ଟୋବର ୧୦ ଭାରତଛାଡ଼ ସଂଗ୍ରାମର ଭୟଙ୍କର ପରିଣତିରେ ସ୍ତମ୍ଭୀଭୂତ ହେଲା ଓଡ଼ିଶା । ଏ ଆନ୍ଦୋଳନରେ ବିପ୍ଳବୀ କଷ୍ଟି ଡାକୁଆ ଶହୀଦ ହେଲେ । ହଠାତ୍ ଏକ ଆଗ୍ନେୟଗିରି ଉଦ୍‌ଗିରଣ ଶୁପ୍ତ ହୋଇଗଲା । ସଂଖ୍ୟାଧିକ ବିପ୍ଳବୀ ଗିରଫ ହୋଇ ନୟାଗଡ଼ ଜେଲ୍‌କୁ ଗଲେ ।

ରାଜାଙ୍କର କଠୋର ଆଇନ୍ ଜାରି ଥୁଆବାରୀ ଉପରେ । ପୋଲିସର ଦୌରାତ୍ମ୍ୟ ଗାଁ'ଟାରେ ଅଢ଼େଇ ବର୍ଷକାଳ । କେଳାପୋଲିସ, ଇସ୍ଲାଇଲ ପୋଲିସ ଯାହାଟା ପାଇଲେ ତାହା ଭଙ୍ଗା ଭଙ୍ଗୀ ଫୋପଡ଼ା କଲେ । ସ୍ତ୍ରୀଲୋକଙ୍କୁ ଭେଷଡ଼ ବଚନରେ ଗାଳି କଲେ । ଥୁଆବାରୀ ପୁରୁଷଶୂନ୍ୟ ହୋଇଗଲା । ପୁରୁଷମାନେ ରମଜାନ୍, ପାଲବା, ଠେଗଲ ବଣ ପାହାଡ଼ରେ ଲୁଚି ରହିଲେ । ସ୍ତ୍ରୀମାନେ ଦିନରେ ଖାଦ୍ୟ ନେଇଗଲେ ପୋଲିସ ଖାନତଲାସ କରେ ଖାଦ୍ୟକୁ ଫୋପାଡ଼ି ଦିଏ । ହେଲେ ପୋଲିସ ସେମାନଙ୍କଠାରୁ ପୁରୁଷମାନଙ୍କର ସନ୍ଧାନ ପାଏନି । ଏଥିରୁ ଜଣାପଡ଼େ ଥୁଆବାରୀ ନାରୀମାନେ କେତେ ଜାତୀୟପ୍ରେମୀ । ରାତିରେ ପୁରୁଷମାନେ ବାରିପଟେ ଲୁଚି ଇସାରା ଦିଅନ୍ତି । କଂସା ବେଲାରେ କାଳେ ଶବ୍ଦ ହେବ ପୋଲିସ ଜାଣିବ ତେଣୁ ବାରିପଟେ ଗାତକରି ପତ୍ର ପାରି ମାଣ୍ଡିଆ ଜାଉ, ସୁଆଁଜାଉ ଯାହାଟା ଖାଦ୍ୟ ଥିଲା ଗାତରେ ଢାଳିଦିଅନ୍ତି । ଘରଲୋକ ଚୋର ପରି ଖାଇଦେଇ ରାତିରେ କୋଉ ଫସଲଜଗା ଭାଡ଼ିରେ ଶୁଅନ୍ତି । ରାଜାଙ୍କର ଅମାନୁଷ ଅତ୍ୟାଚାର ଥୁଆବାରୀ ଉପରେ ମାଳ ଗୁହାଳରେ କୋକୁଆ ଭୟ ।

ଆସ୍କାରେ ଆନନ୍ଦଚନ୍ଦ୍ର ସ୍ୱାଇଁ ଲାଲମୋହନ ପାତ୍ରଙ୍କ ହାବୁଡ଼େ ପଡ଼ିଗଲେ । ଲାଲମୋହନ ପାତ୍ର ସରକାରଙ୍କର ଗୁପ୍ତଖବର ନେବା ଆଣିବା କରନ୍ତି । ସେ ଆନନ୍ଦ ଚନ୍ଦ୍ର ସ୍ୱାଇଁଙ୍କୁ ଅଟକାଇ କହିଲେ ତୁମେ ଏଠି ଲୁଚିଛ ସେଠି ନୟାଗଡ଼ ଅନ୍ଧାର ରାଜକୋପରେ ନୟାଗଡ଼ ପଡୁଛି ଉଠୁଛି । ଥୁଆବାରୀ ଉପରେ ରାଜାଙ୍କର ଦମନ ଲୀଳା । ଝିଅବୋହୂଙ୍କ ଉପରେ ଗାଳିଗୁଲଜ ଥୁଆବାରୀର ଅବସ୍ଥା କ'ଣ ହବ କହି ନୁହେଁ । ଆନନ୍ଦ ଚନ୍ଦ୍ର ସ୍ୱାଇଁ ସେଠୁ ଖସିଗଲେ ।

ଗାଁ'ର ଏ ଦୁର୍ଦ୍ଦଶା ଶୁଣି ସହିପାରୁ ନଥିଲେ ଆନନ୍ଦ ସ୍ୱାଇଁ । ସେ ଭାଇ ବାଳକୃଷ୍ଣ ସହିତ ଆଲୋଚନା କଲେ । ଆରେ ଆମେ ଲୁଚିଛେ ଜୀବନ ଭୟରେ । ବର୍ତ୍ତମାନ ଥୁଆବାରୀର ମା', ଖୁଡ଼ୀ, ଭଉଣୀ, ଭାଉଜ, ଝିଅମାନେ ନିର୍ଯାତନାରେ ଷଢୁଛନ୍ତି । ଆମେ ଧରାଦେଲେ ଥୁଆବାରୀରୁ ରାଜରୋଷ କମିଯିବ । ଦୁଇଭାଇ ଆତ୍ମସମର୍ପଣ କରିବାପାଇଁ ନିଷ୍ପତ୍ତି ନେଲେ । ଆନନ୍ଦ ସ୍ୱାଇଁ, ବାଳକୃଷ୍ଣ ସ୍ୱାଇଁ, ଆସ୍କା ଗୋବିନ୍ଦ ପ୍ରଧାନଙ୍କ ଘରେ ରହୁଥାନ୍ତି । ଲାଲମୋହନ ପାତ୍ର ଓ ଗୋବିନ୍ଦ ପ୍ରଧାନ ଆନନ୍ଦଙ୍କୁ ଧରାଦେବାକୁ ବାରଣ କଲେ । ଆନନ୍ଦ ସ୍ୱାଇଁ ତାଙ୍କ ସିଦ୍ଧାନ୍ତ ବଦଳାଇଲେ ନାହିଁ । ଆସ୍କା ବଜାର

ଗହଳରେ ଠିଆହୋଇ 'ଭାରତ ମାତା କି ଜୟ' ସ୍ଲୋଗାନ ଦେଲେ। ତଟସ୍ଥ ହୋଇଗଲେ ବଜାରବାସୀ। ଆସ୍କା ପୋଲିସ ସେ ଦୁଇଭାଇଙ୍କୁ ଗିରଫ କରି ନୟାଗଡ଼ ପଠାଇ ଦେଲେ। ଥୁଆବାରୀ ଓ ମାଳ ଭିତରର ରାଜଦ୍ରୋହୀମାନେ ନୟାଗଡ଼ ଜେଲ୍‌ରେ ରହିଲେ।

କସ୍ତୁରୀ ପରିଡ଼ା ଆଉ ତାଙ୍କର ଆଖପାଖ ଗାଁ'ର ଭାଇମାନେ ନୟାଗଡ଼ ଜେଲ୍‌ରେ ନିର୍ମମ ସଜ୍ଜା ଭୋଗୁଛନ୍ତି। କଷ୍ଟ ସହି ବନ୍ଦୀମାନେ ଦେହକୁ ପଥର କରିଦେଲେଣି। କଷ୍ଟ ସହି ସହି କସ୍ତୁରୀ ପରିଡ଼ା ୮୦ ବର୍ଷ ବୟସରେ ନୟାଗଡ଼ ଜେଲ୍‌ରେ ଶହୀଦ ହେଲେ। ମଲା ପୂର୍ବରୁ କସ୍ତୁରୀ ପରିଡ଼ାଙ୍କର ଶେଷ କଥା ଥିଲା- 'ଭାଇମାନେ ମୋ ପାଇଁ କେହି ଦୁଃଖ କରିବ ନାହିଁ, ମୋର ଦୁଃଖ ଯେ ମୁଁ ସ୍ୱରାଜ ଦେଖିପାରିଲି ନାହିଁ। ହେଲେ ତୁମେମାନେ ଆନ୍ଦୋଳନରୁ ପଛଘୁଞ୍ଚା ଦେବ ନାହିଁ।' ଜେଲ୍ ଭିତରେ କଏଦୀଙ୍କ ପାଇଁ ଚିକିତ୍ସାର ବ୍ୟବସ୍ଥା ନଥିଲା, ଥିଲା ଖଟଣି। କସ୍ତୁରୀ ପରିଡ଼ାଙ୍କ ପୁଅ ବୁଦ୍ଧି ପରିଡ଼ା ପାଞ୍ଚଦିନ ଶଯ୍ୟାଶାୟୀ ହୋଇ ଶହୀଦ ହେଲେ। ଦୟା ବେହେରା ନଖାଇ ନପିଇ ଶହୀଦ ହେଲେ। ଲିଙ୍ଗା ନାହାକ ଜେଲ୍ କଷ୍ଟରେ ଅନ୍ଧ ହୋଇଗଲେ। ହରି ସାହୁ ଜେଲ୍‌ରେ ପାଗଳ ହୋଇଗଲେ। ଏଇତ ଥୁଆବାରୀ ବାସିନ୍ଦାଙ୍କର ଦେଶ ପାଇଁ ଜାତୀୟଭାବ ଆତ୍ମବଳିଦାନ।

ଭାରତଛାଡ଼ ଆନ୍ଦୋଳନ ସଫଳ ହେଲା। ୧୯୪୭ ଅଗଷ୍ଟ ୧୫ରେ ସ୍ୱାଧୀନ ଭାରତର ତ୍ରିରଙ୍ଗା ପତାକା ଲାଲକିଲାରେ ଉଡ଼ିଲା। ଥୁଆବାରୀ ଆନ୍ଦୋଳନକାରୀ ନୟାଗଡ଼ ଜେଲ୍‌ରେ ୨ବର୍ଷ, ୩ବର୍ଷ, ୪ବର୍ଷ ସଜ୍ଜାଭୋଗୀ ଜନ୍ମମାଟିକୁ ଫେରିଲେ। ୧୯୪୮ ମସିହା ପ୍ରଥମ ପାଦରେ ନୟାଗଡ଼ରୁ ରାଜଶାସନ ଉଚ୍ଛେଦ ହେଲା। ଥୁଆବାରୀ ଜନସାଧାରଣ ପୁନଶ୍ଚ ଉଜୁଡ଼ା ଗାଁ'କୁ ସଜାଡ଼ିବାରେ ଲାଗିଲେ।

ଥୁଆବାରୀ ଗାଁ'କୁ ସର୍ବେକ୍ଷଣ କଲାବେଳେ ରାଜତନ୍ତ୍ର କଷଣକୁ ସହିଥିବା ନାରୀଙ୍କ କଥା ଭୁଲିହୁଏନି। ପୁନାବେଓ୍ୱା ୯୫ବର୍ଷର ତମ୍ବା ବର୍ଣ୍ଣର ଜଣେ ବିଶାଳକାୟ ବୃଦ୍ଧା କହନ୍ତି 'ମୋର ସ୍ୱାମୀ ରାଜଦଣ୍ଡ ଭୟରେ ରାମଜାନୀ ମୁଣ୍ଡିଆରେ ଲୁଚିଥାନ୍ତି ଆମ ବିଲ କାନ୍ଥ ବାଉଁଶ ବଣରେ ଘରଠାରୁ ଦେଢ଼କୋଶ କି ଦି'କୋଶ ବାଟ ହେବ। ଲୁଚେଇ ମୁଁ ମାଣ୍ଡିଆ ଜାଉ ତାଙ୍କ ଖାଇବା ପାଇଁ ନେଇଯାଉଥାଏ। ପୋଲିସ୍ ମୋତେ ତଲାସ କଲା। ତେରିବେଟି କଲା ଖାଦ୍ୟମୋଞ୍ଚାକ ଫୋପାଡ଼ି ଦେଲା। କି ଦୁଃଖ କହିବି। ଗାଁ'ରେ ରାଜଭୟ ବଣରେ ବାଘ ଭୟ। ସମ୍ବାରୀ ସେଠୀର ସ୍ତ୍ରୀ ମଙ୍ଗୁଳି ସେଠୀ ଖାଇବା ନେଇ ଯାଉଥିଲା ପୋଲିସ ତରେଇ ଖାଁ ହାତରୁ ଛଡ଼େଇ ନେଇ ଅସନାବଣିକୁ ଫୋପାଡ଼ି ଦେଲା। ଗୁରୁବାରୀ ସାହୁଙ୍କ ସ୍ତ୍ରୀ ଚାନ୍ଦ ସାହୁ, ଅରକ୍ଷିତ ସେଠୀର ସ୍ତ୍ରୀ ମଣି ସେଠୀର ସେଇ ଏକାଦଶା। କେତେ ମାଡ଼, ଗାଳିଗୁଲଜ ସହିଛନ୍ତି ଥୁଆବାରୀ ଘରର ଝିଅ ବୋହୂମାନେ। ହେଲେ କଥା ଛପେଇ ରଖନ୍ତି।

ଆନନ୍ଦ ଚନ୍ଦ୍ର ସ୍ୱାଇଁଙ୍କ ବଡ଼ଭାଇ ଭାଗବତ ସ୍ୱାଇଁଙ୍କ ସ୍ତ୍ରୀ ପିଲାମାନଙ୍କୁ କହିଥିଲେ-

"ମହାତ୍ମାଗାନ୍ଧିଙ୍କର କି ମନ୍ତ୍ର ପାଇଲେ ଯେ ତୁମ ବାପା ଦାଦି ଗାଁ'ଟାଯାକ ଲୋକ ଦେଶରୁ ଗୋରା ମ୍ଳେଚ୍ଛିଆ ଶାସନ ହଟାଇବା ପାଇଁ ଆନ୍ଦୋଳନରେ ମାତିଲେ। ରାଜଦଣ୍ଡ ଭୟରେ ବଣରେ ଲୁଚିଲେ। ପୋଲିସର କେତେ ଠେଙ୍ଗେଣି ପାହାର ସହିଛୁରେ ପିଲେ। ଗାଁ'ରେ କେହି ରହନ୍ତିନି। ଏଇ ବଣ ପାହାଡ଼ ଭିତରେ ତୁମ ବାପାମାନେ ଲୁଚି ନଥିଲେ। ତୁମେମାନେ ଜନ୍ମ ହୋଇ ନଥା'ନ୍ତରେ ଧନ।" ମନୁ ମା'ଙ୍କର ଏ ଜାତୀୟ ଭାବ ଉତ୍ତର ପିଢ଼ି ପାଇଁ କି ଉଚ୍ଚ ଆଦର୍ଶ ଦର୍ଶନ। ବାସ୍ତବରେ ଥୁଆବାରୀ ପୁରୁଷ, ନାରୀଙ୍କର ଗୋଟିଏ ମନ ଗୋଟିଏ ଭାବ ଯୋଗୁଁ ତିଷ୍ଠି ରହିଛି। ଏପରି ଗାଁ ରାଜ୍ୟରେ ବିରଳ।

ପ୍ରବାଦ ପୁରୁଷ ଦାଶରଥୀ ପଟ୍ଟନାୟକ : ଗାନ୍ଧୀବାଦର କର୍ମଯୋଗୀ/ ପ୍ରବାଦପୁରୁଷ/କିମ୍ବଦନ୍ତୀ ପୁରୁଷ/ସାଧନାର ମହର୍ଷି ଦାଶରଥୀ ପଟ୍ଟନାୟକ ନୂଆଗାଁ ବ୍ଲକ୍ ଅନ୍ତର୍ଗତ ମହିପୁର ଗ୍ରାମ ଚାହଳି ଗ୍ରାମ ନିକଟସ୍ଥ ରାଇପୁର ପଲ୍ଲୀଗ୍ରାମରେ ପିତା ବାଞ୍ଛାନିଧି ପଟ୍ଟନାୟକ, ମାତା ପାର୍ବତୀ ଦେବୀଙ୍କ କୋଳରେ ୧୨.୯.୧୯୦୭ ମସିହାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ଶିକ୍ଷାଗତ ଯୋଗ୍ୟତା ସେ ସମୟର ଚତୁର୍ଥ ଶ୍ରେଣୀର ଅଧ୍ୟୟନ। ବାଞ୍ଛାନିଧି ପଟ୍ଟନାୟକଙ୍କର ଚାରିପୁତ୍ର ବୈଦ୍ୟନାଥ ପଟ୍ଟନାୟକ, ସୋମନାଥ ପଟ୍ଟନାୟକ, ଦାଶରଥୀ ପଟ୍ଟନାୟକ ଓ ନିରଞ୍ଜନ ପଟ୍ଟନାୟକ। ଅଭାବ ହେତୁ ଦାଶରଥୀ ପଟ୍ଟନାୟକ ଓ ନିରଞ୍ଜନ ପଟ୍ଟନାୟକ ନୂଆଗାଁ ନିକଟସ୍ଥ ପଲ୍ଲୀ ଗାଁ ଉଦୟପୁରରେ ବସତି ସ୍ଥାପନ କରିଥିଲେ। ବଡ଼ ସଂଘର୍ଷମୟ ତାଙ୍କର ଜୀବନଯାତ୍ରା। ଘନ ଅରଣ୍ୟ ଆଚ୍ଛାଦିତ ସଭ୍ୟତାଠାରୁ ବିଚ୍ଛିନ୍ନ ପରିକା ଏ ନିପଟ ପଲ୍ଲୀ ଉଦୟପୁର ଗ୍ରାମରେ ଡାଳରେ ପକ୍ଷୀ ବସା ବାନ୍ଧିଲା ପରି ଦାଶରଥୀ ପଟ୍ଟନାୟକ କର୍ମସାଧନା ବ୍ରତୀ ହେଲେ। ଏ ନିଛାଟିଆ ଭୂଇଁରୁ ଆକାଶକୁ ଚାହିଁଲେ- ଏ ଶୂନ୍ୟ ସରହଦଟାରେ ପୃଥିବୀ କି ଓହ୍ଲାଇ ପଡୁଛି! ଧରିବାକୁ ହାତ ବଢ଼ାଇ ଦଉଛନ୍ତି ଦାଶରଥୀ। ସାଧନା କେବେ ପରାହତ ନୁହେଁ। ସେ ଉଦୟପୁରର ରାସ୍ତା ଖୋଲି ଦେଇଛନ୍ତି ଯାହା ଆନ୍ତର୍ଜାତୀୟ ସ୍ତରକୁ ଛୁଇଁ ଯାଇଛି। ସମୁଦ୍ର ଭଳି ଘେରି ରହିଥିବା ଅରଣ୍ୟ ପୃଷ୍ଠରେ ଆବିଷ୍କାର କରିଛନ୍ତି ପ୍ରତିଭାର ଜ୍ଞାନଦୀପ। ସେଇଠି ପ୍ରତିଷ୍ଠା କରିଛନ୍ତି ଶ୍ରୀ ଅରବିନ୍ଦ ସଂଗ୍ରହାଳୟ, ବାଞ୍ଛାନିଧି ପାଠାଗାର, ଯଦୁମଣି ସଂହିତ୍ୟ ସଂସଦ। ବଣମଲ୍ଲୀ ବଣରେ ମଉଳି ଯାଇନି ପ୍ରସାରୀ ଯାଇଛି ବିଶ୍ୱଜୀବନକୁ।



ଦାଶରଥୀ ପଟ୍ଟନାୟକ ତାଙ୍କର କର୍ମମୟ ଜୀବନରେ ପ୍ରଥମ ଭାଗରେ ଚାକିରି

କରିଥିଲେ କିନ୍ତୁ ଆତ୍ମସନ୍ତୋଷ ପାଇନଥିଲେ। ପରାଧୀନ ଚାକିରିକୁ ପସନ୍ଦ କରିନଥିଲେ। ତେଣୁ ସେଥିରୁ ସେ ଅବ୍ୟାହତି ନେଇଥିଲେ। ଉଦୟପୁର ଗାଁ ଭିତରେ ନିଜର ଜଙ୍ଗଲଭୂଇଁକୁ ସଫେଇ କରିବାରେ ଲାଗିଲେ। ଏହି ଜାଗା ଉପରେ ଘର ଖଣ୍ଡେ ନିର୍ମାଣ କଲେ ଯୋଉ ଘରଟି ହେଲା ତାଙ୍କର ସାଧନାର ଆଶ୍ରମ। ଦାଶରଥୀ ବାବୁଙ୍କ ଅକ୍ଳାନ୍ତ ପରିଶ୍ରମ ଦେଖି ଲୋକେ ତାଙ୍କୁ ଖୁଣ୍ଟାତଡ଼ା ରାଜା ବୋଲି ଆକ୍ଷେପ କଲେ। ପ୍ରଥମେ ସେ ଜହ୍ନିଓଷା, ଓଷାବ୍ରତ ବହି, ଖୁଦରକୁଣୀ ଗୀତ ବହି, ମଧୁବର୍ଣ୍ଣବୋଧ ଏପରିକା କ୍ଷୁଦ୍ର କ୍ଷୁଦ୍ର ବହି ସାଇତି ଏହାର ସଂଖ୍ୟା ବଢ଼ାଇବାରେ ପ୍ରୟାସ ରଖିଲେ। ଉଈ ମୂଷାଖିଆରୁ ରକ୍ଷାପାଇବା ପାଇଁ ତା'ର ଉପଯୁକ୍ତ ଯତ୍ନ ନେଲେ। ଏଇ ଛୋଟ ଚଟି ବହି ସାଇତାରୁ ଏବେ ସେ ଘରେ ଗଦା ଗଦା ପୁସ୍ତକ ସାଇତି ହୋଇ ରହିଛି। ଯେତେ ଦୈନିକ ଖବରକାଗଜ ପ୍ରଥମ ପ୍ରକାଶରୁ ଏଯାବତ୍ କ୍ରମାନ୍ୱୟରେ ପତ୍ରିକା, ପୋଥି, ଗ୍ରନ୍ଥମାନ ବିଭିନ୍ନ ଭାଷା ଭାଷାକୋଷ, ଅସଂଖ୍ୟ ତାଳପତ୍ର ପୋଥି କ'ଣ ବା ନମିଳେ ଦାସିଆ ଅଜାଙ୍କ ସଂଗ୍ରହାଳୟ ପାଠାଗାରରୁ। ସେ ସମୟର କୁଟୀର ଆଶ୍ରମ ପରିସରରେ ହଜାର ହଜାର ପୁସ୍ତକ ପୁସ୍ତିକାକୁ ଏବଂ ସଂଗ୍ରହ ସାମଗ୍ରୀମାନଙ୍କୁ ସୁରକ୍ଷାରେ ସାଇତି ରଖିବା ପାଇଁ କୋଠାଘର ଠିଆ ହୋଇଛି। ପାଠାଗାର ପରିସର ମଧ୍ୟଭାଗରେ ସ୍ୱର୍ଗତ ଦାଶରଥୀ ପଟ୍ଟନାୟକଙ୍କ ବିଶାଳ ପ୍ରତିମୂର୍ତ୍ତି ନମ୍ର ଶ୍ରଦ୍ଧାରେ ପରିଦର୍ଶକମାନଙ୍କୁ ଉତ୍ସାହିତ କରୁଛନ୍ତି। କେତେ ଆକର୍ଷଣୀୟ ଦାସିଆ ଅଜାଙ୍କର ସାଧନାର ଏ ଜ୍ଞାନପୀଠ।

ଦାଶରଥୀ ପଟ୍ଟନାୟକ ପାଠାଗାର ଆନ୍ଦୋଳନର ଜଣେ ପ୍ରମୁଖ ସାରଥୀ। ଗ୍ରାମାଞ୍ଚଳରେ ପାଠାଗାର ସ୍ଥାପନ କରିବାରେ ଲିଙ୍ଗରାଜ ମିଶ୍ର (କଜଳାଇପଲ୍ଲୀ) ଦଣ୍ଡପାଣି ମିଶ୍ର ଶରଣକୁଳଙ୍କ ସହିତ ସେ ଯୋଡ଼ି ହୋଇଥିଲେ। ଏଣୁ ଉଦୟପୁର ପଲ୍ଲୀଗାଁ'ରେ ପାଠାଗାରଟିଏ ଗଢ଼ିବା ପାଇଁ ଉଦ୍ୟମ ଜାରି ରଖିଲେ। କ୍ଷୁଦ୍ର ଚଟିବହିଗୁଡ଼ିକ ପ୍ରେରଣାରେ ସଂଗ୍ରହ ସଂଖ୍ୟା ବୃଦ୍ଧି କରିବାରେ ଲାଗିପଡ଼ିଲେ। ହାତରେ ପଇସା ନଥାଇ ଅଭିଯାନରେ ବାହାରି ପଡ଼ିଲେ। ଆଣ୍ଠୁ ଲୁଚୁନଥିବା ଖଣ୍ଡେ ଖଦଡ଼ ଧୋତି, ତାଙ୍କର ପିନ୍ଧାବାସ, କାନ୍ଧରେ ଖଣ୍ଡେ ଖଦଡ଼ ବେଢ଼ାଣ ମୁଣ୍ଡରେ ଠେକା, ହାତରେ ମୁଣ୍ଡେ ଉଚ୍ଚାର ଠେଙ୍ଗା ଗାନ୍ଧିଙ୍କ ପରି ଡଗଡଗ ଚାଲିରେ କୁଆଡ଼େ ବାହାରନ୍ତି କେହି ଜାଣନ୍ତିନି। ଏ ଚାଲିକୁ ରାସ୍ତା ଅଣ୍ଟେ ନାହିଁ। ତାଙ୍କର କଠୋର ଶ୍ରମର ସୁଫଳ ଉଦୟପୁର ଭଳି ପଲ୍ଲୀ ଗାଁ'ରେ ୧୯୫୩ ମସିହାରେ ନିଜ ଘରେ 'ଅରବିନ୍ଦ ସଂଗ୍ରହାଳୟ, ବାଞ୍ଛାନିଧି ପାଠାଗାର, ଯଦୁମଣି ସାହିତ୍ୟ ସଂସଦ ଆରମ୍ଭ କରିଥିଲେ। ଏ ତିନି ବିଭାଗର ସଂପ୍ରସାହରଣ ଏପରି ହେଲା ଯେ ୧୯.୫.୧୯୫୯ ମସିହାରେ ଆନୁଷ୍ଠାନିକ ଭାବେ ରମାଦେବୀଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା। ପଞ୍ଚପାଣ୍ଡବ ପର୍ବତ ପାଦଦେଶରେ କ୍ଷୁଦ୍ର ସହର ନୂଆଗାଁ ଥାନାକୁ ଲାଗି, ଦଶପଲ୍ଲା

ବୌଦ୍ଧ ବଲାଙ୍ଗୀରକୁ ପଡ଼ିଥିବା ଜାତୀୟ ରାଜପଥରେ ନୂଆଗାଁଠାରୁ ଉତ୍ତରକୁ ୪/୫କି.ମି. ଦୂର ଶାଳ, ପଣସ, ଆମ୍ବ, କେନ୍ଦୁ, କୋଚିଲା, ଗୋହିରିଆ, କାଳଚୁଆ ବଣି ଅରଣ୍ୟ ପଥରେ ଉଦୟପୁର ପାଠାଗାରର ଅବସ୍ଥାନ ଏ ମହାପୁରୁଷଙ୍କ ଦ୍ୱାରା ଗଢ଼ା କୀର୍ତ୍ତି ଜ୍ଞାନତୀର୍ଥ।

ଦାଶରଥୀ ପଟ୍ଟନାୟକ ସଂଗ୍ରହ କରିଥିବା ସଂଗ୍ରହକୁ ତାଙ୍କ ସଂଗ୍ରହାଳୟରେ ୪୦ଟି ବିଭାଗରେ ପର୍ଯ୍ୟାୟଭୁକ୍ତ କରିଥିଲେ। ପ୍ରତି ପର୍ଯ୍ୟାୟରେ କେଉଁଟି ମିଳିନାହିଁ ତାକୁ ଏକ ତାଲିକା କରୁଥିଲେ। ଏଇ ତାଲିକାକୁ ନେଇ ତାଙ୍କ ଅନ୍ୱେଷଣର ଯାତ୍ରା। ଏକଦା ଏକ ତାଳପତ୍ର ପୋଥି ପାଇଁ ଭବାନୀପାଟଣା ରାଜଦରବାରକୁ ଯାଇଥିଲେ। ପୋଥିଟିକୁ ଦେଖିଲେ ସରଳ ଅମୃତ ବଚନରେ ପୋଥିଟି ଆଣିବାକୁ ମାଗିଲେ ରାଜା ଦେଲେ ନାହିଁ। ପୋଥିଟିକୁ ଆଣିବା ଜିଦ୍‌ରେ ଅଟଳ ରହି କୌଶଳକ୍ରମେ ପୋଥିଟି ନେଇଆସିଲେ। ତାଙ୍କ ବଚନରେ ରାଜା ତରଳି ଯାଇଥିଲେ। ଗୋପବନ୍ଧୁଙ୍କର ବାକ୍ସ ମୁଣ୍ଡାଇ ନେଇ ଆସିଥିଲେ। ସବୁଠୁଁ ଆଶ୍ଚର୍ଯ୍ୟ ସଂଗ୍ରହ ଚନ୍ଦ୍ରପୃଷ୍ଠର ପଥର। ନୀଳକଣ୍ଠ ଦାଶଙ୍କ ପୁଅ ଡକ୍ଟର ବିକ୍ରମ ଦାଶ ଇଂଲଣ୍ଡରୁ ଆଣିଥିବା ଚନ୍ଦ୍ରପୃଷ୍ଠର ପଥରକୁ ଦାଶରଥୀ ପଟ୍ଟନାୟକ ନିଜ ସଂଗ୍ରହାଳୟକୁ ନେଇ ଆସିଥିଲେ। ଖଣ୍ଡପଡ଼ା ରାଜପ୍ରାସାଦରୁ ରାଜାଙ୍କର ବ୍ୟବହୃତ ବାଘଚମଡ଼ା ନିର୍ମିତ କୋଟଟିକୁ ତାଙ୍କର ଯାଦୁକରୀ କଥାରେ ପାଇଯାଇଥିଲେ। ହଠାତ୍ ଦିନେ ଭୋରୁ ଭୋରୁ ଦାଶରଥୀ ପଟ୍ଟନାୟକ ପ୍ରାଣନାଥ କଲେଜ ଖୋର୍ଦ୍ଧାର ଓଡ଼ିଆ ବିଭାଗ ଅଧ୍ୟାପକ, ସୁବୋଧ କୁମାର ଚାଟାର୍ଜୀଙ୍କୁ ତାଙ୍କ କ୍ୱାର୍ଟରରେ ପୁସ୍ତକ ତାଲିକାଟିଏ ଧରେଇ ଦେଲେ। ଚାଟାର୍ଜୀ ମହାଶୟ ପୁସ୍ତକ ସେଲ୍‌ଫରୁ କେତେଖଣ୍ଡ ପତ୍ରିକା ଧରିଥାନ୍ତି। ଏହି ସମୟରେ ପ୍ରାଣନାଥ କଲେଜର ଗଣିତ ଅଧ୍ୟାପକ ରାମଚନ୍ଦ୍ର ମିଶ୍ର ଘର ନୟାଗଡ଼ ଶୁକଳଗାଡ଼ିଆ ପ୍ରାତଃଭ୍ରମଣ ପାଇଁ ଚାଟାର୍ଜୀ ମହୋଦୟଙ୍କ ପାଖରେ ପହଞ୍ଚିଲେ। ଗାନ୍ଧି ପରିକା ଚେହେରା ଦେଖି ଦାଶରଥୀଙ୍କୁ ନିରେଖି ରହିଲେ। ଶୀତଦିନ ଏତେ ବଡ଼ ଜାଡ଼ରେ ବି ବୃଦ୍ଧଙ୍କ ଦେହ ଘୁଙ୍ଗୁଳା। ରାମଚନ୍ଦ୍ର ମିଶ୍ର ନୀରବଦ୍ରଷ୍ଟା ଭାବେ ଚାହିଁଥାନ୍ତି ବୃଦ୍ଧଙ୍କ ଆଡ଼କୁ।

ପ୍ରଫେସର ସୁବୋଧ ଚାଟାର୍ଜୀ ବୁକ୍ ସେଲଫରୁ ତିନିଖଣ୍ଡ ପତ୍ରିକା ବାହାର କରି ଦାଶରଥୀ ପଟ୍ଟନାୟକଙ୍କୁ ଦେଲେ। ଦାଣ୍ଡିଆ ଅଜା ସେଗୁଡ଼ିକୁ ଦେଖି ଆନନ୍ଦରେ କୁରୁଳିଉଠି ସେଗୁଡ଼ିକୁ ଝୁଲିରେ ସାଇତିଲେ। ହାତରେ ଧରିଥିବା ତାଲିକାରେ ଟିକ୍ ଚିହ୍ନ ଦେଲେ। ତାଙ୍କ ତାଲିକା ବାଦ୍ କିଛି ପୁରୁଣା ପୁସ୍ତକ ଚାଟାର୍ଜୀ ମହାଶୟଙ୍କଠାରୁ ନେଇ ଘରେ ପଡ଼ିଥିବା କେତେକ ପୁରୁଣା ଖବରକାଗଜ ମଧ୍ୟ ମୁଣିରେ ସାଇତିଲେ।

ଗଣିତ ଅଧ୍ୟାପକ ରାମଚନ୍ଦ୍ର ମିଶ୍ର ପଟ୍ଟନାୟକଙ୍କୁ ପଚାରିଲେ– "ଏସବୁ ପୁରୁଣା

ଖବରକାଗଜ ନେଇ କ'ଣ କରିବେ ?" ଦାଶରଥୀ ବାବୁ କହିଲେ- "ରାମବାବୁ ପୁରୁଣା ଖବରକାଗଜଗୁଡ଼ିକରୁ ସୃଷ୍ଟି ହୁଏ ଇତିହାସ। ଆଉ ଏଥିରେ ଥିବା ସାହିତ୍ୟ ପୃଷ୍ଠାଗୁଡ଼ିକ ଗଳ୍ପ, କବିତା, ପ୍ରବନ୍ଧରେ ପରିପୁଷ୍ଟ। ସାହିତ୍ୟ ଘିଅ ଝିଅ ନୁହେଁ ଯେ ନଷ୍ଟ ହୋଇଯିବ ବରଂ ଏହା ଯେତିକି ଯେତିକି ପୁରୁଣା ହବ ତା'ର ଉପାଦେୟତା ସେତିକି ସେତିକି ବଢ଼ିଚାଲିବ। ସାହିତ୍ୟ କେବେ ପୁରୁଣା ନୁହେଁ କି ହଜିଯାଏନି। ଲେଖକ, ପ୍ରକାଶକ, ପତ୍ରପତ୍ରିକା ଏବଂ ଖବରକାଗଜଗୁଡ଼ିକର ସଂପାଦକ ତଥା ପ୍ରତିଭାବାନ ଲୋକମାନେ ପୂର୍ବକାଳର ମୁନିଋଷି ଅଟନ୍ତି।"

ସଂଗ୍ରହଟିଏ ଦାଶରଥୀ ପଟ୍ଟନାୟକଙ୍କ ପ୍ରାଣର ସଂପଦ। ପୁସ୍ତକଟିଏ ପତ୍ରିକାଟିଏ ପାଇଗଲେ ବୃଦ୍ଧ ପଟ୍ଟନାୟକେ ଚିଠିରେ ବଧେଇ ଜଣାନ୍ତି- "ଲେଖାଟି ପଢ଼ିଲି। ସୁନ୍ଦର ଲାଗିଲା ଆହୁରି ଲେଖିଚାଲନ୍ତୁ। ଉପରେ ଫୁଲ ଚନ୍ଦନ ବର୍ଷା ହେଉ।" ଦାଶରଥୀଙ୍କ ଏ ହୃଦୟ ଆବେଗଭରା ପ୍ରେରଣା ଲେଖକମାନଙ୍କୁ ଲେଖନୀ ଚାଳନାରେ ଉତ୍ସାହିତ କରେ। ବହୁ ଅଜଣା ପୁସ୍ତକ ପାଠାଗାରକୁ ପଶିଆସେ। ସଭ୍ୟତା ପାଇଁ କି ଅନୁସନ୍ଧିତ୍ସୁ ମଣିଷଟିଏ।

ଦାଶରଥୀ ପଟ୍ଟନାୟକଙ୍କ ଅରବିନ୍ଦ ସଂଗ୍ରହାଳୟ, ବାଞ୍ଛାନିଧି ପାଠାଗାର ଯଦୁମଣି ସାହିତ୍ୟ ସଂସଦରେ ପୃଥକ ପୃଥକ ବିଭାଗରେ ଦୈନିକ ଖବରକାଗଜ, ପତ୍ରପତ୍ରିକା ପ୍ରାଚୀନ ତାଳପତ୍ର ପୋଥି ସଭ୍ୟତାରେ ବ୍ୟବହୃତ ହୋଇଥିବା ନାନାଦି ଉପକରଣ ପ୍ରାଚୀନ କାଳରୁ ଏଯାବତ୍ ସୁରକ୍ଷିତ ଭାବେ ସାଇତି ରଖିଛନ୍ତି। ଗବେଷକମାନେ ପରିଦର୍ଶକମାନେ ସହଜରେ ଏହାକୁ ଉପଯୋଗ କରନ୍ତି। ପ୍ରତ୍ୟେକ ଦୈନିକ ଖବରକାଗଜ ତା'ର ପ୍ରକାଶ ଆରମ୍ଭରୁ ଏଯାବତ୍ ସାଇତା ଚାଲିଛି।

ପତ୍ରିକା ସଂଖ୍ୟା-୧୧୦୦୦୦ (ଏକ ଲକ୍ଷ ଦଶ ହଜାର)

ପୁସ୍ତକ ସଂଖ୍ୟା- ୪୦,୦୦୦ (ଚାଳିଶ ହଜାର)

ତାଳପତ୍ର ପୋଥି ସଂଖ୍ୟା- ୨,୫୦୦ (ଦୁଇ ହଜାର ପାଞ୍ଚଶହ), ଆଦିବାସୀଙ୍କର ବ୍ୟବହାର ଉପକରଣ ଯଥା- ପୋଷାକ, ଅଳଙ୍କାର, ଯାନିଯାତ୍ରାରେ ବ୍ୟବହୃତ ବିଭିନ୍ନ ବାଦ୍ୟଯନ୍ତ୍ର, ପ୍ରାଚୀନ ପ୍ରସ୍ତର, ନୂତନ ପ୍ରସ୍ତର, ତମ୍ବା, ବ୍ରୋଞ୍ଜ, ତମ୍ବା, କାଂସ୍ୟ, ଲୌହ ଓ ନୂତନ ଯୁଗର ବ୍ୟବହୃତ ଅସ୍ତ୍ରଶସ୍ତ୍ର, କୃଷି ଉପକରଣ ପ୍ରାମାଣିକ ଲିଖିତ ଟିପ୍ପଣୀରେ ସାଇତା। ମାଟିପାତ୍ର ବ୍ୟବହୃତ ସମୟର ବାସନକୁସନ, ସୁନ୍ଦର ଗଢ଼ଣର କୁମ୍ଭ ଠେକି ବଣା ସୁରେଇ ଘମା ସୁନ୍ଦର ସୁନ୍ଦର ମୂର୍ତ୍ତି ପ୍ରତିମା ନରନାରୀ, ପଶୁପକ୍ଷୀ, ଠାକୁର ଠାକୁରାଣୀଙ୍କର ତମ୍ବା, ରୂପା, ସୁନା, ବ୍ରୋଞ୍ଜ ନିର୍ମିତ ପ୍ରତିମା, ସୁନ୍ଦର ଭାବରେ ସାଇତି ରଖିଛନ୍ତି। ପଥର, କାଠ, ବାଉଁଶ ବିଭିନ୍ନ କଠିନ ଧାତୁର ବ୍ୟବହାର ଅସ୍ତ୍ରଶସ୍ତ୍ର, ବର୍ଚ୍ଛାଭାଲିଖଣ୍ଡା ଢାଲ କୋଡ଼ି କୋଦାଳ ଶାବଳ ଛୁଞ୍ଚି ତୋପ କମାଣ ପାଇକର ହତାବାଡ଼ି ଧନୁତୀର ନାନା ଗଢ଼ଣର ପିତ୍ତଳ ମୂର୍ତ୍ତି, ପିତ୍ତଳ

ପେଡ଼ି, ସାପ, ରୌପ୍ୟ ସୁବର୍ଣ୍ଣର ମୂର୍ତ୍ତି, କାଠରେ ନିର୍ମିତ ଜୀବଙ୍କର କଣ୍ଢେଇ, କାରୁକୁଟି କମର ମୁଣ୍ଡ, ପାଲାକାର ପୋଷାକ, ମୃଦଙ୍ଗ, ଝାଞ୍ଜ, ତାଳି, ଦେଣନେଣ ବିନିମୟର ମାପକାଠିର ସୋଲା, ବୋଡ଼ା, ମାଣ, ନଉତି ବେତର ଧାତୁର ବି। ମହଣ,ସେର ପଳା ବିଶା ତରାଜୁ, ଦେଶ ବିଦେଶର ତମ୍ବା, ପିତ୍ତଳ, ରୁପା, ସୁନାର ମାନ ଫଳକ ମହାପୁରୁଷଙ୍କ ବ୍ୟବହୃତ ଆସବାପତ୍ର, ଦେଶବିଦେଶର ଶସ୍ୟକଣା, ନାନାପ୍ରକାର ଖଣିଜ ଦ୍ରବ୍ୟ, ଚନ୍ଦ୍ରପୃଷ୍ଠର ମାଟି, ସେତୁବନ୍ଧର ଭାସମାନ ଶିଳା ଅଙ୍କିତ ଫଟୋଚିତ୍ର ସେକାଳ ଏକାଳ ଚିତ୍ରକରଙ୍କର। ଦେଶମାନଙ୍କର ମାନଚିତ୍ର, ଦେଶବିଦେଶରେ ବ୍ୟବହୃତ ଷ୍ଟାମ୍ପ, ଐତିହାସିକ ଚିଠିପତ୍ର, ରାଜରାଜୁଡ଼ା ସମୟର ଦସ୍ତାବିଜ, ବଣର ବୃହତ୍ ମହୁଫେଣା, ବୃହତ ବାଇଚଢ଼େଇ ବସା ଅଲଗା ଅଲଗା ହୋଇ ସୂଚନା ଟିପ୍ପଣୀ ସହ ସାଇତିଛନ୍ତି। ସଂଗ୍ରହାଳୟରେ ବୁଲିଲେ ବିଶ୍ୱ ପରିକ୍ରମା ଭଳି ଲାଗେ।

ଦାଶରଥୀ ପଟ୍ଟନାୟକଙ୍କର ଚିନ୍ତା ଚେତନାର ଗଭୀର ଦର୍ଶନ...

"ମଣିଷ ଆପଣା ଧନ ପର
ଯେତେ ପାରୁଛ ମଣିଷ ଧର।"

ଏହାହିଁ ତାଙ୍କ ସାଧନାର ସଫଳ ଅର୍ଜନ। ଅରବିନ୍ଦ ସଂଗ୍ରହାଳୟ ବାଞ୍ଛାନିଧିବ ପାଠାଗାର, ଯଦୁମଣି ସାହିତ୍ୟ ସଂସଦ ପରିସରକୁ ପ୍ରତିଦିନ ଦେଶବିଦେଶରୁ ଗବେଷକ, ସାହିତ୍ୟିକ, ଲେଖକ, ସାମ୍ବାଦିକ, ଅଧ୍ୟାପକ, ଅଧ୍ୟାପିକା, ଶିକ୍ଷକଶିକ୍ଷୟିତ୍ରୀ, ଛାତ୍ରୀଛାତ୍ର ଓ ଜନସାଧାରଣ ପରିଦର୍ଶନରେ ଆସନ୍ତି।

୧୯୭୯ ମସିହାରେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଗବେଷକ ପ୍ରଫେସର ଡ. ଜୋଆନ ଉଲିୟମ ଏହି ଉଦୟପୁର ପାଠାଗାରକୁ ପରିଦର୍ଶନରେ ଆସି ଏହି ମହାନ ସାଂସ୍କୃତିକ ସମ୍ଭାରମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ। ଦାଶରଥୀ ପଟ୍ଟନାୟକଙ୍କ ଏକକ ଉଦ୍ୟମ ପାହାଡ଼ ଜଙ୍ଗଲ ଘେରା ପଲ୍ଲୀଗାଁ ଏକ ଆଦିବାସୀ ଅଧ୍ୟୁଷିତ ପରିବେଶରେ ଗଢ଼ିଦେଇଥିବା ଏକ ବିରାଟ ସଂଗ୍ରହାଳୟ, ଗ୍ରନ୍ଥାଗାର, ସାହିତ୍ୟ ପ୍ରତିଷ୍ଠାନ ବିଶ୍ୱରେ ବିରଳ। ଏ କୀର୍ତ୍ତିପୀଠ ନୟାଗଡ଼ ଜିଲ୍ଲାର ଅଲିଭା ଜ୍ଞାନଦୀପ।

ସାଧନାର ମହର୍ଷି ଏହି କାଳଜୟୀ ପୁରୁଷଙ୍କର ଦେହାନ୍ତ ୧୨.୯.୧୯୯୭ ମସିହାରେ ଘଟିଲା। ତାଙ୍କ ମରଣ ବାର୍ତ୍ତା ରାଜ୍ୟରେ ଶୋକର ଛାୟା ଖେଳାଇଦେଲା। ଏହି କିମ୍ବଦନ୍ତୀ ପୁରୁଷଙ୍କର ଦେହାବସାନ ଦେଶର ଏକ ଅପୂରଣୀୟ କ୍ଷତି ଘଟାଇଲା।

ଶ୍ରୀ ଅରବିନ୍ଦ ସଂଗ୍ରହାଳୟ ବାଞ୍ଛାନିଧି ପାଠାଗାର ଯଦୁମଣି ସାହିତ୍ୟ ସଂସଦର ଦାୟିତ୍ୱ ଦାଶରଥୀ ପଟ୍ଟନାୟକଙ୍କ ଉତ୍ତରଦାୟଦ ଦୀପକ ପଟ୍ଟନାୟକ ରାଜ୍ୟ ସରକାରଙ୍କର ସ୍ୱୀକୃତିପ୍ରାପ୍ତ ଏହି ପ୍ରତିଷ୍ଠାନର ପରିଚାଳନା କରିଚାଲିଛନ୍ତି। ଏହାର

ବିକାଶ ବଢୁଛି ସିନା କ୍ଷୁଣ୍ଣ ହୋଇନାହିଁ। ପ୍ରତିବର୍ଷ ସେପ୍ଟେମ୍ବର ୧୨ତାରିଖରେ ଦାଶରଥୀ ପଟ୍ଟନାୟକଙ୍କର ଶ୍ରାଦ୍ଧୋତ୍ସବ ରାଜ୍ୟସ୍ତରୀୟ ସାହିତ୍ୟିକଙ୍କ ସମାବେଶରେ ପାଳିତ ହେଉଅଛି। ତାଙ୍କର ପୂର୍ଣ୍ଣ ଅବୟବ ମୂର୍ତ୍ତି ନୟାଗଡ଼ ସହରର ନୂଆଗାଁ ଦଶପଲ୍ଲୀକୁ ଯିବା ତ୍ରିଛକିରେ ସ୍ଥାପନ କରାଯାଇଛି। ଏ ମୂର୍ତ୍ତିକୁ ଦେଖିଦେଲେ ଚିରସ୍ମରଣୀୟ ପ୍ରବାଦପୁରୁଷଙ୍କ ପାଦତଳେ ମଥା ନଇଁପଡ଼େ।

<u>ତରୁଣ ସଂଜୟଙ୍କର ସଂଗ୍ରହ ସାଧନା :</u> ନୟାଗଡ଼ ଜିଲ୍ଲା ନୂଆଗାଁ ବ୍ଲକ ଅନ୍ତର୍ଗତ ଦୁର୍ଦ୍ଦୁରା ଗ୍ରାମର ନିବାସୀ ବିଦ୍ୟାଧର ସାହୁ ଓ ମାଳତୀ ସାହୁଙ୍କର ପୁତ୍ର ସଂଜୟ କୁମାର ସାହୁ । ବିଦ୍ୟାର୍ଥୀ ସମୟରୁ ତରୁଣ ସଂଜୟ ସଭ୍ୟତାରୁ ବୁଡ଼ିଯାଇଥିବା ସେ କାଳରୁ ଏକାଳର ମନୁଷ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ସଂଗ୍ରହ କରି ସାଇତିବାର ସାଧନାରେ ନିଜକୁ ଯୋଡ଼ି ଦେଇଛନ୍ତି । ସଂଗୃହୀତ ପୁସ୍ତକ ତଥା ଅତି ପୁରୁଣା ସମୟର ଜିନିଷ ଗୁଡ଼ିକୁ ସୁରକ୍ଷିତ ଭାବେ ସାଇତି ରଖିବା ପାଇଁ ନିଜ ବାସଗୃହରେ ସ୍ୱତନ୍ତ୍ର ଭାବେ 'ଶ୍ରୀଜଗନ୍ନାଥ ସଂଗ୍ରହାଳୟ ଓ ପାଠାଗାର' ପ୍ରତିଷ୍ଠାନ ଠିଆ କରାଇଛନ୍ତି । ତାଙ୍କର ସଂଗ୍ରହାଳୟ ଭବନରେ ସେତେବେଳର ପେଟ୍ରୋମାକ୍ସ, ଡେ ଲାଇଟ୍, ଲଣ୍ଠନ, ପିତଳ ଡିବି, ଟର୍ଚ୍ଚଲାଇଟ୍, ରେଡ଼ିଓ, ମାଟିନଳା, ବାଉଁଶର ଶୁଖୁଆନଳା, ପିଟେଣା, ଗାଇପୋଡ଼ ବେକର ଘଣ୍ଟି, ମିରିଗ ଶିଂଘ, ଗୟଳ ଶିଂଘ, ବାଇ ଚଢ଼େଇବସା, ବିରୁଡ଼ି ବସା, ବିଶାଳ ମହୁଫେଣା, କାଠର ହଳଦୀ କାଠୁଆ, ଲାଉ ତୁମ୍ବା, ଲାଉରେ ମଦ୍ୟପାତ୍ର, କର୍ଣ୍ଣେଟ, ବିଭିନ୍ନ ଖଣିଜ ପଥର, ଦେଶ ବିଦେଶ ମୁଦ୍ରା ଧାତୁ ଓ କାଗଜର, ସେତୁବନ୍ଧ ପଥର, ଔଷଧୀୟଗୁଣ ଥିବା ଚେରମୂଳି, ୨୦୦ ପ୍ରକାରର ଧାନ ବିହନ, ପିତ୍ତଳର ପାଳପେଡ଼ି, ପିକଦାନୀ, ହାତୀ ଘୋଡ଼ା, ଅଳଙ୍କାର ପେଡ଼ି, ୧୫୦୦ ବ୍ରାଣ୍ଡର ଡିଆସିଲ ପେଡ଼ି ସଂଗ୍ରହ ଥାକରେ ପୃଥକ ପୃଥକ ଭାବେ ସାଇତା ରହିଛି । ୧୯୬୦ ମସିହାରୁ ପାଞ୍ଜି, ପୁସ୍ତକ ସଂଖ୍ୟା - ୩୦,୦୦୦, ତାଳପତ୍ର ପୋଥି - ୨୦୦୦,୧୫,୦୦୦, ପତ୍ରିକା ଏଯାବତ ସଂଗ୍ରହାଳୟ ସଂଗୃହୀତ ରହିଛି । ତରୁଣ ସଂଗ୍ରାହକ ସଂଜୟ କୁମାର ସାଧନାର ଫଳ ୩୧-୧୨-୨୦୨୧ରେ ଧରିତ୍ରୀରେ ପ୍ରକାଶ ଥାଏକି 'ଶ୍ରୀଜଗନ୍ନାଥ ସଂଗ୍ରହାଳୟ ଓ ପାଠାଗାର' ଜାତୀୟସ୍ତରରେ ଓଏମ୍‌ଜି ରେକର୍ଡରେ ସ୍ଥାନୀତ ହୋଇଛି । ଏତିକିରେ ଥକି ପଡ଼ିନାହାନ୍ତି ସଂଜୟ । ଖୋଜିବାର ନିଶା ଜାରି ରଖିଛନ୍ତି ।



## ଏକାଦଶ ଅଧ୍ୟାୟ

# ଦଶପଲ୍ଲା ଗଣିଆ

**ସ୍ୱାଧୀନତା ସଂଗ୍ରାମୀ-କ୍ରାନ୍ତିକାରୀ ଗୋବିନ୍ଦ ମିଶ୍ର :** ମହାନ ସ୍ୱାଧୀନତାସଂଗ୍ରାମୀ ଗୋବିନ୍ଦ ମିଶ୍ର ୧୮୮୮ ମସିହା ପୌଷ କୃଷ୍ଣ ଚତୁର୍ଦ୍ଦଶୀରେ ଦଶପଲ୍ଲାରେ ଜନ୍ମଗ୍ରହଣ କରିଥିଲେ। ବାଲୁତ ବେଳରୁ ସେ ପିତାମାତାଙ୍କୁ ହରାଇ ଦାରିଦ୍ର୍ୟ କଷାଘାତରେ ବଞ୍ଚିବା ତାଙ୍କର ସଂଘର୍ଷମୟ ଜୀବନ। ଗୋବିନ୍ଦ ମିଶ୍ର ନୟାଗଡ଼ ରାଜାଙ୍କ ସହାୟତାରେ ମାଇନର ପାସ୍ କରି କନିକା ରାଜା ଏବଂ କଟକର କେତେଜଣ ବଦାନ୍ୟ ବ୍ୟକ୍ତିଙ୍କ ସହାୟତାରେ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ। ୧୯୧୪ ମସିହାରେ ଦଶପଲ୍ଲା ଗଡ଼ଜାତର ସୁପରିଟେଣ୍ଡେଣ୍ଟଙ୍କ ଅତ୍ୟାଚାର ସହିନପାରି ଦଶପଲ୍ଲା ଭୟଙ୍କର ପ୍ରଜା ଆନ୍ଦୋଳନ କନ୍ଧ ମେଳି ଦେଖାଦେଇଥିଲା। କନ୍ଧମାନେ ରାଜ ଅତ୍ୟାଚାର ସହିନପାରି ରାଜବିରୋଧୀ ବିଦ୍ରୋହ କଲେ। ଏ ଆନ୍ଦୋଳନର କର୍ଣ୍ଣଧାର ଥିଲେ ବିପ୍ଲବୀ ଗୋବିନ୍ଦ ମିଶ୍ର। ରାଜା ନିର୍ମମଭାବେ କନ୍ଧମେଳିକୁ ଦମନ କଲେ। ଗୋବିନ୍ଦ ମିଶ୍ର ରାଜ ଆକଟରୁ ଖସିଯାଇ ମହାନଦୀ ଦାଢେ ଦାଢେ ଚାଲି ଚାଲି କଟକ ପଳାଇଗଲେ। ଧରାପଡ଼ିଥିଲେ ତାଙ୍କୁ କଠିନ ଦଣ୍ଡ ମିଳିଥାନ୍ତା। କଟକରୁ ସେ କଲିକତାକୁ ଖସିଗଲେ।

କଲିକତାରେ ଅରବିନ୍ଦ ଘୋଷଙ୍କ ନେତୃତ୍ୱରେ ଗଢ଼ା ସନ୍ତ୍ରାସବାଦୀ ସଂଗଠନରେ ୧୯୧୬ରୁ ୧୯୧୭ ପର୍ଯ୍ୟନ୍ତ ସାମିଲ ହୋଇଥିଲେ। ଏ ସଂଗଠନ ଛାଡ଼ି ୧୯୧୮ରେ ମହାତ୍ମାଗାନ୍ଧିଙ୍କ ଅହିଂସା ନୀତିରେ ପ୍ରଭାବିତ ହୋଇ ଗାନ୍ଧୀଙ୍କର ସାବରମତୀ ଆଶ୍ରମରେ ଯୋଗଦେଲେ। ସାବରମତୀ ଆଶ୍ରମରେ ତାଙ୍କର ଜନମଙ୍ଗଳ କାର୍ଯ୍ୟ ଦେଶର ସ୍ୱାଧୀନତା ପାଇଁ ବ୍ୟାକୁଳତା ତାଙ୍କୁ ଗାନ୍ଧିଜୀଙ୍କର ଅତି ଆପଣାର କରିଥିଲା। ୧୯୧୯ ଜାଲିଆନୱାଲବାଗ ସଭାରେ ବିପୁଳ ଜନସମାବେଶକୁ ଜେନେରାଲ ଡାୟାର ମାଛି ମାରିଲା ପରି ଶହ ଶହ ଜନତାଙ୍କୁ ଗୁଳିକରି ମାରିଦେଇ ସଭା ଭଣ୍ଡୁର କରିଦେଇଥିଲେ। ସରକାରଙ୍କ ଏ ନିର୍ମମ ଅତ୍ୟାଚାରରେ ପୀଡ଼ିତ ଜନତାର ସେବା କରିଥିଲେ।

ଓଡ଼ିଶାରେ ପ୍ରଚଣ୍ଡ ଦୁର୍ଭିକ୍ଷ ଦାଉରେ ଲୋକମାନେ ପୋକମାଛି ପରି ମରିଯାଉଥିଲେ। ଦୁର୍ଭିକ୍ଷର ଏ କରାଳ ଛବି ଗୋପବନ୍ଧୁ ଦାସ ଗୋବିନ୍ଦ ମିଶ୍ରଙ୍କର ସାବରମତୀ ଆଶ୍ରମରେ ରହଣିକାଳରେ ଗାନ୍ଧୀଜୀଙ୍କ ସହ ଯୋଗସୂତ୍ର କଲେ। ଗାନ୍ଧିଜୀ ଓଡ଼ିଶାର ମରଣାନ୍ତକ ବାର୍ତ୍ତା ପାଇ ଓଡ଼ିଶାର ଜନଗଣଙ୍କୁ ସାହାଯ୍ୟ ସେବା ଦେବାପାଇଁ ଅମୃତଲାଲ ଠକ୍କରଙ୍କୁ ଗୋବିନ୍ଦ ମିଶ୍ରଙ୍କ ସହିତ ଓଡ଼ିଶା ପଠାଇଲେ।

ଜନ୍ମମାଟିର ଜନଗଣଙ୍କ ଏ ଦୁର୍ଦ୍ଦଶା ଦେଖି ଗୋବିନ୍ଦ ମିଶ୍ରଙ୍କ ନୟନରୁ ଲୁହ ଗଡ଼ିଗଲା । ସେବେଠୁଁ ସେ ଓଡ଼ିଶାବାସୀଙ୍କ ସେବାରେ ଆତ୍ମନିୟୋଗ କଲେ । ଗାନ୍ଧୀଙ୍କର ନାଗପୁର ସମ୍ମିଳନୀରେ ଗୋବିନ୍ଦ ମିଶ୍ର ଗୋପବନ୍ଧୁଙ୍କୁ ଗାନ୍ଧୀଙ୍କର ନିକଟତର କରାଇଥିଲେ । ଓଡ଼ିଶାର ଦାରିଦ୍ର୍ୟ, ଅଶିକ୍ଷା, ଅନ୍ଧବିଶ୍ୱାସ, କୁସଂସ୍କାର ତାଙ୍କୁ ବିଚଳିତ କରିଥିଲା । ସେ ମାତୃଭୂମି ଜନଜୀବନର ସେବାର ବ୍ରତ ନେଲେ । ତେଣୁ ଗାନ୍ଧି ଆଦର୍ଶ ଅନୁପ୍ରାଣିତ ଏକ ସେବାଶ୍ରମ ଗାନ୍ଧୀ ସେବାଶ୍ରମ ନାମରେ କଟକ ଜିଲ୍ଲାର ଏକ ମଫସଲ ଗାଁ ଚମ୍ପାପୁରଠାରେ ୧ ୯ ୨ ୫ ମସିହାରେ ପ୍ରତିଷ୍ଠା କଲେ । ଏହା ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ କେନ୍ଦ୍ର ଭାବେ ମୁଣ୍ଡ ଟେକିଲା । ଚମ୍ପାପୁର ଗାନ୍ଧୀ ସେବାଶ୍ରମରେ ଗୋବିନ୍ଦ ମିଶ୍ର ସୂତାକଟା, କୁଷ୍ଠରୋଗୀଙ୍କ ସେବା ଏବଂ ଗୋପବନ୍ଧୁଙ୍କ ଦାତବ୍ୟ ଚିକିତ୍ସାଳୟ କାର୍ଯ୍ୟ ପରିଚାଳନା କରୁଥିଲେ ।

ସାବରମତି ଆଶ୍ରମରେ ରହଣି କାଳରେ ଗାନ୍ଧିଜୀଙ୍କ ଜୀବନଚରିତ ଉପରେ ଆଧାରିତ 'ସତ୍ୟବାଣୀ' ପୁସ୍ତକ ଗୋବିନ୍ଦ ମିଶ୍ର ରଚନା କରିଥିଲେ । ଗାନ୍ଧିଜୀଙ୍କର ଜୀବନଦର୍ଶନ କାର୍ଯ୍ୟଧାରା ଏହି ପୁସ୍ତକରେ ଲିପିବଦ୍ଧ ହୋଇଥିଲା । ଏହି ପୁସ୍ତକର ସତ୍ୟ, ପ୍ରେମ, ଅହିଂସା ବଳରେ ଦେଶଜାତିର କର୍ତ୍ତବ୍ୟ ସଂପାଦନ କିପରି ସରଳ ମାର୍ଗରେ ସଂପାଦନ କରିହେବ ଜନ ଜାଗୃତିର ସରଳ ମନ୍ତ୍ର ସାଧନା ଗୋବିନ୍ଦ ମିଶ୍ରଙ୍କର ଏକ ଭିନ୍ନ ଲକ୍ଷ୍ୟ ପ୍ରତିପାଦିତ ହୋଇଥିଲା । ଚମ୍ପାପୁର ଗାନ୍ଧି ସେବାଶ୍ରମରେ ସତ୍ୟବାଣୀର ପ୍ରଚାରରେ ଦେଶର ମୁକ୍ତି ଆନ୍ଦୋଳନ ପାଇଁ ଜନଜାଗରଣ ଆଣିଥିଲେ ଗୋବିନ୍ଦ ମିଶ୍ର ।

ବିଦେଶୀ ଦ୍ରବ୍ୟ ବର୍ଜନ, ଭାରତଛାଡ଼ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଆଗୁଆ ହୋଇ ଗୋବିନ୍ଦ ମିଶ୍ର ଅନେକବାର ଜେଲ୍ ଯାଇଥିଲେ । କାରାଗାର ମଧ୍ୟରେ (କାରାଗାର କାହାଣୀ, ହିନ୍ଦ୍ ସ୍ୱରାଜ ଓ ଲୋକମାନ୍ୟ ତିଳକ, ଗୀତା ଓ ସ୍ୱରାଜ ଓଡ଼ିଆ ଭାଷାରେ ଅନୁବାଦ କରି) ରାଜ୍ୟବାସୀଙ୍କର ଜାତୀୟ ଚେତନାକୁ ଦୃଢ଼ ବେଗଗାମୀ କରାଇଥିଲେ ।

କାରାଗାର କାହାଣୀରେ- ଅସାଧୁ ବ୍ୟକ୍ତିଙ୍କ ଗହଣରେ ରହି କଏଦୀମାନେ ଦୁଷ୍କର୍ମ ପରିହାର କରି ସମାଜର ପୁନଃ ପ୍ରତିଷ୍ଠା ପାଇଁ ପରାଧୀନ ଜୀବନରୁ ମୁକ୍ତ ହେବା ପାଇଁ କିପରି ନିଜକୁ ଗଢ଼ିବେ ଗୋବିନ୍ଦ ମିଶ୍ର ଏ ପୁସ୍ତକରେ ସରଳ ପଥ ଦେଖାଇଛନ୍ତି । ଦେଶର ସ୍ୱାଧୀନତା ଲଢ଼େଇରେ ଗୋବିନ୍ଦ ମିଶ୍ର ସଳିତା ପରି ଜଳି ଜଳି କଷ୍ଟଲବ୍ଧ ସ୍ୱାଧୀନତାକୁ ସଠିକ ଉପଯୋଗ କରିବା ଦିଗରେ ଦେଶବାସୀଙ୍କୁ ଆହ୍ୱାନ ଦେଇଛନ୍ତି 'ହିନ୍ଦୁ ସ୍ୱରାଜ' ପୁସ୍ତକରେ । ସ୍ୱାଧୀନ ଦେଶବାସୀଙ୍କର ସ୍ୱଦେଶ ଚିନ୍ତା ନ ଆସିଲେ ଚିନ୍ତା ଚେତନାରେ ପରିବର୍ତ୍ତନ ନ ଆସିଲେ ଦେଶ ପୁନଶ୍ଚ ପରାଧୀନ ହୋଇପାରେ ଏ ଦର୍ଶନକୁ ସେ ପୁସ୍ତକରେ ଲୋକାଭିମୁଖୀ କରାଇଥିଲେ ।

ତାଙ୍କର ଅନୁବାଦ ପ୍ରଣୀତ ଗୀତା ଓ ସ୍ୱରାଜ ଦର୍ଶନରେ ଆତ୍ମିକ ସ୍ୱାଧୀନତାର ସରଳ ଗଭୀର ପ୍ରବେଶ ପ୍ରତିପାଦିତ ହୋଇଛି । ଏହା ସଂପ୍ରତି ବିଶ୍ୱଭାବନା । ମନୁଷ୍ୟ ଜୀବନ କର୍ତ୍ତବ୍ୟପୂର୍ଣ୍ଣ । ସେ କିପରି ସରଳ ମାର୍ଗରେ ତା'ର ଜୀବନଯାତ୍ରାକୁ ସୁଗମ କରିବ । ସୁନ୍ଦର ସମୃଦ୍ଧ ଦେଶ ନିର୍ମାଣ କରି ବିଚରଣ କରିବ ଏ ସରଳ ସୂତ୍ର ଗୋବିନ୍ଦ ମିଶ୍ରଙ୍କର ଗୀତା ଓ ସ୍ୱରାଜ ଗ୍ରନ୍ଥରେ ଗ୍ରନ୍ଥିତ । କଂଗ୍ରେସର ଆହ୍ୱାନ ପୁସ୍ତକରେ ସମାଜସେବୀ ଗୋବିନ୍ଦ ମିଶ୍ର ପ୍ରକାଶ କରିଛନ୍ତି କୌଣସି କାର୍ଯ୍ୟର ସଫଳତା ପାଇଁ ସାଂଗଠନିକ କର୍ତ୍ତବ୍ୟର ଆବଶ୍ୟକତା ରହିଛି । ସଂଗଠନ ଯେତେ ସୁଦୃଢ଼ ହେବ, ମଣିଷ ତା'ର ଅଭିଷ୍ଟ ସାଧନ ପାଇଁ ପଥ ପରିଷ୍କୃତ ହୋଇଯିବ । ମଣିଷ ମଣିଷ ମଧ୍ୟରେ ଥିବା ଦୂରତାକୁ ସେ କାଟିଦେଇଛନ୍ତି । ଭାରତର ଅଧିବାସୀଙ୍କୁ ଶ୍ରେଣୀବିହୀନ ଓ ବର୍ଣ୍ଣବିହୀନ ଗୋଟାଏ ବ୍ୟାପକ ଜାତି ରୂପରେ ଗଢ଼ିଦେବାକୁ ତାଙ୍କର ଏ ସାଧନାର ପ୍ରୟାସ ।

ସ୍ୱାଧୀନତା ସଂଗ୍ରାମୀ ଗୋବିନ୍ଦ ମିଶ୍ର ୧୩ ଅପ୍ରିଲ ୧୯୬୬ ମସିହାରେ ଇହଲୀଳା ତ୍ୟାଗ କରିଥିଲେ । ସେ ଆମ ଗହଣରେ ନଥିଲେ ହେଁ ଆମର ଚିରସ୍ମରଣୀୟ ସ୍ୱର୍ଣ୍ଣାକ୍ଷରରେ ଇତିହାସରେ ଲିପିବଦ୍ଧ ।

<u>ବାଇଶିପଲ୍ଲୀର ଘନଜଙ୍ଗଲ :</u> ବାଇଶିପଲ୍ଲୀ ଦଶପଲ୍ଲାର ଉତ୍ତରକୁ ମହାନଦୀ ଦାଢ଼ ପର୍ଯ୍ୟନ୍ତ ଢ଼ାଙ୍କିଂ ରହିଥିବା ଘନ ଜଙ୍ଗଲ । ଏହା ମହାନଦୀ ବନ୍ୟପ୍ରାଣୀ ବିଭାଗର ସଂରକ୍ଷିତ ଅଭୟାରଣ୍ୟ । ଏ ଘଞ୍ଚ ଅରଣ୍ୟ ମଧ୍ୟରେ ବାଇଶିଟି ପଲ୍ଲୀ ମୌଜା ଥିବାରୁ ଏହାର ନାମ ବାଇଶିପଲ୍ଲୀ । ବର୍ତ୍ତମାନ ଏ ଅଞ୍ଚଳରେ ପଲ୍ଲୀ ମୌଜା ସଂଖ୍ୟା ବାଇଶିରୁ ଅଧିକ ବଢ଼ିଗଲାଣି ଯଥା- ଡୁଇଶିଙ୍ଗି, ବାଙ୍କଝରି, ସାନବାଙ୍କଝରି, ଢିପିସାହି, ଡମାଘାଟି, ବେଦାଡ଼ି, ବୁରିଆପାଙ୍କୁ, ତାଲାବାରି, ଧଉଡ଼ାବଣି, ସୋମାସ୍କା, ଭାଲିଆପଦର, ରେକାଡ଼ି, ସେରେଣ୍ଡା, କୁଟୁମୁରା, ସେନେପେରି, ଲଣ୍ଡାଗାଡୁ, ଗୋଛାବାରି, ସିକରଗୋଛା, ନୂଆସାହି, ବଡ଼ସିଲଙ୍ଗା, ଧୂଆଁପାଙ୍କୁ, ସାକେନି, ଟୋଲକପାଟିଆ, ସଲପଗଣ୍ଡା, ସୁମୁଗୁଡ଼ା, ମଳାଶପଦର, ପୁରୁଣାପାଣି, ଶଗଡ଼ଭଙ୍ଗା, ହାତୀବାରି, ଗେରେଗେଡ଼ି, ଲୋକେଟାପଲ୍ଲୀ । ବାଇଶିପଲ୍ଲୀ ଅଞ୍ଚଳରୁ ବହିଯାଇଥିବା ବଡ଼ନାକ ବଡ଼ମୂଳଠାରେ ବର୍ଷା ଗଣ୍ଡରେ ପଡ଼ି ମହାନଦୀରେ ମିଶିଛି । ବଡ଼ମୂଳଠାରୁ ମହାନଦୀର ପଶ୍ଚିମକୁ ସାତକୋଶ ବ୍ୟାପୀ ସାତକୋଶିଆ ଗଣ୍ଡର ଅପୂର୍ବ ଦୃଶ୍ୟ ଚିତ୍ତବୋଧ କରିଦିଏ । ବାଇଶିପଲ୍ଲୀ ବନାଞ୍ଚଳରେ ଠିଆ ହୋଇଥିବା ପର୍ବତ ଦେହରେ ପଥରପୂର୍ଣ୍ଣ । ଆଦିବାସୀମାନେ ଏହା ଉପରେ କୃଷି କାର୍ଯ୍ୟ କରିପାରନ୍ତି ନାହିଁ ।

ବାଇଶିପଲ୍ଲୀ ଅରଣ୍ୟରେ ବ୍ୟାଘ୍ର, ଭାଲୁ, ହରିଣ, କୋଟରା, ସମ୍ବର, କଲରାପତରିଆ, ଗଧିଆ କୋକିଶିଆଳି, ଝିଙ୍କ, ବଜ୍ରକାପ୍ତା, ଉଡ଼ନ୍ତା ଗୁଣ୍ଡୁଚିମୂଷା, ଅହିରାଜ, ଜାତି ଜାତି ପକ୍ଷୀ କୋଚିଲାଖାଇ ବିଚରଣ କରୁଛନ୍ତି । ଏ ଅଞ୍ଚଳରେ

କୁଶଭଦ୍ରା, ମଣିଭଦ୍ରା, ତୁଙ୍ଗଭଦ୍ରା ପର୍ବତମାନ ରହିଛି । ଏ ଅଞ୍ଚଳ ଆରାଧ୍ୟ ଠାକୁରାଣୀ ବଡ଼ରାଉଳ ଓ ପଟ୍ଟେଇ ଠାକୁରାଣୀ ।

ବଡ଼ରାଉଳ ଠାକୁରାଣୀ : ବାଇଶିପଲ୍ଲୀ ବନାଞ୍ଚଳରୁ ପୁରୀ ଜଗନ୍ନାଥଙ୍କର ରଥକାଠ ନେବାକୁ ହେଲେ ଯଥାବିଧିରେ ବଡ଼ରାଉଳ ଠାକୁରାଣୀଙ୍କୁ ପୂଜା କରି ମା'ଙ୍କୁ କାଠ କାଟିବାର ଅନୁମତି ମାଗି କାଠ କାଟିବାକୁ ଅରଣ୍ୟ ମଧ୍ୟକୁ ପ୍ରବେଶ କରନ୍ତି ।

ବାଇଶିପଲ୍ଲୀ କୁଶଭଦ୍ରା ପାହାଡ଼ ଉପରେ ମୁକ୍ତେଶ୍ୱର ମହାଦେବ ପୂଜା ପାଆନ୍ତି । ବାଇଶିପଲ୍ଲୀ ଘନ ଅରଣ୍ୟ ମଧ୍ୟରେ ଯାତ୍ରା କଲାବେଳେ ଆରାଧ୍ୟାଦେବୀ ବଡ଼ରାଉଳ ଠାକୁରାଣୀ, ପଟ୍ଟେଇ ଠାକୁରାଣୀଙ୍କୁ ସ୍ମରଣ କଲେ କୌଣସି ଆରଣ୍ୟକ ଅଘଟଣ ଘଟେ ନାହିଁ ।

ସାତକୋଶିଆ : ବଡ଼ମୂଳକୁ କୁତୁରୀ ଅରଣ୍ୟ କୁହାଯାଏ । ଏହା ଉପରେ ଦଶପଲ୍ଲାର ଉଚ୍ଚତମ ପର୍ବତ ଗୋଆଲଦେଓ ଠିଆ ହୋଇଛି । ଏହାକୁ ସ୍ଥାନୀୟ ଆଦିବାସୀ ବଡ଼ ପାହାଡ଼ ବୋଲି କୁହନ୍ତି । ବଡ଼ମୂଳରେ ଏକ ଫରେଷ୍ଟ ବଙ୍ଗଳା ରହିଛି । ଏହିଠାରେ ମହାନଦୀର ଚଉଡ଼ା ଖୁବ୍ ସଂକୀର୍ଣ୍ଣ । ଏ କୂଳରୁ ଡାକିଲେ ଆରକୂଳରେ ଶୁଭେ । ବଡ଼ମୂଳଠାରୁ ଆରମ୍ଭ ହୋଇ ମହାନଦୀର ପଶ୍ଚିମକୁ ବୌଦ୍ଧ ଜିଲ୍ଲା ମଧ୍ୟକୁ ସାତକୋଶ ବା ୧୪ ମାଇଲ୍ ବା ୨୨ କିଲୋମିଟର ଲମ୍ବିଯାଇଥିବା ଦେଶର ଦୀର୍ଘତମ ସାତକୋଶିଆ ଗଣ୍ଡ ନୈସର୍ଗିକ ରୂପ ସମ୍ଭାର ନେଇ ପ୍ରମୋଦ ବିହାରର ପ୍ରଶସ୍ତ ଜଳରାଶିର ନୀଳଗଣ୍ଡ । ଏହାର ଜଳରାଶିର ବିସ୍ତାର ୯୬୩.୮୭ ବର୍ଗକିଲୋମିଟର । ସାତକୋଶିଆର ଟିକରପଡ଼ା ସବୁଠାରୁ ଚିତ୍ତବୋଧକ ରମଣୀୟ ସ୍ଥାନ । ଏହା ନୟାଗଡ଼ ଜିଲ୍ଲାର ଏକ ପ୍ରଧାନ ପର୍ଯ୍ୟଟନ ସ୍ଥାନ । ଏଠାରେ ସାତକୋଶିଆ ଉଭୟ ଦାଢ଼ରେ ଘନ ଅଭୟ ଅରଣ୍ୟର ଶୂନ୍ୟକୁ ଭେଦୀଥିବା ଗିରିଶୃଙ୍ଗ ପାଦଦେଶରେ ଅଙ୍କାବଙ୍କା ସ୍ଥାନ । କୂଳରେଖା ମଧ୍ୟରେ ପ୍ରଶସ୍ତ ବିସ୍ତାର ଗଭୀର ନୀଳ ଜଳରାଶି ଭ୍ରମଣକାରୀଙ୍କ ଚିତ୍ତ ମଜାଇଦିଏ । ଏଣୁ ଏ ସ୍ଥାନ ଏକ ପ୍ରମୋଦମୟ ପିକ୍‌ନିକ୍ ସ୍ଥାନ । ଟିକରପଡ଼ା ଏକ କୁମ୍ଭୀର ପ୍ରଜନନ କେନ୍ଦ୍ର ରହିଛି । ଗଣ୍ଡରେ ଥଣ୍ଟିଆ, ଘଡ଼ିଆଳ ବିଭିନ୍ନ ପ୍ରଜାତିର କୁମ୍ଭୀର ବିହାର କରନ୍ତି । ରାଜ୍ୟର ଚାରି ଜିଲ୍ଲା ନୟାଗଡ଼, ବୌଦ୍ଧ, ଅନୁଗୁଳ, କଟକକୁ ସାତକୋଶିଆ ଗଣ୍ଡ ବିସ୍ତାରୀ ରହିଛି । ସାତକୋଶିଆର ଦୀର୍ଘ କୂଳ ପଥ ନୟାଗଡ଼କୁ ମାଡ଼ି ରହିଛି ।

ସାତକୋଶିଆକୁ ଉପଭୋଗ ପାଇଁ ନୟାଗଡ଼ ପ୍ରଶାସନ ସହାୟତାରେ ବଡ଼ମୂଳଠାରୁ ୭/୮ କି.ମି. ଦୂରରେ କୁତୁରୀ ଘନ ଅରଣ୍ୟର ମଙ୍ଗାନାଶିଠାରେ ସାତକୋଶିଆର ବାଲୁକାଶଯ୍ୟାରେ ଏକ ପର୍ଯ୍ୟଟନ କ୍ଷେତ୍ର ସୃଷ୍ଟି କରାଯାଇଛି । ପର୍ଯ୍ୟଟକଙ୍କର ବିଶ୍ରାମ ବିନୋଦନ ପାଇଁ ଏ ଶଯ୍ୟାରେ କାଠ ବାଉଁଶରେ ସୁନ୍ଦର ସୁନ୍ଦର କୁଟୀର ନିର୍ମାଣ କରାଯାଇଛି । କୁତୁରୀଠାରେ ମହାନଦୀର ଓସାର ଦୁଇ

କୂଳ ପାହାଡ଼ ମଧ୍ୟରେ ଖୁବ୍ ସଂକୀର୍ଣ୍ଣ। ବଡ଼ ପାହାଡ଼ଠାରୁ ଆରକୂଳ ପାହାଡ଼ ବହୁତ ନିକଟତର। ଏହି ଅବରୋଧ ସଂକୀର୍ଣ୍ଣ ପଥ ହିଁ ମହାନଦୀ ବକ୍ଷରେ ବୃହତ୍ ପ୍ରଶସ୍ତ ଗଭୀର ସାତକୋଶିଆ ଗଣ୍ଡ ସୃଷ୍ଟି କରିଛି। ଏହି ସଂକୀର୍ଣ୍ଣ ଜଳପଥ ମୁହାଣ ସଦୃଶ ସମତଳ ଅଞ୍ଚଳକୁ ବହିଯାଇଛି। ଋତୁରେ ଋତୁରେ ସାତକୋଶିଆର କମନୀୟ ରୂପ ବେଶ୍ ମନୋହର ଚିତ୍ତାକର୍ଷକ। ଦିବସରେ ସୂର୍ଯ୍ୟଦୀପ୍ତିରେ ସାତକୋଶିଆର ତେଜୋଜ୍ଜ୍ୱଳ ହୀରଣ୍ୟମୟ ରୂପ- ଅନ୍ଧାରରେ ଏହାର ଜଳ ଚଟାଣରେ ତାରାଙ୍କ ଝଲସା ରୂପ ଜହ୍ନରାତିରେ ଜ୍ୟୋତ୍ସ୍ନା ବିକିରଣରେ ଏ ଐଶ୍ୱର୍ଯ୍ୟମୟୀ ଭୂବନର ଶୋଭା ଭ୍ରମଣକାରୀ ଚିତ୍ତ ଚୋରି କରେ। ନୟାଗଡ଼ ଉପକଣ୍ଠରେ ସାତକୋଶିଆର ଅପୂର୍ବ ଶୋଭାଶିରୀ ପ୍ରକୃତିର ଦାନ।

<u>ମୁଦୁଲୀ ଗାଡ଼ିଆ-ଇକୋ ଭିଲେଜ୍ :</u> ସାତକୋଶିଆ ପର୍ଯ୍ୟଟନ ସ୍ଥାନ ନିକଟରେ ମୁଦୁଲୀ ଗାଡ଼ିଆ କୁତୁରୀର ଏକ ଆଦିବାସୀ ଗାଁ। ମୁଦୁଲୀ ଗାଡ଼ିଆ ସରକାରଙ୍କ ଇକୋ ଭିଲେଜ ମାନ୍ୟତାପ୍ରାପ୍ତ ଏକ ଶୃଙ୍ଖଳିତ ପଲ୍ଲୀ। ଏଠାର ବାସିନ୍ଦା ପ୍ରକୃତି ସନ୍ତାନ ସରଳ ନିଛନ୍ଦ ସହଯୋଗୀ ମଣିଷ। ଶୃଙ୍ଖଳିତ ବସବାସର ପଲ୍ଲୀଟିଏ ଯେଉଁଠି କି ସ୍ୱଚ୍ଛଭାରତ ନମୂନା ନିଦର୍ଶନ ମିଳେ। ଗାଁ'ଟି ପରିଷ୍କାର ପରିଚ୍ଛନ୍ନ। ଘରଗୁଡ଼ିକ ସିଧା ସରଳ ଭାବରେ ପାଖକୁ ପାଖ ବସିଛି। ଘର କାନ୍ଥରେ ବିଭିନ୍ନ ରଙ୍ଗ ଲାଗିଥିଲେ ହେଁ ସବୁ ଘରଗୁଡ଼ିକ ଏକାପରିକା ରଙ୍ଗ। କାନ୍ଥରେ ମରାଯାଇଥିବା ରଙ୍ଗ ଦୋକାନ କିଣା ରଙ୍ଗ ନୁହେଁ। ଏହା ପ୍ରକୃତିଦତ୍ତ କଳା, ଧଳା, ହଳଦିଆ, ଲାଲ୍ ଜଙ୍ଗଲୀ ମାଟି ରଙ୍ଗ। କାନ୍ଥରେ ନିଜ ପରମ୍ପରାର ଝୋଟିଚିତ୍ର। ଆଦିବାସୀ ବଡ଼ ସଉଖୀନ। କ'ଣ ସେ ନ ଜାଣେ ? ସରଳ ଜୀବନଯାତ୍ରା ମଧ୍ୟରେ କେତେ ଯେ ଆଧୁନିକ ସେ !

<u>ଅସୁରଖୋଲ :</u> ଅସୁରଖୋଲ ଦଶପଲ୍ଲା ଗଡ଼ର ଉତ୍ତରକୁ ପ୍ରାୟ ୧୦ ମାଇଲ୍ ଦୂରରେ ଅବସ୍ଥିତ। ପୌରାଣିକ କାହାଣୀ ଏହି ଯେ ଅର୍ଜୁନ ମଣିଭଦ୍ରା ପାହାଡ଼ରେ ବାସକରିବା ସମୟରେ ଗୋସିଂହ ନାମକ ଅସୁର ଶ୍ରୀକୃଷ୍ଣଙ୍କ ପତ୍ନୀ ସତ୍ୟଭାମାଙ୍କୁ ହରଣ କରି ନେଇଯାଉଥିବାବେଳେ ଅର୍ଜୁନ ତାଙ୍କୁ ଏହି ପର୍ବତରେ ବଧ କରିଥିଲେ। ଏହି ପର୍ବତରେ ବହୁତ ଚୂନପଥର ମିଳେ। ଏଠାର ଲୋକମାନେ ତାହାକୁ ଅସୁର ହାଡ଼ ବୋଲି କହୁଥିଲେ।

ଦଶପଲ୍ଲା ଅଞ୍ଚଳରେ ଯେତେଗୁଡ଼ିଏ ପୌରାଣିକ ଲୋକକଥା କୁହାଯାଏ ତାହା ସାରଳା ଦାଶଙ୍କ ମହାଭାରତରେ ବର୍ଣ୍ଣିତ। ମହାଭାରତର ମୂଳ ପୋଥି ସଂସ୍କୃତ ହେଲେ ହେଁ ସାରଳା ଦାଶ ଓଡ଼ିଆ ଆଦିକବି। ଏଣୁ ପୁରାଣର ଦଶପଲ୍ଲା ପାର୍ବତ୍ୟବାସ କାହିଁକି ସତ୍ୟ ନ ହେବ।

<u>ପଦ୍ମତୋଳା ପୁଷ୍କରଣୀ/ ପଦ୍ମତୋଳା ଘାଟି :</u> ବାଇଶିପଲ୍ଲୀ ଅଭୟାରଣ୍ୟର ପାର୍ବତ୍ୟ ଘେର ମଧ୍ୟରେ ପଦ୍ମତୋଳା ଏକ ମନୋରମ ପୁଷ୍କରିଣୀ। ଏହି ପୁଷ୍କରିଣୀ

ସହିତ ଅନେକ ଲୌକିକ ଅଲୌକିକ ଘଟଣାମାନ ଜଡ଼ିତ। ଏହା ଦଶପଲ୍ଲାର ଉଚ୍ଚତମ ପର୍ବତ ଗୋଆଲଦେଓ ଓ ତା'ର ପର୍ବତଶ୍ରେଣୀ ମଧ୍ୟରେ ଦଶପଲ୍ଲା ବୌଦ୍ଧ ସୀମାରେଖା ମଧ୍ୟରେ ଅବସ୍ଥିତ। ଏହାର ପଶ୍ଚିମ ପାର୍ଶ୍ୱରେ ବୌଦ୍ଧ ଜିଲ୍ଲାର ମାରଡ଼ା, ଶୀତଳପାଣି ଦୁଇଟି ପଲ୍ଲୀ ବସ୍ତି ଏବଂ ପୂର୍ବପଟେ ନୟାଗଡ଼ ଜିଲ୍ଲାର ଡିପିସାହି ବାଙ୍କଝରା ଏବଂ କୃଷ୍ଣପଲ୍ଲୀ ଏକ ହରିଜନ ବସ୍ତି ରହିଛି। ପଦ୍ମତୋଳା ପୁଷ୍କରିଣୀ ନିକଟରେ ଏକ ଫରେଷ୍ଟ ବିଟ୍ ରହିଛି। ପୁଷ୍କରିଣୀର ବିପରୀତ ପାର୍ଶ୍ୱରେ ଦୁଇଟା ଫରେଷ୍ଟ ୱାଚ ଟାୱାର ରହିଛି। ୱାଚଟାୱାରରୁ ଅଭୟ ଅରଣ୍ୟକୁ ନିରୀକ୍ଷଣ କରାଯାଏ। ପୁଷ୍କରିଣୀର ନିକଟରେ ଗୋଟିଏ କନ୍ଧ ପରିବାର। ଏହା ଉତ୍ତମ ପଧାନଙ୍କ ତିନି ଭାଇଙ୍କର ଘର।

ଅଗ୍ନାଅଗ୍ନି ବନସ୍ତ ମଧ୍ୟରେ ପଦ୍ମତୋଳା ଏକ ବିଶାଳ ପ୍ରଶସ୍ତ ପୁଷ୍କରିଣୀ। ଏହାର ଆୟତନ ୧୫/୨୦ ଏକର ଜାଗାରୁ କମ୍ ନୁହେଁ। କିନ୍ତୁ ଦୂରରୁ ଦେଖିଲେ ଏହା ଏକ ବିସ୍ତୀର୍ଣ୍ଣ ଘାସଭୂମିର ଭ୍ରମ ସୃଷ୍ଟିକରେ। ପୁଷ୍କରିଣୀରେ ପଦ୍ମଫୁଲ ଫୁଟିଥିବାର ଦେଖାଯାଏ। ଏହି ସରୋବରରେ ଗଭୀର ଜଳ। ହେଲେ ସରୋବରକୁ ପାଣିଘାସ ମାଡ଼ିଯାଇଛି। ପଦ୍ମତୋଳା ବିଶେଷତ୍ୱ ଏହି ଯେ ଏହା ଏକ ଶୀତଳ ସ୍ଥାନ। ପଶୁପକ୍ଷୀମାନଙ୍କ ମଧ୍ୟରେ ହିଂସାଭାବ ନାହିଁ। ବାଘ, ମିରିଗ ଗୋଟିଏ ଜଳ ତୁଠରେ ପାଣି ପିଇ ଫେରନ୍ତି। ଏଠି ଶିକାର ହୁଏନି। ଶିକାରୀର ବନ୍ଧୁକ ତୀର ଚଳେ ନାହିଁ। ଏହାର ସନ୍ନିକଟରେ ସାତକୋଶିଆ ଗଣ୍ଡ। ଏହାର ପାର୍ଶ୍ୱ ଦେଇ ପଶ୍ଚିମାଞ୍ଚଳ ତୀର୍ଥଯାତ୍ରୀଙ୍କର ଜଗନ୍ନାଥ ସଡ଼କ ବନପଥ। ଏଣୁ ଏହା ପଦ୍ମତୋଳା ଘାଟୀ ନାମରେ ନାମିତ।

ପଦ୍ମତୋଳା ଏକ ତାନ୍ତ୍ରିକ ତୀର୍ଥକ୍ଷେତ୍ର। ଏହାର ଜଳକୁ ତନ୍ତ୍ରସାଧକମାନେ ବ୍ୟବହାର କରନ୍ତି। ଏହା ଓଡ଼ିଶା ଇତିହାସର ଏକ ମୂକସାକ୍ଷୀ ସ୍ଥାନ। ବୌଦ୍ଧ ରାଜା ବୀର ଭଞ୍ଜ ଏବଂ ତାଙ୍କର ଅନୁଜ ଶାଳ ଭଞ୍ଜଙ୍କ ମଧ୍ୟରେ ରାଜ୍ୟ ମୀମାଂସା ବିବାଦ ଉପୁଜିଲା। ଶାଳ ଭଞ୍ଜ ପୂର୍ବାଞ୍ଚଳର କନ୍ଧ ସହାୟତାରେ ବୀର ଭଞ୍ଜଙ୍କର ବିରୋଧ କଲେ। ଏହି ସମୟରେ ନୟାଗଡ଼ ରାଜା ଶୀଳ ଭଞ୍ଜଙ୍କୁ ସାହାଯ୍ୟ କରିଥିଲେ। ଦୁଇ ଭାଇଙ୍କ ମଧ୍ୟରେ ପଦ୍ମତୋଳା ଘାଟୀ ଉପରେ ଭୀଷଣ ଯୁଦ୍ଧ ହେଲା। ବୌଦ୍ଧ ରାଜା ବୀରଭଦ୍ର ଭଞ୍ଜ ପରାସ୍ତ ହୋଇଥିଲେ। ଏହି ଯୁଦ୍ଧରେ ଶାଳ ଭଞ୍ଜ ଯଶଲାଭ କରିଥିବାରୁ ତାଙ୍କର ନବଗଠିତ ରାଜ୍ୟର ନାମ ଦଶପଲ୍ଲା। ଦଶପଲ୍ଲାରେ ରାଜତନ୍ତ୍ର, ଶାଳ ଭଞ୍ଜଙ୍କ ଶାସନ କାଳ ୧୫୯୫ ଖ୍ରୀ.ଅ.ରୁ ଆରମ୍ଭ।

ଦ୍ୱିତୀୟ ଘଟଣାଟି ହେଲା ୧୮୦୩ରେ ଇଂରେଜମାନଙ୍କ ଓଡ଼ିଶା ଅଧିକାର। ସେତେବେଳକୁ ଓଡ଼ିଶା ମରହଟ୍ଟାଙ୍କର ଶାସନାଧୀନ। ଲର୍ଡ଼ କର୍ଣ୍ଣୱାଲିସ୍ ଭାରତର ଗଭର୍ଣ୍ଣର ଜେନେରାଲ ଥିବା ସମୟରେ କିପରି ଓଡ଼ିଶାକୁ କରାୟତ କରିବାକୁ

ହେବ ଦୁଇ ଜଣ ଗୁଇନ୍ଦା ଅଧିକାରୀ ଜର୍ଜ ଷ୍ଟର ଓ ଜି.ଏଫ୍. ଲେକିଙ୍କୁ ଅନୁଧ୍ୟାନ କରିବା ପାଇଁ ଓଡ଼ିଶା ପଠାଇଥିଲେ। ଜି.ଏଫ୍. ଲେକି ସାହେବ ଦଶପଲ୍ଲା ଗସ୍ତକରି ନିମ୍ନମତେ ଗୁପ୍ତ ତଥ୍ୟ ପ୍ରଦାନ କରିଥିଲେ।

"ମରହଟ୍ଟା ସୈନ୍ୟ ବଡ଼ମୂଳ ଘାଟୀ ଦେଇ ଯିବା ଆସିବା କରିବାବେଳେ ଦଶପଲ୍ଲା ରାଜାଙ୍କ ଆତିଥ୍ୟ ଗ୍ରହଣ କରୁଛନ୍ତି। ମରହଟ୍ଟା ସୈନ୍ୟଙ୍କୁ ନିୟମିତ ରସଦ ଯୋଗାଇ ଦଶପଲ୍ଲା ରାଜା ନୟାନ୍ତ ହେଲେଣି। ପୁନଶ୍ଚ ବଡ଼ମୂଳଠାରେ ତୀର୍ଥଯାତ୍ରୀଙ୍କଠାରୁ ଦଶପଲ୍ଲା ରାଜା ଆଦାୟ କରୁଥିବା ତୀର୍ଥ ମହାସୁଲରୁ ଦଶଅଣା ଅର୍ଥ ମରହଟ୍ଟାମାନେ ନେଇଯାଉଛନ୍ତି। ଏସବୁ ପରିସ୍ଥିତି ଦୃଷ୍ଟିରୁ ଦଶପଲ୍ଲା ରାଜା ମରହଟ୍ଟାଙ୍କ ଉପରେ ଖୁବ୍ ଅସନ୍ତୁଷ୍ଟ। ଏହି ମରହଟ୍ଟାମାନଙ୍କୁ ଓଡ଼ିଶାରୁ ବିତାଡ଼ିତ କରିବାକୁ ଇଂରେଜ ସୈନ୍ୟ ଆସିଲେ ଦଶପଲ୍ଲା ରାଜା ସହଯୋଗ କରିବେ।"

କର୍ଣ୍ଣଓ୍ୱାଲିସଙ୍କ ପରେ ବଡ଼ଲାଟ ଲର୍ଡ଼ ଓ୍ୱେଲ୍‌ସେଲିଙ୍କୁ ଦଶପଲ୍ଲା ଅଞ୍ଚଳରେ ମରହଟ୍ଟାମାନଙ୍କର ଗୁପ୍ତ ତଥ୍ୟ ଜାଣିବା ପାଇଁ ଗୁଇନ୍ଦା କର୍ମଚାରୀ କର୍ଣ୍ଣେଲ ପିଅର୍‌ସ ଓ କରକ୍ରିଲଙ୍କୁ ପଠାଇଥିଲେ। ସେମାନେ ଦଶପଲ୍ଲା ବଡ଼ମୂଳ, ପଦ୍ମତୋଳା ଅଞ୍ଚଳ ବୁଲି ଚୂଡ଼ାନ୍ତ ରିପୋର୍ଟ ଦେଇଥିଲେ। ୧୮୦୩ରେ ମେଜର ଫ୍ରୋବଙ୍କ ନେତୃତ୍ୱରେ ଇଂରେଜ ସେନା ପଦ୍ମତୋଳା ଘାଟି ଅବରୋଧ କଲେ। ଇଂରେଜ ଓ ମରହଟ୍ଟାଙ୍କ ମଧ୍ୟରେ ବହୁଦିନ ଧରି ପଦ୍ମତୋଳା ଘାଟି ଉପରେ ଯୁଦ୍ଧ ଲାଗି ରହିଲା। ଶେଷରେ ମରହଟ୍ଟାମାନେ ପରାସ୍ତ ହୋଇଥିଲେ। ଏହି ଯୁଦ୍ଧରେ ଦଶପଲ୍ଲା ରାଜା ଇଂରେଜମାନଙ୍କୁ ସାହାଯ୍ୟ କରିଥିବାରୁ ଦଶପଲ୍ଲା ରାଜାଙ୍କ ଉପରେ ଇଂରେଜ ସରକାରଙ୍କର ରାଜକର ନିର୍ଦ୍ଧାରଣ ହୋଇନଥିଲା।

ପଦ୍ମତୋଳା ଘାଟି ଦେଇ ମହାନଦୀ କୂଳେ କୂଳେ ଜଗନ୍ନାଥ ସଡ଼କ ବନପଥ। ଏହି ପଥରେ ବଣିକମାନଙ୍କ ଯିବା ଆସିବା ପଥ। ଏଣୁ ଜନଶ୍ରୁତି କହେ ପଦ୍ମତୋଳା ସରୋବରରେ ଅନେକ ମଣି ରତ୍ନ, ସୁନା, ରୁପା କେତେ ଯେ ଖଣ୍ଡା ତଲଓ୍ୱାର ପଡ଼ିରହିଛି। ଅଙ୍ଗେ ନିଭାଇଥିବା ଅନେକ ଅନେକ ଝଡ଼ର କାହାଣୀ ପଦ୍ମତୋଳା ପଥଯାତ୍ରୀଙ୍କୁ ଶୁଣାଏ।

**ନୟାଗଡ଼ରୁ ପଦ୍ମତୋଳାକୁ ଯିବାର ଯାତାୟତ ପଥ :** ଗଣିଆର ପଶ୍ଚିମ ରାସ୍ତାରେ ମହାନଦୀ କୂଳେ କଳାପାଟ ଅଳ୍ପ ଦୂର ଆଗରେ ଛାମୁଣ୍ଡିଆ। ଛାମୁଣ୍ଡିଆଠାରୁ ବେଠିଆ ସାହି ପର୍ଯ୍ୟନ୍ତ ଭଲ ରାସ୍ତା। ତା'ପରେ ପଡ଼ିବ ମାଟି ପଥରର କଚ୍ଚା ରାସ୍ତା। କଚ୍ଚା ରାସ୍ତା ଆରମ୍ଭରେ ମା'ପଞ୍ଚେଇ ଠାକୁରାଣୀ ଆସ୍ଥାନ। କିଛି ବାଟ ଗଲା ପରେ ରାସ୍ତା ଉପରେ ଗୋଟାଏ ଫରେଷ୍ଟ ଓ୍ୱାଚ ଟାଓ୍ୱାର ଦେଖିବେ। ଓ୍ୱାଚ ଟାଓ୍ୱାରର ବାମପଟ ରାସ୍ତାଟି ବଡ଼ସିଲଙ୍ଗା ଗ୍ରାମ ପଞ୍ଚାୟତକୁ ପଡ଼ିଛି। ଏହାର ଡାହାଣପଟ ରାସ୍ତାରେ ଆଗକୁ ୧୫କିଲୋମିଟର ପଥ ଅତିକ୍ରମ କଲେ ଢ଼ିପିସାହି ତା'ପରେ ପଦ୍ମତୋଳା ପୋଖରୀ ପାହାଡ଼ଘେର ମଧ୍ୟରେ ଏକ ରମଣୀୟ ସ୍ଥାନ। ଏଠାରେ ହଳଦୀବସନ୍ତ ପକ୍ଷୀଙ୍କର ଗହଳ।

<u>ରୋପ୍ ୱେ (ରଜ୍ଜୁର ଯାତାୟତ ପଥ) :</u> ବଡ଼ମୂଳ ବଡ଼ ପାହାଡ଼ଠାରୁ ମହାନଦୀର ଉତ୍ତରପଟ ଅଳ୍ପ ଦୂର। ମହାନଦୀ ଓସାର ଏଠାରେ ଦୁଇତଟ ପାହାଡ଼ ମଧ୍ୟରେ ସଂକୀର୍ଣ୍ଣ। ଦୁଇତଟ ପାହାଡ଼ ମୂଳକୁ ଦଉଡ଼ି ପଥଦ୍ୱାରା ସଂଯୋଗ କରାଯାଇଥିଲା। ଏହି ରଜ୍ଜୁପଥରେ କଷ୍ଟସାଧ ଗମନାଗମନ ହୁଏ। ସେତେବେଳେ ଯାଏଁ ମହାନଦୀରେ କୌଣସି ସେତୁ ନିର୍ମାଣ ହୋଇନଥିଲା। ଏଣୁ ନୟାଗଡ଼କୁ ନଦୀ ସେପାରିରୁ ଆସିବା ସହଜ ନଥିଲା। ରଣପୁର ପ୍ରଜା ଆନ୍ଦୋଳନରେ ଇଂରେଜ ସାହେବ ବେଜଲଗେଟ୍‌କୁ ଠେଙ୍ଗାରେ ପିଟି ମାରିଦିଆଗଲା। ଆନ୍ଦୋଳନକୁ ଦମନ କରିବାପାଇଁ ଇଂରେଜ ସେନା ଏହି ରୋପ୍ ୱେରେ (ଦଉଡ଼ି ପଥରେ) ଆସିବା ସମୟରେ ବାଇଶିପଲ୍ଲୀ ଅଞ୍ଚଳର ଆଦିବାସୀ ଧନୁ ତୀର ଦ୍ୱାରା ଏ ପଥ ଅବରୋଧ କରିଦେଇଥିଲେ।

<u>ରନ୍ନଗଣ୍ଡ ଜଳପ୍ରପାତ :</u> ବୁଗୁଡ଼ା କଲୋନୀଠାରୁ ପ୍ରାୟ ୨ କିଲୋମିଟର ଦୂରରେ ଅବସ୍ଥିତ ରନ୍ନଗଣ୍ଡ ଜଳପ୍ରପାତ। ଏଠାକାର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ। ପ୍ରାୟ ୨୦୦ଫୁଟ ଉଚ୍ଚତାରୁ ପତିତ ପାହାଡ଼ି ଝରଣାଟି ଗୋଟିଏ ପ୍ରଗଲ୍‌ଭା ବନ କିଶୋରୀ ଭଳି। ଏ ଦୃଶ୍ୟ ଦେଖିବାକୁ ଏବଂ ବଣଭୋଜି କରିବାକୁ ବହୁ ଦୂରଦୂରାନ୍ତରର ପ୍ରକୃତିପ୍ରେମୀ ଦର୍ଶକ ପ୍ରତିବର୍ଷ ଶୀତରେ ସମବେତ ହୁଅନ୍ତି।

<u>ଷଣ୍ଢ ଦେବତା :</u> ଇତିହାସ କହେ ପ୍ରାଚୀନ ଇସ୍ରାଏଲବାସୀ ଧାତୁ ବା ଶିଳା ନିର୍ମିତ ଷଣ୍ଢ ଦେବତାର ପୂଜା କରୁଥିଲେ। ଆଶ୍ଚର୍ଯ୍ୟର କଥା ନୟାଗଡ଼ ଜିଲ୍ଲା ବାଇଶିପଲ୍ଲୀ ଅଞ୍ଚଳ ଅନ୍ତର୍ଗତ ମକର ପ୍ରସାଦର ଆଦିବାସୀମାନେ କେଉଁ ଆଦିମକାଳରୁ ଷଣ୍ଢ ବିଗ୍ରହର ଉପାସନା କରିଆସୁଛନ୍ତି। ଗ୍ରାମ ନିକଟସ୍ଥ ଷଣ୍ଢ ପାହାଡ଼ ଉପରେ ଷଣ୍ଢ ଠାକୁରଙ୍କର ଆସ୍ଥାନ। ଷଣ୍ଢ ଠାକୁରଙ୍କର ପୂଜକ ହେଉଛି କନ୍ଧ ଯାନୀ। ପାହାଡ଼ ଉଚ୍ଚକୁ ଯିବାର ଅସୁବିଧା ହେବାରୁ ଅଧୁନା ଷଣ୍ଢ ଠାକୁରଙ୍କର ପ୍ରତିକୃତି ପ୍ରତିମା ପାହାଡ଼ ପାଦଦେଶରେ ପୂଜା ପାଉଛନ୍ତି। ଠାକୁରଙ୍କର ମାହାତ୍ମ୍ୟ ଏହା ଯେ ଏ ଗାଁ'ରେ ଷଣ୍ଢ ରଖନ୍ତି ନାହିଁ। ଗାଈମାନେ ବିନାଷଣ୍ଢରେ ଗର୍ଭବତୀ ହୁଅନ୍ତି। ଗାଈ ବୟ ଗଲେ (ଋତୁ ଆସିଲେ) ଷଣ୍ଢ ପାହାଡ଼ ଆଡ଼କୁ ହମ୍ବାଳ ଛାଡ଼ି ଦୌଡ଼େ। ବହୁ ସମୟ ବୁଲିବା ଫଳରେ ତା'ର ଋତୁଜନିତ ପରିତୃପ୍ତି ଆସିଯାଏ। ଗାଈ ଷଣ୍ଢ ମଧ୍ୟରେ ଅଲୌକିକ ସଙ୍ଗମରୁ ଗାଈ ଗର୍ଭବତୀ ହୁଏ। ପ୍ରକୃତ ଷଣ୍ଢ ମକର ପ୍ରସାଦରେ ନଥାନ୍ତି। ଅନ୍ୟ ଗ୍ରାମରୁ ଯଦି କୌଣସି ଷଣ୍ଢ ଏ ଗ୍ରାମକୁ ଆସେ ରହିପାରେ ନାହିଁ। ବୟ ଯାଇଥିବା ଗାଈକୁ ଦେଖି ସଙ୍ଗିବା ଉଦ୍ଦେଶ୍ୟରେ ଯଦି ହାଙ୍କୁଡ଼ି ଛାଡ଼େ ସେ ଷଣ୍ଢ ମରେ। ଏହା ଶୁଣିବା କଥା ନୁହେଁ। ଏହା ସତ୍ୟ ଘଟଣା।

<u>ପୋଡ଼ମ୍ବା ସୁନା ପ୍ରତିମା ଠାକୁରାଣୀ :</u> କୁଜାମେଣ୍ଢି ପଞ୍ଚାୟତର ପୋଡ଼ମ୍ବାଠାରେ ମା' ସୁନାପ୍ରତିମା ଠାକୁରାଣୀଙ୍କର ଆସ୍ଥାନ। ପ୍ରତି ତିନିବର୍ଷରେ ଥରେ ଏଠି ଯାତ୍ରା ଅନୁଷ୍ଠିତ ହୁଏ। ଏଠାକାର ମା' ସୁନାପ୍ରତିମା ଠାକୁରାଣୀ ଏକ ଅଣଓସାରିଆ ଗୁମ୍ଫା

ଭିତରେ ଅଛନ୍ତି। କେବଳ ଯାନୀ ସେ ଗୁମ୍ଫାରେ ପ୍ରବେଶ କରେ। ବିଶ୍ୱାସ ଥିଲେ ମା' ଠାକୁରାଣୀ ପାଖକୁ ଯାଇହୁଏ। ଅବିଶ୍ୱାସ କଲେ କେହି ଗୁମ୍ଫା ଭିତରକୁ ପ୍ରବେଶ କରିପାରନ୍ତି ନାହିଁ। ଏ ଦୃଶ୍ୟ ଦେଖିବା ପାଇଁ ଜନସମାବେଶ ହୁଏ।

**ପୁରୁଣା ବନପଥ ଜଗନ୍ନାଥ ସଡ଼କ :** ପଶ୍ଚିମ ଭାରତୀୟ ତୀର୍ଥଯାତ୍ରା ମହାରାଷ୍ଟ୍ର ମଧ୍ୟପ୍ରଦେଶ ଅଞ୍ଚଳର ଯାତ୍ରୀମାନେ ମହାନଦୀ କୂଳେ କୂଳେ ସମ୍ବଲପୁର ସୋନପୁର ବୌଦ୍ଧ ଦେଇ ଦଶପଲ୍ଲା ପଦ୍ମତୋଳା ଘାଟି ଦେଇ ବିପଦସଙ୍କୁଳ ବନପଥ କୁତୁରୀ ଜଙ୍ଗଲ ପାର ହୋଇ ଛାମୁଣ୍ଡିଆ ମଣିଭଦ୍ରା ପର୍ବତ ପାଦଦେଶ ଦେଇ ଗଣିଆରେ ପହଞ୍ଚୁଥିଲେ। ଗଣିଆ ହେଲା ଯାତ୍ରୀଙ୍କର ଅରଣ୍ୟପଥ ଅତିକ୍ରମ କଲା ପରେ ବଧା ଜାଗା। ଏଠାରେ ବିଶ୍ରାମ ନେଇ ଗଣୁଥିଲେ କେତେ ଆସିଥିଲେ କେତେ ରହିଲେ। ଏହିଠାରେ ଯାତ୍ରୀ ତାଙ୍କର ସହଯାତ୍ରୀଙ୍କୁ ଖୋଜି ଗଣୁଥିବାରୁ ପ୍ରାଚୀନ ସମୟରୁ ଏହାର ନାମ ଗଣିଆ। ଏହି ପୁରୁଣା ବନପଥର ଜଗନ୍ନାଥ ସଡ଼କ ପୁନଶ୍ଚ ଗଣିଆରୁ ରାଜକିଆରୀ କଣ୍ଟିଲୋ ବାଙ୍କି ଦେଇ ସମତଳ ଅଞ୍ଚଳର ଜନବସତି ମଧ୍ୟଦେଇ ମହୋଦଧିକୂଳ ଜଗନ୍ନାଥଙ୍କ ବଡ଼ଦାଣ୍ଡକୁ ଲମ୍ବିଯାଇଥିଲା। ଏବେବି ଜଗନ୍ନାଥ ସଡ଼କର ଦୁଇ ଦାଢ଼େ ଦାଢ଼େ ପୁରୁଣା ବଟ, ଚୂତ ବୃକ୍ଷମାନ ଜଗନ୍ନାଥ ସଡ଼କର ସ୍ୱରୂପ ଚିହ୍ନଟ କରାନ୍ତି।

**ଦଶପଲ୍ଲା ଇଲାକାର ପୁରାଣ କାହାଣୀ :** ଦଶପଲ୍ଲା ଇଲାକା ଦ୍ୱାପରଯୁଗର କଥାବସ୍ତୁ ସହିତ ବହୁଳ ଭାବେ ଜଡ଼ିତ। ଦୁର୍ଯ୍ୟୋଧନର କପଟ ପଶାଖେଳରେ ପାଣ୍ଡବମାନେ ହାରି ସର୍ତ୍ତ ଅନୁଯାୟୀ ବାରବର୍ଷ ବନବାସ ଓ ଗୋଟିଏ ବର୍ଷ ଅଜ୍ଞାତ ବନବାସ। ପାଣ୍ଡବମାନେ ବାରବର୍ଷ ବନବାସର ଅନେକ ବର୍ଷ ଦଶପଲ୍ଲା ଆରଣ୍ୟକ ଭୂମିରେ ବସବାସ କରିଥିବାର ଜନଶ୍ରୁତିରୁ ଜଣାପଡ଼େ।

**ପଞ୍ଚପାଣ୍ଡବ ପର୍ବତ :** ଭୁବନେଶ୍ୱର, ବଲାଙ୍ଗୀର ରାଜପଥ ଉପରେ ନୂଆଗାଁ ବ୍ଲକଠାରେ ପଞ୍ଚପାଣ୍ଡବ ପର୍ବତର ଅବସ୍ଥାନ। ଏହି ପର୍ବତରେ ଉଚ୍ଚାନିଚା ପାଞ୍ଚଟି ଶୃଙ୍ଗ ଆଉ ଏକ ଛତ୍ରାକାର ଶୃଙ୍ଗ। ପର୍ବତର ପାଞ୍ଚଟି ଶୃଙ୍ଗ ପାଣ୍ଡବ ପାଞ୍ଚଭାଇଙ୍କ ନାମରେ ନାମିତ ଏବଂ ଚେପେଟା ଛତ୍ରାକାର ଶୃଙ୍ଗଟି ମାତା କୁନ୍ତୀଙ୍କ ନାମରେ ନାମିତ। ଏ ଶୃଙ୍ଗମାନେ ଲୋକକଥାରେ ପାଣ୍ଡବମାନଙ୍କ ବନବାସ ସ୍ମୃତି ଉଚ୍ଚାରଣ କରନ୍ତି। ପଞ୍ଚପାଣ୍ଡବ ପର୍ବତ ଭାରି ମନୋରମ ପର୍ବତ ଦୂରରୁ ଦୃଷ୍ଟି ଆକର୍ଷଣ କରେ।

**ଭୀମରା ପାହାଡ଼ :** ପଞ୍ଚପାଣ୍ଡବ ପାହାଡ଼ଠାରୁ ପଶ୍ଚିମକୁ ରାଜପଥ ଉପରେ ଖମାରୀସାହି ତା'ର ଦକ୍ଷିଣକୁ ଅଳ୍ପଦୂରରେ ବାଘୁଆ ବେରେଣୀ ଗ୍ରାମ ନିକଟରେ ଭୀମରା ପାହାଡ଼। ଏ ପାହାଡ଼ଟି ଗୋଟିଏ ପଥର। ପାହାଡ଼ର ଥଳି ପ୍ରକାଣ୍ଡ ବିସ୍ତାର ପଥର ଚଟାଣ। ଏ ପାହାଡ଼ ପାଣ୍ଡବମାନଙ୍କର ବନବାସ କଥା ମନେପକାଇ ଦିଏ। ପାହାଡ଼ ଚଟାଣରେ ଭୀମଙ୍କର ପାଦ ଚିହ୍ନ ଛାପ ରହିଛି। ଏ ଶିଳା ବକ୍ଷରେ ଏକ ଗୁମ୍ଫା ବି ରହିଛି। ପାହାଡ଼ ପାଦଦେଶରେ ରାଧାକୃଷ୍ଣ ମନ୍ଦିର ରହିଛି। ଗଦାଧାରୀ ଭୀମଙ୍କର

ଏକ ବିଶାଳ ମୂର୍ତ୍ତି ଦେଖିବାକୁ ପାଇବ। କାର୍ତ୍ତିକ ପୂର୍ଣ୍ଣମୀରେ ଭୀମରା ପାହାଡ଼ଠାରେ ଯାତ୍ରା ହୁଏ। ଶ୍ରଦ୍ଧାଳୁମାନେ ବହୁସଂଖ୍ୟାରେ ଏ ଯାତ୍ରା ଉପଭୋଗ କରନ୍ତି।

ଭାତଗଦା ଅସୁର ଘାଟି : ଚକାପାଦୁ ଠାରୁ ଦଶ କିଲୋମିଟର ଦୂରରେ ଦଶପଲ୍ଲା ଭାତଗଦା ନାମକ ସ୍ଥାନ ରହିଛି। ଏ ସ୍ଥାନଠାରୁ ତିନି କିଲୋମିଟର ଦୂରରେ କୁରୁଣୀ ଗ୍ରାମଠାରେ ଅସୁରଘାଟି ପଡ଼େ। ଭାଦଗଦା ପଥର ଏକ ବିସ୍ତୀର୍ଣ୍ଣ ପ୍ରଶସ୍ତ ସମତଳ ପଥର। ସାରଳା ଦାଶଙ୍କ ମହାଭାରତରେ ବର୍ଣ୍ଣିତ ଏଠାରେ ବକାସୁର ପାଇଁ ବିଭିନ୍ନ ଫଳମୂଳ ସହିତ ଭାତ ମଣ୍ଡାପିଠା ଏହି ପଥର ଉପରେ ଦିଆଯାଏ। ମହାଭାରତର ଭୀମ ଏହିଠାରେ ବକାସୁରକୁ ବଧ କରିଥିଲେ। ବକାସୁରର ମୃତଦେହକୁ ପାହାଡ଼ରେ ଆଉଜାଇ ଦେଇଥିଲେ। ଏହାର ନାମ ଅସୁର ଘାଟି। ଅସୁରଘାଟିରେ ହାଡ଼ ସଦୃଶ ଚୂନପଥର ମିଳେ। ଏ ପଥର ଖଣ୍ଡମାନଙ୍କୁ ଲୋକେ ଅସୁର ହାଡ଼ ବୋଲି କହନ୍ତି।

ଜନଶ୍ରୁତିର ଅପ୍ସରା ଭୂଇଁ : ପାଣ୍ଡବଙ୍କ ବନବାସ ଯାତ୍ରାକାଳରେ ମାତା କୁନ୍ତୀଙ୍କ ସହିତ ମଣିଭଦ୍ରା ନିକଟସ୍ଥ ଅଞ୍ଚଳରେ ରାତ୍ରିଯାପନ କରିଥିଲେ। ରାତ୍ର ଅନ୍ତେ କୁନ୍ତୀ ପିଲାମାନଙ୍କୁ କହିଥିଲେ ମୁଁ ବିବାହ କରନ୍ତି। କୁନ୍ତୀଙ୍କର ଏ ଅଦ୍ଭୁତ ଅଭିଳାସରେ ପାଞ୍ଚଭାଇ ବିଚଳିତ ହୋଇଯାଇଥିଲେ ଏବଂ ସେ ସ୍ଥାନ ପରିତ୍ୟାଗ କରିଥିଲେ। ଲୁକ୍‌କାୟିତ ଭାବେ ସେ ସ୍ଥାନରୁ କିଛି ମାଟି ନେଇଯାଇଥିଲେ। ଅନ୍ୟ ସ୍ଥାନରେ ଶୟନକାଳରେ ସେପରି ଦୁଃସ୍ୱପ୍ନ ଦେଖିନଥିଲେ ମାତା କୁନ୍ତୀ। ପୁନଶ୍ଚ ସେ ମାଟି ପାରି ଶୋଇବାରୁ କୁନ୍ତୀଙ୍କୁ ପୂର୍ବାବସ୍ଥା ବିଚଳିତ କରିଥିଲା। ଜଣାପଡ଼ିଗଲା ଯେ ମାଟିରେ ବିଳାସଗୁଣ ଅଛି। ଜନଶ୍ରୁତି କହେ ସେ ସ୍ଥାନ ପୂର୍ବେ ଏକ ବେଶ୍ୟାପଡ଼ା ଥିଲା। ଏଠି ପାର୍ଶି ବର୍ଗର ଲୋକେ ବାସ କରୁଥିଲେ। ଜନଶ୍ରୁତି ଅତୀତକୁ ଅତିକ୍ରମକରି ଆସିଥାଏ। ଏ କଥା କାହିଁକି ଭୂଲ ହେବ। ଏ ଭାବ ସଂଯୋଗରେ-ପରିଭ୍ରମଣକାରୀ ସାତକୋଶିଆର ରମଣୀୟ ଶୋଭା ଉପଭୋଗରେ ଚିତ୍ତବିନୋଦନରେ ବିଭୋର । ଦେହ ବିନୋଦନ ଇଚ୍ଛାର ଏହାର ଉତ୍ତରଦାଢ଼ରେ ଅପ୍‌ସରାର ସଙ୍ଗ ମିଳିଯାଏ । ଏହାର ଦୃଷ୍ଟାନ୍ତ ହୋଇପାରେ ଟିକରପଡ଼ାର ଉତ୍ତର ଦାଢ଼ରେ ଅବସ୍ଥିତ ଏକ ଗାଁ। ଏକ ଅପସରା ଭୂଇଁ ଦେହ ବ୍ୟବସାୟ ପଡ଼ା। ପର୍ଯ୍ୟଟକଙ୍କ ମନୋରଞ୍ଜନ କରିବାର ଏକ ପ୍ରମୋଦ ସ୍ଥାନ। ପର୍ଯ୍ୟଟକ ସାତକୋଶିଆର ଅନିନ୍ଦ୍ୟ ରୂପ ଲାବଣ୍ୟରେ ଚିତ୍ତ ଆନନ୍ଦ କଲାବେଳେ କେହି ପର୍ଯ୍ୟଟକ ଏହି ଅପ୍‌ସରା ଭୂଇଁରେ ଦେହ ବିଳାସର ମନୋରଂଜନ କରିଥାନ୍ତି ।

ମଣିଭଦ୍ରା : ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ଦେହ : ସର୍ପମାନଙ୍କର ବାସସ୍ଥଳୀ ହେଉଛି ମଣିଭଦ୍ରା ପର୍ବତ ମହାନଦୀର ଦକ୍ଷିଣ କୂଳରେ ବିଦ୍ୟମାନ। ଏହା ଏକ ପୁରାଣ ପୂଜିତ ପର୍ବତ। ଯୁଧିଷ୍ଠିର ଦ୍ରୌପଦୀଙ୍କର ଏକାନ୍ତ ପ୍ରଣୟକାଳରେ ଅର୍ଜୁନଙ୍କ ପ୍ରବେଶ

ଅପରାଧରେ ଅର୍ଜୁନ ମଣିଭଦ୍ରା ପର୍ବତରେ ବନବାସ କଟାଇଥିଲେ । ସେଠାରେ ପ୍ରିୟ ସଖା ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନବଗୁଞ୍ଜର ଦେହ ଦର୍ଶନ କରାଇଥିଲେ । ସେଦିନ ଚୈତ୍ର କୃଷ୍ଣପକ୍ଷ ତ୍ରୟୋଦଶୀ ଗଙ୍ଗାରେ ମହାବାରୁଣୀ ବୁଡ଼ ଯୋଗ ପଡ଼ିଥିଲା । କୃଷ୍ଣ ଅର୍ଜୁନ ଗଙ୍ଗାରେ ବୁଡ଼ ଦେବାର ଅଭିଳାସ ପୂରଣ ପାଇଁ ଅର୍ଜୁନ ଶର ନିକ୍ଷେପ କରି ଗଙ୍ଗାଙ୍କୁ ଏହି ସ୍ଥାନକୁ ଆମନ୍ତି ଆଣିଥିଲେ । ମଣିଭଦ୍ରା ପାଦଦେଶରେ ଗଙ୍ଗା ପ୍ରବାହିତ ହେଲା । କୃଷ୍ଣ ଅର୍ଜୁନ ମହାବାରୁଣୀ ବୁଡ଼ ସ୍ନାନ କଲେ । ସେହି ନଦୀର ନାମ ଭଗବାନ ତରଙ୍ଗିଣୀ ଦେଇଥିଲେ । ଏ ତରଙ୍ଗିଣୀ ନଦୀ କାଳକ୍ରମେ ଅପଭ୍ରଂଶ ହୋଇ ବୃତ୍ତଙ୍ଗ ନାମ ବହିଛି ।

<u>ନୟାଗଡ଼ର ମହାବାରୁଣୀ ବୁଡ଼ ଘାଟ : କମେଇ ମୁହାଣ :</u> ନୟାଗଡ଼ ଜିଲ୍ଲାର ଦୁଇଟି ନଦୀ ମୁହାଣରେ ମହାବାରୁଣୀ ବୁଡ଼ ପଡ଼େ । ବୃତ୍ତଙ୍ଗ ନଦୀମୁହାଣ ଅନ୍ୟଟି କୁସୁମୀ ନଦୀ ମୁହାଣ କମେଇ । ୨୫ବର୍ଷ ପରେ କମେଇ ମୁହାଣରେ ୨୫.୩.୨୦୧୭ରେ ମହାବାରୁଣୀ ବୁଡ଼ ଯୋଗ ପଡ଼ିଥିଲା । ଏଠାରେ ହଜାର ହଜାର ନରନାରୀ କମେଇ ମୁହାଣର ମହାନଦୀ ଜଳରେ ବୁଡ଼ ସ୍ନାନ ଦେଉଥିଲେ । ବନାଞ୍ଚଳରୁ ଦୂର ସହରାଞ୍ଚଳରୁ ଲୋକ କମେଇର ବାଲୁକାପୃଷ୍ଠରେ ମହାସମାବେଶ କରିଥିଲେ । ଏହି ପବିତ୍ର ଦିନରେ ଶ୍ରଦ୍ଧାଳୁମାନେ ନିଜନିଜର ପିତୃପୁରୁଷଙ୍କୁ ଶ୍ରାଦ୍ଧପିଣ୍ଡ ଦାନକରି କମେଇ ମୁହାଣ ମହାନଦୀ ଜଳରେ ଅସ୍ଥି ବିସର୍ଜନ କରୁଥିଲେ । ଏ ଦିନଟି କମେଇ ଲୋକାରଣ୍ୟ ଦିଶୁଥିଲା । ବାଲୁକାଶଯ୍ୟାରେ ଦୋକାନ ବଜାର ଖୋଲି ଯାଇଥିଲା । ଏ ମହୋତ୍ସବରେ କ'ଣ ନ ମିଳେ ? ସୂର୍ଯ୍ୟୋଦୟରୁ ଗହଳ ବଢୁଥିଲା ଯେ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଛିଡୁନଥିଲା । ନୟାଗଡ଼ ଜିଲ୍ଲା ପ୍ରଶାସନ ତରଫରୁ ଯାତ୍ରୀଙ୍କ ସୁବିଧା ବ୍ୟବସ୍ଥା କରାଯାଇଥିଲା । ହୋଟେଲ ପୂଜା ସାମଗ୍ରୀ, ମନୋହରି ଦୋକାନମାନ ଧାଡ଼ି ହୋଇ ପଡ଼ିଥିଲା । ମହାନଦୀର ଜଳସ୍ରୋତ ପର୍ଯ୍ୟନ୍ତ ଧାରେ ଧାରେ ଖୁଣ୍ଟପୋତି ମୋଟା ଦଉଡ଼ିର ବାଡ଼ ପଡ଼ିଥିଲା । ଏହା ପୋଲିସ ଦୃଷ୍ଟି ଆୟତରେ ଥିଲା ଯେପରି କୌଣସି ଲୋକ ସ୍ରୋତରେ ଭାସିନଯାଏ । ଖାଁ ଖାଁ ନିଛାଟିଆ କମେଇ ମୁହାଣ ଏହି ଦିନରେ ଉତ୍ସବମୁଖର ହୁଏ । ଏ ଦିନଟି ବ୍ରାହ୍ମଣଙ୍କ ମନ୍ତ୍ର ସ୍ତବ ଗଗନ ପବନ ଆନ୍ଦୋଳିତ କରୁଥିଲା । ମାନସିକ ରଖିଥିବା ଲୋକମାନେ ଲଣ୍ଡା ହେଉଥିଲେ । ଶ୍ରାଦ୍ଧଦାନରେ ଏତେ ଖାଦ୍ୟଦ୍ରବ୍ୟ ବାଲିଶଯ୍ୟାରେ ପଡ଼ିଥିଲା ଯେ ଅସଂଖ୍ୟ କାଉ କୁକୁରଙ୍କ ସମାବେଶ ସତେ ଯେପରି ପ୍ରେତପୁରୁଷଏ ଏମାନଙ୍କ ରୂପରେ ବିଚରଣ କରୁଛନ୍ତି । ନୟାଗଡ଼ର ବୃତ୍ତଙ୍ଗ ଓ କମେଇ ମୁହାଣ ମହାବାରୁଣୀ ବୁଡ଼ର ପବିତ୍ର ତୀର୍ଥକ୍ଷେତ୍ର ।



## ଦ୍ୱାଦଶ ଅଧ୍ୟାୟ

# ଖଣ୍ଡପଡ଼ା ସମତଳ

ବୃଓଙ୍ଗ ନଦୀକୂଳରେ କ୍ଷୁଦ୍ର କ୍ଷୁଦ୍ର ଆରଣ୍ୟ ସମତଳଭୂମିରେ ଧାନ ଫସଲ ହୁଏ। ଢ଼ିପ ପଦାଭୂମିରେ ମାଣ୍ଡିଆ ମକା କୋଦୁଅ ଜହ୍ନା ଚାଷ ହୁଏ। ବାଇଗଣ ଚାଷ ହୁଏ।

କୁଆଁରୀଆ ନଦୀର ସମତଳଭୂମି : କୁଆଁରୀ ନଦୀ ଉପରେ କୁଆଁରୀଆ ନଦୀବନ୍ଧ ଯୋଜନା। ଏହା ଦଶପଲ୍ଲା ସମତଳ ଅଞ୍ଚଳକୁ ଜଳ ଯୋଗାଏ। ଦଶପଲ୍ଲା ପୂର୍ବଦିଗକୁ ଜିନ୍ଦାଭୂଇଁ, କୋରଡ଼ା, ସୁବଳୟା, ଖମାରିସାହି, ପୁରୁଣା ଦଶପଲ୍ଲା, ଡିରିଗାଁ, ଢିପସାହି, ଆଡ଼କଟା ସମତଳଭୂମି, ଦଶପଲ୍ଲା ଶସ୍ୟ ଭୂଇଁ, ଧାନ, ଆଖୁ, ମୁଗ, ବିରି, ଚଣା ଚାଷ ହୁଏ। କୋଶକା, କୁମ୍ଭାରପଡ଼ା, ବେଣାଗାଡ଼ିଆ, ତେନ୍ତୁଳିଆପଲ୍ଲୀ, କଣ୍ଟିଲୋର ଦକ୍ଷିଣାଞ୍ଚଳରେ ଧାନଚାଷ, ବାଦାମ ଚାଷ ହୁଏ। କୁଆଁରୀଆ ନଦୀ ଧାନଚାଙ୍ଗଡ଼ା ପଞ୍ଚାୟତ ଧାଙ୍ଗେଡ଼ି ପାହାଡ଼ଠାରେ କୁସୁମୀ ନଦୀରେ ମିଶିଅଛି।

ଡାହୁକାନଦୀ ସମତଳଭୂମି : ଡାହୁକା ଗୁମିମାଳ ରତାଦେଇ ପାର୍ବତ୍ୟ ଅଞ୍ଚଳରୁ ବାହାରି ବାହାଡ଼ାଝୋଲାର ପଶ୍ଚିମ ଉତ୍ତର ଦିଗରେ ବହିଯାଇ ମହୀପୁର ପର୍ଯ୍ୟନ୍ତ କ୍ଷୁଦ୍ର କ୍ଷୁଦ୍ର ସମତଳଭୂମି ସୃଷ୍ଟି କରିଛି। ଏହି ସମତଳ ଭୂମିମାନଙ୍କରେ ଧାନ ଫସଲ ହୁଏ। ପରିବା ଜାତୀୟ ଫସଲ ଯଥା- ବାଇଗଣ, ଟମାଟୋ ଫସଲ କରାଯାଏ। ମହୀପୁରଠାରୁ ତଳକୁ ତଳକୁ ପ୍ରଶସ୍ତ ସମତଳଭୂମି ସୃଷ୍ଟି କରିଛି। ଶୁଳିଆ ଜଙ୍ଗଲର ଉତ୍ତର ପାର୍ଶ୍ୱର ସମତଳଭୂମି ମାଳିଶର, ନିଳାଦ୍ରୀପୁର, କିରିଆଲାଞ୍ଜି ଦୁର୍ଦ୍ଦୁରା, ଶିମିଳିସାହି, ଢେଙ୍କେଣା ଗହୀର ମାଳରେ ପ୍ରଚୁର ଧାନ ଆଖୁ ଫସଲ କରାଯାଏ। ଶୀତଦିନରେ ବାଇଗଣ, ଟମାଟୋ, ବିଲାତିଆଳୁ, ନାନାଦି ପରିବା ଚାଷ କରାଯାଏ। ମାଳିସାହି ଖଣ୍ଡୁଗାଁ କୋଡ଼ିଏ କାହାଣୀଆ, କ୍ରିଦାସପୁର, ଯଦୁପୁର, ବାରବାଟୀ, ହରିପୁର, ଶୁକ୍ଳଗାଡ଼ିଆ, ଚମ୍ପତିପୁର, ନାଟୁଗାଁ, ସଜନାପଡ଼ା, ଶାଲୁଣୀ, ପାଟଚଣ୍ଡୀ ସମତଳଭୂମିରେ ମୁଖ୍ୟ କୃଷି ଧାନ ଚାଷ, ଅର୍ଥକାରୀ ଫସଲ ଆଖୁଚାଷ ପ୍ରଚୁର ପରିମାଣରେ କରାଯାଏ। ଧାନ ଫସଲ ପରେ ଏ ସମତଳଭୂମିରେ ବାଇଗଣ, ଟମାଟୋ, କୋବି, କାକୁଡ଼ି, ସାରୁ ଫସଲ ହୁଏ। ତା'ପରେ ଡାହୁକା ଉତ୍ତରମୁହାଁ ହୋଇ କୁସୁମୀ ନଦୀରେ ମିଶିଅଛି।

ରାଜଗିରି ପର୍ବତର ସମତଳଭୂମି : ରାଜଗିରି ପର୍ବତର ଦକ୍ଷିଣ ପାଦଦେଶରେ ପ୍ରକାଣ୍ଡ ସମତଳଭୂମି। ଏହି ସମତଳଭୂମି ଦେଇ ବାଘମାରି ନଈ ବହିଯାଇ

ପୋତାନଦୀରେ ମିଶିଛି। ପୋତାନଦୀ ଯଦୁପୁର, ରାଉତରାପୁର, ଜାମୁବଣିଆ ଦେଇ ବାରବାଟୀ ବାଲୁଗାଁ ମଧ୍ୟସ୍ଥ ଖଣ୍ଡପଡ଼ା ରାଜରାସ୍ତା ସେତୁ ଦେଇ ପୂର୍ବ ଆଡ଼କୁ ଗଡ଼ିଯାଇଛି। ଏହି ସମତଳ ଅଞ୍ଚଳରେ ଗୁଡୁପାଙ୍ଗି, କଣ୍ଟାବଣିଆ, କଞ୍ଚନଭେଲି, ମାଳତିପୁର, କ୍ରିଦାସପୁର, ମାଳିସାହି, ବାଲୁଗାଁ, ଖେଡ଼ପଡ଼ା, ଶରଧାପୁର ଗ୍ରାମବସତି ରହିଛି। ଏ ସମତଳଭୂମି ବହୁତ ଉର୍ବରା ଭୂମି। ପ୍ରଧାନ ଫସଲ ଏଠାର ଧାନ ଆଖୁ। ପାହାଡ଼ର ପାଦଦେଶ ପଦାମାଳରେ ପ୍ରଚୁର ବାଦାମ ଚାଷ କରାଯାଏ। ଏ ସମତଳ ଅଞ୍ଚଳର ଅର୍ଥକାରୀ ଫସଲ ଆଖୁ ଆଉ ବାଦାମ।

ଖଣ୍ଡପଡ଼ା ଶିଖରପୁର ଅଞ୍ଚଳର ସମତଳଭୂମି : ଭାଗୀପଡ଼ା ପାହାଡ଼ ଯୋଗୀଆପଲ୍ଲୀ ଘାଟିର ପଶ୍ଚିମରେ ଖଣ୍ଡପଡ଼ା ଗଡ଼ ଆଡ଼କୁ ଲମ୍ବିଥିବା ପର୍ବତମାଳା ରାଜପଥର ଉଭୟପାର୍ଶ୍ୱକୁ ଝାମ୍ପି ରହିଥିବା ଗଡ଼ର ଫଳ ଉଦ୍ୟାନ ନନ୍ଦନବନ ଉମାଦେଇ ପାହାଡ଼ ବେତଖୋଲି, କୁସୁମତରା ଘେର ମଧ୍ୟରେ କ୍ଷୁଦ୍ର ଉର୍ବର ଉପତ୍ୟକା। ଉପତ୍ୟକାର ଘସିହୋଇ କୁସୁମୀ ନଦୀ ମହାନଦୀ ଆଡ଼କୁ ଗତି କରୁଛି। ଏ ସମତଳରେ ଧାନ ଆଖୁଚାଷ କରାଯାଏ। ଗ୍ରୀଷ୍ମରେ ସାରୁ, ବାଇଗଣ, କଖାରୁ, କାକୁଡ଼ି ପରିବା ଜାତୀୟ ଫସଲ ହୁଏ।

<u>ଖଣ୍ଡପଡ଼ାର ପୂର୍ବକୁ ବାଘୁଆପଲ୍ଲୀ କ୍ଷୁଦ୍ର ଉପତ୍ୟକା</u> : ଖଣ୍ଡପଡ଼ାର ବାଘୁଆପଲ୍ଲୀ କାଦୁଆ କ୍ଷୁଦ୍ର ସମତଳ ଖୋର୍ଦ୍ଧା ଜିଲ୍ଲାର ମାଣିକାଗୋଡ଼ା ପାହାଡ଼ ପାଦଦେଶକୁ ଲାଗିଅଛି। ଏହାର ପଶ୍ଚିମ ପାର୍ଶ୍ୱଦେଇ କୁସୁମୀ ନଦୀ ଗତି କରିଛି। ଏ ଉପତ୍ୟକା ଉର୍ବରା। ଧାନ, ଆଖୁ ଚାଷ କରାଯାଏ। ଏ ଅଞ୍ଚଳରେ ବ୍ୟାଘ୍ରଙ୍କ ଉପଦ୍ରମ ଥିଲା ତେଣୁ ଏ ଗାଁ'ର ନାମ ବାଘୁଆପଲ୍ଲୀ।

<u>ପର୍ଯ୍ୟଟନ ପୀଠ ବାଘୁଆପଲ୍ଲୀ :</u> ବାଘୁଆପଲ୍ଲୀ ଏକ ପର୍ଯ୍ୟଟନ ପୀଠ। ବାଘୁଆପଲ୍ଲୀ ନାଣ୍ଡିପାହାଡ଼ ଥଳିରେ ଆଖଣ୍ଡଳମଣି ଶିବ ମନ୍ଦିର। ପାହାଡ଼ର ଶିଖର ଦେଶ ଏକ ବୃହତ୍ ପ୍ରଶସ୍ତ ଥଳି। ଏହା ଉପରେ ଆଖଣ୍ଡଳମଣି ମହାଦେବଙ୍କ ଚଉଡ଼ା ବେଢ଼ା ପାଚେରୀ ଦ୍ୱାରା ଆବଦ୍ଧ। ମନ୍ଦିରର ପ୍ରବେଶ ପ୍ରସ୍ଥାନ ଦ୍ୱାର ସିଂହଦ୍ୱାର ବ୍ୟାଘ୍ରଦ୍ୱାର। ପାହାଡ଼ ତଳେ ପ୍ରବେଶପଥରେ ହାତୀ ଦ୍ୱାରା ରହିଛି। ପାହାଡ଼ ଉପରେ ଯାତ୍ରୀଙ୍କ ରାତ୍ରଯାପନ ପାଇଁ ମନୋରମ ପ୍ରାସାଦ ରହିଛି। ବିଭିନ୍ନ ପୁଷ୍ପ ଶୋଭିତ ଉଦ୍ୟାନ ରହିଛି। ମନ୍ଦିରର ପ୍ରବେଶ ଦ୍ୱାର ସିଂହଦ୍ୱାର ଦୁଇପାର୍ଶ୍ୱରେ ଗଣେଶ କାର୍ତ୍ତିକେୟଙ୍କ ପ୍ରତିମା ଚିତ୍ର। ବେଢ଼ାର ମଧ୍ୟଭାଗରେ ସୁନ୍ଦର ଗଢ଼ଣର ଆଖଣ୍ଡଳମଣି ମହାଦେବଙ୍କ ମନ୍ଦିର। ମନ୍ଦିର ମୁଖଶାଳା ଦ୍ୱାରରେ ନନ୍ଦୀଭୃଙ୍ଗୀ ଦ୍ୱାରପାଳ। ମୁଖଶାଳାକୁ ଲାଗି ବିରାଟ ମଣ୍ଡପ। ମଣ୍ଡପର ସ୍ତମ୍ଭଗୁଡ଼ିକର ସୁନ୍ଦର ସୁନ୍ଦର ପୌରାଣିକ ମୂର୍ତ୍ତି ଦ୍ୱାରା ଶୋଭିତ। ବେଢ଼ା ମଧ୍ୟରେ ଯଜ୍ଞବେଦୀ। ଯଜ୍ଞବେଦୀର ସ୍ତମ୍ଭଗୁଡ଼ିକ ଖୋଦେଇ ମୂର୍ତ୍ତି ଶୋଭିତ। ମନ୍ଦିର ବେଢ଼ା ଭିତର କାନ୍ଥରେ ଦଶ ଅବତାର,

ରୁଦ୍ରଙ୍କର ବିଭିନ୍ନ ଅବୟବ ମୂର୍ତ୍ତି ବ୍ରହ୍ମା, ବିଷ୍ଣୁଙ୍କ ପ୍ରତିମା ଖୋଦେଇ ରୂପ। ରୁଦ୍ରାଣୀ, ନାରାୟଣୀ ଖୋଦେଇ ମୂର୍ତ୍ତି ପ୍ରତୀୟମାନ ଚଣ୍ଡୀଚାମଣ୍ଡା ସମେତ । ପ୍ରତି ମୁଖ୍ୟ ମୂର୍ତ୍ତିର ଉଭୟ ପାର୍ଶ୍ୱରେ ଗୌର, ସାବନା, ଶ୍ୟାମା, ହୀରକ, ଲୋହିତ ବର୍ଣ୍ଣା ଅପୂର୍ବ ରୂପ ଶୈଳୀର ବିଗ୍ରହର ପରୀଚିତ୍ର। ମନ୍ଦିର ମଧ୍ୟସ୍ଥ ଚାରୁଚିତ୍ର ରୂପ ପ୍ରତୀମା ପର୍ଯ୍ୟଟକର ମନମୁଗ୍ଧ କରେ। ଯାତ୍ରୀ ବିହାର ପାଇଁ ସୁନ୍ଦର ମନୋହର ପରିବେଶ ବାଘୁଆପଲ୍ଲୀର ଆଖଣ୍ଡଳମଣି ମହାଦେବ ପୀଠ।

ପାହାଡ଼ ଥଳୀରୁ ତଳଦେଶରେ ଶସ୍ୟଭୂଇଁ ମଧରେ କ୍ଷୁଦ୍ରପଲ୍ଲୀ ପୂର୍ବ ଦକ୍ଷିଣ ପାର୍ଶ୍ୱକୁ ନେପେଟା ପାହାଡ଼ମାନଙ୍କର ଘଞ୍ଚ ବନାନୀର ଦୃଶ୍ୟ ମନ୍ଦିର ପରିବେଶକୁ ବେଶ୍ ଆକର୍ଷଣ କରେ। ଖଣ୍ଡପଡ଼ା ବାହାଡ଼ା କଲେଜ ଛକରୁ ବାଇଗୁଣିଆ ଡ଼େଇଁ କିଛି ବାଟ ଦକ୍ଷିଣକୁ ଗଲେ ବାଘୁଆପଲ୍ଲୀ ଆଖଣ୍ଡଳମଣି ମହାଦେବଙ୍କ ପୀଠ ପଡ଼େ। ଏଠାରେ ସଦାବେଳେ ଭ୍ରମଣକାରୀଙ୍କର ସମାବେଶ ଥାଏ। ଶିବରାତ୍ରିରେ ଏଠାରେ ଜାଗର ଯାତ୍ରା ହୁଏ। ଅଞ୍ଚଳବାସୀଙ୍କର ବହୁଳ ସମାବେଶ ହୁଏ ଜାଗର ଯାତ୍ରାରେ।

<u>ବନମାଳିପୁର କ୍ଷୁଦ୍ର ସମତଳଭୂମି :</u> କୁସୁମୀ ନଦୀର ପୂର୍ବପାର୍ଶ୍ୱ ବନମାଳିପୁର ବାହାଡ଼ା କଲେଜ ମଧବର୍ତ୍ତୀ ଶାଳବଣୀ ଘେର ମଧରେ କ୍ଷୁଦ୍ର ଶସ୍ୟଶାଳୀ ଉପତ୍ୟକା। ଏ ଅଞ୍ଚଳରେ ବେଶି ପରିବା ଚାଷ ହୁଏ। ବାହାଡ଼ା ଛକ ଅଞ୍ଚଳର ଏକ ପନିପରିବା ଛକ।

<u>ଭାପୁର ତହସିଲ ପୂର୍ବ ଦକ୍ଷିଣ ସମତଳଭୂମି :</u> ଭାପୁର ତହସିଲର ଦକ୍ଷିଣ ପୂର୍ବକୁ ନିମାଣି, ବାଦଭୂଇଁ, ଚକ୍ରଧରପ୍ରସାଦ, ଗୋଳାପୋଖରୀ, ଖୋର୍ଦ୍ଧା, ବାଙ୍କି ସରହଦକୁ ଲାଗି ନୀଳକଣ୍ଠପ୍ରସାଦ, ତରବାକୁ ପର୍ଯ୍ୟନ୍ତ ଧାନ, ମୁଗ, ଗିରି, ଚଣା ଚାଷର ବିସ୍ତୃତ ସମତଳଭୂମି।

<u>ଚକ୍ରଧରପ୍ରସାଦ ଝାମୁଯାତ୍ରା :</u> ଚକ୍ରଧର ପ୍ରସାଦ (କୋଦପିଠା) ଗ୍ରାମର ବିଷୁବ ପଣାସଂକ୍ରାନ୍ତିରେ ଝାମୁଯାତ୍ରା ମହାଦେବଙ୍କର ପ୍ରାଚୀନ ପରମ୍ପରାର ଦଣ୍ଡ ଉତ୍ସବ । ଦଣ୍ଡ ଠାକୁରଙ୍କୁ ଧରି ନିଆଁଗାଡ଼ ଚାଲିବା, ପାଟମରା, କଣ୍ଟାଗଦା ଉପରେ ଶୋଇବା କଷ୍ଟସାଧ ପରମ୍ପରା। ଠାକୁରଙ୍କ ନିଷ୍ଠାରେ ରହି ପାଟୁଆ ସାହି ବୁଲି ଯାତ୍ରାପଡ଼ିଆରେ ପାଟମାରିବା ଏକ ଅଦ୍ଭୁତ ଦୃଶ୍ୟ। ପାଟୁଆର ଅଣ୍ଟା ଉପରକୁ ମେରୁହାଡ଼ର ଦୁଇପାର୍ଶ୍ୱରରେ ଚମଡ଼ାକୁ ବିଦ୍ଧକରି ଦୁଇଟା ଶିକୁଳି ସଂଯୁକ୍ତ ଲୁହା ଆଙ୍କୁଶ ଲଗାଯାଇଥାଏ। ଶାଙ୍କୁଳାର ମଧଭାଗରେ ଦଉଡ଼ା ବାନ୍ଧି ଆଉ ଜଣେ ପାଟୁଆ ଭିଡ଼ି ଧରିଥାଏ। ପାଟୁଆ ନାଚି ନାଚି ଯାତ୍ରାରେ ପରିକ୍ରମା କରେ। ଭୂଇଁରେ ପୋତାଯାଇଥିବା ଶକ୍ତ କାଠ ଖମ୍ବ ଉପରେ ସମମାପ ବିଶିଷ୍ଟ ଏକ ଅରଟି ଦଣ୍ଡ ଘୂରୁଥାଏ। ଦଣ୍ଡର ଏକପାର୍ଶ୍ୱରେ ପାଟୁଆ ପିଠିରେ ଫୋଡ଼ା ଯାଇଥିବା ଆଙ୍କୁଶ ଶାଙ୍କୁଳା ବନ୍ଧାଯାଇଥାଏ। ପାଟୁଆ ଅରଟି ଦଣ୍ଡରେ ଝୁଲୁଥାଏ। ଅରଟି ଘୂରେ ପାଟୁଆ ଘୂରେ। ଯାତ୍ରାର ଏକ ଲୋମହର୍ଷଣ ଦୃଶ୍ୟ। ଯାତ୍ରାରେ ବହୁ ଜନ ସମାବେଶ ହୁଏ।

**କିଆବଣିଆ: ଉଷ୍ମ ପ୍ରସ୍ରବଣ :** ନୀଳକଣ୍ଠ ପ୍ରସାଦ ଗ୍ରାମର କିଆବଣିଆରେ କିଆଶୁଣୀ ଠାକୁରାଣୀଙ୍କର ଆସ୍ଥାନ। କିଆଶୁଣୀ ଠାକୁରାଣୀଙ୍କ ସନ୍ନିକଟରେ ଏସିଆ ମହାଦେଶର ବୃହତ୍ ଉଷ୍ମ ପ୍ରସ୍ରବଣ କ୍ଷେତ୍ର ପ୍ରସାରୀ ହୋଇ ରହିଛି। ଏ କ୍ଷେତ୍ର ୯ଏକରରୁ ଊର୍ଦ୍ଧ୍ୱ ଭୂମି ମାଡ଼ି ରହିଥିବା ଦହଲା ଅଞ୍ଚଳ। ଦହଲା ଭିତରେ ପାଦ ପଶିଗଲେ ଭିତରକୁ ଭିତରକୁ ଟାଣି ହୋଇ ପଶିଯାଏ ଉଦ୍ଧାର ପାଇବା କଷ୍ଟକର। ଏହା ଏକ ପର୍ଯ୍ୟଟନ କ୍ଷେତ୍ର। ପୂର୍ବରୁ ଏହାର ନାମ ତରବାଲୁ ଉଷ୍ମ ପ୍ରସ୍ରବଣ (Hot Sulpher Spring) ଥିଲା। ଅଧୁନା ଡିଷ୍ଟ୍ରିକ୍ଟ ଅଫିସ ନୟାଗଡ଼ (ରେଭିନ୍ୟୁ ସେକ୍ସନ) ନିର୍ଦ୍ଦେଶନାମା No.952/Rev. Dt.24.9.09 Renaming of "Tarabalo" as Nilakanthaprasad Hot Sulphur Spring ନାମ ଜାରି କରାଯାଇଛି।

**ଐତିହାସିକ ଘଟଣା :** କିଆବଣିଆ ନୟାଗଡ଼ ରାଜା ବାଙ୍କିରାଜା ନିଜ ନିଜ ରାଜ୍ୟ ବଢ଼ାଇବା ଉଦ୍ଦେଶ୍ୟରେ ଏହି କିଆବଣିଆ କ୍ଷେତ୍ରରେ ପରସ୍ପର ମଧ୍ୟରେ ଭୟଙ୍କର ଯୁଦ୍ଧ ହୋଇଥିଲା। ବାଙ୍କି ରାଜାଙ୍କର ସୈନ୍ୟମାନେ ଏ କ୍ଷେତ୍ରକୁ ଅତିକ୍ରମ ନକରିବାରୁ ଯୁଦ୍ଧରେ ପରାଜୟ ସ୍ୱୀକାର କରିଥିଲେ।

**ମହାନଦୀ ତଟ ପଠା, ପାଟ ସମତଳଭୂମି :** ମହାନଦୀ ତଟଦେଶରେ ଗଣିଆ ତହସିଲ ଛାମୁଣ୍ଡିଆ, ଓ୍ୱାଲିପୁର, ବେଲପଡ଼ା, ରାଜକିଆରୀ, ସିଦ୍ଧାମୂଳା, ଘଣାଶାଳିଆ, ବାଣପୁରିଆ, କଣ୍ଟିଲୋ, ମାଧପୁର, ପଦ୍ମପୁର, ବିଜିପୁର, କରବର, କଟକ ଜିଲ୍ଲାର ବାଙ୍କିର ପଶ୍ଚିମ ସରହଦ ପର୍ଯ୍ୟନ୍ତ ପାଦଦେଶରେ ପଠା, ପାଟ, ସମତଳ ଅଞ୍ଚଳ ଦେଖାଯାଏ।

**ମହାନଦୀ :** ମହାନଦୀ ନୟାଗଡ଼ ଜିଲ୍ଲାର ପୁରାତନ ବ୍ୟବସାୟିକ ଚିରସ୍ରୋତା ଜଳଧାର। ଏହି ନଦୀପଥରେ ଆରଣ୍ୟକ ମୂଲ୍ୟବାନ ଦ୍ରବ୍ୟ କାଠ, ବାଉଁଶ, ଲାଖ, ଝୁଣା, ଖଲିପତ୍ର, ସୋରିଷ, ହଳଦୀ, ଅଦା ତଳଦେଶକୁ ପଠାଯାଏ। ଏହା ଏକ ପ୍ରଧାନ ନୌବାଣିଜ୍ୟଭିତ୍ତିକ ନଦୀ। ମତ୍ସ୍ୟଜୀବୀ ସଂପ୍ରଦାୟର ଲୋକମାନେ ଏହି ନଦୀରୁ ବର୍ଷସାରା ପ୍ରଚୁର ମାଛ ମାରି ଜୀବିକା ନିର୍ବାହ କରନ୍ତି। ଏହା ଓଡ଼ିଶାର ବଡ଼ ନଦୀ।

**କଣ୍ଟିଲୋ :** କଣ୍ଟିଲୋ ଏକ ପ୍ରାଚୀନ ପରିଚିତ ସ୍ଥାନ। ଏହାର ମହାନଦୀ ଦାଢ଼ରେ ବ୍ରହ୍ମାଦ୍ରୀ ପର୍ବତ ଶିଖରରେ ବୈଷ୍ଣବ ଠାକୁର ନୀଳମାଧବ ବିଜେ କରିଛନ୍ତି। ଏ କ୍ଷେତ୍ର ଜଗନ୍ନାଥ ସଂସ୍କୃତିର ଆଦ୍ୟ ପୀଠ। ଏହା ଓଡ଼ିଶାର ଏକ ପ୍ରଧାନ ପର୍ଯ୍ୟଟନ କ୍ଷେତ୍ର। କଂସା, ପିତ୍ତଳ ବାସନକୁସନ, ହଣ୍ଡା, ଗଞ୍ଜ ତିଆରି ପାଇଁ କଣ୍ଟିଲୋ ଓଡ଼ିଶା ବିଖ୍ୟାତ। କଣ୍ଟିଲୋ ନୀଳମାଧବ ଜୀଉଙ୍କ ସେବା ଜଗନ୍ନାଥଙ୍କ ବାରମାସରେ ତେର ପର୍ବ ନୀତି ଅନୁକ୍ରମେ ପାଳନ କରାଯାଏ। ପ୍ରତି ବର୍ଷ ମାଘ ସପ୍ତମୀରେ ମାଘମେଳା

ପ୍ରସିଦ୍ଧ ମାଘସପ୍ତମୀ ଯାତ୍ରା ହଜାର ହଜାର ଜନସମାବେଶରେ ଉତ୍ସବମୁଖର ହୁଏ। କଣ୍ଟିଲୋ ବନାଞ୍ଚଳ ବାଣିଜ୍ୟ ପେଣ୍ଠର ଏକ କ୍ଷୁଦ୍ର ସହର।

ଲଳିତ ମାଧବ ମନ୍ଦିର : ଧାନଚାଙ୍ଗଡ଼ା ପଞ୍ଚାୟତ ଧାଙ୍ଗଡ଼ୀ ପାହାଡ଼ ଶୃଙ୍ଗ ଥଳିରେ ଲଳିତ ମାଧବ ମନ୍ଦିର ଲଳିତ ସୁନ୍ଦର ନୀଳମାଧବଙ୍କର କମନୀୟ ବିଗ୍ରହ ଏହି ମନ୍ଦିରରେ ପୂଜା ପାଆନ୍ତି। କଣ୍ଟିଲୋ ଛକରୁ ପୂର୍ବ ଦିଗରେ ପ୍ରଧାନ ରାସ୍ତାର ଏକ କିଲୋମିଟର ମଧ୍ୟରେ କମେଇ ମୁହାଣ ସେତୁ ପରେ ପରେ ଦକ୍ଷିଣ ଦିଗକୁ ବିଶ୍ୱାବସୁ ଶବର ରାଜା ଗାଁ କାଳିଆପଲ୍ଲୀକୁ କୁସୁମୀ ନଦୀର ପୂର୍ବ ଦାଢ଼େ ଦାଢ଼େ ଧାଙ୍ଗଡ଼ୀ ପାହାଡ଼ ପାଦଦେଶକୁ ଆଡ଼ିବନ୍ଧ ରାସ୍ତା ପଡ଼ିଛି। କମେଇ ମୁହାଣ ସେତୁ ଉପରୁ ଦକ୍ଷିଣ ଦିଗକୁ ଚାହିଁଲେ ଯେଉଁ ପାହାଡ଼ଟି ଦୃଶ୍ୟମାନ ହୁଏ ସେଇଟି ଧାଙ୍ଗଡ଼ୀ ପାହାଡ଼। ଧାଙ୍ଗଡ଼ୀ ପାହାଡ଼ର ପୂର୍ବ ପାଦଦେଶରୁ ପାହାଡ଼ ଶୀର୍ଷରେ ଲଳିତ ମାଧବ ମନ୍ଦିରକୁ ପକ୍କା ରାସ୍ତା ପଡ଼ିଛି।

ଲଳିତ ମାଧବ ମନ୍ଦିର ଗର୍ଭଗୃହ ରତ୍ନବେଦୀରେ ଲଳିତ ମାଧବଙ୍କର ସୁନ୍ଦର କମନୀୟ ଲାବଣ୍ୟ ନୀଳମାଧବଙ୍କର ବିଗ୍ରହ ମନଲୋଭା ପ୍ରତିମା। ମୁଖଶାଳା ଗୃହରେ ଲଳିତା ତୃଷାର୍ତ୍ତ ବିଦ୍ୟାପତିଙ୍କୁ କଳସିରୁ ଜଳଦାନ କରୁଛନ୍ତି କି ସୁନ୍ଦର ମନୋହର ମହାମିଳନର ମୂର୍ତ୍ତି ! ତା'ର ଡାହାଣ ପାର୍ଶ୍ୱକୁ ଶବର ରାଜା ବିଶ୍ୱାବସୁ ଏକ ଥାଳରେ ବନଫଳ ବଢ଼ିଆଳ, କୋଳି, କଦଳୀ ପୂଜା ଭୋଗ ମାଧବଙ୍କୁ ଅର୍ପଣ କରୁଛନ୍ତି। ମନ୍ଦିରଟି ପାହାଡ଼ ଶୀର୍ଷ ମନୋରମ ଥଳି ଉପରେ ଗଢ଼ାଯାଇଛି। ମନ୍ଦିର ବେଢ଼ାରୁ ଉତ୍ତର ଦିଗକୁ ଚାହିଁଲେ କଣ୍ଟିଲୋ ନୀଳମାଧବଙ୍କ ମନ୍ଦିର ମହାନଦୀ ଦାଢ଼ରେ ଦୃଶ୍ୟମାନ ହୁଏ। ପ୍ରଶସ୍ତ ମହାନଦୀର ଅପରୂପ ଶୋଭା ନେତ୍ର ଚମକାଇ ଦିଏ।

ବିଶ୍ୱାବସୁଙ୍କର ଅଲିଅଳୀ ଜେମା ଲଳିତା ସାଥୀମାନଙ୍କ ମେଳରେ ଏହି ଅରଣ୍ୟ କୋଳରେ ଭ୍ରମଣ କରନ୍ତି। ନାଚଗୀତରେ ପ୍ରମୋଦ କରନ୍ତି। ଧାଙ୍ଗଡ଼ୀମାନଙ୍କ ବିଚରଣ ସ୍ଥଳ ହୋଇଥିବାରୁ ଏହାର ନାଁ ଧାଙ୍ଗଡ଼ୀ ପାହାଡ଼ କୁସୁମୀ ନଦୀର ପୂର୍ବ ଦାଢ଼ରେ ଠିଆ ହୋଇଛି। ବିଦ୍ୟାପତି ଲଳିତାର ଭେଟାଭେଟି ସ୍ଥାନ ଏହି ଧାଙ୍ଗଡ଼ୀ ପାହାଡ଼। ଆର୍ଯ୍ୟ ଓ ଶବର ସଂସ୍କୃତିର ମହାମିଳନ କ୍ଷେତ୍ର ଓଡ଼ିଶାର ଏକ ପ୍ରଧାନ ସ୍ଥାନ। ଏହି ସ୍ଥାନରେ ଶବରପଲ୍ଲୀର ଧାଙ୍ଗଡ଼ୀମାନେ ବଣଭୋଜି କରନ୍ତି।

ବାଲିଚଲାଖିଆ ପର୍ବ : ବର୍ତ୍ତମାନ ସୁଧା ଲଳିତା ବିଦ୍ୟାପତି ମିଳନର ସ୍ମୃତିକୁ ବଜାୟ ରଖି ଯୁବତୀମାନେ ରମଣୀମାନେ ପୌଷ ପୂର୍ଣ୍ଣିମୀ ପରଦିନ କୁସୁମୀ ବାଲି ଉପରେ ଉଚ୍ଚା ବାଲି ପାହାଡ଼ ତିଆରି କରିଥାନ୍ତି। ଏହି ବାଲି ପାହାଡ଼ ଉପରେ ଏକ ଆଖୁ ଗଛ ପୋତିଥାନ୍ତି। ବାଲିପାହାଡ଼ଟିକୁ ବିଭିନ୍ନ ଫୁଲରେ ସଜାଇଥାନ୍ତି। ଘରୁ ଆଣିଥିବା ସୁବାସିତ ରନ୍ଧନ ସୁଖାଦ୍ୟ ପୂଜା କରନ୍ତି। ବାଲିଶେଯରେ ରାଧାକୃଷ୍ଣଙ୍କର ରାସ ନୃତ୍ୟ କରିଥାନ୍ତି। ଭାରି ପ୍ରମୋଦମୟ ଦୃଶ୍ୟ। ଶେଷରେ ନଦୀ ବାଲିରେ

ଚାଲି ଚାଲି ଆଣିଥିବା ଖାଦ୍ୟ ପରସ୍ପରକୁ ଦିଆନିଆ ହୋଇ ଖାଇ ବୁଲନ୍ତି। ଏହି ପର୍ବ ମହାନଦୀ ଦାଢ଼େ ଦାଢ଼େ ବାଲିରେ ଏ ଅଞ୍ଚଳର ଝିଅମାନେ ପାଳନ କରି ଖୁସି ବନାନ୍ତି।

**ଲଳିତମାଧବ ମନ୍ଦିରର ନିର୍ମାତା :** ଧାଙ୍ଗେଡ଼ୀ ପାହାଡ଼ ଧାନଚାଙ୍ଗଡ଼ା ପଞ୍ଚାୟତ ଆୟତନ ମଧ୍ୟରେ । ପାହାଡ଼ର ବିଶେଷତ୍ୱ ଏହି ଯେ ପାହାଡ଼ର ଶୃଙ୍ଗ ଶିଳା ସବୁ ଦକ୍ଷିଣମୁହାଁ। ଏହି ପାହାଡ଼ ଉପରେ ଲଳିତମାଧବ ମନ୍ଦିର ସ୍ଥାନୀୟ ଶିକ୍ଷକ ଦେବରାଜ ଜେନା ୧୯୯୬ ମସିହାରେ ନିର୍ମାଣ କରିଥିଲେ। ବର୍ତ୍ତମାନସୁଦ୍ଧା ସେ ମନ୍ଦିରର ପ୍ରଶସ୍ତି ବଢ଼ାଇବା ଦିଗରେ ସମସ୍ତ ବ୍ୟୟ କରିଚାଲିଛନ୍ତି ତାଙ୍କର ସମସ୍ତ ଆୟ ମନ୍ଦିର ପାଇଁ ବିନିଯୋଗ କରିଥାନ୍ତି।

**କାଳିଆପଲ୍ଲୀ :** ଲୋକ କଥିତ ଶବରରାଜା ବିଶ୍ୱାବସୁଙ୍କର ଗଡ଼ ଥିଲା କାଳିଆପଲ୍ଲୀ। ନୀଳମାଧବ ଜୀଉଙ୍କର ଆଦ୍ୟପୂଜକ ହେଲେ ବିଶ୍ୱାବସୁ ଶବରରାଜା। କାଳିଆପଲ୍ଲୀ ଧାନଚାଙ୍ଗଡ଼ା ପଞ୍ଚାୟତ ଅନ୍ତର୍ଗତ। ଏହି ଗ୍ରାମରେ ଆବହମାନ କାଳରୁ ଧନୁ ମାସ (ପୌଷ)ରେ ଚାରିଦିନ ଧରି ଧନୁପୂଜା ମହୋତ୍ସବ ଅନୁଷ୍ଠିତ ହେଉଅଛି। ଗ୍ରାମର ପୁରୁଷ ଓ ମହିଳା ଉତ୍ସବର ଅଧିବାସରେ କଳସ ଯାତ୍ରାକରି ନୀଳମାଧବଙ୍କ ପୀଠ ମହାନଦୀ ଜଳଘାଟରୁ ଜଳକଳସ ଧରି ଆସନ୍ତି। ଜଳ କଳସ ଶୋଭାଯାତ୍ରା ଆଗେ ଆଗେ ପାଇକ ଯାତ୍ରା ପରିବେଷଣ ବେଶ୍ ଉପଭୋଗ୍ୟ। ପାଇକମାନେ ବିଭିନ୍ନ ରଣକୌଶଳ ଦେଖାଇ ବୀର ଭଙ୍ଗୀରେ ନାଚି ନାଚି ପାହୁଲ ପକାଇ କଣ୍ଟିଲୋ ଗ୍ରାମ ପରିକ୍ରମା କରି କାଳିଆପଲ୍ଲୀ ଗ୍ରାମସ୍ଥିତ ଲଳିତମାଧବ ପୀଠକୁ ଆସନ୍ତି। ତା'ପରେ ଧନୁ ପୂଜା ସ୍ଥାନରେ ପହଞ୍ଚି କଳସ ପୂଜା କରନ୍ତି। ଶୋଭାଯାତ୍ରାରେ କଳସ ଯାତ୍ରା ଶବର ଶବରୁଣୀ ବେଶରେ ନୃତ୍ୟ ପାଇକ ନାଚର ରଣକୌଶଳ ଦର୍ଶକଙ୍କର ମନମୁଗ୍ଧ କରେ। ଏ ଯାତ୍ରା ଶବର ପରମ୍ପରାର ସୂଚନା ଦିଏ। ଏ ଅଞ୍ଚଳର ଚାଲିଚଳଣୀକୁ ଲକ୍ଷ୍ୟ କଲେ ଶବର ଚଳଣି ଅନୁଭବକୁ ଆସେ।

**ଖଲିସାହି :** ଖଲିସାହି ଖଣ୍ଡପଡ଼ାର ପ୍ରଧାନ ବ୍ୟବସାୟୀକ ସ୍ଥାନ। ଏଠାରେ ସୁନା ରୁପାର ସୁନ୍ଦର ସୁନ୍ଦର ଅଳଙ୍କାର ଗଢ଼ାଯାଏ। ଏହି ଛୋଟ ସହରରେ ବିଭିନ୍ନ ଜାତିର ଲୋକ ବାସକରନ୍ତି। ଏଠାର ଅଞ୍ଚଳବାସୀଙ୍କୁ ଏ ବାଣିଜ୍ୟ ପେଣ୍ଠ ସବୁଟା ଆବଶ୍ୟକୀୟ ଦ୍ରବ୍ୟ ଯୋଗାଇଥାଏ। ଏଣୁ ଛୋଟ ସହରଟି ସବୁବେଳେ ଗହଳ। ବିଭିନ୍ନ ସୁନ୍ଦର ସୁନ୍ଦର ମୂର୍ତ୍ତି ନଟରାଜ, ଶିବପାର୍ବତୀ, ରାଧାକୃଷ୍ଣ, ଲକ୍ଷ୍ମୀନାରାୟଣ, ସର୍ପ, ସିଂହ, ହସ୍ତୀ, ଅଶ୍ୱ ନିଖୁଣ ପ୍ରତିମା ଧାତୁ ପିତ୍ତଳ, ରୂପା, ସୁନା, ତମ୍ବାରେ ନିର୍ମାଣ ପାଇଁ ଓଡ଼ିଶା ପ୍ରସିଦ୍ଧ ସ୍ଥାନ ଖଲିସାହି। ମୂର୍ତ୍ତି ବେପାର ଏହାର ଦେଶ ବିଦେଶରେ ବେଶ୍ ଖ୍ୟାତି ଅର୍ଜନ କରେ।

**ମର୍ଦ୍ଦରାଜପୁର ଶୈବପୀଠ :** ଖଲିସାହିର ଉତ୍ତରକୁ ରାଜପଥ ଉପରେ ମର୍ଦ୍ଦରାଜ

ଗ୍ରାମ ଅବସ୍ଥିତ । ଏହି ଗ୍ରାମର ମଧ୍ୟଭାଗରେ ବିଶାଳକାୟ ପଥରର ଏକ ଛୋଟ ପାହାଡ଼ ରହିଛି । ପାହାଡ଼ର ଚାରିଆଡ଼େ ଏହି ପଥରମାନ ଠିଆ ହୋଇଛନ୍ତି । ପାହାଡ଼ର ଥଳିରେ ଲୋକନାଥ ମହାଦେବ ମନ୍ଦିର, ବଜରଙ୍ଗୀ ମନ୍ଦିର, ଶ୍ରୀରାମ ମନ୍ଦିର ମୁଖ୍ୟ । ମନ୍ଦିର ମଧ୍ୟରେ ପାର୍ଶ୍ୱଦେବୀଙ୍କୁ ସ୍ଥାପନ କରାଯାଇ ଲୋକନାଥଙ୍କ ଉତ୍ତର ବେଢ଼ା କାନ୍ଥରେ ବିଶ୍ୱାମିତ୍ର, ବଶିଷ୍ଠ, ଋଷ୍ୟଶୃଙ୍ଗ, ଅତ୍ରି, ଭରଦ୍ୱାଜ, ବାଲ୍ମୀକ, ଜନକ ସିଦ୍ଧ ତପସ୍ୱୀମାନଙ୍କ ବିଗ୍ରହ ଲକ୍ଷ୍ମୀ, ଗାୟତ୍ରୀ, ମା' ମଙ୍ଗଳା, ତାରିଣୀ, ବିମଳା, ବଗଳାମୁଖୀ, ମାତଙ୍ଗୀ, ଧୂମାବତୀ, ଭୈରବୀ, ଛିନ୍ନମସ୍ତା, ଭୁବନେଶ୍ୱରୀ, ଷୋଡ଼ଶୀ, ତାରା, ମା' କାଳୀ, ମା' ପାର୍ବତୀଙ୍କ ଦେବୀ ବିଗ୍ରହ ସ୍ଥାପନ କରାଯାଇଛି । ଥଳିର ପଥର ଘେର ପ୍ରାଙ୍ଗଣ ମଧ୍ୟରେ ଖୋଲାରେ ନଳ ରାଜାଙ୍କର ବିରାଟ ମୂର୍ତ୍ତି, ଭଗବାନଙ୍କର ଅନନ୍ତ ଶୟନର ମୂର୍ତ୍ତି, ଅର୍ଜୁନଙ୍କ ରଥରେ ଶ୍ରୀକୃଷ୍ଣ ସାରଥୀ ମୂର୍ତ୍ତି କାଳନ୍ଦୀ ହ୍ରଦରେ ଶ୍ରୀକୃଷ୍ଣଙ୍କର କାଳୀୟ ଦଳନ ଦୃଶ୍ୟ । ରାଜା ମହାରାଜାଙ୍କ ସଭା ମଧ୍ୟରେ ଅର୍ଜୁନଙ୍କ ଲାଖବିନ୍ଧା ଦୃଶ୍ୟ, ଶ୍ରବଣକୁମାର ପିତାମାତାଙ୍କୁ ଭାରରେ ବୋହି ତୀର୍ଥଯାତ୍ରା ଦୃଶ୍ୟ କୁମ୍ଭୀର କବଳରୁ ଗଜ ଉଦ୍ଧାରଣ ଦୃଶ୍ୟ ଭ୍ରମଣକାରୀଙ୍କ ମନମୋହିତ କରେ । ପାହାଡ଼ ଉପରୁ ଚତୁଃପାର୍ଶ୍ୱକୁ ଘେରି ଶସ୍ୟକ୍ଷେତର ସମତଳଭୂମି ଅତୀବ ମନୋହର । ଏ କ୍ଷେତ୍ରରେ ସବୁଦିନେ ଭ୍ରମଣକାରୀଙ୍କ ଗହଳ ଲାଗି ରହେ ।

<u>ଗୋସିଙ୍ଗ ପର୍ବତ :</u> ଖଣ୍ଡପଡ଼ାଠାରୁ କଣ୍ଟିଲୋ ମଧ୍ୟରେ କୁସୁମୀ ନଦୀର ପୂର୍ବ ଦାଢ଼ରୁ ଖଣ୍ଡପଡ଼ା ଭାପୁର ରାଜରାସ୍ତାର ଉତ୍ତର ଦିଗରେ କଣ୍ଟିଲୋ ଭାପୁର ରାସ୍ତାର ଦକ୍ଷିଣ ପାର୍ଶ୍ୱରେ ଏକ ଆରଣ୍ୟକ ଅଞ୍ଚଳ ଦେଖାଯାଏ । ଏ ଆରଣ୍ୟକ ପୃଷ୍ଠରେ ଗୋଶିଙ୍ଗ ପର୍ବତ ଛୋଟ ବଡ଼ ନେପେଟା ପାହାଡ଼ ମଧ୍ୟରେ ଠିଆ ହୋଇଛି । ପର୍ବତ ଚତୁଃପାର୍ଶ୍ୱରେ ପଥର ଚକଡ଼ା, ଧାନଚାଙ୍ଗଡ଼ା, କାଳିଆପଲ୍ଲୀ, କଳପଙ୍ଗି, ବନମାଳୀପୁର, ବାରବାଟୀ, କେନ୍ଦୁପଲ୍ଲୀ, ମାଧପୁର, ବଡ଼ ବଡ଼ ଗାଁମାନଙ୍କର ଅବସ୍ଥିତ । ଏକ ଆରଣ୍ୟକ ପଥ ଖଣ୍ଡପଡ଼ା ବାହାଡ଼ା କଲେଜଠାରୁ ଏହି ଅରଣ୍ୟ ମଧ୍ୟ ଦେଇ କେନ୍ଦୁପଲ୍ଲୀଠାରେ କଣ୍ଟିଲୋ ଭାପୁର ରାସ୍ତାକୁ ଛୁଇଁଛି । ଗ୍ରାମାଞ୍ଚଳ ମଧ୍ୟରେ ବନମାଳୀପୁର ଚାଷ ଜମି ସବୁଠୁଁ ପ୍ରଶସ୍ତ । ଏହାର ପୌରାଣିକ ଲୋକକଥା ଏହି ଯେ ଏହା ଗୋଶିଙ୍ଗ ଦୈତ୍ୟର ଅଞ୍ଚଳ ଥିଲା । ଏ ପାର୍ବତ୍ୟ ଭୂମିର ଉଚ୍ଚ ଖୋଲ ମଧ୍ୟରେ ଗୟା ପଥର ନାମରେ ଏକ ଜଳଭଣ୍ଡାର ଆବଦ୍ଧ କରାଯାଇଛି । ଏହି ଜଳଭଣ୍ଡାରରୁ ଚାଷଜମିକୁ ଜଳସେଚନ କରାଯାଏ । ଜଳଭଣ୍ଡାର ଉଭୟ ପାର୍ଶ୍ୱରେ ଉଚ୍ଚନୀଚର ପାର୍ବତ୍ୟ ଗହ୍ୱର ଅତୀବ ରମଣୀୟ ଚିତ୍ତ ବିନୋଦନ କରିଦିଏ ।

<u>ମହାନଦୀ କୂଳେ କୂଳେ ସମତଳଭୂମି :</u> ନୟାଗଡ଼ ଜିଲ୍ଲାର ମହାନଦୀ କୂଳେ କୂଳେ ଛାମୁଣ୍ଡିଆ, କଳାପାଟ, ରାଉତପଡ଼ା, ଓ୍ୱାଲିପୁର, ବେଲପଡ଼ା ପଠା ସମତଳଭୂମି ଗଣିଆ ତହସିଲର ଉଚ୍ଚ ସମତଳଭୂମି ମହାନଦୀ ବଢ଼ିଲେ ଏ ଭୂମିରେ

ପଟୁ ଜଳ ମାଡ଼ିଯାଏ। ଏ ଉଚ୍ଚା ପଠା ସମତଳରୁ ପ୍ରଚୁର ଧାନ, ବିରି, ବାଦାମ ଅମଳ କରାଯାଏ। ଧୀବରମାନେ ମହାନଦୀରୁ ମାଛ ମାରି ଜୀବିକା ନିର୍ବାହ କରନ୍ତି। ମହାନଦୀରେ ଭାସି ଆସୁଥିବା ମୂଲ୍ୟବାନ କାଠ ଉଦ୍ଧାର କରନ୍ତି।

ଖଣ୍ଡପଡ଼ା ତହସିଲର· ରାଜକିଆରୀ, ସିଦ୍ଧାମୂଳା, ଘଣାଶାଳୀଆ, ବାଣପୁର, କଣ୍ଟିଲୋ କମେଇ ମୁହାଣ ପର୍ଯ୍ୟନ୍ତ ଉଚ୍ଚାନିଚା ସମତଳଭୂମି। ରାଜକିଆରୀ ସିଦ୍ଧାମୂଳ ଘଣାଶାଳିଆ ମଧ୍ୟରେ ସୁଦୀର୍ଘ ସମତଳଭୂମି। ଏ ସମତଳଭୂମିରେ ଧାନ, ବିରିର ଗହଳ ଚାଷ। ଖରାଦିନେ ବାଦାମ, ମକା, ବାଇଗଣ ବିଭିନ୍ନ ପରିବା ଚାଷ କରାଯାଏ। ମହାନଦୀରୁ ପ୍ରଚୁର ମାଛ ମାରନ୍ତି।

କମେଇ ମୁହାଣଠାରୁ ମହାନଦୀ କୂଳ ସମତଳଭୂମି ବାଙ୍କି ସରହଦ ପର୍ଯ୍ୟନ୍ତ ବିସ୍ତାରୀ ରହିଛି। କମେଇ ମୁହାଣ ପୂର୍ବ କୋଣରେ ପ୍ରାଚୀନ ଠାକୁରାଣୀ ନାରାୟଣୀ ପୀଠ ଏକ ପର୍ଯ୍ୟଟନ କ୍ଷେତ୍ର। ପଥରଚକଡ଼ା, ମାଧପୁର, ବିଜିପୁର, ପଦ୍ମାବତୀ, କରବର ଗ୍ରାମାଞ୍ଚଳର ସୁଦୀର୍ଘ ପ୍ରସାରୀ ଶସ୍ୟ ଜମି। ସ୍ଥାନେ ସ୍ଥାନେ ମହାନଦୀ ଜଳ ବର୍ଷସାରା ଜମି ରହେ ଏଗୁଡ଼ିକ ପାଟ କୁହାଯାଏ। ପାଟରୁ ପ୍ରଚୁର ମଧୁର ମାଛ ମରାଯାଏ। ଏ ସମତଳ ଭାପୁର ତହସିଲର ଭୂସମ୍ପତ୍ତି ଅଞ୍ଚଳ। ଧାନ, ଆଖୁ, ମୁଗ, ବିରି, ମଟର, ବାଦାମ, ସୋରିଷ ପ୍ରଚୁର ପରିମାଣରେ ଅମଳ ହୁଏ। ଏ ଅଞ୍ଚଳଟି ନୟାଗଡ଼ ଜିଲ୍ଲାର ନିମ୍ନ ସମତଳଭୂମି। ବର୍ଷ ତମାମ ଏ ସମତଳରେ ଫସଲ ହୁଏ।

<u>ମହାନଦୀର ବନ୍ୟାଞ୍ଚଳ :</u> କଣ୍ଟିଲୋ, ମାଧପୁର, ପଦ୍ମାବତୀ, କରବର ନୟାଗଡ଼ ଜିଲ୍ଲାର ବନ୍ୟାଞ୍ଚଳ। ମହାନଦୀରେ ବନ୍ୟା ଆସିଲେ ଏ ଗ୍ରାମଗୁଡ଼ିକ ବନ୍ୟାଜଳରେ ପ୍ରଭାବିତ ହୁଅନ୍ତି। ବନ୍ୟା ସମୟରେ ଲୋକମାନଙ୍କର ସୁରକ୍ଷା ପାଇଁ ଗ୍ରାମ ନିକଟରେ ଦୋ' ମହଲା ବିଶିଷ୍ଟ ଉଚ୍ଚ ପ୍ରାସାଦର ଆଶ୍ରୟସ୍ଥଳମାନ ନିର୍ମାଣ କରାଯାଇଛି। ବନ୍ୟା ସମୟରେ ଲୋକମାନେ ଏ ଆଶ୍ରୟସ୍ଥଳମାନଙ୍କରେ ଆଶ୍ରୟ ନିଅନ୍ତି।

<u>ମାଟି ବେଉସାର ଜୀବନ - କମେଇକୂଳ ମାଟି :</u> ଆଲୁମିନିୟମ କାରଖାନାରେ ଢଳେଇ ଛାଞ୍ଚ ପାଇଁ ସ୍ୱତନ୍ତ୍ର ଧରଣର ମାଟି ଆବଶ୍ୟକ। ଏହି ମାଟିରେ ଗରା, କଡ଼େଇ, ଡାଳ, ଥାଳି ପାଇଁ ଛାଞ୍ଚ ଗଢ଼ାଯାଏ। ଅତୀତରେ ଏହି ମାଟି ଦକ୍ଷିଣଭାରତ ଗୋଦାବରୀ ନଦୀକୂଳରୁ ସଂଗ୍ରହ କରାଯାଉଥିଲା। ବର୍ତ୍ତମାନ ଏ ମାଟି କଣ୍ଟିଲୋ ନିକଟସ୍ଥ କୁସୁମୀ ନଦୀର କମେଇ ମୁହାଣ କୂଳରୁ ସଂଗ୍ରହ କରାଯାଇ ମାଟି ଛାଞ୍ଚ କରାଯାଉଛି। କଣ୍ଟିଲୋ ବୃନ୍ଦାବନ ମହାରଣା କମେଇ ମାଟିରେ ଛାଞ୍ଚ ଢଳେଇ ଗଢ଼ି ସଫଳ ହେଲେ। ଏଣୁ କମେଇ କୂଳ ମାଟିର ଆଦର ବଢ଼ିଲା। ଏଣୁ କଣ୍ଟିଲୋର କେତେକ ଲୋକ ମାଟି ବେଉସାରେ ଜୀବନ ଖଟେଇଲେ। ମହାନଦୀ ଓ କମେଇ ନଦୀପଠାରୁ ମାଟି ସଂଗ୍ରହ କରି ମାଟିକୁ ଗୁଣ୍ଡକରି ଖରାରେ ଭଲରେ

ଶୁଖାନ୍ତି । ଏ ଗୁଣ୍ଡମାଟିକୁ ସିମେଣ୍ଟ ଜରିରେ ପ୍ୟାକ୍ କରି ବସ୍ତାକୁ ୧୨୦ ଟଙ୍କାରେ ବିକ୍ରୟ କରନ୍ତି । ବ୍ରହ୍ମପୁର, ବୋଇରାଣୀ, ବାଲକାଟି କାରଖାନା ମାଲିକମାନେ ଗୁଣ୍ଡମାଟି ବସ୍ତା କ୍ରୟ କରି ନେଉଛନ୍ତି । କଣ୍ଟିଲୋର ଏହା ଏକ ବ୍ୟବସାୟ ।

**ସିଦ୍ଧେଶ୍ୱର ମହାଦେବ, କଣ୍ଟିଲୋ :** ଜଗନ୍ନାଥ ସଂସ୍କୃତିର ଆଦିପୀଠ କଣ୍ଟିଲୋ ନୀଳମାଧବ ଜୀଉଙ୍କ ପାର୍ଶ୍ୱଠାକୁର ସିଦ୍ଧେଶ୍ୱର ମହାଦେବ ଆଶ୍ଚର୍ଯ୍ୟ ଏହି ଯେ ଏହି ଠାକୁରଙ୍କ ଲିଙ୍ଗର ବୈଶିଷ୍ଟ୍ୟ ହେଉଛି ଏହା ସୂର୍ଯ୍ୟଙ୍କ ଗତିର ବିପରୀତ ଦିଗକୁ ଢ଼ଳିଥାନ୍ତି । ସୂର୍ଯ୍ୟ ମକର ସଂକ୍ରାନ୍ତିଠାରୁ ଉତ୍ତରକୁ ଓ କର୍କଟ ସଂକ୍ରାନ୍ତିଠାରୁ ଦକ୍ଷିଣକୁ ଗତି କରିଥାନ୍ତି । ସୂର୍ଯ୍ୟଙ୍କ ଗତିର ବିପରୀତ ଦିଗକୁ ଉକ୍ତ ଲିଙ୍ଗ ଆପଣାଛାଏଁ ଉତ୍ତରାୟଣ ଓ ଦକ୍ଷିଣାୟନ ହୋଇଥାନ୍ତି । ଏ ଅଲୌକିକ ଚଳଣ ଭକ୍ତଙ୍କୁ ଆକୃଷ୍ଟ କରିଥାଏ ।

**ଶାନ୍ତିର ତପୋବନ, ମାଧପୁର ଯଜ୍ଞପଦା :** ଭାପୁର ବ୍ଲକ୍ ପଥର ଚକଡ଼ା ପଞ୍ଚାୟତ ଅନ୍ତର୍ଗତ ମାଧପୁର ଯଜ୍ଞପଦା ମାଧପୁର ଗ୍ରାମର ୧କି.ମି. ଉତ୍ତରକୁ ମହାନଦୀ ଦାଢ଼ରେ ବୃକ୍ଷରାଜି ଆଚ୍ଛାଦିତ ଶୀତଳ ଛାୟା ଗହଳରେ ମନୋହର ରମଣୀୟ କ୍ଷେତ୍ର ମାଧପୁର ଯଜ୍ଞପଦା ଶାନ୍ତିର ତପୋବନ । ଏ ତପୋବନରେ ଶ୍ରୀରାମ, ଲକ୍ଷ୍ମଣ, ଜାନକୀ ମନ୍ଦିର, ରାଧାକୃଷ୍ଣ ମନ୍ଦିର, ହନୁମାନ ମନ୍ଦିର, ଗଣେଶ ମନ୍ଦିର ୧୦ଫୁଟ ଉଚ୍ଚତା ଶିବ ଲିଙ୍ଗ ବିଶିଷ୍ଟ ମୁକ୍ତେଶ୍ୱର ମହାଦେବ, ପାର୍ବତୀ ମନ୍ଦିର ରହିଛି । ଏହାର ପୂର୍ବ ଦିଗରେ ପୁରାଣ ପ୍ରସିଦ୍ଧ ହନୁମନ୍ତିଆ ପାହାଡ଼ ପଶ୍ଚିମରେ ମା' ନାରାୟଣୀଙ୍କ କ୍ଷେତ୍ର ଦକ୍ଷିଣ ଦିଗରେ ପୁରାଣ ବର୍ଣ୍ଣିତ ଗୋସିଂହ ଦୈତ୍ୟର ଆଶ୍ରୟସ୍ଥଳ । ଗୋସିଂହ ପାହାଡ଼ ଉତ୍ତରରେ- ଏ କ୍ଷେତ୍ରକୁ ଶୀତଳ ଜଳଦାନ କରି ବହିଯାଉଥିବା ଓଡ଼ିଶାର ଗଙ୍ଗା ମହାନଦୀର ଜଳଧାର । ବେଶ୍ ଆକର୍ଷଣୀୟ କ୍ଷେତ୍ର ।

ପୁରାଣ ପ୍ରସାର ମାରଢ଼ା, କେନ୍ଦୁପଲ୍ଲୀ, ହନୁମନ୍ତ ପ୍ରସାଦ, ପଦ୍ମାବତୀ, କୁଲାବତୀ, ଭୋଗଢ଼ା ଓ ପଥର ଚକଡ଼ା ଅଞ୍ଚଳ ପୁରାଣ ପ୍ରସିଦ୍ଧ ପ୍ରାଚୀନ ଜୈନାବଲ୍ୟ ନଗ୍ର ଥିଲା । କୁଲାବତୀ ପାଟଣା କାଳକ୍ରମେ କୁଲାବ ଗାଦୀ ଭାବେ ପରିଚିତ । ସମୟକ୍ରମେ କୁଲାବତୀ ପାଟଣା ମହାନଦୀ ଜଳସ୍ରୋତରେ ଭାସିଗଲା ବା ବୁଡ଼ିଗଲା । ସେଠାରେ ବାସ କରୁଥିବା ଲୋକମାନେ ନୀଳମାଧବ ଜୀଉଙ୍କ ନିକଟରେ ଉଚ୍ଚ ସ୍ଥାନରେ ଆଶୟ ନେଲେ । ନୀଳମାଧବ ଜୀଉଙ୍କ ନାମାନୁସାରେ ଏହି ଗାଁ'ଟିର ନାମ ମାଧବ ପ୍ରସାଦ ହେଲା । କାଳକ୍ରମେ ଲୋକମାନେ ଏହି ନାମକୁ ଅପଭ୍ରଂଶ କରି ଏହାକୁ ମାଧପୁର କହୁଛନ୍ତି ।

୧୮୬୪ରେ କେନ୍ଦୁପଲ୍ଲୀ ଗାଁ'ର ବ୍ରହ୍ମଚାରୀ ସ୍ୱର୍ଗତ ବ୍ରହ୍ମାନନ୍ଦ ରଥ ଏ କ୍ଷେତ୍ରରେ ଯଜ୍ଞର ଆୟୋଜନ କରିଥିଲେ । ଯଜ୍ଞ ପାଇଁ କୁଣ୍ଡ ଖୋଳିବା ବେଳେ ରାମ, ଲକ୍ଷ୍ମଣ, ସୀତାଙ୍କର ଭଗ୍ନ ମୂର୍ତ୍ତି ପାଇଥିଲେ । ଏଣୁ ବ୍ରହ୍ମଚାରୀଙ୍କ ନିର୍ଦ୍ଦେଶରେ ସେଠାରେ

ମନ୍ଦିର ନିର୍ମାଣ କରାଯାଇଥିଲା । ମହାନଦୀର ବନ୍ୟା ଯୋଗୁଁ ପୂଜାର୍ଚ୍ଚନାର ସୁବିଧା ହେଲା ନାହିଁ କେବଳ ମନ୍ଦିର ମଧ୍ୟରେ ଶ୍ରୀରାମ ଶବ୍ଦ ଲେଖା ରହିଲା । ୨୦୦୨ରେ ଜଣେ ପକ୍ଷୀବାବା ଏ ମନ୍ଦିର ଦାୟିତ୍ୱ ନେଇ ମନ୍ଦିରର ଉତ୍ସବ ଆରମ୍ଭ କଲେ । ନୀଳମାଧବଙ୍କଠାରୁ ଆଜ୍ଞାମାଳ ଆଣି ବିଧିବିଧାନରେ ଯଜ୍ଞ ଉତ୍ସବ ଚାଲିଲା । ସେହିଦିନୁଁ ମାଧପୁର ଗ୍ରାମବାସୀଙ୍କ ସହଯୋଗରେ ପ୍ରତିବର୍ଷ ଅକ୍ଷୟତୃତୀୟା ଠାରୁ ତିନିଦିନ ବ୍ୟାପୀ ଯଜ୍ଞ ଅନୁଷ୍ଠାନ ଚାଲିଲା । ମାଧପୁର, ହନୁମନ୍ତ ପ୍ରସାଦ, କେନ୍ଦୁପଲ୍ଲୀ ଓ ମାରଡ଼ା ମୌଜାବାସୀଙ୍କ ସହଯୋଗରେ ଯଜ୍ଞକାର୍ଯ୍ୟ ସଂପାଦନ ହେଉଛି ।

ରଘୁନାଥଙ୍କର ଯାତ୍ରା ଉତ୍ସବ ଆରମ୍ଭ ଦିନରେ ନାରୀ-ପୁରୁଷ ଉଭୟେ ମସ୍ତକରେ କଳସ ଧାରଣ କରି କଣ୍ଟିଲୋ ନୀଳମାଧବଙ୍କ ଘାଟଠୁଠରୁ ଜଳ କଳସ ଧରି ଖୋଳତାଳ ଢୋଲବାଦ୍ୟ ତାଳରେ ମାଧପୁର ଯଜ୍ଞପଦା ଠାକୁରଙ୍କ ପ୍ରାଙ୍ଗଣରେ ସ୍ଥାପନ କରନ୍ତି । ତା'ପରେ ଯଜ୍ଞକାର୍ଯ୍ୟ ଆରମ୍ଭ । ଶାନ୍ତିର ତପୋବନ କୁଲାବଗାଦୀରାମାଶ୍ରମ ପୀଠ ଯଜ୍ଞପଦାରେ ତିନିଦିନ ଧରି ଯାତ୍ରା ହୁଏ । ଯଜ୍ଞପଦାରେ ବିଶାଳ ଜନସମାବେଶ ହୁଏ । ଯାତ୍ରୀଙ୍କ ପାଇଁ ଅନ୍ନଛତ୍ର ଖୋଲା ଯାଇଥାଏ । ମାଧପୁର ଅକ୍ଷୟତୃତୀୟା ରଘୁନାଥଙ୍କର ଯାତ୍ରା ଏହି ଦିନ ଜଗନ୍ନାଥଙ୍କ ରଥଗଡ଼ା ଆରମ୍ଭ ହୁଏ । ନୀଳମାଧବ କ୍ଷେତ୍ର ଓ ଜଗନ୍ନାଥ କ୍ଷେତ୍ରର ସମନ୍ୱୟ ଏ କ୍ଷେତ୍ରରେ ବାରି ହୋଇଯାଏ ।

## ମହାମହୋପାଧ୍ୟାୟ ପଠାଣି ସାମନ୍ତ ଚନ୍ଦ୍ରଶେଖର

ମହାମହୋପାଧ୍ୟାୟ ପଠାଣି ସାମନ୍ତଚନ୍ଦ୍ରଶେଖର ୧୮୩୫ ମସିହା ପୌଷମାସ କୃଷ୍ଣପକ୍ଷ ଅଷ୍ଟମୀ ରବିବାର ଦିନ ଖଣ୍ଡପଡ଼ା ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ । ପଠାଣି ସାମନ୍ତ ଖଣ୍ଡପଡ଼ା ରାଜ୍ୟର ସପ୍ତମ ରାଜା ନୃସିଂହ ଭ୍ରମରବର ରାୟଙ୍କର ପଞ୍ଚମ ପୁତ୍ର ଶ୍ୟାମବନ୍ଧୁ ସିଂହ ସାମନ୍ତଙ୍କ ଯଶସ୍ୱୀ ସନ୍ତାନ । ଧରାକୋଟ ରାଜବଂଶର କନ୍ୟା ବିଷ୍ଣୁମାଳୀ ଦେବୀ ତାଙ୍କର ଜନନୀ । ଦମ୍ପତି ଶ୍ୟାମବନ୍ଧୁ ସିଂହସାମନ୍ତ ଓ ବିଷ୍ଣୁମାଳୀଙ୍କ ପୁତ୍ରକନ୍ୟା ଜୀବିତ ରହୁନଥିଲେ । ସ୍ୱାମୀ ସ୍ତ୍ରୀ ଶିବଙ୍କୁ ଆରାଧନା କରି ପୁତ୍ର ପାଇଥିବାରୁ ତାଙ୍କ ନାମ ରଖିଥିଲେ ଚନ୍ଦ୍ରଶେଖର- ଅପର୍ତ୍ତୀୟା ନାମ ଦେଇଥିଲେ ପଠାଣି । ପାଞ୍ଚ ବର୍ଷ ବୟସରୁ ପଠାଣିଙ୍କର ବିଦ୍ୟାରମ୍ଭ ହୋଇଥିଲା । କୃତିବାସ ରଥ ହେଉଛନ୍ତି ତାଙ୍କର ବାଲ୍ୟଗୁରୁ । ସାତବର୍ଷ ବେଳକୁ ବର୍ଣ୍ଣଶିକ୍ଷା, ପଣିକିଆ, ଅମରକୋଷ ଆଦି ଶିକ୍ଷା ସମାପ୍ତ କରି ରଘୁବଂଶ, କୀରାତାର୍ଜ୍ଜୁନୀୟ, ମେଘଦୂତ କାବ୍ୟ ପଠନ କରିସାରିଥିଲେ । ଗଣିତ ପାଠ ଜ୍ୟୋତିଷ ପାଠ ପ୍ରତି



ତାଙ୍କର ଶ୍ରଦ୍ଧା ଥିଲା । କୈଶୋର ଅବସ୍ଥାରୁ ଜ୍ୟୋତିଷଶାସ୍ତ୍ରର କଠିନ ଗଣନା ବିଦ୍ୟାରେ ବହୁସମୟ ଏକାଗ୍ର ଲୟ ନିବେଶ ରଖୁଥିଲେ । ସାଧନା ସିଦ୍ଧିର ମାର୍ଗ କଠୋର ଇଚ୍ଛାଶକ୍ତି ଦୁର୍ଗମ ଲକ୍ଷ୍ୟବିନ୍ଦୁ ଭେଦକରେ । ରୁଗ୍ଣ ଶରୀର ଅଭାବ ଅନଟନ ଜୀବନ ମଧ୍ୟରେ ପଠାଣି ସାମନ୍ତ କେବେ ସାଧନାର ଲକ୍ଷ୍ୟପଥରୁ ବିଚ୍ୟୁତ ହୋଇନଥିଲେ । ତାଙ୍କର କଠୋର ସାଧନାର ଫଳ କାଳଜୟୀ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ପ୍ରକାଶ । ଯେଉଁ କୃତୀ ଯୋଗୁଁ ପଠାଣି ସାମନ୍ତ ଉତ୍କଳର ଦ୍ୱିତୀୟ ଭାସ୍କର ସମ୍ମାନ ଲାଭକଲେ ।

ପଠାଣି ସାମନ୍ତ ଚନ୍ଦ୍ରଶେଖର ଅନୁଗୁଳ ତୁରଙ୍ଗ ଗଡ଼ ନିବାସୀ ଦାଶରଥି ବୀରବର ଜଗଦେବ କ୍ଷତ୍ରୀୟବର ସିଂହଙ୍କ କନ୍ୟା ସୀତାଦେବୀଙ୍କୁ ୧୮୫୭ ମସିହା ମାଘମାସ ଶୁକ୍ଳପକ୍ଷ ଦ୍ୱାଦଶୀ ତିଥିରେ ବିବାହ କରିଥିଲେ । ସେ ବହୁ କୁଟୁମ୍ବୀ ଥିଲେ । ତାଙ୍କର ଜୀବନକାଳ ଦାରିଦ୍ର୍ୟ, ଅଭାବ, ଋଣଭାରରେ ଜର୍ଜରିତ ରାଜରୋଷ ଯୋଗୁଁ ରାଜ ଅନୁକମ୍ପାରୁ ବଞ୍ଚିତ ଥିଲେ ।

ପଠାଣି ସାମନ୍ତଙ୍କ ପିତା ଶ୍ୟାମବନ୍ଧୁ ସିଂହ ସାମନ୍ତଙ୍କର ସଂସ୍କୃତ ସାହିତ୍ୟ ଓ ଜ୍ୟୋତିଷ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଥିଲା । ସେ ପିତାଙ୍କର ପାଣ୍ଡିତ୍ୟରେ ପ୍ରଭାବିତ ହୋଇ ସଂସ୍କୃତ ଓ ଓଡ଼ିଆ ଶାସ୍ତ୍ରରେ ପାରଦର୍ଶିତା ଅର୍ଜନ କରିଥିଲେ । ଶ୍ରୀହର୍ଷଙ୍କ ନୈଷଧ, ମାଘ କବିଙ୍କର ଶିଶୁପାଳ ବଧ, ଭାରବୀଙ୍କର କୀରାତାର୍ଜ୍ଜୁନୀୟ ଓ ଭାଗବତର ଅଷ୍ଟାବତାର, ଅଷ୍ଟାଦଶ ସହସ୍ର ଶ୍ଳୋକ ଅନର୍ଗଳ ଆବୃତ୍ତି କରିପାରୁଥିଲେ । ଦାରିଦ୍ର୍ୟ କଷ୍ଟ ଅଥବା ରୁଗ୍ଣ ଶରୀର ତାଙ୍କର ସାଧନାର ପଥରେ କେବେ ପ୍ରତିବନ୍ଧକ ହୋଇ ଠିଆ ହୋଇନଥିଲା । ଏସବୁ ପ୍ରତିବନ୍ଧକ ଅର୍ଗଳୀ ଡେଇଁ ଚନ୍ଦ୍ରଶେଖର ପଠାଣି ସାମନ୍ତ ସାଧନାର ଲୟ ପଥରେ ଚାଲିଯାଉଥିଲେ ।

ବାଲ୍ୟ ବୟସରୁ ସାମନ୍ତ ଚନ୍ଦ୍ରଶେଖର- ଆକାଶ, ଗ୍ରହ, ତାରା, ଚନ୍ଦ୍ର, ସୂର୍ଯ୍ୟର ସ୍ଥିତି, ଗତି ଉପରେ ନୀରବ ଏକାଗ୍ର ଦର୍ଶନ କରୁଥିବାର ପରିଲକ୍ଷିତ ହେଉଥିଲା । ଶରତଋତୁ, ହେମନ୍ତଋତୁରେ ଆକାଶ ନିର୍ମଳ ରହେ । ଚନ୍ଦ୍ର, ତାରକାପୁଞ୍ଜ, ଗ୍ରହ, ଗ୍ରହାଣୁପୁଞ୍ଜ ଏହି ଋତୁରେ ଆକାଶରେ ପରିଷ୍କାରଭାବେ ଦେଖାଦିଅନ୍ତି । ପଠାଣି ସାମନ୍ତ ନିଜ ଚଉପିଢ଼ୀରେ ବସି ଚାଳ କଣାକରି କ୍ଷୁଦ୍ର ବାଉଁଶ ନଳୀ ସାହାଯ୍ୟରେ ବୁଧ, ମଙ୍ଗଳ, ବୃହସ୍ପତି, ଶୁକ୍ର ପ୍ରଭୃତି ଗ୍ରହ, ଧ୍ରୁବତାରା, ସପ୍ତର୍ଷିମଣ୍ଡଳ, କାଳପୁରୁଷ ଶତେଇଶି ନକ୍ଷତ୍ର, ଚନ୍ଦ୍ର ପ୍ରଭୃତି ଉପଗ୍ରହମାନଙ୍କର ଗତି, ଉଦୟ ଓ ଅସ୍ତର ସମୟ ତାଳପତ୍ରରେ ଟିପି ରଖୁଥିଲେ । ନିଜେ ତିଆରି କରିଥିବା ଗୋଳ ଯନ୍ତ୍ର ବ୍ୟବହାର କରି ଗ୍ରହ, ନକ୍ଷତ୍ରଙ୍କ ଗତିବିଧି ଲକ୍ଷ୍ୟ କରୁଥିଲେ । ଗୋଳ ଯନ୍ତ୍ରଟି କାଠ, ବାଉଁଶନଳୀ, ବାଉଁଶ କାଠିରେ ନିର୍ମିତ ଯନ୍ତ୍ର । ଚନ୍ଦ୍ରଶେଖର ତାଙ୍କ ଗବେଷଣାଗାରରେ ଯେତେଗୋଟି ଯନ୍ତ୍ର ବ୍ୟବହାର କରିଛନ୍ତି ସେ ସବୁକୁ ନିଜେ ତିଆରି କରିଥିଲେ । ଏ ଯନ୍ତ୍ରଗ ଉଦ୍ଭାବକ ଥିଲେ ସେ ନିଜେ ।

ପଠାଣି ସାମନ୍ତଙ୍କ ସିଦ୍ଧାନ୍ତ ଦର୍ପଣ ଏକ ଜ୍ୟୋତିଷ ଗ୍ରନ୍ଥ । ଏହା ଦେବନାଗରୀ

ଲିପି ଓ ସଂସ୍କୃତ ଭାଷାରେ ରଚିତ। ପୁରୁଷୋତ୍ତମ ସ୍ତବଠାରୁ ଆରମ୍ଭ କରି ଗ୍ରହ, ଉପଗ୍ରହ, ଗ୍ରହଣ, ପରାଗ, ଭୂଗୋଳ, ଆକାଶବର୍ଷ, ମାସ, ଚନ୍ଦ୍ରକଳା ପ୍ରଭୃତି ବିଷୟକୁ ନେଇ ପରୀକ୍ଷାମୂଳକ ଆଲୋଚନା କରାଯାଇ ଏହି ଗ୍ରନ୍ଥରେ ଲିପିବଦ୍ଧ ହୋଇଛି। ସୂର୍ଯ୍ୟ ସିଦ୍ଧାନ୍ତରେ ଦେବୀଦାସ ଅଢ଼ଣାର ଗାଣିତିକ ସୂତ୍ରର ପ୍ରଭାବ ସାମନ୍ତଙ୍କ ଉପରେ ପଡ଼ିଥିଲା। ଏ ଗ୍ରନ୍ଥ ୨୫୦୦ ଶ୍ଲୋକ ସମ୍ବଳିତ ଏକ ଜ୍ୟୋତିଷ ଗ୍ରନ୍ଥ। ସିଦ୍ଧାନ୍ତ ଦର୍ପଣରେ ସାମନ୍ତଙ୍କ ସ୍ୱରଚିତ ଶ୍ଲୋକ ସଂଖ୍ୟା ୨୨୮୪ ଏବଂ ବାହ୍ୟ ସିଦ୍ଧାନ୍ତରୁ ଗୃହୀତ ୨୧୬ଟି ଶ୍ଲୋକ ରହିଛି। ଅମୂଲ୍ୟ ଶାସ୍ତ୍ର ସିଦ୍ଧାନ୍ତ ଦର୍ପଣ ୧୮୯୯ ମସିହାରେ କଲିକତାର ଗିରୀଶ ମୁଦ୍ରଣାଳୟରୁ ପ୍ରକାଶିତ ହୋଇଥିଲା। ପ୍ରଥମ ମୁଦ୍ରଣରେ ୫୦୦୦ ପୁସ୍ତକ ପ୍ରକାଶ ପାଇଲା। ଜର୍ମାନୀ ୧୦୦୦ଖଣ୍ଡ, ଇଂଲଣ୍ଡ ୭୦୦ଖଣ୍ଡ, ଫ୍ରାନ୍ସ ୩୦୦ଖଣ୍ଡ, ଆମେରିକା ୮୦୦ଖଣ୍ଡ ଗ୍ରନ୍ଥ ନିଜ ନିଜ ପୁସ୍ତକଗାରକୁ ନେଇଥିଲେ। ଅବଶିଷ୍ଟ ୨୨୦୦ ବିକ୍ରି ହୋଇଯାଇଥିଲା। କାରଣ ସେତେବେଳକୁ ପଠାଣି ସାମନ୍ତ ଚନ୍ଦ୍ରଶେଖରଙ୍କ ପ୍ରତିଭା ସାରା ଜଗତରେ ଉଚ୍ଚ ପ୍ରଶଂସିତ ହୋଇସାରିଲାଣି।

ପଠାଣି ସାମନ୍ତ ଚନ୍ଦ୍ରଶେଖର ନିରବଚ୍ଛିନ୍ନ ସାଧକ। ସେ କିଭଳି ଜିଜ୍ଞାସୁ ଏଥିରୁ ଜଣାଯାଏ। ସେ ତାଙ୍କର ପରମ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଚାଲି ଚାଲି ପୁରୁଷୋତ୍ତମ କ୍ଷେତ୍ରକୁ ଯାଉଥିଲେ। ଖଣ୍ଡପଡ଼ା ଗଡ଼ଠାରୁ ଶ୍ରୀମନ୍ଦିର ସିଂହଦ୍ୱାର ୧,୫୧,୨୦୦ ପାହୁଣ୍ଡ ବୋଲି ଉଲ୍ଲେଖ କରିଛନ୍ତି। ସେ ସ୍ୱନିର୍ମିତ ଯନ୍ତ୍ର ସାହାଯ୍ୟରେ ବାରବାଟୀ ଦୁର୍ଗରୁ ସପ୍ତଶଯ୍ୟା ପର୍ବତର ଉଚ୍ଚତା ୧୧୭୮ ହାତ ୧୬ଆଙ୍ଗୁଳ ବୋଲି ନିର୍ଭୁଲ ମାପ ଗଣନା କରି କୁକ୍ ସାହେବଙ୍କୁ ଚକିତ କରିଥିଲେ। ପଠାଣି ସାମନ୍ତ ୧୦କୋଟି ଦିନ ଅର୍ଥାତ୍ ୨ଲକ୍ଷ ୭୩ହଜାର ୯୭୨ ବର୍ଷ ୧୦ଦିନ ସକାସେ ଗ୍ରହମାନଙ୍କର ମଧ୍ୟ ପବକ ଓ ଖଣ୍ଡଫଳ ପ୍ରଭୃତି ନିର୍ଣ୍ଣୟ କରି ସିଦ୍ଧାନ୍ତ ଦର୍ପଣ ପରିଶିଷ୍ଟରେ ଲେଖି ଯାଇଛନ୍ତି।

ପଠାଣି ସାମନ୍ତ ଚନ୍ଦ୍ରଶେଖରଙ୍କ ଯଶ ଦେଶ ବିଦେଶରେ ପ୍ରସାରିତ। ପ୍ରସିଦ୍ଧ ବିଜ୍ଞାନ ପତ୍ରିକା ନଲେଜର ୧୮୯୯ ସଂଖ୍ୟାରେ ଏବଂ ନେଚର ପତ୍ରିକାର ୧୮୯୯ ମାର୍ଚ୍ଚ ସଂଖ୍ୟାରେ ପଠାଣି ସାମନ୍ତଙ୍କୁ ସ୍ୱତନ୍ତ୍ର ମାନ୍ୟତା ଦିଆଯାଇଛି। ସାମନ୍ତଙ୍କ ଅସାମାନ୍ୟ ପ୍ରତିଭା ପାଇଁ ଇଂରେଜ ସରକାର ତାଙ୍କୁ ମହାମହୋପାଧ୍ୟାୟ ସମ୍ମାନରେ ଭୂଷିତ କରି ତାଙ୍କ ନିକଟକୁ ୧୮୯୩ ମସିହା ସେପ୍ଟେମ୍ବର ମାସ ୩ତାରିଖରେ ସନନ୍ଦ ପଠାଇଥିଲେ। ୧୮୯୪ ମସିହା ସେପ୍ଟେମ୍ବର ୩ ତାରିଖରେ କୁକ୍ ସାହେବ ସାମନ୍ତଙ୍କ ଭବ୍ୟ ସମ୍ବର୍ଦ୍ଧନା ପୂର୍ବକ ସନନ୍ଦ ପ୍ରଦାନ କଲେ ଏହିକି- "ଓଡ଼ିଶାର ଖଣ୍ଡପଡ଼ା କରଦ ରାଜ୍ୟ ନିବାସୀ ପଣ୍ଡିତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର ସାମନ୍ତ ଏତଦ୍ଦ୍ୱାରା ମୁଁ ଆପଣଙ୍କର ବ୍ୟକ୍ତିଗତ କୃତିତ୍ୱ ପାଇଁ ଆପଣଙ୍କୁ

ମହାମହୋପାଧ୍ୟାୟ ଉପାଧିରେ ଭୂଷିତ କରୁଅଛି।" ଚନ୍ଦ୍ରଶେଖରଙ୍କ ସମ୍ମାନାର୍ଥେ ଭାରତ ସରକାର ୪ସେ.ମି. ଦୈର୍ଘ୍ୟ ୩ ସେ.ମି. ପ୍ରସ୍ଥ ବିଶିଷ୍ଟ ୩ଟଙ୍କା ମୂଲ୍ୟର ପଠାଣି ସାମନ୍ତଙ୍କ ଚିତ୍ର ସହ ନକ୍ଷତ୍ର ଖଚିତ ନୀଳ ଆକାଶର ଚିତ୍ର ସହ ଏକ ରଙ୍ଗିନ୍ ସ୍ମାରକୀ ଡାକଟିକଟ ପ୍ରକାଶ ପାଇଛି।

ଘରେ ଘରେ ପରିଚିତ ପଞ୍ଜିକାର ପଠାଣି ସାମନ୍ତ। ସାମନ୍ତଙ୍କର ନିର୍ଭୁଲ୍ ପାଞ୍ଜି ଗଣନା ଓଡ଼ିଶାରେ ଠାକୁରମାନଙ୍କର ନୀତିକାନ୍ତି ସାମନ୍ତଙ୍କ ପାଞ୍ଜି ଅନୁସାରେ ହୋଇଥାଏ। ସାମାଜିକ ଓଷା, ବ୍ରତ, ପର୍ବପର୍ବାଣି, ବିବାହ, ରାଶିଫଳ, ଗ୍ରହଶାନ୍ତି, ନିୟମ ସାମନ୍ତଙ୍କ ପାଞ୍ଜିକୁ ଧରି କରାଯାଇଥାଏ। ପଠାଣି ସାମନ୍ତଙ୍କ ସିଦ୍ଧାନ୍ତ ଭୂସ୍ଥିରତାବାଦ ସୂର୍ଯ୍ୟ ସିଦ୍ଧାନ୍ତର ପ୍ରଭାବ ଚନ୍ଦ୍ରଶେଖରଙ୍କ ଉପରେ ପଡ଼ିଥିଲା। ସୂର୍ଯ୍ୟ ସିଦ୍ଧାନ୍ତ ହେଲା ପୃଥିବୀ ଗୋଲ ଓ ଗତିଶୀଳ କିନ୍ତୁ ଚନ୍ଦ୍ରଶେଖରଙ୍କ ମତ ଏହି ଯେ- ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର କକ୍ଷରେ କେନ୍ଦ୍ରସ୍ଥଳରେ ସୂର୍ଯ୍ୟ ସ୍ଥିର ହୋଇ ରହିଛି। ଆଶ୍ଚର୍ଯ୍ୟ ଏହି ଯେ ପୃଥିବୀ ସ୍ଥିର ସୂର୍ଯ୍ୟ ଗତିଶୀଳ ସିଦ୍ଧାନ୍ତକୁ ପାଥେୟ କରି ଗଣନା କରୁଥିଲେ ମଧ୍ୟ ତାଙ୍କର ଗଣନା ସଂପୂର୍ଣ୍ଣ ନିର୍ଭୁଲ୍ ଥିଲା। ଚନ୍ଦ୍ରଗ୍ରହଣ, ସୂର୍ଯ୍ୟପରାଗର ସଠିକ୍ ଦର୍ଶନ ସ୍ଥାନ କେଉଁ ସମୟରେ ଦର୍ଶନ ହେବ ପାଞ୍ଜିରେ ନିର୍ଦ୍ଧାରଣ କରିଥିଲେ। ନିର୍ଭୁଲ୍ ଗଣନା ତାଙ୍କର। ସ୍ୱନିର୍ମିତ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା ନିରୀକ୍ଷା କରି ସିଦ୍ଧାନ୍ତରେ ପହଞ୍ଚୁଥିଲେ। ସାମନ୍ତଙ୍କ ବିଜ୍ଞାନଗାରରେ ବ୍ୟବହୃତ ହେଉଥିବା ଯନ୍ତ୍ରଗୁଡ଼ିକ- ମାନଯନ୍ତ୍ର, ଚାପଯନ୍ତ୍ର, ଚକ୍ରଯନ୍ତ୍ର, ଗୋଳଯନ୍ତ୍ର, ଗୋଲାର୍ଦ୍ଧ ଯନ୍ତ୍ର, ସ୍ୱୟଂବହ ଯନ୍ତ୍ର, ଧନୁଯନ୍ତ୍ର, ଶଂକୁ ଓ ପୃଥିବୀକୈନ୍ଦ୍ରିକ ସୌରଜଗତ-

<u>ସାମନ୍ତଙ୍କ ବିଜ୍ଞାନଗାର :</u> ମାନଯନ୍ତଟି ୨ଟି ବାଉଁଶନଳୀରେ ନିର୍ମିତ। ଏହି ମାନଯନ୍ତ୍ର ସାହାଯ୍ୟରେ ଦୂରରେ ଥିବା ପାହାଡ଼ ଓ ସ୍ତମ୍ଭର ଉଚ୍ଚତା ମପାଯାଏ। ଏହାଦ୍ୱାରା ଆକାଶୀୟ ପିଣ୍ଡଗୁଡ଼ିକ ମଧ୍ୟରେ ଥିବା କୌଣିକ ଦୂରତା ମପାଯାଏ।

ପଠାଣି ସାମନ୍ତ ତାଙ୍କର ଚାପ ଯନ୍ତ୍ର ସାହାଯ୍ୟରେ ସମୟ ମାପୁଥିଲେ। ଚାପ ଅନୁସାରେ ସମୟମାପକ କଣ୍ଟା (ପଏଣ୍ଟର)ର ଗତିଶୀଳ ହୁଏ ଏବଂ ତାହାଦ୍ୱାରା ରେଖାଙ୍କିତ ସ୍କେଲ୍‌ରୁ ସମୟ ଜାଣିହୁଏ।

ଚକ୍ରଯନ୍ତ୍ରରେ ସୂର୍ଯ୍ୟର କୌଣିକ ଉନ୍ନତି ତଥା ସ୍ଥାନୀୟ ମାପ ନିର୍ଣ୍ଣୟ କରାଯାଏ।

ଗୋଳଯନ୍ତ୍ରରେ ଆକାଶୀୟ ପିଣ୍ଡଗୁଡ଼ିକର ଅବସ୍ଥିତି ମପାଯାଏ।

ଗୋଲାର୍ଦ୍ଧ ଯନ୍ତ୍ରରେ ସମୟ ମପାଯାଏ। ଏହାକୁ ମଧ୍ୟ ସୂର୍ଯ୍ୟଘଡ଼ି କୁହାଯାଏ। କାରଣ ସୂର୍ଯ୍ୟଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ।

ସ୍ୱୟଂ-ବହ ଯନ୍ତ୍ର ଦ୍ୱାରା ଏକ ପୂର୍ଣ୍ଣ ଦିବସର ସମୟ ନିର୍ଦ୍ଧାରଣ କରାଯାଏ, ଏହାକୁ ଜଳଘଡ଼ି କହିଲେ ଅତ୍ୟୁକ୍ତି ହେବ ନାହିଁ।

ସାମନ୍ତଙ୍କ ଧ୍ରୁନଯନ୍ତ୍ର ସାହାଯ୍ୟରେ ଚନ୍ଦ୍ର, ଗ୍ରହ ଓ ତାରାମାନଙ୍କର ଆପେକ୍ଷିକ ଦୂରତା ତଥା କୌଣିକ ଦୂରତା ମପାଯାଏ।

ପଠାଣି ସାମନ୍ତଙ୍କ ବିଜ୍ଞାନଗାରରେ ଶଙ୍କୁ ଯନ୍ତ୍ରର ବ୍ୟବହାର ଅନିବାର୍ଯ୍ୟ। ଏହା ସାହାଯ୍ୟରେ ଦିଗ ନିର୍ଣ୍ଣୟ, ସ୍ଥାନର ଅକ୍ଷାଂଶ, ସୂର୍ଯ୍ୟର କ୍ରାନ୍ତି, ଧ୍ରୁବ ଓ ଆନତି ମପାଯାଏ।

<u>ସାମନ୍ତ ଚନ୍ଦ୍ରଶେଖରଙ୍କ ପୃଥିବୀକୈନ୍ଦ୍ରିକ ସୌରଜଗତ :</u> ସାମନ୍ତ ଚନ୍ଦ୍ରଶେଖରଙ୍କର ସ୍ୱପର୍ଯ୍ୟବେକ୍ଷଣ ଉପରେ ପ୍ରଗାଢ଼ ବିଶ୍ୱାସ ଥିଲା। ସେ ଖାଲି ଆଖିରେ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ଓ ନକ୍ଷତ୍ରମାନଙ୍କର ଗତିବିଧିକୁ ଲକ୍ଷ୍ୟକରି ଏକ ପୃଥିବୀକୈନ୍ଦ୍ରିକ ସୌରଜଗତର ନମୁନା (ମଡ଼େଲ୍) ପ୍ରସ୍ତୁତ କରିଥିଲେ। ଏହି ମଡ଼େଲ ଅନୁଯାୟୀ ସୂର୍ଯ୍ୟ ଓ ଚନ୍ଦ୍ର ପୃଥିବୀ ପରିକ୍ରମଣ କରୁଛନ୍ତି। ପାଞ୍ଚୋଟି ଗ୍ରହ, ଯଥାକ୍ରମେ ବୁଧ, ଶୁକ୍ର, ମଙ୍ଗଳ, ବୃହସ୍ପତି ଓ ଶନି, ସୂର୍ଯ୍ୟ ପରିକ୍ରମା କରୁଛନ୍ତି।

ପଠାଣି ସାମନ୍ତ ଚନ୍ଦ୍ରଶେଖର ୧୯୦୪ ମସିହା ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଦ୍ୱାଦଶୀ ଦିନ ୬୯ବର୍ଷ ବୟସରେ ଇହଲୀଳା ତ୍ୟାଗ କରିଥିଲେ ହେଁ ସେ ହେଉଛନ୍ତି କାଳଜୟୀ ପୁରୁଷ ମହାମହୋପାଧ୍ୟାୟ ପଠାଣି ସାମନ୍ତ ଚନ୍ଦ୍ରଶେଖର। ପଠାଣି ସାମନ୍ତ ନିଜର ଜନ୍ମମାଟି ନୟାଗଡ଼ ଜିଲ୍ଲା ଅନ୍ତର୍ଭୁକ୍ତ ଖଣ୍ଡପଡ଼ାକୁ ବିଶ୍ୱରେ ପରିଚିତ କରାଇଦେଲେ। ସେଥିସକାଶେ ଏ ମାଟିର ଉତ୍ତର ପୁରୁଷମାନେ ସବୁକାଳ ପାଇଁ ଗର୍ବ କରୁଥିବେ। ଅଥଚ ଏତେବଡ଼ ଅଙ୍କ ପଣ୍ଡିତ ତଥା ବିଶ୍ୱବନ୍ଦିତ ଜ୍ୟୋତିର୍ବିଜ୍ଞାନୀଙ୍କର ବିଜ୍ଞାନଗାର ପର୍ଯ୍ୟଟନ ମାନ୍ୟତା ପାଇନାହିଁ। ବିଶ୍ୱକୁ ଚକିତ କରିଥିବା ବିଜ୍ଞାନାଗାରର ବିଜ୍ଞାନ ଯନ୍ତ୍ରଗୁଡ଼ିକୁ କାହିଁକି ସଙ୍କୁଚିତ କରାଯାଇ ରଖାଯାଇଛି ଦୁଃଖ ଲାଗେ। ସାମନ୍ତଙ୍କ ବିଜ୍ଞାନାଗାର କିପରି ପର୍ଯ୍ୟଟନ କ୍ଷେତ୍ରରେ ମାନ୍ୟତା ବହନ କରି ବିପୁଳ ପର୍ଯ୍ୟଟନ ମୁଦ୍ରା ସଂଗ୍ରହ କରିବ ଜିଲ୍ଲା ପ୍ରଶାସନର ଦୃଷ୍ଟି ଆକର୍ଷଣ କରୁଅଛି।

<u>ଢ଼ୁମ୍ପା ସଂଗୀତ, ରୀତି-ଗୀତିର ସାଧକ ଗଦାଧର ସିଂହସାମନ୍ତ :</u> ଜ୍ୟୋତିର୍ବିଜ୍ଞାନୀ ମହାମହୋପାଧ୍ୟାୟ ପଠାଣି ସାମନ୍ତଙ୍କ ମଧ୍ୟମ ପୁତ୍ର ଗଦାଧର ସିଂହସାମନ୍ତ (ଖ୍ରୀ୧୮୭୭ ଜନ୍ମ, ଖ୍ରୀ.୧୯୬୪ ମୃତ୍ୟୁ) ଯୋଗଜନ୍ମା ପିତାଙ୍କର ଉତ୍ତମ ଦାୟଦ। ରୀତି-ଗୀତିର ଗୀତିକାର ସଂଗୀତକାର ଜ୍ୟୋତିଷଶାସ୍ତ୍ର ପ୍ରବୀଣ। କୋହେନୂର ପ୍ରେସ୍‌ରୁ ପ୍ରକାଶିତ ସାମନ୍ତ ପଞ୍ଜିକା ଗଦାଧର ସିଂହସାମନ୍ତଙ୍କ ଏକ ମହାନ ଦାନ ମାନବ ସଭ୍ୟତା ପାଇଁ। ଖଣ୍ଡପଡ଼ା ରାଜପରିବାର ସାହିତ୍ୟ ରସ ବିଳାସୀ, ଗଦାଧର ସିଂହସାମନ୍ତଙ୍କ ବଡ଼ଭାଇ ପୀତବାସ ସିଂହସାମନ୍ତ ଖଣ୍ଡପଡ଼ାର ଶ୍ରେଷ୍ଠ ପଣ୍ଡିତ ଓ କବି ତାଙ୍କର କାବ୍ୟ 'କୃଷ୍ଣଲୀଳା କଳ୍ପଲତା' ଖଣ୍ଡପଡ଼ା ସାହିତ୍ୟର ଏକମାତ୍ର କାବ୍ୟକଳା। ଚନ୍ଦ୍ରଶେଖର ପଠାଣି ସାମନ୍ତ ତାଙ୍କର 'ସିଦ୍ଧାନ୍ତ ଦର୍ପଣ' ଅନେକ ଶ୍ଳୋକରେ ପଦ୍ମଫୁଲ ଫୁଟାଇ ଦେଇଛନ୍ତି। ନୟାଗଡ଼, ଆଠଗଡ଼, ଖଣ୍ଡପଡ଼ା ଗୋଟିଏ ବଂଶର ରାଜନ୍ୟବର୍ଗ। ଏମାନେ ମଧ୍ୟଯୁଗୀୟ ସାହିତ୍ୟକୁ ସମୃଦ୍ଧ କରିଛନ୍ତି

କାରଣ ଏମାନେ ସାହିତ୍ୟବିଳାସୀ। ଖଣ୍ଡପଡ଼ା ପ୍ରଥମ ରାଜା ଯଦୁନାଥ ମଙ୍ଗରାଜ 'କୃଷ୍ଣଭକ୍ତି ରସକଳ୍ପତରୁ' ରଚନା କରିଥିଲେ। ଦ୍ୱିତୀୟ ରାଜା ନାରାୟଣ ମଙ୍ଗରାଜ ସଂସ୍କୃତରେ 'ସଂଗୀତ ନାରାୟଣ' ନାମକ ଏକ ସଂଗୀତ ଗ୍ରନ୍ଥ ରଚନା କରିଥିଲେ। ହେଲେ ଖଣ୍ଡପଡ଼ା ସାହିତ୍ୟିକଙ୍କ ମଧ୍ୟରେ ଗଦାଧର ସିଂହସାମନ୍ତ ସବୁଠାରୁ ବହୁଳ ପ୍ରଚାରିତ ଓ ପ୍ରସାରିତ। ଏପରିକି ସ୍ୱାଧୀନୋତ୍ତର ସାହିତ୍ୟ ଜଗତରେ ନିଜର ସ୍ଥିତି ବଜାୟ ରଖିଛନ୍ତି ଏବଂ ଢୁମ୍ପା ସଂଗୀତର ପୁନରୁତ୍‌ଥାପକ ଅଟନ୍ତି।

<u>ଖଣ୍ଡପଡ଼ା ସଂଗୀତ-</u> ସାହିତ୍ୟ ପରମ୍ପରାରେ ଗଦାଧର ସିଂହସାମନ୍ତ ଜଣେ ଧୀସଂପନ୍ନ ପଣ୍ଡିତ ଓ କବି ପ୍ରତିଭା। ସେ ଗୀତ ଲେଖୁଥିଲେ। ଗୀତର ସ୍ୱର ଦେଉଥିଲେ। ନିଜେ ଗାଉଥିଲେ, ତାଳ ଦେଇ ସମସ୍ତ ପ୍ରକାର ବାଦ୍ୟ ବଜାଇ ପାରୁଥିଲେ। ସେ ରୀତିଧାରାର ଗୀତି କବି। ତାଙ୍କର ରଚନାଗୁଡ଼ିକ 'ପ୍ରବନ୍ଧ ପଞ୍ଚାମୃତ' ପ୍ରଥମ ଭାଗ (ଖ୍ରୀ.୧୯୬୨) ଓ 'ପ୍ରବନ୍ଧ ପଞ୍ଚାମୃତ' ଦ୍ୱିତୀୟ ଭାଗ (ଖ୍ରୀ. ୧୯୫୮)ରେ ପ୍ରକାଶିତ। ପ୍ରବନ୍ଧ ଶବ୍ଦ ସାହିତ୍ୟ ଓ ସଂଗୀତ ଉଭୟ କ୍ଷେତ୍ରରେ ଏକ ଶାସ୍ତ୍ରୀୟ ସିଦ୍ଧାନ୍ତକୁ ବୁଝାଇଥାଏ। ସଂଗୀତ ଶାସ୍ତ୍ରରେ ଗୀତକୁ ଶୁଦ୍ଧ, ସାଳଗ ଓ ସଂକୀର୍ଣ୍ଣ ଏଭଳି ତିନି ଭାଗରେ ବିଭକ୍ତ କରାଯାଇଛି। ଏହି ଶୁଦ୍ଧ ଗୀତର ଅପର ନାମ ପ୍ରବନ୍ଧ। ଏଣୁ ଗଦାଧର ସିଂହସାମନ୍ତଙ୍କ ସଂଗୀତ ଆରୋହୀ ଗୀତିକବିତାଗୁଡ଼ିକୁ 'ପ୍ରବନ୍ଧ ପଞ୍ଚାମୃତ' ଗୀତ ସଂକଳନରେ ସ୍ଥାନୀତ। ତାଙ୍କର ଗୀତିକବିତାକୁ ଭକ୍ତିଗୀତ, ସଂଗୀତ ଚଉପଦୀ, ପାଲାଗୀତ, ଚଉତିଶା, ପଦିଆ ଓ ଅକ୍ଷମୟୀ ଏବଂ ଢୁମ୍ପାଗୀତ ଭାବରେ ବିଭକ୍ତ କରାଯାଏ।

<u>ଗଦାଧର ସିଂହସାମନ୍ତଙ୍କର ଭକ୍ତିଗୀତ ମାତ୍ର ଚଉଦଟି-</u> ଶ୍ରୀହରି ସ୍ତବ, ଜଗଦମ୍ବା ସ୍ତବ, ଦୁର୍ଗାସ୍ତବ, ଭାଦ୍ରେ ଗଣେଶ, ଚତୁର୍ଥୀଗୀତ, କଣ୍ଟିଲୋ ନୀଳମାଧବଙ୍କ ବର୍ଣ୍ଣନା, ଓଡ଼ଗାଁ ରଘୁନାଥଙ୍କ ସ୍ତୁତି, ଜଗନ୍ନାଥଙ୍କ ତ୍ରିରଙ୍ଗ ବର୍ଣ୍ଣନା, ଶ୍ରୀକୃଷ୍ଣ ସ୍ତବ ଇତ୍ୟାଦି। କବିଙ୍କ ପ୍ରକାଶିତ ଏକଶହ ପଚାଶ ଚୌପଦୀରୁ ଶହେଟି ଚୌପଦୀ ରାଧାକୃଷ୍ଣ ପ୍ରଣୟମୂଳକ ଅବଶିଷ୍ଟ ଚଉପଦୀଗୁଡ଼ିକ ମାନବୀୟ ପ୍ରେମ ବର୍ଣ୍ଣନାରେ ରସପୂର୍ଣ୍ଣ। ରାଧାକୃଷ୍ଣ ପ୍ରେମ କବିତାରେ କବିଙ୍କର କବିଚାତୁରୀର ଚମତ୍କାରିତା ରାଗଶ୍ରୀ ଓ ତାଳ 'ଝୁଲା'ରେ ରଚିତ 'ସଖୀ ଆଜି ମୁଁ ଲାଜେ ମଲି।'

ସଖୀ ଆଜି ମୁଁ ଲାଜେ ମଲି
ମନା କରୁଥିଲୁ କିମ୍ପା ଯମୁନାକୁ ଗଲି ଗୋ ॥
ଉଠି ଆସୁଁ ଆସୁଁ ସରୁ ବସନ ପିନ୍ଧି ଜଳରୁ
ଲତା ଉହାଡ଼େ ଦିଶିଲା ଗୋରଚନା କଲି ଗୋ ॥
ପୁଣି ଲାଗିଲା ସଂଶୟ ନୟନକୁ କରି ଥୟ
ଅନାଉଁ ଥିଲି ଶିଖଣ୍ଡ ଝରା ଗଲା ହଲି ଗୋ ॥

ବାହାରି ଘନ କାଳିଆ     ମୋ ଆଗରେ ହୋଇ ଠିଆ
କେତେ ନଚାଇଲେ ତାଙ୍କ     ବାଙ୍କ ଭ୍ରୁରୁବଲି ଗୋ ॥
କରେ ତାଙ୍କ କୁଚ ବେନି     ରହିଲି ସଂକୋଚ ଘେନି
ଗଣ୍ଡେ ଚୁମ୍ବ ମଣ୍ଡିଦେଲେ     ତନୁ ଗଲା ସଲି ଗୋ ॥
ଗଦାଧର ସିଂହ ଭାବେ     ସଜନୀ ନଥିଲେ ପାଶେ
ଆଉ ଯିବି ନାହିଁ କେବେ     ଲଙ୍ଘି ବ୍ରଜପଲ୍ଲୀ ଗୋ ॥

<u>ଗଦାଧରଙ୍କର ସର୍ବଜନାଦୃତ ପାଲାଗୀତ :</u> ଶୋଭା ଦିଶେ କିରେ ଖଣ୍ଡାରେ ନଥିଲେ ପାଳି। ଭଣ୍ଡାରେ ନଥିଲେ ସଲକ୍ଷଣ ହୀରା, ଥଣ୍ଡାରେ ନଥିଲେ ଗାଳି ଓ 'ଚାଲିଗଲା ଏବାଟେ କି ମାଲରେ/ ଖାଲି ହଟି ହଟି ଶ୍ରୀମୁଖେ ଚହଟି ମାରୁଥିଲା। ଶୋଭା ଲହଡ଼ି ଟାଲ'। ଏହି କବିତା ଦୁଇଟି ପାଲାକାରମାନଙ୍କର ବହୁବାର ଆବୃତ୍ତ କବିତା। ଗଦାଧରଙ୍କ ଗୀତ ନ ଗାଇଲେ ପାଲାମଞ୍ଚ ମହକିନୀ ହୁଏନା।

ରୀତିଧାରାର ଗୀତିକବି ଗଦାଧର ସିଂହସାମନ୍ତଙ୍କର ଭ୍ରମର ଓ ଭ୍ରମରୀ ଦୁଇଟି ଚଉତିଶା ସଦ୍ୟ ବିବାହିତ ଏବଂ ବିଚ୍ଛେଦର ବିରହ ସହୁଥିବା ନାୟକ ନାୟିକାଙ୍କ ଶୃଙ୍ଗାର ଚେତନାର ଭାବ କଷ୍ଟର ଗୀତି ସ୍ୱର ତାଙ୍କ କବିପ୍ରତିଭାର ପରିଚୟ ଦିଏ। କବିଙ୍କର 'ଅକ୍ଷମୟୀ' ଓ ବିଲୋମୀ ଅକ୍ଷମୟୀ ଦୁଇଟି ସ୍ତୁତିମୂଳକ ରଚନା। ଅ'ଠାରୁ କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣକୁ ଆଦ୍ୟରେ ରଖି ଲେଖାଯାଇଥିବା କବିତାକୁ ଅକ୍ଷମୟୀ ଏବଂ କ୍ଷ'ଠାରୁ ଅପର୍ଯ୍ୟନ୍ତ ବର୍ଣ୍ଣକୁ ଆଦ୍ୟରେ ରଖି ଲେଖାଯାଇଥିବା କବିତାକୁ 'ବିଲୋମ ଅକ୍ଷମୟୀ' କୁହାଯାଏ। ଅକ୍ଷମୟୀ ସ୍ତୁତିରେ ଶମ୍ପାତନୁ, ମହାରାସେଶ୍ୱରୀ, ପ୍ରକୃତିସ୍ୱରୂପା, ହ୍ଲାଦିନୀଶକ୍ତି, ପରମବୈଷ୍ଣବୀ, ଶ୍ରୀରାଧାଙ୍କ ବନ୍ଦନା କରିଛନ୍ତି। ବିଲୋମ ଅକ୍ଷମୟୀରେ କବି ବ୍ରଜମଣ୍ଡଳ ନାଗର, ବିଶ୍ୱଗୁଣସିନ୍ଧୁ, ନିଃସ୍ୱଜନବନ୍ଧୁ, ଆଦିପୁରୁଷ ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ବନ୍ଦନା କରିଛନ୍ତି। କବିଙ୍କର ଆଉ ଦୁଇଟି ବଳିଷ୍ଠ ରଚନା- ପଚାଶ ପଦ ବିଶିଷ୍ଟ ଦ୍ୱିତୀୟା ଚାନ୍ଦ ଏବଂ ପଠାଣି ସାମନ୍ତଙ୍କ ମୃତ୍ୟୁରେ ମ୍ରିୟମାଣ- ଶୋକ-ଶତକ।

ଗଦାଧର ସିଂହସାମନ୍ତଙ୍କ ଢୁମ୍ପା ସଂଗୀତ- ଢୁମ୍ପା ସଂଗୀତ ଆଦିବାସୀ ଜୀବନ ସଂଗୀତ। ଶୃଙ୍ଗାର ବର୍ଣ୍ଣନା ହିଁ ଢୁମ୍ପାର ଅଙ୍ଗୀରସ। ଏ ସଂଗୀତକୁ ଜନାଦୃତ କରିବାରେ ଗଦାଧର ସିଂହସାମନ୍ତ ସିଦ୍ଧସାଧକ। ତାଙ୍କର ରଚିତ ଢୁମ୍ପା ସଂଗୀତ ତାଙ୍କର ଗାଉଣା ବାଜଣାରେ ଶ୍ରୋତାମାନେ ବିମୁଗ୍ଧ।

ସଂଗୀତ ପରିବେଷଣ ପାଇଁ ଢୁମ୍ପା ଏକ ବାଦ୍ୟଯନ୍ତ୍ର। ଢୁମ୍ପା ବାଦ୍ୟ ମଇ କିମ୍ବା ଭେଣ୍ଡିଆ ମର୍ଦ୍ଦନ ଗଛର ବର୍ତ୍ତୁଳାକାର ବକ୍କଲରେ ନିର୍ମିତ। ବର୍ଷାଦିନେ ମୋଟା ସଳଖ ମଇଗଛର ମୋଟା ଗଣ୍ଡି ଅବା ମୋଟା ସଳଖ ଭେଣ୍ଡିଆ ମର୍ଦ୍ଦନ ଗଣ୍ଡିରୁ ଦଉଡ଼ିରେ ଟାଣି ପୂର୍ଣ୍ଣ ଆବରଣର ବକ୍କଲକୁ ବାହାର କରାଯାଏ। ଏ ଗଛରେ

ବେଶୀମାତ୍ରାରେ ଲାଲୁଆ ଅଂଶ ଥିବାରୁ ବକ୍କଳଟି ଅକ୍ଷତ ଅବସ୍ଥାରେ ସହଜରେ ବାହାରିଯାଏ। ଏହାର ଲମ୍ବ ୬/୭ଫୁଟ ଏକ ସିଲିଣ୍ଡର ବା ନଳ ସଦୃଶ। ବକ୍କଳଟି ଫାଟିଗଲେ ଏହା ବାଦ୍ୟ ପାଇଁ ଉପଯୁକ୍ତ ନୁହେଁ। ସାବଧାନର ସହ ଏ ବକ୍କଳକୁ ବାହାର କରାଯାଇ ତୁମ୍ପା ବାଦ୍ୟ ରୂପେ ବ୍ୟବହାର କରାଯାଏ।

ତୁମ୍ପା ସଂଗୀତ ଏକ ଗୋଷ୍ଠୀମେଳର ସଂଗୀତ। ଏ ସଂଗୀତ ପରିବେଷଣ କରିବାକୁ ୧୨/୧୬ ଜଣ ବାଦ୍ୟଯନ୍ତ୍ରରେ ପାରଙ୍ଗମ ଥିବା ଅଭ୍ୟସ୍ତ ଲୋକ ଦରକାର। ପେଟରେ ତୁମ୍ପାକୁ ତୁମ୍ପିବା ପାଇଁ ଜଣେ ପେଟୁଆ ଲୋକ ଝୁମୁକା କାଠି ବଜାଇବା ପାଇଁ ୪/୬ଜଣ ଗୀତ ଗାଇବା ପାଇଁ, ଜଣେ କି ଦୁଇଜଣ ପାଳି ଧରିବା ପାଇଁ, ୩ଜଣ ମନ୍ଦିରା, ମର୍ଦ୍ଦଳ, ମୂରଲୀ, ବୀଣା ବଜାଇବା ପାଇଁ, ୪ଜଣ ଏବଂ ଗୋଟିପୁଅ ନାଚ ପାଇଁ ଜଣେ। ଏହା ଏକ ରାଜଦରବାରୀ ସଂଗୀତ। ବର୍ଷା ଋତୁରେ ରାଜା ଓ ରାଣୀ ସାମନ୍ତମାନଙ୍କ ପରିବେଷ୍ଟନୀରେ ଜଙ୍ଗଲୀ ତୁମ୍ପା ସଂଗୀତ ଉପଭୋଗ କରନ୍ତି। ତୁମ୍ପା ରାଜବିଳାସୀ ସଂଗୀତ ହେଲେହେଁ ଗଦାଧର ସିଂହସାମନ୍ତ ଏହାକୁ ଲୋକାଭିମୁଖୀ କରାଇ ଦର୍ଶକ ଶ୍ରୋତାଙ୍କର ଉଚ୍ଚ ପ୍ରଶଂସନୀୟ ଆଦରଣୀୟ ହୋଇପାରିଥିଲେ।

ଚାଲି ଓ ଖେମଟା ଏହି ଦୁଇପ୍ରକାର ଶୈଳୀରେ ତୁମ୍ପା ସଂଗୀତ ଗାନ କରାଯାଏ। ଆଠତାଳିରେ ଚାଲି ଓ ଏକତାଳିରେ ଖେମଟା। ଖେମଟାରେ “ତା-ରି-ଖୁ-ଟା-ଝି-ଣା ଓ ଚାଲିରେ “ତା-ରି-ଖୁ-ଟା-ତା-କ-ଝି-ଣା’ ବୋଲ ଡକାହୁଏ।

ଗଦାଧର ସିଂହସାମନ୍ତ ତୁମ୍ପା ସଂଗୀତର ନବୀକରଣରେ ଏକ ସାଧନସିଦ୍ଧ ସଂଗୀତକାର। ସେ ତୁମ୍ପା ସଂଗୀତର ସଂଜ୍ଞା, ଗାନ ପଦ୍ଧତି, ତାଳ ନିରୂପଣ, ତୁମ୍ପା ସହ ବାଦନ କରାଯାଇଥିବା ଅନ୍ୟ ବାଦ୍ୟ ସମୂହ ସଂପର୍କର ସୂତ୍ର ନିର୍ମାଣ କରିଛନ୍ତି। ତାଙ୍କର ‘ତୁମ୍ପା ସଂଗୀତରେ ବାଳି’, ‘ତୁ ବୋଲ ସଖି ଝେ-ଣା-ଖୁ-ଟା-ତା-ରେ’। ‘ଝଲକ ଝୁମ୍ପା’ ଏହି ତିନୋଟି ଗୀତ ତୁମ୍ପା ସଂଗୀତ ସମ୍ପର୍କରେ ସ୍ୱଷ୍ଟ ଧାରଣା ଦିଏ। ଏହି ତିନୋଟି ଗୀତର ବିଶିଷ୍ଟ ପଦଗୁଡ଼ିକ...

ଗାନ ପଣ୍ଡିତାଏ ବସି ଦ୍ୱିଧାଡ଼ି ତାନରେ ଦିଅନ୍ତି ଗୀତକୁ ଛାଡ଼ି
ତାନେ କାଠିମାନ ଠୁକି କାଠିମାନ ହୁଅନ୍ତିକି ମତୁଆଳି ।୩
ମନ୍ଦିରା ମର୍ଦ୍ଦଳ ମୂରଲୀ ବୀଣା ଆଦି ଚତୁର୍ବିଧ ବାଦ୍ୟ ପ୍ରବୀଣା
ସୁଖରେ କି ଢାଡ଼ି ପୀୟୁଷକୁ ଶ୍ରୁତିମୁଖରେ ଦିଅନ୍ତି ଢାଳି।୪
(ପ୍ରବନ୍ଧ ପଞ୍ଚାମୃତ-୨ୟ ଭାଗ-ପୃଷ୍ଠା-୧୩୨)
କର କମ୍ପିତ କରି ଝୁମ୍ପା ଧନ ବାଦନ କର ତୁମ୍ପା
ମୌକ୍ତିକ ପରି ଦିଶିବ ଝାଳ-ବିନ୍ଦୁ ଚିକୁର ଭାବେ।

X X X X X X

ଲୟ ଖଞ୍ଜିଥିବୁଟି ତାଳେ ସବୁ ଗୀତ ପଠନ କାଳେ
କାନ କରିବୁ ଦାନ ଚପଳ ଗାନ-ମାନ ଠାରେ।୪
(ପ୍ରବନ୍ଧ ପଞ୍ଚାମୃତ-ପ୍ରଥମ ଭାଗ, ପୃଷ୍ଠା-୭୨)
ଝୁଲା ତାଳକୁ ତୁ କାନା, ଝସ କେତୁ ରଣ ବିଜୟ ବାନା
ମୋ ଝଲକ ଝୁମ୍ପା।୨୨।
ଝୁମୁକି କାଠିର ନାଦେ ଝୁମା ମୋତେ ଇନଦ୍ରପାଦକୁ ପାଦେ
ମୋ ଝଲକ ଝୁମ୍ପା।୨୩।
ଝେ-ଣା-ଝି-ଟା-ତା-ରେ ତାନ ଝିମିଟି ଉଠାଇ କାଟିବୁ ମାନ
ମୋ ଝଲକ ଝୁମ୍ପା।୨୪।

<u>ପାଲାଗାୟକ କେଶରୀ ଉଦ୍ୟନାଥ ରଥଶର୍ମା :</u> ଉଦ୍ୟନାଥ ରଥଶର୍ମା ଖଣ୍ଡପଡ଼ା ଗଡ଼ର ଉତ୍ତର ପଶ୍ଚିମ ଦିଗରେ ୨୪ କିଲୋମିଟର ଦୂରରେ ଅବସ୍ଥିତ କୁମ୍ଭାରପଡ଼ା ବ୍ରାହ୍ମଣ ଶାସନ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ସେ ନିମ୍ନ ମାଧମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ। ସେ ମହୋଦୟ କାବ୍ୟକଳାର ଜଣେ ପ୍ରବୀଣ ଭାଷ୍ୟକାର। ସେ ନିଜେ ପାଲାଦଳ ଗଠନ କରିଥିଲେ। ତାଙ୍କର ପାଲାଗୁରୁ ତାଙ୍କ ଗ୍ରାମର ପଣ୍ଡିତ ହରେକୃଷ୍ଣ ଦାଶ ଜଣେ ଉଚ୍ଚକୋଟୀର ଗୀତିକାର। ଉଦ୍ୟନାଥ ରଥଶର୍ମା ସଂସ୍କୃତ କାବ୍ୟକାର କାଳିଦାସ, ମମଟ, ଭବଭୂତି, ଶ୍ରୀହର୍ଷ, ଭାରବୀ, ମାଘଙ୍କର କାବ୍ୟକୁ ଆୟତ୍ତ କରିଥିଲେ। ସେ ଜଣେ ପ୍ରାଜ୍ଞପ୍ରଭା ପାଲାଗାୟକ। ସଂସ୍କୃତ କାବ୍ୟକଳାକୁ ଶ୍ରୁତିରୋଚକ ଭାବରେ ବର୍ଣ୍ଣନା କଲାବେଳେ ଓଡ଼ିଆ ଭାଷାର ମଧ୍ୟଯୁଗୀୟ କାବ୍ୟକଳା ଓ ରାଧାନାଥଯୁଗୀୟ କାବ୍ୟଭାଷାକୁ ମଧୁର ସମନ୍ୱୟରେ ସିଂହଠାଣିରେ ପ୍ରଗଲ୍‌ଭ ଗାନରେ ଶ୍ରୋତାଙ୍କୁ ମନୋରଞ୍ଜନ କରିପାରୁଥିଲେ। ପ୍ରାଜ୍ଞପୁରୁଷ ପାଲାଗାୟକ ଉଦ୍ୟନାଥ ରଥଶର୍ମା ଓଡ଼ିଶା ପାଲା ଦରବାରରେ 'ଗାୟକ କେଶରୀ' ଉପାଧିରେ ଭୂଷିତ ହୋଇଥିଲେ।

<u>ବିଦ୍ୟାନଗରୀର ବିସ୍ମୃତ ପ୍ରତିଭା କବି ହରେକୃଷ୍ଣ ଦାଶ :</u> ବିଦ୍ୱାନ ନଗରୀ ବୋଲେ ଖଣ୍ଡପଡ଼ା ରାଜ୍ୟ। ଏହାର ରାଜନ୍ୟବର୍ଗ ଜ୍ୟୋତିଷଶାସ୍ତ୍ର କାବ୍ୟକଳା ନିପୁଣ। ପଠାଣିସାମନ୍ତ ଏ ଗଡ଼ର ବିଶ୍ୱବିଖ୍ୟାତ ପ୍ରତିଭା। ତାଙ୍କର ସିଦ୍ଧାନ୍ତ ଦର୍ପଣ, ଗଦାଧର ସିଂହସାମନ୍ତଙ୍କର କୋହେନୂର ପ୍ରେସ୍‌ରୁ ପ୍ରକାଶିତ ସାମନ୍ତ ପଞ୍ଜିକା ମାନବ ସଭ୍ୟତା ପାଇଁ ଶ୍ରେଷ୍ଠ ଗଣନା ଶାସ୍ତ୍ର ଓ ପୀତବାସ ସିଂହସାମନ୍ତଙ୍କର କାବ୍ୟ 'କୃଷ୍ଣଲୀଳା କଳ୍ପଲତା'। ରାଜ୍ୟର ବିଦ୍ୱାନବତ୍ତାର ପରିଚାୟକ। ଖଣ୍ଡପଡ଼ା ଗଡ଼ର ସାହିତ୍ୟ ଓଡ଼ିଆ ଭଣ୍ଡାର ଋଦ୍ଧିମନ୍ତ କରେ। କବି ହରେକୃଷ୍ଣ ଦାଶ ବିଦ୍ୟାନଗରୀ ଖଣ୍ଡପଡ଼ାର ଅନ୍ୟତମ ମହକ। ହରେକୃଷ୍ଣ ଦାଶ ଖଣ୍ଡପଡ଼ାର ଗର୍ବ ଓ ଗୌରବ ପଠାଣି ସାମନ୍ତଙ୍କ ପଟ୍ଟଶିଷ୍ୟ ଥିଲେ। ପଠାଣି ସାମନ୍ତଙ୍କର ମଧ୍ୟମ ପୁତ୍ର ଗଦାଧର ସିହସାମନ୍ତଙ୍କର ସହାଧ୍ୟାୟୀ ଥିଲେ ହରେକୃଷ୍ଣ ଦାଶ। ଉଭୟଙ୍କର କବିପ୍ରତିଭା ସମକାଳୀନ।

କବି ହରେକୃଷ୍ଣ ଦାଶ ଖଣ୍ଡପଡ଼ା ରାଜ୍ୟ ଅନ୍ତର୍ଗତ କୁମ୍ଭାରପଡ଼ା ଗ୍ରାମର ବ୍ରାହ୍ମଣ ପରିବାରରେ, ୧୮୬୭ ମସିହା କୁମାର ପୂର୍ଣ୍ଣିମା ତିଥିରେ ଜନ୍ମଗ୍ରହଣ କରିଥିଲେ। ରତ୍ନାକର ଦାଶ ତାଙ୍କର ପିତା। ଗୀତିକାର ହରେକୃଷ୍ଣ ଦାଶ ୧୯୫୦ ମସିହା ମାର୍ଗଶୀର ମାସ କୃଷ୍ଣପକ୍ଷ ଏକାଦଶୀ ତିଥିରେ ପରଲୋକ ଗତ ହେଲେ।

କବି ହରେକୃଷ୍ଣ ଦାଶ କାବ୍ୟସୃଷ୍ଟି କରିପାରି ନଥିଲେ ହେଁ ତାଙ୍କର ଗୀତିଗୁଡ଼ିକରେ ଶବ୍ଦବିଳାସ ଅର୍ଥବିଳାସ, ରସବିଳାସ, ବିଚାରବିଳାସ, ସାଙ୍ଗୀତିକତା ଏବଂ ପ୍ରାସଙ୍ଗିକତାର ଭାବ ବିଳାସରେ ଶ୍ରୋତା କି ପାଠକ ବିହୋଳିତ। ତାଙ୍କର ରଚିତ ଦଣ୍ଡସୁଆଙ୍ଗ ପୂର୍ଣ୍ଣାଙ୍ଗ ଦଣ୍ଡମଞ୍ଚ ଦୃଶ୍ୟ ଖୋଲିଦିଏ। ଦଣ୍ଡନାଚର ରଚୟିତାମାନଙ୍କୁ ଖୋଜିଲାବେଳେ ସୌଭାଗ୍ୟକ୍ରମେ କୁମ୍ଭାରପଡ଼ାର ଜଣେ ମଞ୍ଚ କଳାକାର ସହିତ କଥୋପକଥନରେ ଦଣ୍ଡ ଲେଖକ ହରେକୃଷ୍ଣ ଦାଶଙ୍କ କଥା ଉଠାଇଥିଲେ। ହରେକୃଷ୍ଣ ଦାଶଙ୍କର ନାତି ପ୍ରାଧାପକ ଡକ୍ଟର ଗୋବିନ୍ଦ ଚନ୍ଦ୍ର ଦାଶ ହରେକୃଷ୍ଣ ଦାଶଙ୍କର ଲୁଚି ରହିଥିବା କେତେକ ଗୀତିଗୁଚ୍ଛ ବିସ୍ମୃତ ଗର୍ଭରୁ ଉଦ୍ଧାର କରି ପଠାଣି ସାମନ୍ତଙ୍କ ପଟ୍ଟଶିଷ୍ୟକୃତ ହରେକୃଷ୍ଣ ରଚନାବଳୀ ୩୧୯ ପୃଷ୍ଠା ଆୟତର ପୁସ୍ତକ ସଂପାଦନ କରିଥିଲେ। ହରେକୃଷ୍ଣ ଦାଶଙ୍କ ଉପରେ ବିଶଦ ବିବରଣୀ ମିଳିଗଲା। ସେ ମହାଶୟ ଉପଯୁକ୍ତ ଦାୟଦ ପଣ୍ଡିତ ଜେଜେଙ୍କର।

ହରେକୃଷ୍ଣ ଦାଶଙ୍କର ସବୁ ଦେବଦେବୀଙ୍କର ଭକ୍ତି ବନ୍ଦନା, ୧୮ଟି ତୁମ୍ପା ସଂଗୀତ ଗୀତି, ମହାକାବ୍ୟ ରାମାୟଣକୁ ସାତୋଟି ପାଦରେ ରଚିତ, କାଳୀୟଦଳନ ଗୀତ, କାବ୍ୟର ସବୁ ବିଭାଗକୁ ତାଙ୍କର ଗୀତଗୁଡ଼ିକ ଛୁଇଁଯାଇଛି। ସେ ପଠାଣି ସାମନ୍ତଙ୍କର ପଟ୍ଟଶିଷ୍ୟ ଏବଂ ତାଙ୍କର ମଧ୍ୟମପୁତ୍ର ଗଦାଧର ସିଂହସାମନ୍ତଙ୍କର ସହବିଦ୍ୟାର୍ଥୀ ଥିବାରୁ ଖଣ୍ଡପଡ଼ା ସାମନ୍ତ ବଂଶର ସାହିତ୍ୟକଳା ତାଙ୍କୁ ପ୍ରଭାବିତ କରିଥିଲା। ଗଦାଧରଙ୍କର ତୁମ୍ପା ସଂଗୀତର ଭାବ, ରାଗ, ରସ ତାଙ୍କ ତୁମ୍ପା ଗୀତମାନଙ୍କରେ ପରିଲକ୍ଷିତ ହୁଏ। ସବୁଠାରୁ ବିସ୍ମୟକର ତାଳପତ୍ର ଲେଖାର ଲେଖଚିତ୍ରପଟ୍ଟ ଏବଂ ଲୌହ ଲେଖନୀ ଫଳକର ଚିତ୍ର ପୁସ୍ତକଟିରେ ସ୍ଥାନୀତ ହୋଇ ୧୯୫୦ ମସିହା ତଳର ଲେଖକମାନଙ୍କର ତାଳପତ୍ର କାଗଜ ଓ ଲୌହ ଲେଖନୀର ବ୍ୟବହାର ସୁଚାଏ।

<u>ସଂସ୍କୃତ ଭାଗବତର ଅନୁବାଦକାର ପ୍ରଥିତଯଶା ପଣ୍ଡିତ ଦୀନବନ୍ଧୁ ଖାଡ଼ୁଙ୍ଗା :</u> ନୟାଗଡ଼ ଜିଲ୍ଲାର ପୂର୍ବତନ ଖଣ୍ଡପଡ଼ା ରାଜ୍ୟର ରାଜଦରବାରୀ କବି ସଂସ୍କୃତ ଭାଗବତର ଅନୁବାଦକ ପ୍ରଥିତଯଶା ପଣ୍ଡିତ ଦୀନବନ୍ଧୁ ଖାଡ଼ୁଙ୍ଗା। ଏହି ମହାମହିମ କବି ପୁରୀ ନିକଟବର୍ତ୍ତୀ ବାମଦେବପୁର ଶାସନରେ ପିତା ମଧୁସୂଦନ ମିଶ୍ରଙ୍କ ଔରସରୁ ୧୫୭୮ ଶକାବ୍ଦରେ ଜନ୍ମଗ୍ରହଣ କରିଥିଲେ। ମଧୁସୁଦନ ମିଶ୍ର ରାଜରୋଷରୁ ନିଜ ବାସସ୍ଥାନ ଛାଡ଼ି ଖଣ୍ଡପଡ଼ା ରାଜ୍ୟରେ ଆଶ୍ରୟ ନେଇଥିଲେ ରାଜା ନାରାୟଣ ମଙ୍ଗରାଜଙ୍କ ଶାସନ ସମୟରେ। ରାଜା ନାରାୟଣ ମଙ୍ଗରାଜ ଦ୍ୱିଜପୁର ଦୀନବନ୍ଧୁ

ମିଶ୍ରଙ୍କର ଶାସ୍ତ୍ରଜ୍ଞାନରେ ପ୍ରୀତ ହୋଇ ସେ ତାଙ୍କୁ ପଣ୍ଡିତ ସଭାରେ ସ୍ଥାନ ଦେଇଥିଲେ। ଦୀନବନ୍ଧୁ ରାଜପୁତ୍ର ବାଲୁକେଶ୍ୱର ମଙ୍ଗରାଜଙ୍କ ଦୀକ୍ଷାଗୁରୁ ଥିଲେ।

ଏକଦା ରାଜା ନାରାୟଣ ମଙ୍ଗରାଜ କବି ଦୀନବନ୍ଧୁଙ୍କର ମୁଖନିଃସୃତ ପୁରାଣକୁ ଶ୍ରବଣ କରି ଓ ଭାଗବତ ରସମାଧୁରୀରେ ଭାବବିଭୋର ହୋଇ କବିଙ୍କୁ ନିଜ ହସ୍ତରୁ ସ୍ୱର୍ଣ୍ଣଖଡୁ ଉତାରି ଉପହାର ଦେଇଥିଲେ। ଏହି ସ୍ୱର୍ଣ୍ଣଖଡୁରୁ କବିଙ୍କର ଉପାଧି ଖାଡ଼ଙ୍ଗା ହୋଇଛି। ସେ ଦୀନବନ୍ଧୁ ଖାଡ଼ଙ୍ଗା ଭାବରେ ପରିଚିତ। ଦୀନବନ୍ଧୁ ଖାଡ଼ଙ୍ଗା ସଂସ୍କୃତ ରଚିତ ଭାଗବତକୁ ଓଡ଼ିଆ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଛନ୍ତି। ଏ ଭାଗବତ ଖାଡ଼ଙ୍ଗା ଭାଗବତରେ ଜନାଦୃତ। ଦୀନବନ୍ଧୁଙ୍କ ଭାଷାରେ...

ମୋହର ଦୀନବନ୍ଧୁ ନାମ।
ଖଣ୍ଡପଡ଼ା ଦୁର୍ଗେ ବିଶ୍ରାମ ॥
ଖରିଛି ତହିଁରେ ଭୂପତି।
ସେ ଗୁରୁ ବୈଷ୍ଣବେ ଭଗତି ॥
ସେ ଦାତା ଧୀର ସତ୍ୟଭାଷୀ।
ଶ୍ରୀ ଭାଗବତ ଗ୍ରନ୍ଥାଭ୍ୟାସୀ ॥
ନାମ ଅଟଇ ତାହାଙ୍କର।
ମଙ୍ଗରାଜ ବାଲୁଙ୍କେଶ୍ୱର ॥
ତାଙ୍କ ଗୀତିରେ ବଶ ହେଲି।
ଭାଗବତକୁ ଗୀତା କଲି ॥

ଦୀନବନ୍ଧୁ ଖାଡ଼ଙ୍ଗା ସଂସ୍କୃତ ଭାଷାରେ 'ହରିଭକ୍ତି ସୁଧାକର, ରସୋଦୟ, ଭାଗବତ ଭକ୍ତି ଶତକ, ଉପଦେଶ ଶତକ, ସ୍ତବ ମୁକ୍ତାମାଳୀ, ଶରଦ୍ ବର୍ଣ୍ଣନା, ଜଗନ୍ନାଥାଷ୍ଟକ, ସ୍ମରଣାମୃତ ସ୍ତବ, ଅପରାଧ ଭଞ୍ଜନ ଇତ୍ୟାଦି ପୁସ୍ତକମାନ ରଚନା କରି ସଂସ୍କୃତ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି।

**ନୟାଗଡ଼ ଅଞ୍ଚଳରୁ ମହାନଦୀ ପଥରେ କଟକକୁ ସଂଯୋଗ କରୁଥିବା ଯାତାୟତ ଘାଟ ପଥ :** ନୟାଗଡ଼ ଅଞ୍ଚଳରୁ ମହାନଦୀ ପାରହୋଇ କଟକ ତଥା ଉତ୍ତରାଞ୍ଚଳକୁ ତିନୋଟି ଘାଟପଥରେ ଗମନାଗମନ ହେଉଥିଲା। ଯଥା ଛାମୁଣ୍ଡିଆ, ମହାନଦୀ ଘାଟ, ସିଦ୍ଧାମୂଳା ମହାନଦୀ ଘାଟ, ପଦ୍ମାବତୀ ମହାନଦୀ ଘାଟ।

**ଛାମୁଣ୍ଡିଆ ଘାଟ :** ଦଶପଲ୍ଲାର ଗଣିଆ ବ୍ଲକ୍ ଅନ୍ତର୍ଗତ ଛାମୁଣ୍ଡିଆ ପଞ୍ଚାୟତ କଳାପାଟ ଠାକୁରାଣୀଙ୍କ ପାଦଦେଶରେ ମହାନଦୀକୁ ଅତିକ୍ରମ କରିବାର ପ୍ରାଚୀନ ନଦୀଘାଟ। ଡଙ୍ଗା ଦ୍ୱାରା ଏହିଠାରେ ମହାନଦୀର ପ୍ରଶସ୍ତ ଜଳପଥକୁ ଅତିକ୍ରମ କରାଯାଏ। ଦଶପଲ୍ଲା ରାଜାଙ୍କର ଏହି ଘାଟରେ କଟକକୁ ଯିବାର ଜଳପଥ। ଛାମୁଙ୍କର ଏ ଯାତାୟତ ପଥ ହୋଇଥିବାରୁ ଏ ନଦୀଘାଟ ନାମ ଛାମୁଣ୍ଡିଆ ଘାଟ

ନାମ ରହିଛି। ଏହି ଘାଟ ପଥର ପୁରୁଣା ଜଗନ୍ନାଥ ସଡ଼କ ସହିତ ସଂଯୋଗ ରହିଅଛି।

**ସିଦ୍ଧାମୂଳା ମହାନଦୀ ଘାଟ :** ସିଦ୍ଧାମଳା ଏକ ପୁରୁଣା ଜନବସତି ଗାଁ ମହାନଦୀ ଉପକଣ୍ଠରେ। ବର୍ତ୍ତମାନ ଏ ଗାଁ'ର ଜନବସତି ଗୋଟିଏ ପଞ୍ଚାୟତର ଅନ୍ତର୍ଗତ। ମହାନଦୀର ଏକ ପୁରୁଣା ଘାଟପଥ ସିଦ୍ଧାମୂଳା। ଏହି ଘାଟରେ ମହାନଦୀର ଦକ୍ଷିଣାଞ୍ଚଳ ଯାତ୍ରୀମାନେ ଡଙ୍ଗାରେ ନଦୀର ଆରପାଖକୁ ଯାତାୟତ କରନ୍ତି। ଏ ଘାଟ ବାଣିଜ୍ୟ ପରିବହନର ଜଳପଥ।

**ସିଦ୍ଧାମୂଳା ସେତୁ :** ବର୍ତ୍ତମାନ ସିଦ୍ଧାମୂଳାଠାରେ ଏକ କଂକ୍ରିଟ ସେତୁ ନିର୍ମାଣ କରାଯାଇ ମହାନଦୀର ଦକ୍ଷିଣାଞ୍ଚଳକୁ ଏବଂ ଉତ୍ତରାଞ୍ଚଳକୁ ସଂଯୋଗ କରାଯାଇଛି। ଏହି ସେତୁ ନୟାଗଡ଼ ଜିଲ୍ଲାର ସିଦ୍ଧାମୂଳା ଏବଂ କଟକ ଜିଲ୍ଲା ଏକଡ଼ାଳ ଗ୍ରାମକୁ ପ୍ରଶସ୍ତ ମହାନଦୀ ଉପରେ ଦଣ୍ଡାୟମାନ। ଏହି ସେତୁ ଉପରେ ପରିବହନ ବୋଝେଇ ଯାନ, ଯାତ୍ରୀବାହୀ ଯାନ ଓ ପଦଯାତ୍ରୀଙ୍କର ଗମନାଗମନ ସୁଗମ ହୋଇଛି। ଏହି ସେତୁ ଉପରେ ଠିଆ ହୋଇ ମହାନଦୀର ପଶ୍ଚିମରୁ ଗତିପଥ ଏବଂ ପୂର୍ବକୁ ବହିଯାଉଥିବା ପଥ ଉପରେ ଗୋକୁଳାନନ୍ଦ ଭେଦକରି ପଶ୍ଚିମା ଅରଣ୍ୟର ଶୋଭା ଓ ପୂର୍ବରେ ବ୍ରହ୍ମାଦ୍ରୀ ପାହାଡ଼ ଉପରେ ନୀଳମାଧବଙ୍କ ମନ୍ଦିର ନଅର ଶୋଭାଶ୍ରୀ ବିମୋହିତ କରେ। ସିଦ୍ଧାମୂଳା ସେତୁ ସଂଯୋଗ ନୟାଗଡ଼ ଜିଲ୍ଲା ପାଇଁ ସରକାରଙ୍କର ଏକ ମହାନ ଯୋଜନା।

**ପଦ୍ମାବତୀ ଘାଟ :** ମହାନଦୀର ଜଳପଥକୁ ଅତିକ୍ରମ କରିବାରେ ପୁରୁଣା ନଦୀପଥ ହେଉଛି ପଦ୍ମାବତୀ ଘାଟ। ମହାନଦୀରେ ଯାତ୍ରୀଙ୍କର ଗମନାଗମନ ସଙ୍ଗେ ସଙ୍ଗେ ପଣ୍ୟଦ୍ରବ୍ୟର ନେବା ଆଣିବାର ଏକ ବ୍ୟବସାୟିକ ଘାଟ। ଯାତ୍ରୀମାନେ ବ୍ୟବସାୟୀମାନେ ଡଙ୍ଗାରେ ନଦୀପଥ ଅତିକ୍ରମ କରିଥାନ୍ତି।

**ଐତିହାସିକ ପୀଠ ପଦ୍ମାବତୀ :** ପଦ୍ମାବତୀ ଗ୍ରାମ ମହାନଦୀର ଦକ୍ଷିଣ ଦାଢରେ ବୃହତ୍ ଜନବସତି। ଏହା ନୟାଗଡ଼ ଜିଲ୍ଲାର ଭାପୁର ବ୍ଲକ୍‌ର ଏକ ମନୋରମ ଗ୍ରାମ। ଏହି ଗ୍ରାମ ମହାନଦୀ ବନ୍ୟା ସହି ସହି ଏବେ ବି ସୁନ୍ଦର। ଏହି ଗ୍ରାମର ଆରାଧ୍ୟ ଦିଅଁ ଗୋପୀନାଥ ଜୀଉ ଏବଂ ବାଲୁଙ୍କେଶ୍ୱର ମହାଦେବ। ପଦ୍ମାବତୀ ଗ୍ରାମ ମୁଖ୍ୟତଃ ବ୍ୟବସାୟୀ ସଂପ୍ରଦାୟଙ୍କ ବାସସ୍ଥାନ। ଏଠାର ଜନଶ୍ରୁତି ଶୁଣାଏ ଗୋପୀନାଥ ଜୀଉଙ୍କ ଦ୍ୱାରେ ହୃଦୟସ୍ପର୍ଶୀ ରାସଲୀଳା ଅନୁଷ୍ଠିତ ହୁଏ। ୧୯୩୩ ମସିହାରେ ପଦ୍ମାବତୀର ପ୍ରଥମ ଜନବସତି ମହାନଦୀ ବନ୍ୟାରେ କେତେ ଅଂଶ ଭାସିଗଲା ଏବଂ ପ୍ରଧାନ ଗ୍ରାମପୀଠ ଜଳଶାୟୀ ରହିଲା। ଦୈନିକ ଖବରକାଗଜ 'ଧରିତ୍ରୀ' ୧୨/୬/୨୦ରେ ନୟାଗଡ଼, ଭାପୁର ସ୍ତମ୍ଭରେ ପ୍ରକାଶିତ ପଦ୍ମାବତୀ ଗ୍ରାମ ନିକଟରେ ପ୍ରବାହିତ ମହାନଦୀ ଗର୍ଭରେ ଦୀର୍ଘବର୍ଷ ବୁଡ଼ି ରହିଥିବା ଗୋପୀନାଥ

ମନ୍ଦିରକୁ ଆଜି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ସ୍କୁବା ଡ୍ରାଇଭର ସବିର ବକ୍ସ ଅନୁଧ୍ୟାନ କରିଥିଲେ। ଶ୍ରୀବକ୍ସ ମହାନଦୀର ଗଭୀର ଜଳରେ ବୁଡ଼ି ମନ୍ଦିର ସମ୍ପର୍କରେ ସବିଶେଷ ତଥ୍ୟ ସଂଗ୍ରହ କରିବା ସହିତ ବିଭିନ୍ନ ଦିଗରୁ ଚିତ୍ର ମଧ୍ୟ ଉତ୍ତୋଳନ କରିଥିଲେ। ଏ ମନ୍ଦିର ଜଳ ମଧ୍ୟରେ ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଥିବାର ଶ୍ରୀବକ୍ସ ପ୍ରକାଶ କରିଥିଲେ। ଜଳଗର୍ଭରେ ମନ୍ଦିରର ସମୁଦାୟ ଅଂଶ ବୁଡ଼ି ରହିଥିଲେ ହେଁ ଏହାର ଦଧିନଉତି କେବଳ ଜଳସ୍ତର ଉପରେ ଦୃଶ୍ୟମାନ ହୁଏ। ଏହି ମନ୍ଦିରର ଜନଶ୍ରୁତିରୁ ଜଣାଯାଏ ବିଧାୟକ ଅନୁଭବ ପଟ୍ଟନାୟକଙ୍କ ପୂର୍ବପୁରୁଷ କେଶବ ବେବର୍ତ୍ତା ଗୋପିନାଥଙ୍କ କୃପାରୁ ପୁତ୍ର ସନ୍ତାନ ପ୍ରାପ୍ତ ହୋଇଥିବାରୁ ପଦ୍ମାବତୀ ଗ୍ରାମର ଦକ୍ଷିଣ ପାର୍ଶ୍ୱରେ ୬୦ଫୁଟ ଉଚ୍ଚର ଗୋପୀନାଥ ମନ୍ଦିର ନିର୍ମାଣ କରିଥିଲେ। ୫୦୦ ବର୍ଷ ତଳର ଏହି ମନ୍ଦିର ୮୭ ବର୍ଷ ଧରି ମହାନଦୀ ପ୍ରବହମାନ ଜଳ ଗର୍ଭରେ ଥାଇ ଆଜି ଦୃଶ୍ୟମାନ ହେଉଅଛି। ପୁରାତନ ପଦ୍ମାବତୀ ଗ୍ରାମ ଧୋଇହୋଇ ଯାଇଥିଲେ ମଧ୍ୟ ନୂତନ ପଦ୍ମାବତୀ ଗ୍ରାମ ତା'ର ପ୍ରାଚୀନ ସଂସ୍କୃତି ଧରି ପୁନଶ୍ଚ ନଦୀ ଦାଢରେ ଦଣ୍ଡାୟମାନ। ପୁନଶ୍ଚ ନୂତନ ଗୋପିନାଥ ମନ୍ଦିର ବାଲୁଙ୍କେଶ୍ୱର ଶିବ ମନ୍ଦିର ଗଢ଼ିଉଠିଛି। ଗୋପିନାଥ ଦେବ ଗ୍ରାମର ଆରାଧ୍ୟ ଠାକୁର ହୋଇଥିବାରୁ ତାଙ୍କ ନାମରେ ଗୋପିନାଥ ଦେବ ବିଦ୍ୟାପୀଠ ପ୍ରତିଷ୍ଠା ହୋଇଛି। ପଦ୍ମାବତୀ ଗ୍ରାମ ସହିତ ଆଉ ଏକ ଐତିହାସିକ ଅନୁସନ୍ଧାନ ଯୋଡ଼ି ହୋଇ ରହିଛି ୧୯୫୨ ମସିହାରେ ଆଦିମାନବର ଏକ ବୃହତ୍ କଂକାଳ ଏକ ବୃହତ୍ ପଥର ପେଟିକା ମଧ୍ୟରେ ଦେଖିବାକୁ ମିଳେ। ଏଣୁ ନଦୀକୂଳ ସଭ୍ୟତା ମଧ୍ୟରେ ପଦ୍ମାବତୀ ପ୍ରାଚୀନ ସଂସ୍କୃତିସମ୍ପନ୍ନ ଗ୍ରାମଟିଏ।

କଥା ଉଠିପାରେ ଏ ଗ୍ରାମ ନଦୀ ଧୋୟା ଅଞ୍ଚଳ। ସବୁକାଳେ ଏ ବିପଦ ଘେର ମଧ୍ୟରେ ଏ ଗ୍ରାମବସତି କାହିଁକି ?

ମହାନଦୀର ଉର୍ବରାଭୂମିରେ ପଦ୍ମାବତୀର ଅବସ୍ଥିତ। ଏ ଶସ୍ୟଭୂମିକୁ ଛାଡ଼ିଯାଇ ହେବ ନାହିଁ। ଏ ଭୂମିରେ ଜୀବନ ପାଇଁ ଖାଦ୍ୟ ଭରପୂର ହୋଇ ରହିଛି ଯଥା ସବୁ ଜାତିର ଶସ୍ୟ, ସବୁ ଜାତିର ପରିବା ଚାଷ ଅର୍ଥକାରୀ ଫସଲର ଭୂଇଁ ପଦ୍ମାବତୀ। ନୟାଗଡ଼ ଜିଲ୍ଲାର ଏହା ଏକ ପ୍ରଧାନ ଶସ୍ୟଭୂମି।

**କରବର :** ନୟାଗଡ଼ ଜିଲ୍ଲା ଭାପୁର ବ୍ଲକ୍‌ର ପୂର୍ବ ସୀମାବର୍ତ୍ତୀ ଗ୍ରାମ କରବର। କରବର ବାଙ୍କୀ ସହରକୁ ଲାଗି ମହାନଦୀର ଦକ୍ଷିଣ ଆଡ଼ିବାଡ଼କୁ ଲାଗି ଅବସ୍ଥିତ। ଏହା ମହାନଦୀର ବନ୍ୟାପ୍ରବଣ ଗାଁ। ମହାନଦୀ ବାଡ଼ବନ୍ଧ ଭାଙ୍ଗିଗଲେ କରବର ପଦ୍ମାବତୀର ବିଶେଷ କ୍ଷୟକ୍ଷତି ହୁଏ। ନଦୀର ପ୍ରଳୟଙ୍କରୀ ବନ୍ୟାକୁ ସହି ସହି ଏ ଅଞ୍ଚଳର ଜନବସତି ଏ ଭୂମି ଇଲାକାକୁ ଛାଡ଼ିଯିବାକୁ ନାରାଜ। କାରଣ ଏ ହେଉଛି ଅର୍ଥକାରୀ ଫସଲର ଭୂମି। ନଦୀକୂଳିଆ ସଭ୍ୟତା ମଧ୍ୟରେ ଏ ଭୂମିର ପ୍ରାଚୀନତା

ରହିଛି । ଏ ଅଞ୍ଚଳରେ ଧାନ, ଆଖୁ, ଚିନାବାଦାମ ସବୁପ୍ରକାର ପନିପରିବା ଚାଷ ବର୍ଷ ତମାମ ଲାଗିରହିଥାଏ। ଏ ଗ୍ରାମବାସୀଙ୍କର ମାଟି ସହିତ ସମ୍ପର୍କ ନିବିଡ଼। ନୟାଗଡ଼ ଜିଲ୍ଲାର ଏ ହେଉଛି ଅର୍ଥକାରୀ ଭୂମି। ବାଙ୍କି ବଜାର କଳାପଥର ପରିବା ହାଟକୁ କରବର ପ୍ରଚୁର ପରିମାଣରେ ପନିପରିବା, ଜହ୍ନି, ବାଇଗଣ, ମୂଳା, ଗାଜର, କଖାରୁ, ଭେଣ୍ଡି, କଟକୀ ପୋଟଳ, ଦେଶୀ ପୋଟଳ, ବିନ୍, ଝୁଡ଼ଙ୍ଗ, ଫୁଲକୋବି, ବନ୍ଧାକୋବି, ଉଲ୍‌କୋବି, ଲଙ୍କା, ସାଲଗମ, କାକୁଡ଼ି, କଦଳୀ ଯାବତୀୟ ପରିବା ଯୋଗାଇଥାଏ। ନୟାଗଡ଼ ପରିବା ବଜାରକୁ ବାଙ୍କିରୁ ଆସୁଥିବା ପରିବା ସବୁ କରବର ଗ୍ରାମାଞ୍ଚଳର। ଏ ଅଞ୍ଚଳର ଭୂମି ସହିତ ମୋର ଯେତେଟା ସମ୍ପର୍କ ଏହାର କୃଷିଭୂମି ନିତି କିଛି କିଛି ଖାଦ୍ୟ ଅର୍ଥ ଦାନ କରେ। ଏଠାର ଲୋକମାନେ କୃଷି ସହିତ ଜଡ଼ିତ। ସାରାବର୍ଷ ଫସଲ ଅମଳ କରିବାରେ ଶ୍ରମ କରିଥାନ୍ତି।

<u>ସାରସ୍ୱତ ସାହିତ୍ୟିକ ଅକ୍ଷରକୀର୍ତ୍ତିର ଅଧିକାରୀ ଦାଶ ବେନହୁର :</u> ନୟାଗଡ଼ ଜିଲ୍ଲାର ସାରସ୍ୱତ ସାହିତ୍ୟ ସାଧକ ଦାଶ ବେନହୁର (ଜିତେନ୍ଦ୍ର ନାରାୟଣ ଦାଶ)ଙ୍କ ଜନ୍ମସ୍ଥାନ ଖଣ୍ଡପଡ଼ା। ସେ ଓଡ଼ିଶାର ଜଣେ ପ୍ରଜ୍ଞାଶୀଳ କବି, କଥାକାର, ପ୍ରାବନ୍ଧିକ, ଅନୁବାଦକ, ଶିଶୁ ସାହିତ୍ୟିକ, ଫିଚର ରଚନାର ସାଧୁସାଧକ ନୟାଗଡ଼ର ଗୌରବ। ଦାଶ ବେନହୁରଙ୍କ ଦ୍ୱାରା ଲିଖିତ ପୁସ୍ତକର ସୂଚୀ ଲମ୍ବା ଅଟେ । ସେଥିମଧ୍ୟରୁ



ତାଙ୍କଦ୍ୱାରା ରଚିତ ୨୦ଟି କ୍ଷୁଦ୍ରଗଳ୍ପ ସଂକଳନ, ୬ ଟି କାହାଣୀ ପୁସ୍ତକ, ୪ଟି କବିତା ସଂକଳନ, ୨ଟି ଅନୁବାଦ ପୁସ୍ତକ, ୨ଟି ଉପନ୍ୟାସ ପୁସ୍ତକ, ୧୨୦ଟି ଶିଶୁ ସାହିତ୍ୟ ପୁସ୍ତକ, ୧୦ଟି ଶିଶୁ କିଶୋର ସାହିତ୍ୟ ଅନୁବାଦ ପୁସ୍ତକ ଏବଂ ୬ଟି ଜନଶିକ୍ଷା ସାହିତ୍ୟ ପୁସ୍ତକର ରଚୟିତା ଅଟନ୍ତି । ଦାଶ ବେନହୁର ନୟାଗଡ଼ ମାଟିର ଏକ ଅନନ୍ୟ ପ୍ରତିଭୂ। ନଜରକୁ ଆସିଥିବା ତାଙ୍କର ପ୍ରକାଶିତ ପୁସ୍ତିକା- ଅସରନ୍ତି ମେଘ (କବିତା ସଂକଳନ), ତରଳୁଥିବା ସମୟ, ନିରୁତ୍ତର ନେଳି, ଛାଇନିଦ, ନାଭିସମୁଦ୍ର, ଚିତ୍ରିତ ଚୌପାଶ, ସମୟ ସଂପର୍କ, ପଦ୍ମ ଘୁଞ୍ଚି ଘୁଞ୍ଚି ଯାଉଛି, କୁହୁଡ଼ି ଘର, ଅକ୍ଷର ଅରଣ୍ୟ (ଗଳ୍ପ ସଂକଳନ), ରଞ୍ଜିର ବାହାଦୂରୀ, ଜଙ୍ଗଲର ଡାକ, ଆମର ବିଶ୍ୱ ସାହିତ୍ୟ (ଅନୁବାଦ), ଅଙ୍କାବଙ୍କା ନଈ, ଏମନ୍ତ ଏ ଧରା (ଫିଚର), କୁନା ପାଇଁ ଅନାବନା ଗୀତ, ଗାନ୍ଧି କାହାଣୀ, ମଧୁକାହାଣୀ, ଗୀତ ମାନସାଙ୍କ, ସାପୁଆକେଳାର ପିଲା, ମନମୋଟୁ ମଇତା, ଫରୁଆ ଭିତରେ ଫରୁଆ (ଶିଶୁ ସାହିତ୍ୟ)।

ଦାଶ ବେନହୁରଙ୍କର ଶିଶୁ କବିତାଟିରେ କେତେ ମଧୁର ଅକ୍ଷରର ଯୋଗ ଗାଇବା ମଧୁର ଶୁଣିବା ମଧୁର-

ଉଲୁରୁ ଉଲୁରୁ ବାଇ
ନିଆଁ ପୁଳା ପୁଳା ପାଣିରେ ଛାଇ
ପବନ ମାରୁଛି ହାଇ...
ଟୁପୁରୁ ଟୁପୁରୁ ପାଣି
ଚାଲି ଥିରି ଥିରି କାଦୁଅ ବାଟ
ଗେଣ୍ଡାକୁ କୋଚିଆ ପାଣି ।

ଦାଶ ବେନହୁରଙ୍କର ଶ୍ରଦ୍ଧା ପତ୍ରିକାରେ ପ୍ରକାଶିତ 'ନୟାଗଡ଼ର ନାକ' ପ୍ରବନ୍ଧରେ ନାକ ଉପରେ କି ସୁନ୍ଦର ମଧୁର ଭାବର ସଂରଚନା । ମୁହଁର ସୌନ୍ଦର୍ଯ୍ୟ ନାକ ବୋଲି ତ ଆମେ ସୁନ୍ଦରୀ ଝିଅକୁ ସୁନାନାକି ଝିଅ କହୁ । ନୟାଗଡ଼ ମୁହଁର ନାକ କହିଲେ ନୟାଗଡ଼ରେ ପ୍ରସିଦ୍ଧି ଲାଭକରିଥିବା, ଛେନାପୋଡ଼, ସଂସ୍କୃତି, ସାହିତ୍ୟିକଙ୍କ ଅକ୍ଷରକୀର୍ତ୍ତି ଆଉ ରାଜନୀତି । ନୟାଗଡ଼ର ରାଜନୀତି ନାକ ବଡ଼ ଅସୁନ୍ଦର ବଡ଼ କଲୁଷିତ । ତାରି ଭିତରେ ହଜିଯାଉଛି ନୟାଗଡ଼ର ଅସଲ ସୁନାରୂପ ।

ରାଜନୀତି ରାଜନୀତି ହୋଇ ରହୁ । ସାହିତ୍ୟ, ସଂସ୍କୃତି ଓ ସମାଜକୁ ତାହା ଆକ୍ରାନ୍ତ କରି ଲୋକ ସମୂହକୁ ଭାଗ ଭାଗ ନକରୁ । ନୟାଗଡ଼କୁ ଭଲପାଉଥିବା ଲୋକଙ୍କ ଆଗରେ ନୟାଗଡ଼ର ମୁହଁଟି ଉଜ୍ଜ୍ୱଳ ଦିଶୁ । ନାକଟି ଆକର୍ଷଣୀୟ, ତୀଖ, ସୁନ୍ଦର ଓ ସୁଗଠିତ ହୋଇ ରହୁ । ନାକରେ ବି ଶୃଙ୍ଖଳା ରହୁ ।

<u>ପଦ୍ମଭୂଷଣ ବୈଜ୍ଞାନିକ ତ୍ରିଲୋଚନ ପ୍ରଧାନ :</u> ପଦ୍ମଭୂଷଣ ତ୍ରିଲୋଚନ ପ୍ରଧାନ ଖଣ୍ଡପଡ଼ା ଘଣାଶାଳିଆ ଗ୍ରାମରେ ୧୯୨୯ ମସିହାରେ ଜନ୍ମଲାଭ କରିଥିଲେ । ପ୍ରଫେସର ପ୍ରଧାନ ଥିଓରିଟିକାଲ ଫିଜିକିସ୍‌ରେ ଉଚ୍ଚତର ଗବେଷଣା କରି ସାରା ବିଶ୍ୱରେ ଜଣେ ପ୍ରତିଷ୍ଠିତ ବୈଜ୍ଞାନିକ ଭାବେ ନିଜସ୍ୱ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛନ୍ତି । ସେଥିପାଇଁ ଭାରତ ସରକାରଙ୍କ ଦ୍ୱାରା ସେ ପଦ୍ମଭୂଷଣ ଉପାଧିରେ ଭୂଷିତ ହୋଇଅଛନ୍ତି । ତାଙ୍କରି ପ୍ରଚେଷ୍ଟାରେ ଭାରତ ସରକାର ୧୯୭୪ ମସିହାରେ ପଦାର୍ଥବିଜ୍ଞାନର ଉଚ୍ଚତର ଗବେଷଣା କେନ୍ଦ୍ର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫିଜିକ୍‌ସ, ଭୁବନେଶ୍ୱରଠାରେ ପ୍ରତିଷ୍ଠା କରିଛନ୍ତି । ଏହାର ପ୍ରଥମ ନିର୍ଦ୍ଦେଶକ ଥିଲେ ପ୍ରଫେସର ଡକ୍ଟର ପ୍ରଧାନ ।



ତ୍ରୟୋଦଶ ଅଧ୍ୟାୟ

# ନୟାଗଡ଼ ଶକ୍ତିପୀଠରେ ବଳିପୂଜା

ଭାରତବର୍ଷରେ ଦ୍ରାବିଡ଼ ସଭ୍ୟତା ସର୍ବପ୍ରାଚୀନ। ଦ୍ରାବିଡ଼ ସଂସ୍କୃତିରେ ଶକ୍ତି ଓ ଶିବଙ୍କର ଉପାସନା କରାଯାଉଥିଲା। ସଂପ୍ରତି ଆଦିବାସୀ ସଂପ୍ରଦାୟରେ ତଦନୁରୂପ ଧର୍ମଧାରଣା ପରିଲକ୍ଷିତ ହୁଏ। ଏମାନେ ପ୍ରକୃତି ସ୍ୱରୂପିଣୀ ମା' ଶକ୍ତି ଠାକୁରାଣୀଙ୍କର ପୂଜା କରନ୍ତି। ପରନ୍ତୁ ଆର୍ଯ୍ୟ ସଭ୍ୟତାରେ ବ୍ରାହ୍ମଣ ଧର୍ମର ପ୍ରଭାବରେ ନାନା ଅନ୍ଧବିଶ୍ୱାସକୁ ଭିତ୍ତିକରି ଗୁଡ଼ାଏ କୁସଂସ୍କାର ତଥା ପଶୁବଳି ଯାଗଯଜ୍ଞରେ ଯୋଡ଼ିହେଲା। ଏ ଧର୍ମସଂକଟ କାଳରେ ଖ୍ରୀ.ପୂ. ଷଷ୍ଠ ଶତକରେ ଆର୍ଯ୍ୟ ସମାଜରେ ଧର୍ମ ଆନ୍ଦୋଳନ ଦେଖା ଦେଇଥିଲା। ଫଳତଃ ଜୈନଧର୍ମ ବୌଦ୍ଧଧର୍ମର ଅଭ୍ୟୁଦୟ ଘଟିଲା। ବୌଦ୍ଧ ଧର୍ମର ପ୍ରଭାବ ପ୍ରସାର ବ୍ୟାପ୍ତି ଭାରତରେ ସପ୍ତମ ଖ୍ରୀ.ଅ.ର ପରବର୍ତ୍ତୀ ସମୟ ପର୍ଯ୍ୟନ୍ତ ରହିଥିଲା। ଖ୍ରୀ.ପୂ. ୨୬୧ ରେ ମଗଧ ସମ୍ରାଟ ଅଶୋକ କଳିଙ୍ଗ ଯୁଦ୍ଧ ପରେ ପରେ ଏଠି ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ଚଣ୍ଡାଶୋକରୁ ଧର୍ମାଶୋକରେ ପରିବର୍ତ୍ତିତ ହେଲେ। ଖ୍ରୀ.ପୂ. ପ୍ରଥମ ଶତକରେ ମହାମେଘବାହନ ଐରଖାରବେଳଙ୍କ ରାଜୁତି କାଳରେ କଳିଙ୍ଗର ପ୍ରଜାମାନେ ମୁଖ୍ୟତଃ ଆଦିବାସୀ ସଂପ୍ରଦାୟର ଥିଲେ। ୬୩୯ ଖ୍ରୀ.ଅ. ଚୀନ୍ ପରିବ୍ରାଜକ ହୁଏନ୍‌ସାଙ୍କ ଭାରତ ପରିଭ୍ରମଣ ବେଳକୁ ସାଂପ୍ରତିକ ଓଡ଼ିଶା ଅତୀତରେ ଉଡ୍ର-କଳିଙ୍ଗ, କଙ୍ଗୋଦ, କୋଶଳ ନାମରେ ଚାରୋଟି ରାଜ୍ୟରେ ଭାଗ ଭାଗ ହୋଇଥିଲା। ଖ୍ରୀ.ଅ.୭୩୬ରୁ ଖ୍ରୀ.ଅ. ୧୧୧୦ ଓଡ଼ିଶାରେ ଭୌମକର ଓ ସୋମ ବା କେଶରୀ ବଂଶର ଶାସନ କାଳ। ଏହି ସମୟସୀମା ମଧ୍ୟରେ ଓଡ଼ିଶାରେ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ରାଜବଂଶୀ, ନନ୍ଦବଂଶୀ, ଶାଲୁକ୍ୟ, ତୁଙ୍ଗ, ମୟୂର ଓ ଗଙ୍ଗବଂଶୀ ରାଜାମାନେ ରାଜପଣ କରୁଥିଲେ। ନନ୍ଦବଂଶୀ ରାଜାମାନେ ବର୍ତ୍ତମାନ ଢେଙ୍କାନାଳର ଦକ୍ଷିଣାଞ୍ଚଳ, କଟକର ପଶ୍ଚିମାଞ୍ଚଳ ଓ ନୟାଗଡ଼ ସବ୍‌ଡ଼ିଭିଜନକୁ ମିଶାଇ ଏଠି ରାଜପଣ କରୁଥିଲେ। ନନ୍ଦବଂଶୀ ରାଜାମାନେ ବର୍ତ୍ତମାନ ଢେଙ୍କାନାଳର ଦକ୍ଷିଣାଞ୍ଚଳ, କଟକର ପଶ୍ଚିମାଞ୍ଚଳ ଓ ନୟାଗଡ଼ ସବ୍‌ଡିଭିଜନକୁ ମିଶାଇ ଏଠି ରାଜପଣ କରୁଥିଲେ। ଏହି ସମୟରେ ଓଡ଼ିଶାରେ ଶୈବ ଓ ଶାକ୍ତ ଧର୍ମ ବହୁଳ ପ୍ରସାରଲାଭ କରିଥିଲା। ଶକ୍ତି ଓ ଚାମଣ୍ଡାର ଉପାସନା କରାଯାଉଥିଲା।

କେଶରୀ ରାଜତ୍ୱ କାଳରେ ବୈତରଣୀ ନଦୀ କୂଳରେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ଗଢ଼ାଯାଇଥିଲା। ଏହି କୂଳସ୍ଥ ଶକ୍ତିପୀଠ ନାଭିକ୍ଷେତ୍ରରେ ଦେବୀ ବିରାଜ ଭୈରବୀ ସ୍ୱରୂପା ଶାକ୍ତ ସଂସ୍କୃତିର ଆଦ୍ୟପ୍ରକାଶ। ଦଶାଶ୍ୱମେଧ ଯଜ୍ଞର ବ୍ରହ୍ମାଗ୍ନିରୁ ସମ୍ଭୂତା

ଦେବୀ ବିରଜା ତତ୍କାଳୀନ ଓଡ଼ିଶାର ରାଷ୍ଟ୍ରଦେବୀ ରୂପେ ପୂଜା ପାଉଥିଲେ । R.P. Chand ତାଙ୍କର Memoires of Archaelogical Survey of India, Vol No.-44ରେ ପ୍ରକାଶ କରନ୍ତି । "ଓଡ଼ିଶା ସ୍ଥାପତ୍ୟ ଭାସ୍କର୍ଯ୍ୟରେ ବିରଜା ମୂର୍ତ୍ତି ଗୁପ୍ତଯୁଗ ପୂର୍ବରୁ କଳ୍ପିତ ସର୍ବପ୍ରାଚୀନ । R.L. Mitra-Antiquities of Orissa, Vol-II ରେ ଦର୍ଶାଇଛନ୍ତି- ବିରଜା ହେଉଛନ୍ତି ଦ୍ୱିଭୁଜା ଦେବୀଙ୍କର ଏକକ ଓ ଅନନ୍ୟ ନିଦର୍ଶନ । ବିରଜାଠାରେ ଦଶହରା ମହାଷ୍ଟମୀରେ ଛାଗବଳୀ ଏବଂ ମହାନବମୀରେ ମଇଁଷିବଳି ମା'ଙ୍କୁ ଅର୍ପଣ କରାଯାଏ । ବିରଜା ପୀଠର ଅଶ୍ୱ ଆହୁତି, ଛାଗବଳି ଓ ମଇଁଷିବଳି ଭଳି ପଶୁବଳି ଓଡ଼ିଶା ଭିତରେ ପ୍ରବେଶ କରିଥିବାର ଲକ୍ଷ୍ୟ କରାଯାଏ । ଏପରିକି ଓଡ଼ିଶାର କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର, ବୌଦ୍ଧ, ଫୁଲବାଣୀ, ସମ୍ବଲପୁର ଅଞ୍ଚଳରେ କନ୍ଧମାନେ ମେରିଆବଳି ଦେଉଥିଲେ । ଇଂରେଜ ଶାସକ ଲର୍ଡ଼ ଉଇଲିୟମ ବେଣ୍ଟିକଙ୍କ ସମୟରେ ୧୮୨୯ ଖ୍ରୀ.ଅ.ରେ ଏ ନିଷ୍ଠୁର ପ୍ରଥାକୁ ସମାଜରୁ ରୋକିବା ପାଇଁ କଡ଼ାକଡ଼ି ଭାବରେ ନିଷିଦ୍ଧ ଆଦେଶ ଜାରି କରିଥିଲେ । ସେହି ସମୟଠାରୁ ଏ କୁତ୍ସିତ ବଳିପ୍ରଥା ଓଡ଼ିଶାରୁ କ୍ରମଶଃ ଲୋପ ପାଇଆସୁଥିବାର ଜଣାଯାଏ ।

ଉଡ୍ର, କଳିଙ୍ଗ, କଙ୍ଗୋଦ, କୋଶଳ ଦେଶ ସୀମା ଚତୁଃକ୍ରୋଟସ୍ଥ ମଧ୍ୟରେ ସାଂପ୍ରତିକ ବିଭଙ୍ଗ ନୟାଗଡ଼ ଆଦିବାସୀ ଓ ଉଡ୍ର ସଂପ୍ରଦାୟର ଏକ ମିଶ୍ରିତ ଅଞ୍ଚଳ । କୋଶଳ ଦେଶର ଧର୍ମଚେତନା ଅର୍ଥାତ୍ ପଶ୍ଚିମ ଓଡ଼ିଶା ଜନଜାତିର ସଂସ୍କୃତି ସହିତ ପଶ୍ଚିମ ନୟାଗଡ଼ର ଚଳଣି ପ୍ରାୟତଃ ସଂପର୍କିତ । ଦଶପଲ୍ଲା-କନ୍ଧମାଳ, ବାଣୀଗୋଛା, ବାଇଶିପଲ୍ଲୀ, ନୂଆଗାଁ-ପଞ୍ଚପାଣ୍ଡବ, ହାତୀମୁଣ୍ଡା, ଗୁମିମାଳ, ରତାଦେଇ ପାର୍ବତ୍ୟାଞ୍ଚଳ, ନୟାଗଡ଼-ଶୂଳିଆ, ରାଜଗିରୀ, ଗୋଛା, ନେପାଳ ପାର୍ବତ୍ୟାଞ୍ଚଳ, ଖଣ୍ଡପଡ଼ା-ଧାନଚାଙ୍ଗଡ଼ା, ରଣପୁର- ଶଙ୍ଖଯୋଡ଼ି, ମଣିନାଗ, ଶୁକରମଲ୍ଲ ପାର୍ବତ୍ୟାଞ୍ଚଳ ଜିଲ୍ଲାର ସର୍ବାଧିକ ଅଞ୍ଚଳକୁ ବ୍ୟାପି ରହିଛି । ଏହାର ପାର୍ବତ୍ୟାଞ୍ଚଳରେ ବହୁଳ ଆଦିବାସୀ ଜନଜାତିର ବସତି ଦେଖାଯିବା ବେଳେ ଏହାର ସଂକୀର୍ଣ୍ଣ ସମତଳ ଅଞ୍ଚଳରେ ଅର୍ଥାତ୍, କୁଆଁରିଆ, ଡାହୁକା ଓ କୁସୁମୀ ନଦୀ ତଳ ଶଯ୍ୟାରେ କୃଷକ ସଂପ୍ରଦାୟର ବିଭିନ୍ନ ଜାତିର ଲୋକ ବାସକରନ୍ତି । ଆଜିର ନୟାଗଡ଼ ଜିଲ୍ଲା ଏହା ପୂର୍ବରୁ ରଣପୁର ରାଜା, ନୟାଗଡ଼ ରାଜା, ଖଣ୍ଡପଡ଼ା ରାଜା, ଦଶପଲ୍ଲା ରାଜାଙ୍କର ରାଜତନ୍ତ୍ର ନୀତିରେ ଶାସନ ଚାଲିଥିଲା । ଏହି ଆରଣ୍ୟକ ପୃଷ୍ଠଭୂମିରେ ଗଡ଼େ ଗଡ଼େ, ଗ୍ରାମେ ଗ୍ରାମେ, ପ୍ରାନ୍ତେ ପ୍ରାନ୍ତେ କେଉଁଠି କୋଠି ମଧ୍ୟରେ, ମନ୍ଦିର ବେଢ଼ାରେ ମୁକ୍ତ ଆକାଶ ତଳେ, ବୃକ୍ଷ ମୂଳରେ ଠାକୁରାଣୀ ପୂଜା ପାଉଛନ୍ତି । ନୟାଗଡ଼ରେ ଦ୍ୱାଦଶ ଅଧେ ସ୍ୱୟଂ ଆବିର୍ଭୂତ ଫୁଟାଲିଙ୍ଗ ଶୈବ ପୀଠ ଥିଲାବେଳେ ପ୍ରାୟତଃ ଗ୍ରାମମାନଙ୍କରେ ସ୍ଥାପିତ ଶିବ ମନ୍ଦିର ଦେଖାଯାଏ । ଶକ୍ତି ଓ ଶିବ ଉଭୟେ ସଂଯୋଜିତ

ଏକାକାର ଏକେଶ୍ୱର। ଶିବମନ୍ଦିର ହିଁ ଶକ୍ତିପୀଠ। ଏତଦ୍ ସତ୍ତ୍ୱେ ମଙ୍ଗଳା ପୀଠ, କାଳୀପୀଠ, ଦୁର୍ଗାପୀଠ, ଆଦିବାସୀ ଗ୍ରାମମାନଙ୍କରେ ବିଭିନ୍ନ ନାମରେ ଆଦିବାସୀ ଠାକୁରାଣୀ ପୂଜା ପାଉଥିବାର ଦୃଷ୍ଟିପଥକୁ ଆସେ। ଏଠାକାର ପ୍ରସିଦ୍ଧ ଦେବୀପୀଠମାନଙ୍କରେ ନିର୍ଦ୍ଦିଷ୍ଟ ପର୍ବଦିନରେ ଅଞ୍ଚଳର ଜନସମାବେଶ ମଧ୍ୟରେ ଯାତ୍ରା ଉତ୍ସବ ପାଳନ କରାଯାଇଥାଏ। ଚାରିଗଡ଼ର ଇଷ୍ଟଦେବୀ ନୟାଗଡ଼ ରାଜବଂଶର ବାଉରୀ ଠାକୁରାଣୀ, ଖଣ୍ଡପଡ଼ା ଗଡ଼ ରାଜବଂଶର ବାଉରୀ ଠାକୁରାଣୀ, ରଣପୁର ରାଜବଂଶର ଠାକୁରାଣୀ ମଣିନାଗେଶ୍ୱରୀ। ଦଶପଲ୍ଲା ରାଜବଂଶ ଠାକୁରାଣୀ ନାଇକାଣୁଣି। ନୟାଗଡ଼ ଦେବୀ ପୀଠମାନଙ୍କୁ ତର୍ଜମା କଲେ ଏଠାକାର ଦେବୀ ପୂଜା ପରମ୍ପରା ସର୍ବପ୍ରାଚୀନ।

ହିନ୍ଦୁ ଦର୍ଶନରେ ପରମ ବ୍ରହ୍ମ ହେଉଛନ୍ତି କେବଳ ପରିପୂର୍ଣ୍ଣ ଓ ପରିବ୍ୟାପ୍ତ ଚେତନା ଓ ଶକ୍ତି। ସେ ନିରାକାର ନିର୍ଗୁଣ ଶୂନ୍ୟପୁରୁଷ ତାଙ୍କର ପ୍ରକାଶ ନଥାଏ। ଏହି ଶୂନ୍ୟତା ପୂର୍ଣ୍ଣତାର ସ୍ଥିତି। ଶୂନ୍ୟପୁରୁଷ ପରମବ୍ରହ୍ମ ପ୍ରକାଶିତ ହେବାକୁ ଇଚ୍ଛାକରି ନିଜ ଭିତରୁ ପ୍ରକୃତିକୁ ସୃଷ୍ଟିକଲେ ବା ନିଜେ ପ୍ରକୃତି ହୋଇଗଲେ ଯେ ଆଦିମାତା-ଶକ୍ତି ସ୍ୱରୂପିଣୀ ସୌନ୍ଦର୍ଯ୍ୟମୟ ବିଳାସର ପ୍ରତୀକ। ପ୍ରକୃତି ପୁରୁଷ ମିଳନରେ ପ୍ରକୃତି କ୍ରିୟାଶୀଳ। ଶକ୍ତି ସହିତ ସୌନ୍ଦର୍ଯ୍ୟ ଲୀଳାବିଳାସ ପାଇଁ ପ୍ରକୃତି ଚରଣରେ ପୁରୁଷର ଆତ୍ମସମର୍ପଣ। ଏଇ ଚେତନା ଯେବେ ସୁପ୍ତ- ସେତେବେଳେ ସେ ଜଡ଼- ଯେତେବେଳେ ଜାଗ୍ରତ ହେଉଛି ସେତେବେଳେ ସେ କ୍ରିୟାଶୀଳ ପ୍ରକୃତିମା ଜନ୍ମ ଦେଉଛି- ପାଳନ କରୁଛି- ବଢ଼ାଉଛି- ବିନାଶ ବି କରୁଛି। ସୃଷ୍ଟି ଓ ବିନାଶ ଭିତରେ ସେ ନିଜକୁ ପ୍ରକଟ କରିଚାଲିଛନ୍ତି। ସେ ଆଦିମାତା ପରଂବ୍ରହ୍ମଙ୍କର ପ୍ରକାଶିକା। ପ୍ରକୃତି-ସୃଷ୍ଟିର ଆଧାର। ଏଣୁ ଶକ୍ତି ଉପାସନା ସୃଷ୍ଟିର ପ୍ରାରମ୍ଭ ଉପାସନା।

ପୁରୁଣା କନ୍ଧ ବସତିରେ ପଚାରିଲେ ସରଳ ନିଷ୍ପାପ କନ୍ଧଟିଏ ହଠାତ୍ କହିଉଠେ "ମା' ରକ୍ତ ପିଣ୍ଡୁଳାରେ ଆମକୁ ଜନ୍ମ ଦେଇଛି। ଫୁଲ ଫଳ ଶସ୍ୟ ଫଳାଇ ଆମ ମୁହଁରେ ଆହାର ଖଞ୍ଜା କରିଛି। ମାଟି ଆମର ମା' ତାକୁ ପୂଜା କରିବାନି ତା ତୁଣ୍ଡରେ ରକ୍ତ ଟୋପାଏ ଦବାନାହିଁ, ମା'ର ଦ୍ରୋହିଆ ହବା। ତା'ର ପରବ ଦିନରେ ତାକୁ କୁକୁଡ଼ା ବଳି ଦଉଛୁ। ବୋଦାବଳି ଦଉଛୁ। ଆମକୁ ସୁଖରେ ରଖିଛି। ଆମ ସୁଖ ଦୁଃଖରେ ଭାଗିଅଛି। ମାଟିରେ ଜନ୍ମ ହେଇଛୁ। ମାଟି ମା' ବାପଟା ଆକାଶ। ମା' ବଳିଖାଏ। ବାପା ନାଇଁ ଖାଏ। କେତେ ଇନ୍ଦ୍ର ଗଲେଣି ମା' ଶଚିଦେଇ, ସେମିତି ନବଯୁବା ମାଟି ମା' ସେପରି ଉଜ୍ଜ୍ୱଳା ପୂଜା ପାଉଛି। ପ୍ରକୃତିର ସନ୍ତାନ ଆଦିବାସୀ ମାଟି ମା'ର ପୂଜା କରେ। ଗ୍ରାମର ମଧ୍ୟସ୍ଥଳରେ ପଥର ସ୍ଥାପନା ଠାକୁରାଣୀ ହେଉ ବା କାଠ ଖମ୍ବର ସ୍ଥାପିତ ଠାକୁରାଣୀ ପୂଜା ପାଆନ୍ତି। ଆଦିବାସୀ ଡଙ୍ଗରରୁ ଯେଉଁ ଶସ୍ୟ ଉତ୍ପନ୍ନ କରେ ମା'କୁ ପ୍ରଥମେ ସମର୍ପଣ କରିଥାଏ। ହାଡ଼ଫୁଟି ହଇଜା

ଭଳି ଭୟଙ୍କର ରୋଗରୁ ରକ୍ଷା ପାଇବା ପାଇଁ ମା' ପାଖରେ କୁକୁଡ଼ା ବଳିଦିଏ।

ନୟାଗଡ଼ର ଆଦିବାସୀ ଅଞ୍ଚଳଠାରୁ ସାଧାରଣ ଲୋକ ଚଳଣି ମଧ୍ୟରେ ଗ୍ରାମର କେତେକ ଠାକୁରାଣୀଙ୍କ ପାଖରେ ରକ୍ତ ବଳି ଦିଆଯାଉଥିଲା। ଏ ରକ୍ତବଳି ଠାକୁରାଣୀଙ୍କ ମାନ୍ୟତା ଅନୁସାରେ କେଉଁଠି କୁକୁଡ଼ା ରକ୍ତ, ଛାଗ ରକ୍ତ, ପୋଢ଼ ରକ୍ତ କେଉଁଠି ନରରକ୍ତ ମଧ୍ୟ ପୂଜା ଦିଆଯାଏ ସବୁ ଠାକୁରାଣୀ ରକ୍ତ ଇଚ୍ଛନ୍ତି ନାହିଁ। ଚଣ୍ଡୀ, ଚାମୁଣ୍ଡା, ଦୁର୍ଗା, କାଳୀ, ଛିନ୍ନମସ୍ତା, ଭୈରବୀ, ତାରା, କାଳରାତ୍ରି ଏବଂ ଆଦିବାସୀ ଠାକୁରାଣୀ ଆମିଷ ଆହାରି ଗୌରୀ, ଇନ୍ଦ୍ରାଣୀ, ରୁଦ୍ରାଣୀ, ନାରାୟଣୀ, ଲକ୍ଷ୍ମୀ, ସରସ୍ୱତୀ ଆଦି ସାକାହାରୀ। ସାକାହାରୀ ଦେବୀ ପୀଠରେ ଫଳ, ମୂଳ, ଶସ୍ୟକଣାର କ୍ଷୀରୀ, ମୁଗୁରୀ, ଖେଚୁଡ଼ି ଲାଗି କରାଯାଏ। ଆମିଷ ଆହାରୀ ଦେବୀଙ୍କଠାରେ ମଣିଷବଳି, ପଶୁବଳି, ପକ୍ଷୀବଳି, ମାଛବଳି ଓ ପ୍ରତୀକ ଆକାର ବଳି ଦିଆଯାଇଥାଏ। ପ୍ରତୀକଧର୍ମୀ ବଳି- ଘରେ ଘରେ ଦଶହରା ପର୍ବରେ ଜହ୍ନି, ଭେଣ୍ଡି, ପାଣିକଖାରୁ, ଲାଉ ଇତ୍ୟାଦି ଫଳକୁ ଅଶ୍ୱ ମନାସି ଠାକୁରାଣୀଙ୍କ ପୂଜା ଆସ୍ଥାନରେ ଛେଦ ପକା ଯାଇଥାଏ। ଏହା ରକ୍ତବଳିର କାମ ତୁଲାଇଥାଏ। ନୟାଗଡ଼ର ଛେଦ୍ ବଳିପ୍ରଥାକୁ ବିଚାରକୁ ନେଲାବେଳେ କେଶରୀ ବଂଶର ମୂଳରାଜ୍ୟ କୋଶଳ-ମଧ୍ୟପ୍ରଦେଶର ଛତିଶଗଡ଼, ବିଳାସପୁର, ଓଡ଼ିଶାର ବଲାଙ୍ଗୀର, କୋରାପୁଟ, କଳାହାଣ୍ଡି, ସମ୍ବଲପୁର, ବୌଦ୍ଧ, ସୋନପୁର, ଫୁଲବାଣୀକୁ ନେଇ ବ୍ୟାପ୍ତ ଥିଲା। ପୁନଶ୍ଚ କେଶରୀ ବଂଶର ଶାସନକାଳରେ ବୈତରଣୀ ନଦୀକୂଳ ନାଭିକ୍ଷେତ୍ର ବିରଜା ପୀଠରେ ଅଶ୍ୱମେଧ ଯଜ୍ଞ କରାଯାଉଥିଲା- ଯଜ୍ଞରେ ଅଶ୍ୱକୁ ଆହୁତି ଦିଆଯାଉଥିଲା। ମା' ବିରଜା ଦ୍ୱିଭୁଜା ଦୁର୍ଗା ଠାକୁରାଣୀ ତତ୍କାଳୀନ ଓଡ଼ିଶାର ରାଷ୍ଟ୍ରଦେବୀ ରୂପେ ପୂଜିତା। ପାର୍ବଣ ସମୟରେ ମା' ବିରଜା ପୀଠରେ ମହାଷ୍ଟମୀ ଓ ମହାନବମୀରେ ଛାଗବଳି, ପୋଢ଼ବଳି ପ୍ରଥା ନୟାଗଡ଼ର ପୂର୍ବ ସୀମାନ୍ତ ରାଜ୍ୟ ବାଙ୍କି ଚର୍ଚ୍ଚିକା ଓ ବାଣପୁର ଭଗବତୀଙ୍କ ପୀଠ ଦେଇ ଏବଂ ପଶ୍ଚିମରେ କୋଶଳ ରାଜ୍ୟ ମହାଶକ୍ତି ପୀଠ ଯଥା- ସମଲେଶ୍ୱରୀ ଭୈରବୀ ଗୁଡ଼ି, ମାଣିକେଶ୍ୱରୀ, ପାଟଣେଶ୍ୱରୀ, ଲଙ୍କେଶ୍ୱରୀ ଠାରେ ଦିଆଯାଉଥିବା ବଳି ପୂଜା ଓ ଆଦିବାସୀ ଅଞ୍ଚଳର ମେରିଆବଳି ପ୍ରଥା ନୟାଗଡ଼କୁ ପ୍ରଭାବିତ କରିଥିବାର ଅନୁଭବ ହୁଏ। ପୁନଶ୍ଚ ନୟାଗଡ଼ ରାଜବଂଶ ମଧ୍ୟପ୍ରଦେଶର ବଘେଲ ବଂଶଜ। ତ୍ରୟୋଦଶ ଶତକ ମଧ୍ୟ ଭାଗରୁ ଏ ରାଜବଂଶ ଏଯାବତ୍ ନୟାଗଡ଼ରେ ଶାସନ କରି ଆସୁଥିଲେ। ଗଡ଼ର ଇଷ୍ଟଦେବୀ ବାଉରୀ ଠାକୁରାଣୀଙ୍କଠାରେ ନରବଳି ଦିଆଯିବାର ଜନଶ୍ରୁତି ଏଯାଏଁ ଶୁଣାଯାଏ। ନର ରକ୍ତଭିଜା ସଳିତାରେ ଦେବୀଙ୍କ ଆଳତି କରାଯାଏ। ବାଉରୀ ଠାକୁରାଣୀଙ୍କୁ ରକ୍ତ ଖଞ୍ଜା କରିବା ପାଇଁ ରାଜା ଶଙ୍ଖକଟା ବା ତଣ୍ଟିକଟା ଗୁପ୍ତ ନିଯୁକ୍ତି କରିଥିଲେ। ରାଜା ସେମାନଙ୍କ ପାଇଁ ନିଷ୍କର ରକ୍ତପଟା ଜାଗିରି ଖଞ୍ଜା

ରଖିଥିଲେ। ଏତଦ୍‌ବ୍ୟତୀତ ରାଜ୍ୟ ପ୍ରସିଦ୍ଧ ଦେବୀ ପୀଠମାନଙ୍କରେ ପୋଢ଼ବଳି ଦିଆଯାଉଥିଲା। ଅସ୍ୱୀକାର କରିହେବ ନାହିଁ। ଏ ଜନଶ୍ରୁତି ଉତ୍ତରପୁରୁଷ କ୍ରମେ ଅଧୁନା ଶୁଣାଯାଏ। ତୁଣ୍ଡ ବାଇଦ ସହସ୍ରକୋଶ। ନିଆଁ ଥିଲେ ଧୂଆଁ ଉଠେ। ଘଟଣା ଘଟିଲେ ଘଟଣା ଆଗକୁ ଆଗକୁ ପ୍ରବାହିତ ହୋଇ ଜିଇଁ ରହେ। ସମାଜରୁ ଜନଶ୍ରୁତି ହଜିଗଲେ ହେଁ ତାହା ଇତିହାସ ପୃଷ୍ଠାରୁ ବାହାରି ଆସେ।

ନୟାଗଡ଼ ବଳିପୀଠ ଉନ୍ମୋଚନ କଲାବେଳେ ଆଦିବାସୀ ସଂସ୍କୃତିକୁ ଆଗକୁ ଆଣିବାକୁ ହୁଏ। ଆଦିବାସୀ ପ୍ରକୃତିର ଉପାସକ। ପ୍ରକୃତିକୁ ଭିନ୍ନ ଭିନ୍ନ ନାମ ଦେଇ ପାଷାଣ ଓ କାଠ ସ୍ତମ୍ଭରେ କିଏ ଗ୍ରାମ ମଧ୍ୟଭାଗରେ ପୂଜା ପାଆନ୍ତି ତ କିଏ ଗ୍ରାମ ବାହାରେ ନିଛାଟିଆ ଜଙ୍ଗଲ ମଧ୍ୟରେ ପୂଜା ପାଇଥାନ୍ତି। ଆଦିବାସୀ ବସ୍ତିରେ ସ୍ଥାପିତ ଠାକୁରାଣୀମାନେ- ତୁରୁକି ପେନୁ, ଗୁରୁପେନୁ ସୁନାଦେଇ, ହୀରାଦେଇ, ମାଟେଣୀ, ଭୂଇଁଆଣୀ, ପିତାବଳି, ହାଡ଼ବାଇ, ବାସେଲୀ, ବାନ୍ଦେରୀ, ବୁଢ଼ାବୁଢ଼ୀ, ବାଙ୍କମୁଣ୍ଡା, ପଟ୍ଟେଇ, ଦରଶୁଣୀ, ବାଲେରୀ, ଝାଡ଼େଶ୍ୱରୀ, ନାଇକାଶୁଣି, ଧୋବଣୀ, ଡୁମୁଣୀ, ଭୂତି, ସୁଲୁକୁପି, କୁକୁଟାଶୁଣି, ବଡ଼ରାଉଳ, ବାଗ୍‌ଦେବୀ, ବ୍ୟାଘ୍ରଶୁଣୀ, ହାତୀଗଣ୍ଡ, ଖମ୍ଭେଶରୀ। ପ୍ରକୃତି ସନ୍ତୁଷ୍ଟ ହେଲେ ଭଲ ଫସଲ ଦବ, ବଣ ମୂଳକରେ ଫୁଲ ଫଳ ଭରିଦେବ- ବସନ୍ତ, ମହାମାରୀ ଦାଉରୁ ରକ୍ଷାକରିବ। ଏଇ ବିଶ୍ୱାସରେ ଆଦିବାସୀ ତା' ଠାକୁରାଣୀ ପୀଠରେ ବଳି ଦେଇଥାଏ ଏବଂ ଆଞ୍ଚଳିକ କ୍ଷେତ୍ରରେ ମେରିଆ ଖାଇ ଦିଅଁ ପାଖରେ ନରବଳି ପକାଯାଏ। ମଣିଷ ବଳିଦେଇ ଠାକୁରାଣୀ ପାଖରେ ନିଜକୁ ସଅଁପି ଦିଏ। କିନ୍ତୁ ଇତିହାସ କହେ, ଆଦିବାସୀ ନିଜକୁ ଦ୍ରାବିଡ଼ ବଂଶଜ ଦ୍ରାବିଡ଼ମାନେ ବି ପ୍ରକୃତିର ଉପାସକ ଥିଲେ। ସେମାନେ ବିଶାଳ ବୃକ୍ଷ, ସର୍ପ, କେତେକ ପଶୁ, ଶସ୍ୟଦେବୀ ଶାକମ୍ଭରୀ ଓ ଶିବଙ୍କୁ ପୂଜା କରୁଥିଲେ। ପଶୁବଳି ପୂଜା ଦ୍ରାବିଡ଼ ସଂସ୍କୃତିରେ ଥିବାର ଜଣାପଡ଼େନି। ବଳିପୂଜା ବ୍ରାହ୍ମଣ ଧର୍ମର ପୂଜାପଣ୍ଡାମାନେ ଧର୍ମକାର୍ଯ୍ୟରେ ଯୋଡ଼ିଥିବାର ଜଣାପଡ଼େ। ଏହାର ବିରୋଧ କରି ଖ୍ରୀ.ପୂ. ଷଷ୍ଠ ଶତକରେ ଧର୍ମ ଆନ୍ଦୋଳନ ଦେଖାଦେଇଥିଲା। ଫଳତଃ ବୌଦ୍ଧ ଧର୍ମ ଓ ଜୈନ ଧର୍ମ ଅଭ୍ୟୁଦୟ ହେଲା। ଖଣ୍ଡପଡ଼ା ବ୍ଲକ କୋଶଳା ପଞ୍ଚାୟତ ଅନ୍ତର୍ଗତ ଅଁଳାପାଟଠାରେ ଯୋଗୀ ଯୋଗିଆଣୀ ବୌଦ୍ଧ କ୍ଷେତ୍ର ରହିଛି। ଅହିଂସା ପରମ ଧର୍ମ- ଜୀବ ପ୍ରତି ଦୟାକର ଏ ଧର୍ମ ନୀତି ସମାଜରେ ବୌଦ୍ଧ ଧର୍ମର ପ୍ରଚାର ଥିଲା। ବୌଦ୍ଧ ଧର୍ମର ପ୍ରଭାବ ନୟାଗଡ଼ରେ ପଡୁଥିଲେ ହେଁ ଏହାର ସେତେଟା ପ୍ରଭାବ ସମାଜ ଉପରେ ପଡ଼ିନଥିଲା। ଏ ଅଞ୍ଚଳରେ ସେ କାଳରୁ ଏକାଳ ଯାଏ ସମାଜରେ ପଶୁବଳି ବଳବତ୍ତର ରହିଥିଲା।

ନୟାଗଡ଼ ଆଦିବାସୀ ଅଞ୍ଚଳରେ ମେରିଆ ଦିଅଁ, ମାଟେଣୀ ଦେବୀ, ହାତୀଗଣ୍ଡ ଠାକୁରାଣୀ, ପେନୁ ପାଖରେ ନରବଳି ଦିଆଯାଉଥିବାର ଲୋକକଥା ରହିଛି।

ମେରିଆ ଦେବତା ମଣିଷ ବଳିଖାଏ ନୟାଗଡ଼ ପାଣିପଇଲା ନିକଟସ୍ଥ ରାଜଗିରି ପର୍ବତର ଆରଣ୍ୟକ ମାଳ ଅଞ୍ଚଳରେ ବହୁଳ ଆଦିବାସୀ ଦେଖାଯାଆନ୍ତି। ବଣ ମଧ୍ୟରେ ତାଙ୍କର ମେରିଆ ଦେବତା ପୂଜା ପାଆନ୍ତି। ଏଠାକାର କନ୍ଧମାନେ ମେରିଆ ଦେବତାକୁ ନରବଳି ଦେଉଥିଲେ। ଖଣ୍ଡପଡ଼ା ଓଳାଶ ବୁଢ଼ୀ ଠାକୁରାଣୀଙ୍କ ଠାରେ ଖଣ୍ଡପଡ଼ା ରାଜାଙ୍କର ତଣ୍ଟିକଟାମାନେ ନରବଳି ଦେଉଥିଲେ। ଦଶପଲ୍ଲା ଗୁମିମାଳ ମଧ୍ୟରେ ହାତୀଗଣ୍ଡ ଠାକୁରାଣୀ ନରବଳି ଖାଉଥିବାର ଶୁଣାଯାଏ। ନୟାଗଡ଼ ଧୁସୁମା ଖମ୍ଭେଶରୀ ପୀଠରେ ନରରକ୍ତ ପୂଜା ହେଉଥିଲା। ମାଟେଣୀ ଦିଅଁ ଟୋକୀ ବଳି ଖାଉଥିଲେ। ଏହାକୁ 'ଟୋକୀମରା' ପର୍ବ କୁହାଯାଏ। ଏହି ପର୍ବ ଚୈତ୍ର ବୈଶାଖ ମାସରେ ହୋଇଥାଏ। ବହୁ ଆଗରୁ ଗ୍ରାମବାସୀ ଦୂର ଅଞ୍ଚଳରୁ ବାଳୁତ ଝିଅଟାଏ ଆଣି ଗ୍ରାମରେ ପାଳିପୋଷି ବଢ଼େଇଥାନ୍ତି। ଝିଅଟି ଘରଯୋଗ୍ୟା ହେଲେ ବଳି ପାଇଁ ଉପଯୁକ୍ତ ହୋଇଥାଏ। ଏଇ ଝିଅ ଗାଁ'ର କୋଠଝିଅ। ସମସ୍ତଙ୍କ ଘରୁ ସେ ଆଦର ପାଏ। ବଳି ପରବରେ ଘରେ ଘରେ ପିଠାପଣା ହୁଏ। ସେଦିନ ଝିଅ ତେଲ ହଳଦୀ ଲଗାଇ ଦେହକୁ ମାଜିମୁଜି ସ୍ନାନ କରେ। ନବବସ୍ତ୍ର ପରିଧାନ କରେ। ସେତ ପିଲାଟିବେଳୁ ସ୍ୱାଧୀନ ଭାବରେ ଗାଁ'ରେ ବୁଲାଚଲା କରୁଥାଏନା। କିଛି ତାକୁ ଅଲଗା ବୋଧହୁଏନି। ଘରେ ଘରେ ବୁଲି ପିଠାପଣା ଖାଏ। ପୂଜାବେଳ ହେଲେ ତାକୁ ମାଟେଣୀ ପୀଠକୁ ନିଆଯାଏ। ତାକୁ ଲଣ୍ଡା କରାଯାଏ। ତା' ବେକରେ ମନ୍ଦାର ମାଳ ଦିଆଯାଏ। କନ୍ଧଜାନୀ ଠାକୁରାଣୀ ପାଖରେ ମୁଆଁ ଭୋଗକରେ। ସେହି କୁଆଁରୀ ଟୋକୀକୁ ପୁଞ୍ଜି ଖୁଆଏ। ମାଦଳ, ଢୋଲ, ଚାଙ୍ଗୁ, ମହୁରୀ ଶବ୍ଦରେ ଦେବୀପୀଠ ଉଚ୍ଛୁଳିଉଠେ। ପ୍ରଥମେ ଜାନୀ ଟାଙ୍ଗୀରେ ଚୋଟେ ମାରେ। ତା'ପରେ ଯନ୍ତ୍ରଣାଦଗ୍ଧ କୁଆଁରୀ ଟୋକୀ ବିକଳରେ ଯେଉଁଆଡ଼େ ପାଏ ସେଆଡ଼େ ଦୌଡ଼େ। ଅନ୍ୟମାନେ ଫାର୍ଶାରେ ଗୋଡ଼ାଇ ଗୋଡ଼ାଇ ହାଣିଥାନ୍ତି। ଏ ରକ୍ତ ମାଂସ ଯେଉଁଆଡ଼େ ପଡ଼େ ସେଇ ସେଇ ଜାଗାରେ ମାଟେଣୀ ଠାକୁରାଣୀର କରୁଣା ଓଜାଡ଼ି ହୋଇଗଲା। ଏ ଅନ୍ଧବିଶ୍ୱାସ ଆଦିବାସୀର। ମାଟି ମା' ଆସନ୍ତାରେ ଫୁଲଫଳ ଶସ୍ୟ ଭର୍ତ୍ତି କରିଦେବ ଆମକୁ। ବର୍ତ୍ତମାନ ଏ ଅନ୍ଧବିଶ୍ୱାସ ଆଦିବାସୀ ସମାଜରୁ ଦୂର ହୋଇଥିଲେ ହେଁ ଠାକୁରାଣୀର ତୃପ୍ତି ପାଇଁ ଗର୍ଭିଣୀ ଛେଳି ବଳି ଦିଆଯାଉଛି।

<u>ମଇଁଷି ବଳି</u> – ନୟାଗଡ଼ ରାଜ୍ୟର ଆମିଷ ଆହାରୀ ଦେବୀପୀଠମାନଙ୍କରେ ମଇଁଷି, ଛେଳି, ବାରାହୀ, ଘୁଷୁରୀ ଆଦି ପଶୁବଳି ଦିଆଯାଏ। ବାନ୍ଦେରୀ ଠାକୁରାଣୀ ପୀଠରେ ମାନସିକ ଯାଚଞ୍ଚା ମଇଁଷି ଅଥବା ବରାହବଳି ଦିଆଯାଇଥାଏ। ବାଇଶିପଲ୍ଲୀ ଅଞ୍ଚଳର ପ୍ରତ୍ୟକ୍ଷ ଦେବୀ ବଡ଼ରାଉଳ ଓ ପଟ୍ଟେଇ ଠାକୁରାଣୀ ପଣ୍ଡା ବଳି ଖାଏ। ଖଣ୍ଡପଡ଼ା ଠାରୁ କୋସକା ଆଡ଼କଟା ରାସ୍ତାରେ ୧୭କି.ମି. ଦୂରରେ ଅଁଳାପଟା କୁକୁଟାଶୁଣୀ ଦେବୀପୀଠ। ଜନଶ୍ରୁତିରେ ଭାରି ପ୍ରତ୍ୟକ୍ଷ ଠାକୁରାଣୀ। କୁକୁଟାଶୁଣୀ

ଖଣ୍ଡପଡ଼ା ରାଜାଙ୍କର ଯାଚଞ୍ଚା ଠାକୁରାଣୀ । ମା'ଙ୍କର ମହିମା ବନ୍ଧ୍ୟାନାରୀକୁ ମାତୃତ୍ୱ ଦେଇଥାଏ । ଏ ପୀଠରେ ଆଶ୍ୱିନ ସପ୍ତମୀରେ ମଇଁଷିବଳି ଦିଆଯାଉଥିଲା । ଏହାର ପୂର୍ବ ଦିଗରେ ପଡ଼ୋଶୀ ବାଙ୍କିଗଡ଼ ଦେବୀ ଚର୍ଚ୍ଚିକା ଓ ଭଟ୍ଟାରିକା ପୀଠରେ ସବୁ ଦଶହରା ପର୍ବରେ ମଧ୍ୟରାତ୍ରରେ ପଣ୍ଡାବଳି ଦିଆଯାଉଛି । କହିବାର କଥାକି- ବିରଜା, ଭଟ୍ଟାରିକା, ଚର୍ଚ୍ଚିକା, ଭଗବତୀଙ୍କର ପାର୍ବଣ ପ୍ରଭାବ ନୟାଗଡ଼ ଅଞ୍ଚଳରେ ପଡ଼ିଥିବାର ଲକ୍ଷ୍ୟ କରାଯାଏ ।

<u>ବୋଦା ବଳି -</u> ବୋଦାବଳି ଯାଚଞ୍ଚା ବଳି । ଆଦିବାସୀ ଗ୍ରାମେ ଗ୍ରାମେ ଠାକୁରାଣୀ ପୂଜା ପାଏ । ଠାକୁରାଣୀଙ୍କ ପୀଠରେ ଯଚଞ୍ଚା କୁକୁଡ଼ା ଓ ବୋଦାବଳି ପଡ଼ିଥାଏ । ଦଶପଲ୍ଲୀ ଗୋଠପାଳୁ ଅଞ୍ଚଳରେ ସମସ୍ତ କନ୍ଧବସ୍ତିର ଦିଅଁ ହେଉଛନ୍ତି ବାଗ୍‌ଦେବୀ । ବାଗ୍‌ଦେବୀଙ୍କ ଠାରେ ପୁଷ ପୂର୍ଣ୍ଣମୀରେ ମାନସିକ ବୋଦାବଳି ପଡ଼େ । ବାଇଶିପଲ୍ଲୀର କନ୍ଧମାନେ ବରମୂଳ ପାଦଦେଶରେ ବଡ଼ରାଉଳ ଠାକୁରାଣୀଙ୍କୁ ପୂଜା କରନ୍ତି । ବାଇଶିପଲ୍ଲୀ ଜଙ୍ଗଲରୁ ଜଗନ୍ନାଥଙ୍କର ରଥକାଠ କାଟିବା ପାଇଁ ଗଲାବେଳେ ପ୍ରଥମେ ବଡ଼ରାଉଳ ଠାକୁରାଣୀଙ୍କ ପୀଠରେ ବୋଦା ବଳି ଦିଆଯାଇଥାଏ । ଏ ଦୃଷ୍ଟାନ୍ତ ଦ୍ରାବିଡ଼ ସଂସ୍କୃତି ଉପରେ ଆର୍ଯ୍ୟ ସଂସ୍କୃତିର ପ୍ରଭାବ ନୁହେଁ କି ? ପକ୍ଷୀବଳି ଆଦିବାସୀ ସଂସ୍କୃତିର ଏକ ନିତିଦିନିଆ ପୂଜା । ଠାକୁରାଣୀ ସନ୍ତୁଷ୍ଟ ହେଲେ ଆଦିବାସୀକୁ ସବୁ ମିଳିଯାଏ । ଏଣୁ କ'ଣ ଟିକିଏ ଘଟିଗଲେ ଗଞ୍ଜାଟାଏ ଗ୍ରାମଦେବତୀ ପାଖରେ ଛେଦ ପକାଇଦିଏ । ବିଶ୍ୱାସ, ମା' ତୃପ୍ତ ହୋଇଗଲେ ଅଘଟଣ ଦୂରେଇଯାଏ । ବହୁକାଳ ତଳୁ ଆଦିବାସୀର ଏ ବିଶ୍ୱାସ, ଏ ବିଶ୍ୱାସକୁ ସହଜରେ ତା'ଠାରୁ ତୁଟେଇ ହୁଏନି ।

<u>**ନୟାଗଡ଼ ଜିଲ୍ଲାର ରାଜବଂଶୀୟ ଇଷ୍ଟଦେବୀ :**</u> ନୟାଗଡ଼ ଜିଲ୍ଲାର ରାଜବଂଶୀୟ ଇଷ୍ଟଦେବୀ ନିଜ ନିଜ ଗଡ଼ରେ ପୂଜା ପାଉଛନ୍ତି । ଦେବୀମାନେ ରାଜବଂଶର ରକ୍ଷାକବଚ ସଦୃଶ । ଏହି ଦେବୀମାନେ ହେଲେ- ନୟାଗଡ଼ ବାଉରୀ ଠାକୁରାଣୀ, ରଣପୁର ଗଡ଼ ମଣିନାଗେଶ୍ୱରୀ, ଖଣ୍ଡପଡ଼ାଗଡ଼ ବାଉରୀ ଠାକୁରାଣୀ, ଦଶପଲ୍ଲାର ନାଇକାଣୁଣୀ ଦେବୀମାନଙ୍କ ଠାରେ ରାଜାମାନେ ନରବଳି ଦେଉଥିଲେ । ଦେବୀଙ୍କ ଠାରେ ନରରକ୍ତ ଲାଗି ପାଇଁ ରାଜା ଶଙ୍ଖିକଟା ବା ତଣ୍ଟିକଟା ନିଯୁକ୍ତି କରିଥିଲେ । ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରୁ ଏ ଅଭ୍ୟାସ ଲାଗି ଆସିଥିଲା । ଏଣୁ ବଳିପ୍ରଥାଟା ରାଜଶାସନ ଅମଳରୁ ବଳବତ୍ତର ରହି ଆସୁଥିଲା । ନୟାଗଡ଼ ରାଜବଂଶର ପ୍ରଥମ ଗଡ଼ଦିଅଁ ଅନ୍ଧାରବାଉତି ଯେ କି ଗୁନାମାଟି ଗଡ଼ରେ ସ୍ଥାପିତା ।

<u>**ଗୁନାମାଟି ଅନ୍ଧାର ବାଉତୀ :**</u> ନୟାଗଡ଼ ରାଜବଂଶର ପ୍ରଥମ ଗଡ଼ ଗୁନାମାଟି । ଅନ୍ଧାର ବାଉତୀ ଗୁନାମାଟି ଗଡ଼ର ଗଡ଼ଦେବୀ । ଠାକୁରାଣୀଙ୍କୁ କନ୍ଧଜାନୀ ପୂଜା କରେ । ବାହାଡ଼ାଝୋଲା ହାଟ ଛକଠାରୁ ୫/୬କି.ମି. ଦୂରରେ କାପ୍ତାପଲ୍ଲୀ

ପଞ୍ଚାୟତଠାରୁ ପୁନଶ୍ଚ ଦକ୍ଷିଣ ପଶ୍ଚିମ ଗ୍ରାମରାସ୍ତାରେ ଯାଇ ଅଳ୍ପଦୂରରେ କେରସିଙ୍ଗ କନ୍ଧ ଗାଁ ଅତିକ୍ରମ କରି ପାହାଡ଼ି ରାସ୍ତାରେ କିଛିଦୂର ଯାଇ ଅଳ୍ପ ତୀଖ ପାହାଡ଼ ଉପରକୁ ଉଠିଗଲେ ଗୁନାମାଟିର ଅପ୍ରଶସ୍ତ କ୍ଷୁଦ୍ର ଆରଣ୍ୟକ ଥଳିରେ ପହଞ୍ଚିବାକୁ ହୁଏ। ଏହି ଉପତ୍ୟକା ଥଳିରେ ଫାମ୍ପୁଣୀ ଓ ଗୁନାମାଟି ଦୁଇଟି ପାଖାପାଖି କନ୍ଧ ଗାଁ। ଗୁନାମାଟି ଗାଁ'ର ପଶ୍ଚିମକୁ ଅଳ୍ପଦୂରରେ ରତାଦେଇ ପର୍ବତର ପାଦଦେଶରେ ନୟାଗଡ଼ ରାଜବଂଶର ପ୍ରଥମ ଗଡ଼ର ଭଗ୍ନାବଶେଷର ଅସ୍ପଷ୍ଟ ନମୁନା ଦେଖିବାକୁ ମିଳେ। ଗୁନାମାଟି ଚଉହଦିଟି ରତାଦେଇ ପର୍ବତର ପାହାଡ଼ ଘେର ଯଥା- ପୂର୍ବରେ କମିସରି ପାହାଡ଼, ପୂର୍ବରୁ ଦକ୍ଷିଣରେ ବେତଖୋଲ ପାହାଡ଼, ଦକ୍ଷିଣରେ ଭାଲୁଖୋଲ ପାହାଡ଼- ପଶ୍ଚିମରୁ ଉତ୍ତରକୁ ରତାଦେଇ ମୁଖ୍ୟ ପର୍ବତ। ଗୁନାମାଟିର ପ୍ରାକୃତିକ ଆୟତନ ମଧ୍ୟରେ ଠିଆହେଲେ ଏହା ଏକ ପ୍ରାଚୀନ ସ୍ଥାନ ପରି ଅନୁଭବକୁ ଆସେ। କେଉଁ ମାନଧାତା ଅମଳର ବୃହତ୍‌କାୟ ବୃକ୍ଷରାଜିରେ ପରିପୂର୍ଣ୍ଣ ପ୍ରାଚୀନ ଆରଣ୍ୟକ ପରିବେଶ ଚିତ୍ତ ହରଣ କରିନିଏ। ପ୍ରକୃତି କୋଳରେ ପାଳିତ ଅମୃତ ସନ୍ତାନ ଆଦିବାସୀଙ୍କୁ ଦେଖି ସାଂପ୍ରତିକ ଜୀବନଧାରାରେ ଜଡ଼ିତ ଏଇ ମଣିଷଟି ତାଙ୍କୁ ତାରିଫ ନକରି ରହିପାରେନି। ଗୁନାମାଟିର ରହସ୍ୟ ପଚାରିଲେ- ଆଦିବାସୀଟିଏ ଗଦ୍‌ଗଦ ଚିତ୍ତରେ ତା'ର ଭଗ୍ନ ରାଜବାଟୀର ସନ୍ଦେଶ ଦେବା ସଙ୍ଗେ ସଙ୍ଗେ ପର୍ଯ୍ୟଟକଙ୍କୁ ଗଡ଼ ଅବସ୍ଥିତି ଜାଗାର ନମୁନା ଦେଖାଇଦିଏ। ରାଜବଂଶର ପ୍ରଥମ ପ୍ରଜାଙ୍କ ଦାୟାଦ ସେମାନେ। ଉତ୍ତରାଧିକାରୀ ସୂତ୍ରରେ ଟିକିନିଖି କରି ସବୁ କହିଦିଅନ୍ତି। ଗୁନାମାଟି ଗଡ଼ର ସରହଦରେ ଖୋଜିଲେ- ଲାଗି ଲାଗି ପଡ଼ିଥିବା କ୍ଷୁଦ୍ର କ୍ଷୁଦ୍ର ଖପରା ଖଣ୍ଡ ଦେଖିବାକୁ ମିଳେ। ରାଜବାଟୀର ମୂଳଦୁଆ ନିଅଁମାନ ସିଧା ସିଧା ଦିଶେ। ସୁଦୀର୍ଘ ବାହାର ନିଅଁର ମଧ୍ୟଭାଗରେ ପଥର ପାହାଚ ଦେଖିବାକୁ ମିଳେ। ହୁଏତ ଏହା ରାଜବାଟୀର ଫାଟକ ହୋଇଥାଇପାରେ। ଫାଟକ ସ୍ଥାନରେ ନିଅଁର ବାହାରକୁ ଲାଗି ଦୀର୍ଘ ପ୍ରଶସ୍ତ ବିଶିଷ୍ଟ ଆୟତାକାର ଚିକ୍‌କଣ ପଥର ପଡ଼ିଛି। ଏହି ପଥରର ବାହାର ଧାରକୁ ଲାଗି ବୃହତ୍ ପ୍ରୋଟାକ୍ଟର ସଦୃଶ ଏକ ଅର୍ଦ୍ଧବୃତ୍ତାକାର ଚିକ୍‌କଣ ପଥର ପଡ଼ିଛି। ରାଜବାଟୀର ଫାଟକ ସାମ୍ନାରେ ଖୁବ୍ ଅଳ୍ପ ବ୍ୟବଧାନରେ ଏକ ବିଶାଳ ଆମ୍ବଗଛ ତଳେ ପ୍ରକାଣ୍ଡ ଗୋଲାକାରର ପ୍ରଶସ୍ତ ସମତଳ ପଥର ଦେଖାଯାଏ। ଗଡ଼ର ଇଷ୍ଟଦେବୀ ଅନ୍ଧାରବାଉତୀ ଗଡ଼ର ଉତ୍ତର ପଶ୍ଚିମ କୋଣରେ ବସିଛନ୍ତି। ଅରଣ୍ୟର ଅନ୍ଧାର ଭିତରେ ବହୁକାଳର ଦେବୀ ଅବହେଳିତ ଅବସ୍ଥାରେ ବିମର୍ଷ ଦିଶୁଛନ୍ତି। ଠାକୁରାଣୀ ପାଖରେ ବଳି ଦିଆଯାଉଥିଲା।

ରଳବର ବାଉରୀ ଠାକୁରାଣୀ : ନୟାଗଡ଼ ରାଜବଂଶର ପ୍ରଥମ ରାଜା ସୂର୍ଯ୍ୟମଣି ଓ ସାନଭାଇ ଚନ୍ଦ୍ରମଣି ଗୁନାମାଟି ଗଡ଼ର ଶାସନ ସଂପ୍ରସାରଣ ପାଇଁ ପଡ଼ୋଶୀ ଗଡ଼ତିଆଙ୍କ ଉପରେ ଦୃଷ୍ଟି ପକାଇ ରଳବ ଗଡ଼ରେ ପହଞ୍ଚିଲେ। ସାୟାହ୍ନ

ସମୟ ଦୁଇଭାଇ ଶିଳା ଉପରେ ଅବସ୍ଥାନ କରିଛନ୍ତି। ସେମାନଙ୍କ ପାଖଦେଇ ଚଲାପଥରେ ଏକ ସୁନ୍ଦରୀ ନାରୀ କାଖରେ ଏକ ଶିଶୁ ମଥାରେ କଳସ ଧରି ଯାଉଥିଲା। ଅଳ୍ପ ସମୟ ଅନ୍ତରରେ ସେହି ସୁନ୍ଦରୀ ମଥାରେ ଜଳ କଳସ ଧରି ଫେରିଥିଲେ। ତାଙ୍କ କାଖରେ ଶିଶୁ ନଥିଲା ବରଂ ପାଟିରୁ ରକ୍ତ ଖସୁଥିଲା। ସୂର୍ଯ୍ୟମଣି ପଚାରିଲେ- ତୁତ ସେହି ଝିଅ ଏଇବାଟ ଦେଇ ଯାଇଥିଲୁ- ପାଟିରେ ରକ୍ତ ଲାଗିଛି ତୋ'ର ସେ ଶିଶୁସନ୍ତାନ କାହିଁ? ସତ କୁହ ତୁ କିଏ ଦେବୀ ନା ମାନବୀ ନା ଦାନବୀ? ଯୁକ୍ତିରେ ସନ୍ତୁଷ୍ଟ ହେଲେ ନାହିଁ ସୂର୍ଯ୍ୟମଣୀ। ସେ ରମଣୀକୁ ଖଡ୍ଗରେ ଦ୍ୱିଗଡ଼ କରିଦେଲେ। ଦେବୀ ରାଜାଙ୍କ ଉପରେ କୃପା କଲେ। ରଳବଗଡ଼ ଅଧିକାର କର। ରଳବରେ ରାଜପଣ କର। କଥା ଉଠିପାରେ ମାନବ ହାତରେ ଦେବୀର ଶିରଛେଦନ କିପରି ହୋଇପାରେ? ଠାକୁରାଣୀ ଚାହିଁଲେ ଏ ଅସମ୍ଭବ କାର୍ଯ୍ୟ ସମ୍ଭବ ହୋଇପାରେ। ସୂର୍ଯ୍ୟମଣି ଚନ୍ଦ୍ରମଣି ଦୁଇଭାଇ ଦେବୀଙ୍କୁ ଚଳନ୍ତି ଦିଅଁ ଭାବେ ମାନିନେଲେ, ରଳବଗଡ଼ ଶାସନ କଲେ। ସେବେଠୁଁ ଗୁନାମାଟି ଅବହେଳିତ ହୋଇ ରଳବର ଅଧୀନସ୍ଥ ରହିଲା। ବାଉରୀ ଠାକୁରାଣୀ ଗଡ଼ ଦେବୀ ଭାବେ ରଳବରେ ପୂଜା ପାଇଲେ। ରାଜା ବାଉରୀ ଠାକୁରାଣୀଙ୍କଠାରେ ନରବଳି ପୂଜା ଖଞ୍ଜା କଲେ। ଠାକୁରାଣୀଙ୍କ ରକ୍ତ ଖଞ୍ଜା ପାଇଁ ଶର୍ଙ୍ଗିକଟା ନିଯୁକ୍ତି କଲେ। ଏ ରାଜବଂଶର ନଅପୁରୁଷ ଶାସନ ଯାଏ ଦେବୀ ରଳବରେ ପୂଜା ପାଉଥିଲେ। ନୟାଗଡ଼କୁ ରାଜଧାନୀ ସ୍ଥାନାନ୍ତରିତ ହେବାପରେ ବାଉରୀ ଦେବୀ ରାଜବାଟୀରେ ପୂଜା ପାଉଛନ୍ତି। ଏ ରାଜବଂଶର ଦ୍ୱାଦଶ ରାଜା ରଘୁନାଥ ସିଂହଙ୍କର କନିଷ୍ଠପୁତ୍ର ଯଦୁନାଥ ସିଂହ ମଙ୍ଗରାଜ ଖଣ୍ଡପଡ଼ାରେ ଗଡ଼ ସ୍ଥାପନ କରିଥିଲେ। ସେ ସମୟରୁ ଖଣ୍ଡପଡ଼ା ରାଜାଙ୍କର ଇଷ୍ଟଦେବୀ ରୂପେ ବାଉରୀ ଠାକୁରାଣୀ ଖଣ୍ଡପଡ଼ା ଗଡ଼ରେ ପୂଜା ପାଇଲେ। ଖଣ୍ଡପଡ଼ା ରାଜବଂଶ ମା' ବାଉରୀ ଠାକୁରାଣୀଙ୍କର ଗଣ୍ଡିପୂଜା କରୁଥିବାର ଜଣାଯାଏ। ଏଣୁ ଖଣ୍ଡପଡ଼ା ଓ ନୟାଗଡ଼ ରାଜ୍ୟଦ୍ୱୟ ପାରିବାରିକ ସମ୍ବନ୍ଧ ରାଜ୍ୟ।

**ବାଉରୀ ଠାକୁରାଣୀଙ୍କର ପୂଜାପୀଠ :** ବାଉରୀ ଠାକୁରାଣୀଙ୍କର ପୂଜାପୀଠ, ରଳବ, ଦ୍ୱିତୀୟ ପୀଠ ନୟାଗଡ଼ ପୁରୁଣା ରାଜପ୍ରାସାଦ, ତୃତୀୟ ପୀଠ ଖଣ୍ଡପଡ଼ା ରାଜପ୍ରାସାଦ, ଚତୁର୍ଥପୀଠ ଖଣ୍ଡପଡ଼ା ଗଡ଼ ବାହାର ଉତ୍ତର ପଶ୍ଚିମ କୋଣରେ ପ୍ରତିଷ୍ଠିତ ବାଉରୀ ଠାକୁରାଣୀ ପୀଠ।

**ରଳବଗଡ଼ :** ରଳବଗଡ଼ ଶୂଳିଆ ପର୍ବତର ପଶ୍ଚିମ ପାଦଦେଶରେ ଏକ ଆରଣ୍ୟକ ଉଚ୍ଚ ସମତଳଭୂମିର ସୁରମ୍ୟ ସ୍ଥାନ। ଏହା ଉତ୍ତର ଦକ୍ଷିଣ ପଶ୍ଚିମ ସରହଦକୁ ବାହାଡ଼ାଝୋଲା ଅଞ୍ଚଳର ପ୍ରଶସ୍ତ ଶସ୍ୟଭୂମି। ଗଡ଼ର ଭଗ୍ନାବଶେଷର ନମୁନା ପ୍ରାୟତଃ ଦୁଃଷ୍ପ୍ରାପ୍ୟ। ଗୁନାମାଟି ଭଳି ରଳବରେ ପାଖାପାଖି ଲାଗି ଲାଗି

ଖପରାଖଣ୍ଡ ଦେଖିବାକୁ ମିଳେ। ଗୁନାମାଟିର ଖପରାଖଣ୍ଡ ଓ ରଳବର ଖପରାଖଣ୍ଡ ଦେଖିବାକୁ ଏକା ଗୋଟିଏ ସମୟର। ସୂର୍ଯ୍ୟମଣି ସିଂହ ଗୁନାମାଟିର ଶାସକ ଥିଲେ। ଅଳ୍ପ ବର୍ଷ ବ୍ୟବଧାନ ପରେ ରଳବ ଗଡ଼ର ଶାସକ ହେଲେ। ରଳବ ଗଡ଼ର ବର୍ତ୍ତମାନର ସନ୍ତକ- ପର୍ଯ୍ୟାପ୍ତ ପରିମାଣରେ ପଡ଼ିଥିବା ଖପରାଖଣ୍ଡ, କେଉଁ ମାନଧାତା ଅମଳର ବିଶାଳ ଅତ୍ୟୁଚ୍ଚ ବଉଳ ବୃକ୍ଷ ମୂଳରେ ଦେବୀ ବାଉରୀ ଠାକୁରାଣୀଙ୍କର ପୂଜାସ୍ଥାନ ଶ୍ରୀଜଗନ୍ନାଥଙ୍କ ଭଗ୍ନ ମଣ୍ଡପ, ଗଡ଼ ବାହାରଦେବୀ ଦୁଆରସୁଣୀ ଓ ସୁଖୁନଥିବା ମେଘା କୂଆ। ରଳବଗଡ଼ରେ ନୟାଗଡ଼ ରାଜବଂଶର ନଅଜଣ ରାଜା ଉତ୍ତର ପୁରୁଷ ସୂତ୍ରରେ ଶାସନ କରିଥିଲେ। ବାଉରୀ ଠାକୁରାଣୀଙ୍କ କୃପାରୁ ରାଜା ସୂର୍ଯ୍ୟମଣି ସିଂହ ଗୁନାମାଟି ଛାଡ଼ି ରଳବରେ ରାଜଧାନୀ ସ୍ଥାପନ କରିଥିଲେ। ରାଜବଂଶର ବଂଶବୃକ୍ଷ କହେ ୧୪୮୦ ଖ୍ରୀ.ଅ.ରେ ରଳବର ରାଜା ବାଘାସିଂହ ରୁକ୍ଷୀ ପର୍ବତର ଉତ୍ତର ପଶ୍ଚିମ କୋଣରେ କୁକୁର ତାସରାର ପୂର୍ବ ପାର୍ଶ୍ୱରେ ନୟାଗଡ଼ ରାଜବାଟୀ ନିର୍ମାଣ କଲେ। ରଳବଗଡ଼ର ଶାସନ ନୟାଗଡ଼କୁ ସ୍ଥାନାନ୍ତରିତ ହେଲା। କ୍ରମଶଃ ରଳବ ଅବହେଳିତ ହୋଇ ବିଲୁପ୍ତପ୍ରାୟ। ପାଞ୍ଚଶହ ବର୍ଷ ତଳର ରଳବ ଆଜି ଶ୍ୱାପଦ ଶଙ୍କୁଳ ଅରଣ୍ୟ। ବର୍ତ୍ତମାନ ଏ ସ୍ଥାନ ହସ୍ତୀଙ୍କର କ୍ରୀଡ଼ାସ୍ଥଳୀ। ବାଘାସିଂହଙ୍କ ପରେ ଯେତେ ରାଜା ରାଜବଂଶରେ ଆସିଛନ୍ତି ଠାକୁରାଣୀର ପର୍ବଦିନରେ ମା'ଙ୍କର ପୂଜାନେଇ ରଳବକୁ ଯାଆନ୍ତି। ଏବେ ବି ଛିନ୍ନମସ୍ତା ବାଉରୀ ଠାକୁରାଣୀ ସେ ସମୟରୁ ବଉଳ ଗଛ ମୂଳରେ ଚୁଆ ଚନ୍ଦନ ମାଜଣାରେ ଦାଉଦାଉ ଦିଶନ୍ତି। ଏବେ ଜାନୁୟାରୀ ମାସ ଆରମ୍ଭରେ ଏ ଅଞ୍ଚଳର ଲୋକମାନେ ଏଠାରେ ଏକ ଯଜ୍ଞ ଅନୁଷ୍ଠାନ ଆରମ୍ଭ କରିଛନ୍ତି। ପୁନଶ୍ଚ ରଳବ ଚେଇଁ ଉଠିବାର ସୂଚନା ମିଳଇ।

<u>ନୟାଗଡ଼ର ରାଜପ୍ରାସାଦ ଓ ଖଣ୍ଡପଡ଼ା ରାଜପ୍ରାସାଦରେ ବାଉରୀ ଠାକୁରାଣୀଙ୍କ ମୁଣ୍ଡ ପୂଜା :</u> ନୟାଗଡ଼ ପୁରୁଣା ରାଜପ୍ରାସାଦରେ ବାଉରୀ ଠାକୁରାଣୀଙ୍କ ମୁଣ୍ଡ ପୂଜା ପାଇଥାନ୍ତି। ଦେବୀଙ୍କ ପାଖରେ ମଣିଷ ରକ୍ତରେ ଭିଜା ସଳିତାର ସଂଧ୍ୟା ଆଳତୀ କରାଯାଏ। ନୟାଗଡ଼ ରାଜବାଟୀ ଯେଉଁ ପଦ୍ଧତିରେ ଠାକୁରାଣୀ ପୂଜା ପାଇଥାନ୍ତି ଠିକ୍ ସେହି ଅନୁରୂପରେ ଖଣ୍ଡପଡ଼ା ରାଜବାଟୀରେ ଛିନ୍ନମସ୍ତା ବାଉରୀ ଦେବୀ ପୂଜା ପାଉଛନ୍ତି। ଠାକୁରାଣୀଙ୍କ ପାଇଁ ଶଙ୍ଖିକଟାମାନେ ନରରକ୍ତ ଖଞ୍ଜା କରିଥାନ୍ତି।

<u>ଖଣ୍ଡପଡ଼ା ଗଡ଼ର ବାହାରେ ସ୍ଥାପିତ ବାଉରୀ ଠାକୁରାଣୀ :</u> ଖଣ୍ଡପଡ଼ା ରାଜବାଟୀର ଉତ୍ତର ପଶ୍ଚିମ ସଂଲଗ୍ନ କୋଣରେ ପାହାଡ଼। ପାହାଡ଼ ପୂର୍ବ ପାଦଦେଶରେ ଦକ୍ଷିଣରୁ ଉତ୍ତରମୁହାଁ ହୋଇ ବହି ଆସୁଥିବା ସୁନାମୁହିଁ ନଦୀ ଦାଢ଼ରେ ସ୍ଥାପିତ ବାଉରୀ ଠାକୁରାଣୀଙ୍କର କ୍ଷୁଦ୍ର ମନ୍ଦିର। ସହରଠାରୁ ଅନତିଦୂରରେ ଅବସ୍ଥିତ

ହେଲେ ହେଁ ଏହା ଏକ ନିକାଞ୍ଚନ ମନୋହର ସ୍ଥାନ। ଜାତି ଜାତି ବୃକ୍ଷରାଜିରେ ଏ ସ୍ଥାନ ଆଚ୍ଛାଦିତ। ବନପକ୍ଷୀଙ୍କ ମଧୁର କଳରବରେ ଏ ପୀଠ ସଂଗୀତମୁଖର। ଏ ବାଉରୀ ଠାକୁରାଣୀଙ୍କର ଦିବ୍ୟସୁନ୍ଦର ପାଷାଣ ମୂର୍ତ୍ତି ପ୍ରସନ୍ନବଦନା ଜନଶ୍ରୁତି ଯେ- ଦେବୀ ନରରକ୍ତ ପିଏ। ଏଠି ଠିଆହେଲେ ନିଛାଟିଆ ଲାଗେ ରକ୍ତପିଆ ଦେବୀ ଭାବି ଭୟ ଲାଗେ।

ରଣପୁର ଓ ଦଶପଲ୍ଲା ଗଡ଼ଦେବୀ : ରଣପୁର ଗଡ଼ର ଗଡ଼ଦେବୀ ମଣିନାଗେଶ୍ୱରୀ ଏବଂ ଦଶପଲ୍ଲା ଗଡ଼ର ଗଡ଼ଦେବୀ ନାଇକାଶୁଣୀ। ଏମାନଙ୍କର ପୂଜକ କନ୍ଧଜାନୀ। ଏହି ଦେବୀପୀଠରେ ନରବଳି ଦିଆଯାଉଥିଲା। ରାଜ୍ୟର ମଙ୍ଗଳ ପାଇଁ ଗଡ଼ଦେବୀଙ୍କୁ ନରବଳି ଦିଆଯାଏ। ଏହା ରାଜ ପ୍ରବଚନ।

ଶଙ୍ଖିକଟା/ତଣ୍ଟିକଟା : ଶଙ୍ଖିକଟା/ତଣ୍ଟିକଟା ରାଜଗୁଡ଼ା ଅମଳର ଏକ ଐତିହାସିକ ନାରକୀୟ ଆତଙ୍କିତ ଶବ୍ଦ। ଶଙ୍ଖିକଟା ରାଜାଙ୍କର ଗୁପ୍ତନିଯୁକ୍ତି ମଣିଷ। ଏମାନେ ରାଜାଙ୍କର ଇଷ୍ଟଦେବୀଙ୍କ ପାଇଁ ମଣିଷ ରକ୍ତ ଖଞ୍ଜା କରିଥାନ୍ତି। ଏମାନେ ରାଜ୍ୟରେ ଉପଦ୍ରବ କରନ୍ତି ନାହିଁ ରକ୍ତ ସଂଗ୍ରହ ପାଇଁ ମଣିଷ ଚୋରି କରନ୍ତି। ମଣିଷଟିଏ ହାବୁଡ଼େ ପଡ଼ିଗଲେ ତା' ମୁହଁରେ ପଟି ଭିଡ଼ିଦେଇ ଗୋଡ଼ଠାରୁ ମୁଣ୍ଡଯାଏ ନିଷ୍ଠୁରଭାବେ ଦଳିଯାଆନ୍ତି। ତା'ପରେ ମଣିଷଟାର ଗୋଡ଼ ଦିଇଟା ଉପରକୁ ଟେକି ତଳକୁ ମୁଣ୍ଡ ଝୁଲାଇ ଦେଇ ନାକଦଣ୍ଡିର ଦୁଇପାଖରେ ମୋଟା ଛୁଞ୍ଚିରେ କଣାକରି ନାକଠାରେ ରକ୍ତ ସଂଗ୍ରହ ନଳା ଦେଖାଇ ମଣିଷ ଶରୀରଟାରୁ ସବୁ ରକ୍ତ ନିଗାଡ଼ି ନିଅନ୍ତି। ସେହି ରକ୍ତରେ ଧଳାଲୁଗା ବୁଡ଼ାଇ ସେଥିରେ ରକ୍ତ ସଳିତା ତିଆରି କରି ଠାକୁରାଣୀର ସନ୍ଧ୍ୟା ଆଳତୀରେ ଖଞ୍ଜା ଦିଅନ୍ତି, ନରରକ୍ତ ଠାକୁରାଣୀଙ୍କୁ ପାନ କରିବାକୁ ଦିଅନ୍ତି। ଏ ଘୃଣ୍ୟ ପିଶାଚ କାର୍ଯ୍ୟ କରୁଥିବାରୁ ତଣ୍ଟିକଟା ରାଜାଙ୍କଠାରୁ ନିଷ୍କର ରକ୍ତପଟା ଜାଗିରି ଖଞ୍ଜା ପାଇଥାଏ। ଶଙ୍ଖିଆକଟା ବୃତ୍ତି ଏକ ପାରମ୍ପରିକ ପ୍ରଥା ନୁହେଁ। ଏହା ରାଜାଙ୍କ ଦ୍ୱାରା ସୃଷ୍ଟି କୁତ୍ସିତ କାର୍ଯ୍ୟ ନିଯୁକ୍ତି। ପ୍ରାୟତଃ ପଣାସଂକ୍ରାନ୍ତି ପୂର୍ବରୁ ରଜସଂକ୍ରାନ୍ତି ମଧରେ ଜନପଦରେ ଶଙ୍ଖିଆକଟା ଭୟ ଦେଖାଯାଏ। ନିଛାଟିଆ ବାଟରେ ବାଟୋଇ ଯିବାକୁ ଭୟ କରେ। କାହିଁକିନା ଶଙ୍ଖିଆ ହାବୁଡ଼େ ପଡ଼ିଲେ ଆଉ ଫେରିବନି। ଶଙ୍ଖିକଟା ମଣିଷ ମାରିଲେ ରାଜ ଦରବାରରେ ତା' ବିରୁଦ୍ଧରେ ବିଚାର ନଥାଏ। କାରଣ ସିଏ ରାଜାଙ୍କର ରକ୍ତପଟା ଜାଗିରି ଭୋଗୀ। ୧୦୦ ବର୍ଷର ପୁରୁଖା ଲୋକଟିଏ କହେ- ଶଙ୍ଖିଆକଟାମାନେ ଗାଈ ବେକର ଘଣ୍ଟି ବା ଗାଈ ବେକର ଟିପା ସଂଧ୍ୟା ପ୍ରହରରେ ଖଳାବାରିରେ ଲୁଚି ବଜାନ୍ତି। ଘରଲୋକ ଗାଈ ଘଉଡ଼ାଇବା ପାଇଁ ବାରିକୁ ଗଲେ ଶଙ୍ଖିଆମାନେ ଚୁପ୍‌ଚୁପ୍ ତାକୁ ଧରି ନିଅନ୍ତି। ଶଙ୍ଖିଆ ହାବୁଡ଼େ ପଡ଼ିଗଲେ ତାଙ୍କ କବଳରୁ ରକ୍ଷା ପାଇବା ସହଜ ନୁହେଁ। ତା'ର ରକ୍ତ ଠାକୁରାଣୀ ପାଇଁ ଗଲା ବୋଲି ଭାବିବାକୁ ହୁଏ। ଏତ ରାଜାର ନିୟମ ତାକୁ

ହେଣ୍ଟିବ କିଏ ? ବିଶେଷ ସୂଚନା ରାଜାଙ୍କର ଇଷ୍ଟଦେବୀଙ୍କ ପାଇଁ ଶଙ୍ଖିଆମାନେ ନରହତ୍ୟା କରିଥାନ୍ତି । ଇଂରେଜ ଶାସନ କାଳ- ଉଇଲିୟମ୍ ବେଣ୍ଟିକ୍ ଭାରତର ଗଭର୍ଣ୍ଣର ଜେନେରାଲ ଥିବା ସମୟରେ ଖ୍ରୀ.ଅ. ୧ ୯ ୨ ୯ ରେ ଭାରତରେ ପ୍ରଚଳିତ ଅନ୍ଧବିଶ୍ୱାସ ସତୀଦାହ ପ୍ରଥା, ଠକଙ୍କର ଉପଦ୍ରବ, ନରବଳି ପ୍ରଥା ଦମନ କରିବାକୁ କଠୋର ନିୟମ ପ୍ରଣୟନ କରିଥିଲେ । ସମ୍ବଲପୁରରେ ଇଂରେଜ ସରକାରଙ୍କ ପଲିଟିକାଲ ଏଜେଣ୍ଟ ଅଧୀନରେ ସତାର ଖାଁ ଖ୍ରୀ.ଅ. ୧ ୯ ୨ ୬ଠାରୁ ଖ୍ରୀ.ଅ. ୧ ୯୩୦ ମଧ୍ୟରେ ନୟାଗଡ଼ର ସୁପରିଟେଣ୍ଡେଣ୍ଟ ଥିଲେ । ସତାର ଖାଁ ନରରକ୍ତ ପିଉଥିବା ଗଡ଼ଜାତିଆ ଦେବୀ ପୀଠରୁ ନରବଳି ପ୍ରଥା ଦୃଢ଼ତାର ସହିତ ଉଚ୍ଛେଦ କରିଥିଲେ । ଶଙ୍ଖିକଟା ଉପରେ କଠୋର କଟକଣା ଜାରିକରି ସେମାନଙ୍କର ରକ୍ତପଟା ଜାଗିରି ଉଚ୍ଛେଦ କରି ସେମାନଙ୍କ ଜମି ଉପରେ କର ଧାର୍ଯ୍ୟ କରିଥିଲେ । ଜନଶ୍ରୁତିରେ ଶୁଣାଯାଏ- ସତାର ଖାଁ ବାଉରୀ ଠାକୁରାଣୀଙ୍କ ଗୃହରେ କେତେଗୁଡ଼ାଏ ବୋଦା ଛାଡ଼ି ଦେଇଥିଲେ- ଦେବୀ ରକ୍ତ ପିଇବା ପାଇଁ ଦେବୀ ଯଦି ରକ୍ତପିଆ ଦେବୀ ଏ ବୋଦାଗୁଡ଼ାର ରକ୍ତ ପିଉ । ଦେବୀ ଗୋଟାଏ ବୋଦାକୁ ମୋଡ଼ି ଖାଇପାରିଲା ନାହିଁ । ବରଂ ବୋଦାଗୁଡ଼ାକ ଠାକୁରାଣୀ ଗୃହକୁ ହଗାମୁତା କରି ଅସନା କରିଥିଲେ । ସବୁ ବୋଦା ଜୀବିତ ଥିଲେ । ସେହିଦିନଠାରୁ ନୟାଗଡ଼ରେ ବଳିଦେବା ଗୁରୁତ୍ୱ ହ୍ରାସ ପାଇଲା । ଦେବୀ ପୀଠରେ ବଳିଦେବା ସଂପୂର୍ଣ୍ଣ ବନ୍ଦ ହୋଇଗଲା । ସେବେଠୁ ଶଙ୍ଖିଆ ଭୟ ନୟାଗଡ଼ରୁ ଦୂର ହେଲା ।

ଓଡ଼ ଅଞ୍ଚଳ ଦେବୀପୀଠମାନଙ୍କରେ ବଳିପୂଜା : ନୟାଗଡ଼ର ଓଡ଼ ଅଞ୍ଚଳର ଗ୍ରାମେ ଗ୍ରାମେ ଶକ୍ତିପୀଠମାନ ଦେଖାଯାଏ । ଗ୍ରାମଦେବତୀ, ଡୁମୁଣୀ, ଶୂଳିଆ ଠାକୁରାଣୀ, କଇରିବୁଢ଼ୀ, କାଳୁଆଷଣ୍ଢ ଠାକୁରାଣୀ, ବୁଢ଼ାବୁଢ଼ିଆଣୀ, ବ୍ରାହ୍ମଣୀଦେଈ, ବନଦୁର୍ଗା, ପେଟେଇଚଣ୍ଡୀଙ୍କ ପାଖରେ ଅଦ୍ୟାବଧି ପଶୁବଳି, କୁକୁଡ଼ାବଳି ଦିଆଯାଏ । ଚୈତ୍ର ମାସରେ ଗାଁ ଜନ୍ତାଳ ଭୋଜିରେ ଗ୍ରାମ ଠାକୁରାଣୀ ପୀଠରେ ବୋଦା ଛେଦପଡ଼ି ଛେଦ ମାଂସକୁ ଦେବୀର ପ୍ରସାଦ ମାନିନେଇ ଜନ୍ତାଳ ଭୋଜିରେ ପକାଇ ଗାଁ'ସାରା ଲୋକ ଖାଆନ୍ତି । କେତେକ ଗାଁ'ରେ ଛେଦ ମାଂସକୁ ଘରେ ଘରେ ବାଣ୍ଟି ନିଅନ୍ତି । ଅନେକ ଠାକୁରାଣୀ ପାଖରେ ମାଗୁର ମାଛ ବଳି ଦିଆଯାଏ । କୁକୁଡ଼ା ବଳି, ମାଛବଳି ପ୍ରତୀକ ବଳିକୁ ଲଘୁବଳି ଆକାରରେ ଗ୍ରହଣ କରାଯାଏ ।

ଭାରତୀୟ ସଂସ୍କୃତିରେ ଦେବୀ ପୀଠରେ ରକ୍ତବଳି ପୂଜା ପଦ୍ଧତି ନାହିଁ । ଦେବୀ ଓ ସୃଷ୍ଟିକାରିଣୀ ମା' ସନ୍ତାନ ରକ୍ତ ଖାଇବ କେମିତି ? ସନ୍ତାନର କ'ଣ ଟିକେ ହୋଇଗଲେ ମା' କେତେ ବିଚଳିତ ହୋଇଯାଏ । ସେ କ'ଣ ଲୌକିକ ସ୍ଥିତିର ରାକ୍ଷସୀ ହୋଇଛି ଯେ ସନ୍ତାନକୁ କାଟି ଖାଇବ ତା'ର ରକ୍ତ ପିଇଯିବ । ଏସବୁ ଅମୂଳକ ଧାରଣା । ତାନ୍ତ୍ରିକ, ଗୁଣିଆମାନେ ଠାକୁରାଣୀଙ୍କୁ ନିଜ ଅକ୍ତିଆରକୁ ଆଣିବା

ପାଇଁ ସମାଜରେ ବଳିପୂଜା ଉଠାଇଲେ। ଯେମିତି ମଶାଣିଚଣ୍ଡୀ ସାଧକ ଦେହକୁ ଚିରି ରକ୍ତ ବଳି ଦେଇଥାନ୍ତି। ତାଙ୍କ ସାଧନାର କ'ଣ ବା ଫଳ ମିଳେ ? କାହାର ସନ୍ତାନ ରୋଗରେ ପଡ଼ିଲେ ଠାକୁରାଣୀ ପାଖରେ ବୋଦାବଳି ଦେଲେ ଠାକୁରାଣୀ ତାକୁ ଭଲ କରିଦେବ ଏ ଅନ୍ଧବିଶ୍ୱାସ ତା' ମୁଣ୍ଡରେ ଭର୍ତ୍ତିକରି ଦେଲେ। ଏହି ଅନୁକ୍ରମରେ ସାମାଜିକ ପ୍ରାଣୀଗୁଡ଼ାକ ପ୍ରଭାବିତ ହୋଇପଡ଼ିଲେ। ଫଳରେ ପଶୁବଳି ହେଉ ବା ନରବଳି ହେଉ ଏ ବର୍ବର ପ୍ରଥା ସମାଜ ଭିତରେ ପ୍ରବେଶ କରିଗଲା। ମଣିଷ ଏ ଅନ୍ଧବିଶ୍ୱାସର ଶିକାର ହେଲା। ବଳିପୂଜା ଭଳି ଅଧର୍ମ କାର୍ଯ୍ୟକୁ ସମାଜର ବଡ଼ପଣ୍ଡାମାନେ ଗ୍ରହଣ କରିନେଲେ। ଏଣୁ ଏହା ସମାଜରେ ବ୍ୟାପିବାରେ ଲାଗିଲା।

ବଳିପୂଜା-ନରବଳି, ପଶୁବଳି, ପକ୍ଷୀବଳି, ମାଛବଳି, ପ୍ରାଣୀବଳି ସେ ଯାହା ହେଉନା କାହିଁକି ଏହା ସମାଜକୁ ଆଚ୍ଛନ୍ନ କରି ରହିଲା। ଏଣୁ ସମାଜରେ ଏହା ବିରୁଦ୍ଧରେ ଧର୍ମ ଆନ୍ଦୋଳନ ଦେଖାଦେଲା। ଫଳରେ ଏ ଘୃଣ୍ୟ ବର୍ବର ପ୍ରଥାର ସଂସ୍କାର ଆସିଥିଲା। ନରବଳି ପ୍ରଥା ବର୍ତ୍ତମାନ ଅଞ୍ଚଳରୁ ସଂପୂର୍ଣ୍ଣ ଲୋପ ପାଇଛି। କେଉଁଠି କେଉଁଠି ଏହାର ଐତିହ୍ୟ ଅଛି ପଚାରିଲେ ଲୋକମାନେ ଘୃଣା ପ୍ରକାଶ କରୁଛନ୍ତି। ନୟାଗଡ଼ର କେତେ କେତେ ଜାଗାରେ ବୋଦାବଳି ଦିଆଯିବାର ସୂଚନା ମିଳେ। କୁକୁଡ଼ା ବଳି, ମାଗୁରମାଛ ବଳି ବି ଦିଆଯାଉଛି। ଜହ୍ନି, ଭେଣ୍ଡି, ଲାଉ, ପାଣିକଖାରୁକୁ ଅଶ୍ୱ ମନାସୀ ପୂଜାରେ ବଳି ଦିଆଯାଉଛି। ବଳିପୂଜା ହିନ୍ଦୁଧର୍ମରେ ଅପସଂସ୍କୃତିର ପ୍ରବେଶ। ମା' ରକ୍ତବଳି ଖାଏନା। ସେ ଜନନୀ, ସାକାହାରୀ, କ୍ଷୀରୀ, ଖେଚୁଡ଼ି, ମୁଗୁରୀରେ ସନ୍ତୁଷ୍ଟ। ସମାଜରୁ ଏ ଅପସଂସ୍କୃତିର ବହିଷ୍କାର ସର୍ବସାଧାରଣରେ ଗ୍ରହଣୀୟ ବୋଲି ମାନି ନେଇଛୁ।



## ଚତୁର୍ଦ୍ଦଶ ଅଧ୍ୟାୟ

# ଓଡ଼ିଶା ପର୍ଯ୍ୟଟନ ମାନଚିତ୍ରରେ ନୟାଗଡ଼ର ସ୍ଥାନ

ସାଂପ୍ରତିକ ସମୟରେ ରାଜ୍ୟରେ ପର୍ଯ୍ୟଟନ ଶିଳ୍ପର ଭୂମିକା ଗୁରୁତ୍ୱପୂର୍ଣ୍ଣ। ପର୍ଯ୍ୟଟନ ଶିଳ୍ପ ମାଧ୍ୟମରେ ଘରୋଇ ମୁଦ୍ରା ବୈଦେଶିକ ମୁଦ୍ରାର ଆୟ ରାଜକୋଷକୁ ବିପୁଳ ପରିମାଣରେ ଆସେ। ଏହାର ପ୍ରସିଦ୍ଧିରେ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ରାଜ୍ୟର ମାନ୍ୟତା ବଢ଼େ। ରାଜ୍ୟର ପର୍ଯ୍ୟଟନ ପୀଠମାନଙ୍କର ସାମଗ୍ରିକ ବିକାଶ ଓ ସମୃଦ୍ଧି ଦିଗରେ ଦୃଷ୍ଟିଦେବା ସରକାରଙ୍କର ଏକ ପ୍ରଧାନ କାର୍ଯ୍ୟ ଓ ଦାୟିତ୍ୱ। ପର୍ଯ୍ୟଟନ କ୍ଷେତ୍ର ପର୍ଯ୍ୟଟନ କରି ପର୍ଯ୍ୟଟକର ଚିତ୍ତ ପ୍ରମୋଦ ପୂର୍ତ୍ତି, ପ୍ରକୃତିର ମନୋହର ରୂପ ଦର୍ଶନ ବେଶ୍ ଉପଭୋଗ୍ୟ, ଭୌଗୋଳିକ ଜ୍ଞାନ ଆହରଣ, ବୈଜ୍ଞାନିକ ଗବେଷଣା ଜ୍ଞାନ ଅର୍ଜନ, ସ୍ୱାସ୍ଥ୍ୟ ଉନ୍ନତିର ଅନୁଭବ, ତୀର୍ଥସ୍ଥାନ ଦର୍ଶନରେ ପୁଣ୍ୟଫଳ ଅର୍ଜନ, ବାଣିଜ୍ୟ ବିକାଶ ପଥ ଅନ୍ୱେଷଣ, ଦେଶ ବିଦେଶର ଶାସନ ପଦ୍ଧତି ତଥା ରାଜନୈତିକ ପର୍ଯ୍ୟବେକ୍ଷଣ, ସ୍ୱଧର୍ମ ପ୍ରଚାରର ସରଳ ସୁଗମପଥ ମିଳିଥାଏ। ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗର ୨୦୦୯ ମସିହାର ବାର୍ଷିକ ଆକଳନ ଅନୁଯାୟୀ ଘୋଷଣା-ଓଡ଼ିଶା ମାନଚିତ୍ରରେ ପ୍ରସିଦ୍ଧ ପର୍ଯ୍ୟଟନ କ୍ଷେତ୍ର ଯେଉଁଠାରେ କି ଲକ୍ଷାଧିକ ଘରୋଇ ଓ ବିଦେଶୀ ପର୍ଯ୍ୟଟକଙ୍କର ସମାବେଶ ଘଟିଛି ସେଗୁଡ଼ିକ- ଅନୁଗୁଳ ଜିଲ୍ଲାର ଅନୁଗୁଳ, ବାଲେଶ୍ୱର ଜିଲ୍ଲାର- ଚାନ୍ଦିପୁର, ରେମୁଣା, ଚନ୍ଦନେଶ୍ୱର, ପଞ୍ଚଲିଙ୍ଗେଶ୍ୱର, ତାଳଶାରୀ, ବଳରାମଗାଡ଼ି, କୁପାରୀ, ବରଗଡ଼ ଜିଲ୍ଲାର- ବରଗଡ଼, ନୃସିଂହନାଥ, ଭଦ୍ରଖ ଜିଲ୍ଲାର- ଆରଡ଼ି, ଧାମନଗର, ଚାନ୍ଦବାଲି, ଭଦ୍ରଖ, ବଲାଙ୍ଗୀର ଜିଲ୍ଲାର- ହରିଶଙ୍କର, ପାଟଣାଗଡ଼, ରାଣୀପୁର, ଝରିଆ, ବଲାଙ୍ଗୀର, କଟକ ଜିଲ୍ଲାର- କଟକ, ଲଳିତଗିରି, ବାଙ୍କି, ଭଟ୍ଟାରିକା, ଧବଳେଶ୍ୱର, ନିମ୍‌ଲା, ଦେଓଗଡ଼ ଜିଲ୍ଲାର- ପ୍ରଧାନପାଟ, ଢେଙ୍କାନାଳ ଜିଲ୍ଲାର- କପିଳାସ, ଜୋରନ୍ଦା, ଭୁବନ, ଢେଙ୍କାନାଳ, ଗଜପତି ଜିଲ୍ଲା- ପାରଳାଖେମୁଣ୍ଡି, ଗଞ୍ଜାମ ଜିଲ୍ଲାର- ଗୋପାଳପୁର, ତପ୍ତପାଣି, ରମ୍ଭା (ଚିଲିକା) ନାରାୟଣୀ, ତାରାତାରିଣୀ, ଆର୍ଯ୍ୟପଲ୍ଲୀ, ବ୍ରହ୍ମପୁର, ମଣ୍ଡିଡ଼ି, ଜଗତସିଂହପୁର ଜିଲ୍ଲାର- ପାରାଦ୍ୱୀପ, ଝଙ୍କଡ଼, ଯାଜପୁର ଜିଲ୍ଲାର- ଯାଜପୁର, ରତ୍ନଗିରି, ଉଦୟଗିରି, ଛତିଆ, ବରୁଣେଶ୍ୱର ପୀଠ, ଝାରସୁଗୁଡ଼ା ଜିଲ୍ଲାର- ଝାରସୁଗୁଡ଼ା, କଳାହାଣ୍ଡି ଜିଲ୍ଲାର- ଆମ୍ପନୀ, ଫୁଲଝରଣା, କେନ୍ଦ୍ରାପଡ଼ା ଜିଲ୍ଲାର- କେନ୍ଦ୍ରାପଡ଼ା, କେଉଁଝର ଜିଲ୍ଲାର- ସୀତାବିଂଝି,

ସାନଘାଘରା, ମୃଗ ମହାଦେବ, ଘଟଗାଁ, ଦେଓଗାଁ, କୋଶଳେଶ୍ୱର, କେଉଁଝର, ସାରେଇ, ଖୋର୍ଦ୍ଧା ଜିଲ୍ଲାର- ଭୁବନେଶ୍ୱର, ଧଉଳି, ଖଣ୍ଡଗିରି, ଉଦୟଗିରି, ନନ୍ଦନକାନନ, ଅତ୍ରି, ବରୁଣେଇ, ଚିଲିକା (ବରକୁଳ), କୋରାପୁଟ ଜିଲ୍ଲାର- ଗୁପ୍ତେଶ୍ୱର, ଶୁଆଇ, ନନ୍ଦପୁର, ଡୁଡୁମା, ସୁନାବେଡ଼ା, ଜଲପୁଟ, କୋରାପୁଟ, ମୟୂରଭଞ୍ଜ ଜିଲ୍ଲାର- ଶିମିଳିପାଳ, ଖିଚିଙ୍ଗ, ଦେଓକୁଣ୍ଡ, ନବରଙ୍ଗପୁର ଜିଲ୍ଲାର- ନବରଙ୍ଗପୁର, ଉମରକୋଟ, ରାୟଗଡ଼ା ଜିଲ୍ଲାର- ହାତୀପଥର (ରାୟଗଡ଼ା), ସମ୍ବଲପୁର ଜିଲ୍ଲାର- ହୀରାକୁଦ, ହୁମା, ଚିପିଲିମା, ସୁବର୍ଣ୍ଣପୁର ଜିଲ୍ଲାର- ବିନିକା, ସୋନପୁର, ସୁନ୍ଦରଗଡ଼ ଜିଲ୍ଲାର- ରାଉରକେଲା, ବେଦବ୍ୟାସ, ମନ୍ଦିରାଡ୍ୟାମ, ଖଣ୍ଡାଧାର, ଘୋଗର, ପୁରୀ ଜିଲ୍ଲାର- ପୁରୀ, କୋଣାର୍କ, ଚିଲିକା (ସାତପଡ଼ା) କାକଟପୁର, ବାଲିହରଚଣ୍ଡୀ, ବ୍ରହ୍ମଗିରି, ପିପିଲି, ରାମଚଣ୍ଡୀ, ବିଲେଶ୍ୱର। ଓଡ଼ିଶା ପର୍ଯ୍ୟଟନ ବିଭାଗର ୨୦୦୯ ମସିହାର ପର୍ଯ୍ୟଟନ ପୀଠଗୁଡ଼ିକର ପଞ୍ଜିକରଣ ଭିତରେ ନୟାଗଡ଼ ଜିଲ୍ଲାର ଉଦୟପୁର ସଂଗ୍ରହାଳୟ, କୁଆଁରିଆ, ମୃଗବିହାର, କଣ୍ଟିଲୋ, ତରବାଲୁ, ସିଧାମୂଳା ଗୋକୁଳାନନ୍ଦ ପୀଠ, କଳାପାଟ ପଞ୍ଚୁପଲ୍ଲୀ ପ୍ରଗଣା, ବରମୂଳ, କୁତୁରୀ, ନୟାଗଡ଼, ଶରଣକୁଳ, ଓଡ଼ଗାଁ, ଜାମୁପାଟଣା (ଦୂତୀକେଶ୍ୱର ମହାଦେବ ପୀଠ), ରଣପୁର ମଣିନାଗ, ଓଡ଼ିଶା ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନୀତ।

ନୟାଗଡ଼ ଆରଣ୍ୟକ ପୃଷ୍ଠଭୂମି ଉପରେ ଠିଆ ହୋଇଥିଲେହେଁ ଏହା ଶିଳ୍ପସମୃଦ୍ଧ ଜିଲ୍ଲା ନୁହେଁ। ଜିଲ୍ଲାର ସ୍ଥାୟୀ ବାସିନ୍ଦାମାନଙ୍କର ଜୀବନ ଜୀବିକା କୃଷି ଉପରେ ନିର୍ଭରଶୀଳ। ଏହାର ପ୍ରାକୃତିକ ନମ୍ର କମନୀୟ ମନୋହର ରୂପରାଜି ଯୁଗେ ଯୁଗେ ଦର୍ଶନମାର୍ଗୀ ଭାବୁକଙ୍କର ଚିତ୍ତକୁ ଆନ୍ଦୋଳିତ କରିଛି। ନୟାଗଡ଼ କେତେଦିଗରେ କେତେ କ'ଣ ଦେଇଛି ଓଡ଼ିଶାକୁ। ଆରଣ୍ୟକ ସଂପଦଠାରୁ ଅନେକ ଅନେକ। ଏ ମାଟିରେ ପ୍ରତିଷ୍ଠା ଲାଭ କରିଥିବା ବରପୁତ୍ର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଉତ୍କଳ ଘଣ୍ଟ ଯଦୁମଣି ମହାପାତ୍ର, କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା, ପଣ୍ଡିତ ବିନାୟକ ମିଶ୍ର, ସଂଗ୍ରାହକ ଦାଶରଥୀ ପଟ୍ଟନାୟକ, ନାଟ୍ୟରଥୀ ଗୋବିନ୍ଦ ଚନ୍ଦ୍ର ଶୂରଦେଓ, କଳାନିଧି ବାଞ୍ଛାନିଧି ଶତପଥୀଙ୍କ ଶବ୍ଦ ସଂପଦରେ ଓଡ଼ିଆ ଭାଷା ଭଣ୍ଡାର ସମୃଦ୍ଧ ହୋଇଛି। ବରପୁତ୍ର ଜ୍ୟୋତିର୍ବିଜ୍ଞାନୀ ମହାମହୋପାଧ୍ୟାୟ ପଠାଣି ସାମନ୍ତ ଚନ୍ଦ୍ରଶେଖର, ଶହୀଦ ରଘୁନାଥ ମହାନ୍ତି, ଶହୀଦ୍ ଦିବାକର ପରିଡ଼ା, ବିଶ୍ୱରେ ନୟାଗଡ଼ର ପରିଚୟ ରଖି ଯାଇଛନ୍ତି। ସନ୍ଦର୍ଭର ଶୀର୍ଷକ ଗଭୀର ଚିନ୍ତା ପରିସରଭୁକ୍ତ।

<u>ନୟାଗଡ଼ରୁ ନୟାଗଡ଼ର ପର୍ଯ୍ୟଟନ ପୀଠମାନଙ୍କୁ ସଂଯୋଗ କରୁଥିବା ରାସ୍ତା :</u> ରାଜ୍ୟ ୫୭ ନମ୍ବର ଜାତୀୟ ରାଜପଥ ନୟାଗଡ଼ ଜିଲ୍ଲାର ନାଭିକେନ୍ଦ୍ର ଦେଇ ବଉଦ, ସୋନପୁର, ବଲାଙ୍ଗୀର ଜିଲ୍ଲାକୁ ସଂଯୋଗ କରୁଅଛି। ନୟାଗଡ଼ର ପ୍ରଧାନ ଛକଠାରୁ ନଂ.୫୭ ଜାତୀୟ ରାଜପଥ ଉପରେ ୪୫କି.ମି. ଦୂରତା ମଧ୍ୟରେ

ନୂଆଗାଁ, ଉଦୟପୁର, ଦଶପଲ୍ଲା, ମହାବୀର ମନ୍ଦିର, କୁଆଁରିଆ ମୃଗବିହାର, ଟାକରା ମଣିନାଗ ମନ୍ଦିର ପଡ଼େ। ଜିଲ୍ଲାର ଦକ୍ଷିଣ ପଥରେ ନୟାଗଡ଼ ବ୍ରହ୍ମପୁର ପକ୍କା ସଡ଼କ ରାସ୍ତା ଉପରେ ୨୫କି.ମି. ଦୂରତା ମଧ୍ୟରେ ଫୁଟା ଲିଙ୍ଗ ବାବା ଲଡୁକେଶ୍ୱର ମହାଦେବ ପୀଠ, ଦ୍ୱିତୀୟ ଶ୍ରୀକ୍ଷେତ୍ର ଓଡ଼ଗାଁ, ରଘୁନାଥ ଜୀଉଙ୍କ ପୀଠ ଓଡ଼ଗାଁ'ଠାରୁ ବାହାଡ଼ାଝୋଲା ପକ୍କା ସଡ଼କ ଉପରେ ୪କି.ମି. ଦୂରରେ ଦୂତୀକେଶ୍ୱର ମହାଦେବଙ୍କ ଆସ୍ଥାନ। ନୟାଗଡ଼ଠାରୁ ଦର୍ପନାରାୟଣପୁର ପକ୍କା ସଡ଼କ ଦେଇ ୨୮କି.ମି. ଗଲେ ମଣିନାଗ ଉଁଚ୍ଚା ପର୍ବତ ପାଦଦେଶରେ ରଣପୁର ଗଡ଼, ଜଗନ୍ନାଥ ମନ୍ଦିର ପର୍ବତ ଚୀଖରେ ମଣିନାଗେଶ୍ୱରୀ ପର୍ଯ୍ୟଟନ ପୀଠ। ସେହି ରାସ୍ତାରେ ୧୮କି.ମି. ଦୂରରେ ମଣିନାଗ ପର୍ବତ କନ୍ଦରରେ ଲୋଭନୀୟ, ଆକର୍ଷଣୀୟ ଅସୁରକୁମାରୀ ପିକ୍‌ନିକ୍ ସ୍ପଟ ପଡ଼େ। ନୟାଗଡ଼ରୁ ଉତ୍ତର ପଥରେ ପକ୍କା ସଡ଼କ ଉପରେ ଖଣ୍ଡପଡ଼ାଗଡ଼ ପଠାଣି ସାମନ୍ତଙ୍କ ଜନ୍ମସ୍ଥାନ। ଖଳିସାହି ମର୍ଦ୍ଦରାଜପୁର ଅତିକ୍ରମି ୩୫କି.ମି. ଗଲେ ମହାନଦୀ କୂଳରେ କଣ୍ଟିଲୋ ପର୍ଯ୍ୟଟନ ତୀର୍ଥ। ନଂ.୫୭ ଜାତୀୟ ରାଜପଥରୁ ବାଘମାରି (ଅତ୍ରି) ଠାରୁ କଳାପଥର, ଭାପୁର ଦେଇ ଏକ ପକ୍କା ସଡ଼କ, କଣ୍ଟିଲୋ, ସିଧାମୂଳା (ଗୋକୁଳାନନ୍ଦ ପୀଠ) ଗଣିଆ, କଳାପାଟ (ପଞ୍ଚୁପଲ୍ଲୀ ପ୍ରଗଣା), ଛାମୁଣ୍ଡିଆ, ବଡ଼ମୂଳ, କୁତୁରୀ ଦେଇ ବଉଦ ସୋନପୁରକୁ ସଂଯୋଗ କରୁଅଛି। ଏହା ଏକ ପ୍ରାଚୀନ ସଡ଼କପଥ। ଦ୍ୱିତୀୟ ଶ୍ରୀକ୍ଷେତ୍ର ଓଡ଼ଗାଁ'ଠାରୁ ପୁରୀ ବଡ଼ଦାଣ୍ଡକୁ ପ୍ରଶସ୍ତ ଜଗନ୍ନାଥ ସଡ଼କ ସଂଯୋଗ କରୁଅଛି। ନୟାଗଡ଼ର ପର୍ଯ୍ୟଟନ କ୍ଷେତ୍ରଗୁଡ଼ିକ ଜିଲ୍ଲା ପ୍ରଶାସନର ବହୁତ ନିକଟରେ- ପ୍ରାୟତଃ ହାତ ପାଆନ୍ତି ଦୂରତାରେ। କ୍ଷେତ୍ରଗୁଡ଼ିକ ପୌରାଣିକ ସତ୍ୟତା କିମ୍ବଦନ୍ତୀର ଆଳାପ, ଲୋକକଥା ତର୍କ ବିତର୍କ ମଧ୍ୟରେ ଚମତ୍କାର ଦର୍ଶନୀୟ ସ୍ଥାନ।

<u>ନୟାଗଡ଼ର ପର୍ଯ୍ୟଟନ ମାନଚିତ୍ର- ଉଦୟପୁର ପାଠାଗାର :</u> ଶ୍ରୀଅରବିନ୍ଦ ସଂଗ୍ରହାଳୟ, ବାଞ୍ଛାନିଧି ପାଠାଗାର, ଯଦୁମଣି ସାହିତ୍ୟ ସଂସଦ ପ୍ରତିଷ୍ଠାତା ଦାଶରଥି ପଟ୍ଟନାୟକ ଓରଫ ଦାସିଆ ଅଜା ନୟାଗଡ଼ ଜିଲ୍ଲାର ଆନ୍ତର୍ଜାତୀୟ ପରିଚିତ ବ୍ୟକ୍ତିବିଶେଷ। ୧୯୫୩ ମସିହା ବେଳକୁ ସେ ପାଠାଗାର ଆନ୍ଦୋଳନର ସଫଳ କର୍ମବୀର ଭାବରେ ତାଙ୍କର ନିଜ ଘରେ ଶ୍ରୀଅରବିନ୍ଦ ସଂଗ୍ରହାଳୟ, ବାଞ୍ଛାନିଧି ପାଠାଗାର, ଯଦୁମଣି ସାହିତ୍ୟ ସଂସଦ ନାମରେ ପାଠାଗାର ଆରମ୍ଭ କରିଥିଲେ। ୧୯.୫.୧୯୫୯ ମସିହାରେ ଏହି ପାଠାଗାର ଆନୁଷ୍ଠାନିକ ଭାବରେ ରମାଦେବୀଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା। ପାଠାଗାରଟି ନୟାଗଡ଼ ଜିଲ୍ଲା ନୂଆଗାଁ ବ୍ଲକ୍‌ର ଗଭୀର ଆରଣ୍ୟକ ପୃଷ୍ଠଭୂମି ଉପରେ ପଲ୍ଲୀ ଅଞ୍ଚଳର ପାଠାଗାର। ସାହିତ୍ୟିକଟିଏ, ଅନୁସନ୍ଧିତ୍ସୁ ଗବେଷକଟିଏ ରାଜପଥର ଶାଳ ଜଙ୍ଗଲର ସବୁଜ ସୁଡ଼ଙ୍ଗ ଭେଦକରି ଗଲାବେଳେ ତା'ର ଗବେଷଣା ଇଚ୍ଛା ଶତଗୁଣ ବଢ଼ିଯାଏ। ନାନାଜାତିର ବୃକ୍ଷରାଜି ଭିତରେ ଅଙ୍କାବଙ୍କା ପଲ୍ଲୀପଥରେ ପ୍ରକୃତି କୋଳରେ ଶାନ୍ତ, କୋମଳ ପଲ୍ଲୀ ଜୀବନ

ସହିତ କିପରି ମିଶିଯାଏ ତାକୁ ବି ଅଜଣା । ଦାଣ୍ଡର ଦୁଇ ପାର୍ଶ୍ୱରେ ନଡ଼ା ଛପରର ଚାଳଘର ସାହି ମଧ୍ୟରେ ଥୁଣ୍ଟାତଡ଼ା ମୁକୁଟବିହୀନ ରାଜା ଦାଶରଥୀ ପଟ୍ଟନାୟକଙ୍କ ପାଠାଗାର । କେଉଁଦିନରୁ ମଣିଷଟିଏ ଲୋଭର କୃପଣ ହୋଇଯାଏ ଗବେଷକଟି ସତେ ଏ ପୀଠ ତାକୁ ଆପଣାର ଆପଣାର ଲାଗେ । ଦେଶରେ କେତେ ବଡ଼ ସାଧନାର କ୍ଷେତ୍ର ଏ ପଲ୍ଲୀଗ୍ରାମ ଉଦୟପୁର । ସ୍ୱାର୍ଥର କର୍ମ ଜୀବନ (ଚାକିରି ଜୀବନ)କୁ ତ୍ୟାଗକରି ତ୍ୟାଗର କର୍ମ ଜୀବନରେ ସାଧନାରତ ଥିଲେ ଦାଶରଥୀ ପଟ୍ଟନାୟକ । ଅନୁଷ୍ଠାନଟିଏ ଗଢ଼ିହୁଏ ଏପରି- 'ମଣିଷ ଜନ୍ମ ହୁଏ କିଛି ଚିହ୍ନ ରଖିବା ପାଇଁ । ମା'ଚଟ୍ଟୁକାଠୀରେ ପିଲାକୁ ଯେପରି ଚିହ୍ନ ଦେଇଥାଏ- ସେହିପରି ଚିହ୍ନ ରଖିବାକୁ ସମସ୍ତେ ଚାହାଁନ୍ତି । ମୋର ପଢ଼ିବାର ନିଶା ଗାଁ ଗହଳିରେ ଶିକ୍ଷା ଓ ସାଧାରଣ ଜ୍ଞାନର ଉନ୍ନତି, ଦେଶ ବିଦେଶର କଥା ଜାଣିବା ଏବଂ ପ୍ରତିଭାବାନ ବ୍ୟକ୍ତିଙ୍କୁ ଚିହ୍ନିବା ପାଇଁ ବିନା ମୂଳ ଧନରେ ଏ ଅନୁଷ୍ଠାନ ଗଢ଼ା ହେଲା । ଦାଶିଆ ଅଜା ଜଣେ ଆସକ୍ତିବିହୀନ ସନ୍ନ୍ୟାସୀ ରୂପ ସମସ୍ତଙ୍କୁ ନିଜର କରିନେବାର ଅମାପ ଦକ୍ଷତା ସେ ସାଧକଙ୍କଠାରେ । ସେ କେବଳ ମାଗି ମାଗି ଏତେ ବଡ଼ ଗ୍ରନ୍ଥାଗାର ଗଢ଼ି ତୋଳିଛନ୍ତି । ତାଙ୍କ ଅନୁଷ୍ଠାନକୁ ଦେଖି ବୁଝିହୁଏ କେତେ ସାଧନା କେତେ କଷ୍ଟ ଭିତରେ ସେ ଏହାକୁ ଗଢ଼ିଛନ୍ତି । ଦାଶରଥୀ ପଟ୍ଟନାୟକ ଲାଇବ୍ରେରୀ ଟ୍ରଷ୍ଟ ପକ୍ଷରୁ ପ୍ରକାଶିତ ପାଠାଗାରରେ ପଞ୍ଜିକୃତ- ପୃଥିବୀର ବିଭିନ୍ନ ଭାଷାର ପୁରାତନ ଓ ଆଧୁନିକ ୪୦ ହଜାର ବିରଳ ପୁସ୍ତକ, ଅଭିଧାନ ସମେତ ୨ହଜାର ୫ଶହ ପ୍ରକାରର ୬୫ ହଜାର ପତ୍ରପତ୍ରିକା ସଂଗୃହୀତ ହୋଇ ରହିଛି ।

<u>ସଂଗ୍ରହାଳୟ :</u> ସଂଗ୍ରହାଳୟରେ ୧ହଜାର ୫ଶହ ପୁରାତନ ତାଳପତ୍ର ପୋଥି ଏବଂ ଚିତ୍ରପୋଥି ସମେତ ଆଦିମ ଯୁଗଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଦେଶ ବିଦେଶର ବହୁ ପ୍ରାଚୀନ ସ୍ୱର୍ଣ୍ଣ, ରୌପ୍ୟ, ତାମ୍ରମୁଦ୍ରା, ପୁରାତନ ଯୁଗର ଅସ୍ତ୍ରଶସ୍ତ୍ର, ଦେଶ ବିଦେଶର ଖଣିଜ ସଂପଦର ଉପାଦାନ, ବିଭିନ୍ନ କାଠ ସାମଗ୍ରୀ ଓ ଚାରୁଶିଳ୍ପ କଳାର ବହୁ ପୁରାତନ ଓ ନୂତନ ମୂର୍ତ୍ତି ଚିତ୍ର, ପଟ୍ଟଚିତ୍ର, କାଠ, କାର୍ପାସ, କାଗଜ, ବାଉଁଶ ଓ ବିଭିନ୍ନ ଧାତୁର ଅନେକ ହସ୍ତଶିଳ୍ପ, ପ୍ରାଗ୍ ଐତିହାସିକ ପ୍ରସ୍ତର ଯୁଗର ବିଭିନ୍ନ ପ୍ରକାରର ମୂର୍ତ୍ତିକା, ସିଲ୍, ଆଦିବାସୀ ସଭ୍ୟତାର ବେଶପୋଷାକ, ଅଳଙ୍କାର ତଥା ଅନ୍ୟାନ୍ୟ ଉପାଦାନ, ସଙ୍ଗୀତ ଯନ୍ତ୍ରପାତି, ଦେଶ ବିଦେଶର ଅନେକ ପ୍ରକାର ଡାକଟିକଟ, ମହାପୁରୁଷ ସାଧୁସନ୍ଥମାନଙ୍କର ଜନ୍ମସ୍ଥାନର ମାଟି, ପାଣି ଓ ସେମାନଙ୍କ ବ୍ୟବହୃତ ବିଭିନ୍ନ ପଦାର୍ଥ, ଅଗଣିତ ଫଟୋଚିତ୍ର, ବିଭିନ୍ନ ପ୍ରକାର ଖାଦ୍ୟ ଶସ୍ୟ, ତୈଳବୀଜର ନମୁନା, ଅନେକ ପ୍ରକାର ଫୁଲ, ଫଳର ପ୍ରାକୃତିକ ନମୁନା । ବିଭିନ୍ନ ଦେଶର ମାନଚିତ୍ର, ପୁରାତନ ଯୁଗର ମାପ ଓ ଓଜନର ଏକକ ମାନ, ଚନ୍ଦ୍ରମଣ୍ଡଳ ପଥର,ବିଭିନ୍ନ ପ୍ରକାର ଦୀପ ଓ ମାଟିପାତ୍ର, ଚେରମୂଳ ତଥା ଲତା ଗୁଳ୍ମ, ରାଜାରାଜୁଡ଼ା

ଅମଳର ଦସ୍ତାବିଜ, ଅମୂଲ୍ୟ ଚିଠିପତ୍ର, ଡାଇନୋସର, ଫସିଲ ସହ ବହୁ ଦୁର୍ମୂଲ୍ୟ ପଦାର୍ଥମାନ ସଂଗ୍ରହାଳୟରେ ୪୦ଗୋଟି ବିଭାଗରେ ସଂଗୃହୀତ ହୋଇ ରହିଛି।

**ସାହିତ୍ୟ ସଂସଦ :** ଆଜି ପାଠାଗାର ଓ ସଂଗ୍ରହାଳୟ ଏକ ଅତୁଳନୀୟ ଗବେଷଣା କେନ୍ଦ୍ର ପାଲଟି ରାଜ୍ୟ ତଥା ଦେଶ ବିଦେଶର ଶହ ଶହ ସଂଖ୍ୟକ ଗବେଷକ, ପାଠକ, ଦର୍ଶକ, ପର୍ଯ୍ୟଟକ, କବି, ଲେଖକ, ସାହିତ୍ୟିକ, ସାମ୍ବାଦିକ, ରାଜନୀତିଜ୍ଞ ଓ ଜ୍ଞାନ ପିପାସୁମାନଙ୍କୁ ଆକର୍ଷିତ କରିପାରିଛି।

କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ପ୍ରଫେସର ଡଃ. କୋଆନା ଉଇଲିୟମସ୍ ୧୯୭୯ରେ ଏହି ମହାନ ସାଂସ୍କୃତିକ ସମ୍ଭାରମାନଙ୍କୁ ପରିଦର୍ଶନ କରି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଥିଲେ। ଏକକ ଉଦ୍ୟମରେ ଏପରି ପାହାଡ଼ ଜଙ୍ଗଲ ଘେରା ଏକ ଆଦିବାସୀ ଅଧ୍ୟୁଷିତ ଗ୍ରାମ୍ୟ ପରିବେଶ ମଧ୍ୟରେ ଗଢ଼ି ଉଠିଥିବା ଏପରି ବିରାଟ ଗ୍ରନ୍ଥାଗାର, ସଂଗ୍ରହାଳୟ ଓ ସାହିତ୍ୟ ଅନୁଷ୍ଠାନ ବିଶ୍ୱରେ ବିରଳ।

ସାଧକ ଦାଶରଥି ପଟ୍ଟନାୟକଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ଅନୁଷ୍ଠାନମାନଙ୍କର ସ୍ଥିତି ଓ ପ୍ରଗତିକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଟ୍ରଷ୍ଟ ପକ୍ଷରୁ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଉଛି। ପୁସ୍ତକ ପତ୍ରପତ୍ରିକା, ତାଳପତ୍ର ପୋଥି ଓ ସମସ୍ତ ମୂଲ୍ୟବାନ ଦୁଷ୍ପ୍ରାପ୍ୟ ପଦାର୍ଥମାନ ସଂଗ୍ରହ କରାଯାଉଛି। ଟ୍ରଷ୍ଟ ଏହି ମହାନ୍ ଜାତୀୟ ସାଂସ୍କୃତିକ କାର୍ଯ୍ୟରେ ସହଯୋଗ କରିବାପାଇଁ ରାଜ୍ୟବାସୀଙ୍କର ସହଯୋଗ କାମନା କରିଆସୁଛି।

GOVERNMENT OF ORISSA DEPARTMENT OF TOURISM AND CULTURE (TOURISM) STATISTICAL BULLETIN-୨୦୦୯ ମସିହା ରାଜ୍ୟ ପର୍ଯ୍ୟଟନ ସଂଖ୍ୟା ଆକଳନରୁ ବାଞ୍ଛାନିଧିବ ପାଠାଗାର ଶ୍ରୀ ଅରବିନ୍ଦ ସଂଗ୍ରହାଳୟ ଓ ଯଦୁମଣି ସାହିତ୍ୟ ସଂସଦ ଉଦୟପୁରକୁ ୨୦୦୮ ମସିହାରେ ପର୍ଯ୍ୟଟନରେ ଆସିଥିବା ମୋଟ ଘରୋଇ ପର୍ଯ୍ୟଟକ ସଂଖ୍ୟା ୩୬୬୦, ୨୦୦୯ ମସିହାରେ ମୋଟ ଘରୋଇ ପର୍ଯ୍ୟଟକ ସଂଖ୍ୟା ୩୭୩୫, ୨୦୧୦-୧୧ରେ ମୋଟ ଘରୋଇ ପର୍ଯ୍ୟଟକ ସଂଖ୍ୟା ୯୨୦୦। ୨୦୨୧ ମସିହା ସେହି କ୍ରମରେ ପର୍ଯ୍ୟଟକ ସଂଖ୍ୟା ବଢ଼ି ଚାଲିଛି।

ଏ ସାଂସ୍କୃତିକ ପୀଠକୁ ପର୍ଯ୍ୟଟନ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇଁ ନୂଆଗାଁ ଠାରେ ଦଶପଲ୍ଲା, ବଉଦ, ବଲାଙ୍ଗୀର ନଂ୫୭ ଜାତୀୟ ରାଜପଥକୁ ଉଦୟପୁର ପାଠାଗାର ଗ୍ରାମପଥକୁ ସଂଯୁକ୍ତ ସ୍ଥାନରେ ସରକାରଙ୍କ ଦ୍ୱାରା ଓଡ଼ିଶୀ କଳାକୃତିରେ ଆକର୍ଷଣୀୟ "ଉଦୟପୁର ଗ୍ରାମ୍ୟ ପର୍ଯ୍ୟଟନ ଫାଟକ" ନିର୍ମାଣ କରାଯିବା ଜରୁରୀ ଅଟେ। ଯେହେତୁ ଏହା ରାଜଧାନୀ ଠାରୁ ଫୁଲବାଣୀ ବଲାଙ୍ଗୀର ଜାତୀୟ ରାଜପଥ ଉପରେ ନିର୍ମିତ ହେବ ଏ ଫାଟକର ସୂଚନା ଯାତ୍ରୀଙ୍କୁ ଆକୃଷ୍ଟ କରିବ। ଉଦୟପୁର ଗ୍ରାମ୍ୟ ପରିବେଶରେ ଅବସ୍ଥିତ ହୋଇଥିବାରୁ ଏଠାରେ ଏକ ବିରଳ ଔଷଧୀୟ ଉପବନ ସ୍ଥାପନର ବ୍ୟବସ୍ଥା ଅତ୍ୟନ୍ତ ଜରୁରୀ ଆବଶ୍ୟକତା ରହିଛି।

<u>ଦଶପଲ୍ଲା ଓ କୁଆଁରିଆ :</u> ଦଶପଲ୍ଲା କୁଞ୍ଜବନ ଗଡ଼ର ଆରାଧ୍ୟ ଦେବତା ମହାବୀର ଜୀଉ। ମହାବୀର ଜୀଉ ବରଦାୟିନୀ ପର୍ବତର ଏକ ପଥର ଗୁମ୍ଫାରୁ ଅଣାଯାଇ ଗଡ଼ ମଧ୍ୟରେ ସ୍ଥାପନ କରାଯାଇଥିଲେ। ସେ ପଥର ଗୁମ୍ଫା ସ୍ଥାନ ଏକ ମନୋହର ସ୍ଥାନ। ଏ ସ୍ଥାନକୁ ଏବେ ପର୍ଯ୍ୟଟନ କ୍ଷେତ୍ର ଭାବରେ ନିଆଗଲାଣି। ବରଦାୟିନୀ ପାହାଡ଼ର ଉତ୍ତର ଦିଗରେ ସନ୍ଥ ଅବିନାଶ ଦାସଙ୍କ ଆଶ୍ରମ। ଏହା ବାବାଙ୍କ ସାଧାରଣ ବିରଳ ଔଷଧୀୟ ବୃକ୍ଷମାନଙ୍କର ଏକ ଉପବନ। ମହାବୀରଙ୍କ ପୀଠରେ ପ୍ରତିବର୍ଷ ପ୍ରସିଦ୍ଧ ଲଙ୍କାପୋଡ଼ି ଯାତ୍ରା ରାଜ୍ୟର ହଜାର ହଜାର ଜନସମାଗମରେ ଗହଳଚହଳ। ଦଶପଲ୍ଲାର ସବୁଠାରୁ ଚିତ୍ତାକର୍ଷକ ସ୍ଥାନ ହେଉଛି କୁଆଁରିଆ ଡ୍ୟାମ୍। ଏହା ଜିଲ୍ଲାର ଏକ ପ୍ରସିଦ୍ଧ ପିକ୍‌ନିକ୍ ସ୍ଥାନ। ଦଶପଲ୍ଲାର ପ୍ରଧାନ ଛକ ଠାରୁ ଅଳ୍ପ ଦୂରରେ ଜାତୀୟ ରାଜପଥର ବାମପାର୍ଶ୍ୱରେ ଦକ୍ଷିଣ ପଶ୍ଚିମକୁ ପଡ଼ିଥିବା କୁଆଁରିଆ ରାସ୍ତା। ରାସ୍ତାର କୁଆଁରିଆ ମୃଗବିହାର ସୂଚନା ଫଳକ ରହିଛି। ଆରମ୍ଭରୁ ରାସ୍ତାର ଡାହାଣ ପାର୍ଶ୍ୱରେ ମୃଗବିହାର ଶାଳବଣ ଉପବନ। ଟିକେ ଆଗକୁ ଗଡ଼ିଗଲେ କୁଆଁରିଆ ନଦୀ ଉପରେ କୁଆଁରିଆ ନଦୀବନ୍ଧ। କୁଆଁରିଆ ନଦୀର ଦୁଇକୂଳ ପାହାଡ଼କୁ ଦୀର୍ଘବନ୍ଧ ଦ୍ୱାରା ନଦୀଜଳକୁ ଆବଦ୍ଧ କରାଯାଇଛି। ବନ୍ଧର ଦକ୍ଷିଣରୁ ପଶ୍ଚିମ ସଂପୂର୍ଣ୍ଣ ଉତ୍ତରକୁ ଦନ୍ତୁରିତ ପ୍ରଶସ୍ତ ଜଳରାଶି। ଦୂର ଦକ୍ଷିଣ ପଶ୍ଚିମ, ଉତ୍ତରକୁ ଗୟଳମଡ଼ା ପାହାଡ଼, କାଉଘାଟି ପାହାଡ଼, ପାଳଦମକ ଘାଟି ଓ ଅନେକ ଅନେକ ଭଙ୍ଗିଳ ପାହାଡ଼ର ଘେର ଭିତରେ କୁଆଁରିଆର ଝଲମଲ ଜଳତରଙ୍ଗ। ଗଭୀର ଆରଣ୍ୟକ ସ୍ଥିତି ମଧ୍ୟରେ କୁଆଁରିଆ ପ୍ରଶସ୍ତ ଚହଲା ଜଳରେ ହଂସ, ହସରାଳିଙ୍କର କ୍ରୀଡ଼ା କୌତୁକ ବେଶ୍ ପ୍ରମୋଦଦାୟକ। ପୂର୍ବକୁ ଦଶପଲ୍ଲା ଗଡ଼, ଡ୍ୟାମ୍‌ର ତଳ ଦେଶରେ ଓଡ଼ଶର, ମହୁଲିଆ, କାମୁଚି ପଙ୍କା, ନେଳିଗୁଡ଼ା, ପଥରପୁଞ୍ଜିପଲ୍ଲୀ ଗାଁ। ଏ ରାସ୍ତାରେ ଧାଡ଼ିହୋଇ ଯାଉଥିବା ଆଦିବାସୀ ଝିଅଙ୍କର ଦୃଶ୍ୟ ଭାରି ଲୋଭ ଲାଗେ। ଏକାନ୍ତରେ କୁଆଁରିଆ ଦର୍ଶକ ପ୍ରାଣକୁ ଛନ୍ଦିନିଏ। କୁଆଁରିଆ ଲୋଭରେ ପଡ଼ିଯାଏ ଦର୍ଶକ। କୁଆଁରିଆ ଜଳପୃଷ୍ଠରେ ପର୍ଯ୍ୟଟକର ନୌବିହାର କରିବାର ଇଚ୍ଛା ବଢ଼ିଥାଏ। ଅରଣ୍ୟ ଭିତରେ ନିଛାଟିଆ କୁଆଁରିଆ ଭାରି ସୁନ୍ଦର। ଉପଭୋଗ କରିବାର ଇଚ୍ଛା ମନରୁ ଛାଡ଼େନି। କୁଆଁରିଆରୁ ଫେରିଲେ ମୃଗବିହାର ଉପବନରେ ପଶିବାକୁ ହୁଏ। ଆବଦ୍ଧ କ୍ଷୁଦ୍ର ଜଙ୍ଗଲ ସରହଦ ଭିତରେ ସଂଖ୍ୟାଧିକ ହରିଣ ବୁଲୁଥିବାର ଦୃଶ୍ୟ ଭାରି କୌତୂହଳ ଲାଗେ। କଅଁଳ ଛନଛନ ପତ୍ର ହାତରୁ ଖାଉଥିବା କ୍ଷିପ୍ର ବେଗର ହରିଣ ସାଥିରେ ଖେଳିବାକୁ ହୁଏ। ବିଭିନ୍ନ ମହଲରୁ ବର୍ଷରେ ହଜାର ହଜାର ପର୍ଯ୍ୟଟକ ପିକ୍‌ନିକ୍ କରିବାକୁ ଏଠାକୁ ଆସିଥାନ୍ତି। ରାଜ୍ୟ ପର୍ଯ୍ୟଟନ ବିଭାଗର ୨୦୦୯ ଆକଳନରୁ ଜଣାପଡ଼େ କୁଆଁରିଆକୁ ୨୦୦୭ ମସିହାରେ ମୋଟ ଘରୋଇ ପର୍ଯ୍ୟଟକ ୫୭,୯୦୦ ପର୍ଯ୍ୟଟନରେ

ଆସିଥିଲେ। ୨୦୦୮ ମସିହାରେ ମୋଟ ଘରୋଇ ପର୍ଯ୍ୟଟକ ୬୦,୨୦୦ ପର୍ଯ୍ୟଟନରେ ଆସିଥିଲେ। ୨୦୦୯ ମସିହାରେ ମୋଟ ଘରୋଇ ପର୍ଯ୍ୟଟକ ୬୨,୬୧୦ ବର୍ଷର ବିଭିନ୍ନ ସମୟରେ ଆସି ଫେରିଥିଲେ। ୨୦୦୭ ମସିହାରୁ ୨୦୦୯ ମସିହା ମଧ୍ୟରେ ପର୍ଯ୍ୟଟନ ବିଭାଗ ଗଣନା ଅନୁଯାୟୀ ସେ ବର୍ଷରୁ ଏବର୍ଷ ଯାଏ ପର୍ଯ୍ୟଟକ ସଂଖ୍ୟା ବୃଦ୍ଧି ପାଉଥିବାର ଜଣାପଡ଼େ।

ତରବାଲୁ : ନୟାଗଡ଼ର ଉତ୍ତର ପଥରେ ୧୯କି.ମି. ଦୂରରେ ଖଣ୍ଡପଡ଼ାଗଡ଼। ଖଣ୍ଡପଡ଼ା ଗଡ଼ ଠାରୁ ପୂର୍ବ ରାସ୍ତାରେ ବାହାଡ଼ା କାଚରାସାହି, ଜାମୁସାହି, ଗୋଲାପୋଖରୀ ରାସ୍ତାରେ ୧୯କି.ମି. ଅତିକ୍ରମ କଲେ ତରବାଲୁ କିଆବଣିଆ ଉଷ୍ମ ପ୍ରସ୍ରବଣ ଦହଲ ପଡ଼େ। ନୟାଗଡ଼ ଜିଲ୍ଲାର ସରହଦ ଉପରେ ଭାପୁର ବ୍ଲକ ପୂର୍ବ ସୀମାନ୍ତରେ ତରବାଲୁ ଏକ ଶିକ୍ଷିତ ବଡ଼ ଗାଁ। ଏହାର ଲୋକସଂଖ୍ୟା ୨୦୦୦ରୁ ଊର୍ଦ୍ଧ୍ୱ। ତରବାଲୁ ରାସ୍ତାରୁ କିଆବଣିଆକୁ ଅର୍ଦ୍ଧନିର୍ମିତ ଖଦଡ଼ ମରମ ନାଲି ରାସ୍ତାଟିଏ ପଡ଼ିଛି। କିଆବଣିଆ ଉଷ୍ମ ପ୍ରସ୍ରବଣ ଦହଲା କ୍ଷେତ। କେତକିଶ୍ୱରୀ ଠାକୁରାଣୀଙ୍କର ଚାଞ୍ଚରା ବେଢ଼ା ମନ୍ଦିର। ପାଞ୍ଚଟି ଉଷ୍ମ ପ୍ରସ୍ରବଣ ଜାଗାକୁ ସିମେଣ୍ଟ କୁଣ୍ଡ ଦ୍ୱାରା ଆବଦ୍ଧ କରାଯାଇଛି। ସର୍ବଦା ଜଳ ଭିତରୁ ଉଷ୍ମ ଫୋଟକା ଉପରକୁ ଉଠି ଆସୁଛି। ଜଳକୁ ଛୁଇଁଲେ ଖୁବ୍ ଗରମ ଲାଗେ। ଏପରିକି ଚାଉଳ ଭାତ ହୋଇଯିବ। ପାଖରେ ଶୀତଳ ଜଳର କୁଣ୍ଡ ବି ଅଛି। ତତଲା ଜଳକୁଣ୍ଡରେ ଚର୍ମ ରୋଗ ଦ୍ୱାରା ଆକ୍ରାନ୍ତ ରୋଗୀମାନେ ଆରୋଗ୍ୟ ହେବାପାଇଁ ସ୍ନାନ କରିବାର ଦେଖାଯାଏ। କିଆବଣିଆ ଭିତରେ ସଂଖ୍ୟାଧିକ ଉଷ୍ମ ପ୍ରସ୍ରବଣ କ୍ଷେତ୍ର ଅସଂରକ୍ଷିତ ଅବସ୍ଥାରେ ଦେଖାଯାଏ। ଦହଲ ପାଖକୁ ଲାଗିଥିବା କେତେକ ଜମିର ଠାଏ ଠାଏ ପଡ଼ିଆ ପଡ଼ିଥାଏ। ଏ ପଡ଼ିଆ ସ୍ଥାନରେ ଛୋଟ ଛୋଟ ଘାସ ଗଛ ଉଠିଥାଏ। ଏ ଜାଗାଗୁଡ଼ିକ ଶୀତଳ ଦହଲ। ଉଷ୍ମ ଦହଲରେ ଘାସ ରହିନାହିଁ। ଦହଲ ଭିତରେ ଚାଲିବା ନିରାପଦ ନୁହେଁ। ଚାଲୁ ଚାଲୁ ଗହ୍ୱର ଭିତରେ ପଶିଯିବାର ଆଶଙ୍କା ଥାଏ। ଏ ସ୍ଥାନରେ କେଜେବାପାଙ୍କ ଅମଳରୁ ଏଯାଏ ଲୋକ କାହାଣୀ ଶୁଣିବାକୁ ମିଳେ- ସାତଭାଇ ବୋଝେଇ ଶଗଡ଼ ନେଇ ଅଜଣା କିଆବଣିଆ ଦେଇ ଯାଉଥିଲେ। ଏ ଦହଲ ଭିତରେ ଶଗଡ଼ ସହିତ କେତେ ତଳକୁ ପଶିଗଲେ ତା'ର ପତ୍ତା ମିଳିଲା ନାହିଁ। କିଆବଣକୁ ପ୍ରବେଶପଥର ଡାହାଣ ପାର୍ଶ୍ୱରେ ପର୍ଯ୍ୟଟକମାନଙ୍କ ଜଳପାନ ପାଇଁ ଏକ ନଳକୂଅ ଖନନ କରାଯାଇଥିଲା। ତା' ଭିତରୁ ଉତ୍ତପ୍ତ ଜଳ ଉତ୍ସ ନିର୍ଗତ ହେବାରୁ ତାହା ଖୋଲା ରଖାଗଲା। ଏ ମାଟିରେ ଚାଲିଲେ ମାଟି ଦୋହଲେ। ଯା ଭିତରେ ଜଳଚର ପ୍ରାଣୀ ରହନ୍ତି ନାହିଁ। ଏ ତାତିଲା ଜଳ ଦେଇ ସାପ ବେଙ୍ଗ ପାରିହେଲେ ମରିଯାନ୍ତି। ଏ କ୍ଷେତ୍ରରେ ରଙ୍ଗବିହୀନ ହନୁମାନଙ୍କର ଦଣ୍ଡାୟମାନ ମୂର୍ତ୍ତିର ଦର୍ଶନ ମିଳେ। ରାଜ୍ୟ ପର୍ଯ୍ୟଟନ ବିଭାଗର ୨୦୦୯ ମସିହାର ଆକଳନ

୨୦୦୭ ମସିହାରେ ମୋଟ ୩୯,୦୦୦ ଘରୋଇ ପର୍ଯ୍ୟଟକ, ୨୦୦୮ରେ ମୋଟ ୪୧,୪୫୦ ଘରୋଇ ପର୍ଯ୍ୟଟକ, ୨୦୦୯ରେ ମୋଟ ୪୨,୨୮୦ ଘରୋଇ ପର୍ଯ୍ୟଟକ ତରବାଲୁକୁ ପର୍ଯ୍ୟଟନରେ ଆସିଥିଲେ। ବର୍ଷକୁ ବର୍ଷ ତରବାଲୁରେ ପର୍ଯ୍ୟଟକ ସଂଖ୍ୟା ବଢୁଛି ଆଗକୁ ବହୁଳ ସଂଖ୍ୟାରେ ପର୍ଯ୍ୟଟକ ବଢ଼ିବେ। ଏ ସ୍ଥାନକୁ ନିରାପଦ ରଖିବାପାଇଁ ପାଚେରୀ ଘେର ନିର୍ମାଣ କରିବା ସରକାରଙ୍କର ପ୍ରଧାନ ଦାୟିତ୍ୱ।

କେନ୍ଦ୍ର ପର୍ଯ୍ୟଟନ ସଚିବ ଏସ୍.କେ. ମିଶ୍ରଙ୍କର ତରବାଲୁ ଉପରେ ପ୍ରଶ୍ନର ଉତ୍ତର ଦେଇଥିଲେ। ନେତ୍ରାନନ୍ଦ ମଲିକ ଓଡ଼ିଶା ପର୍ଯ୍ୟଟନ ମନ୍ତ୍ରୀ- କଣ୍ଟିଲୋ ପରି ତରବାଲୁ ରାଜ୍ୟର ଏକ ପର୍ଯ୍ୟଟନ କେନ୍ଦ୍ର ଭାବେ ଚିହ୍ନଟ ହୋଇସାରିଛି। ଏଠାରେ ଉଷ୍ମ ପ୍ରସ୍ରବଣ ଥିବାରୁ ପର୍ଯ୍ୟଟକମାନଙ୍କର ଆକର୍ଷଣ ରହିଛି। ଏଠାରେ ପର୍ଯ୍ୟଟନର ବିକାଶ ପାଇଁ ଟି.ସି.ପି.ଓ. ଭାରତ ସରକାର ଏକ ମାଷ୍ଟର ପ୍ଲାନ ପ୍ରସ୍ତୁତ କରିଥିଲା। ଏହା ବିଚାରଧୀନ ଅଛି।

ଶିବାଜୀ ପଟ୍ଟନାୟକ ଏମ୍.ପି. ଭୁବନେଶ୍ୱର ୯.୩.୧୯୯୨ରେ ସେ ଲୋକସଭାରେ ପ୍ରଶ୍ନ ଉଠାଇଥିଲେ- Whether Govt. of Orissa has been requesting the union Govt. for developing Tarabalo sulpharic hot water spring area in Puri District as Tourist centre and if so, the action taken by the Union Govt. there on.

Madhabrao Sindhia Minister of tourism answered, “The central Department of tourism on the request of the State Govt. has commissioned a study by the town and country planning organisation for the preparation of master plan for the development of Tarabalo. As regards the declaration of an places as tourist centre it is responsibility of the State Govt.

ସମ୍ବାଦ ଖଣ୍ଡପଡ଼ା ତା.୯.୧୦.୧୯୯୯ (ଇ.ଏମ୍.ସି.) ଭାପୁର ତହସିଲ ଅନ୍ତର୍ଗତ ତରବାଲୁ ଉଷ୍ମପ୍ରସ୍ରବଣ ଉନ୍ନତି ତଥା ଏହି ଉଷ୍ମ ପ୍ରସ୍ରବଣକୁ ପର୍ଯ୍ୟଟନସ୍ଥଳୀର ମାନ୍ୟତା ଦେବାରେ ରାଜ୍ୟ ପର୍ଯ୍ୟଟନ ବିଭାଗ ଦୀର୍ଘବର୍ଷ ଧରି ଉଦାସୀନତା ପ୍ରକାଶ କରୁଥିବାରୁ ଏହି ଅଞ୍ଚଳର ବୁଦ୍ଧିଜୀବୀମାନେ ଅସନ୍ତୋଷ ପ୍ରକାଶ କରୁଛନ୍ତି। ବର୍ତ୍ତମାନ ରାଜ୍ୟ ପର୍ଯ୍ୟଟନ ବିଭାଗ ଦ୍ୱାରା ଚିହ୍ନିତ ପାଞ୍ଚଗୋଟି ଉଷ୍ମ ପ୍ରସ୍ରବଣ ତୁଳନାରେ ଏହା ଏକ ବୃହତ୍ ଉଷ୍ମ ପ୍ରସ୍ରବଣ ସଂଖ୍ୟାଧିକ ସ୍ଥାନରେ ଉଷ୍ମପ୍ରସ୍ରବଣ ଉଷ୍ମ ଜଳ ନିର୍ଗତ ହେଉଛି।

ନୀଳକଣ୍ଠ ପ୍ରସାଦ କିଆଶୁଣି ଠାକୁରାଣୀଙ୍କ ଅଞ୍ଚଳ ମଧ୍ୟରେ ଏସିଆର ଏହି ବୃହତ୍ ଉଷ୍ଣ ପ୍ରସ୍ରବଣ ସ୍ଥାନକୁ ତରବାଲ ଉଷ୍ଣ ପ୍ରସ୍ରବଣରୁ ନୀଳକଣ୍ଠପ୍ରସାଦ ଉଷ୍ଣପ୍ରସ୍ରବଣ ନାମକରଣ କରାଯାଇଥିବା ନୟାଗଡ଼ ଜିଲ୍ଲା ରେଭିନ୍ୟୁ କାର୍ଯ୍ୟାଳୟ ଚିଠି କରିଛି । ଚିଠିର ନମ୍ବର ହେଉଛି 952/Rev. Dt. 24.9.2009 Remaining of "Tarabalo" as Nilakanthaprasad Hot Sulphur Spring ନାମରେ ଜାରି କରାଯାଇଛି ।

**କଣ୍ଟିଲୋ :** ନୟାଗଡ଼ ଠାରୁ ୩୫ କି.ମି. ଉତ୍ତରରେ ମହାନଦୀ ତଟରେ କଣ୍ଟିଲୋ ଅବସ୍ଥିତ। କଣ୍ଟିଲୋ କଣ୍ଟକିତ ବନ। ବାସ୍ତବରେ କଣ୍ଟିଲୋ ଅଞ୍ଚଳ ମହାନଦୀ ଦକ୍ଷିଣ ତଟକୁ ଲାଗି ପଛକୁ ପଛକୁ ଅସଂଖ୍ୟ ଛୋଟବଡ ପାର୍ବତ୍ୟ ଅଞ୍ଚଳ। ମହାନଦୀ ବ୍ରହ୍ମାଦ୍ରୀ ପର୍ବତ ପାଦକୁ ଇଂରାଜୀ ୟୁ ଆକାରରେ ଧୋଇ ତଳକୁ ବହିଯାଉଛି। ଅର୍ଥାତ୍ ବ୍ରହ୍ମାଦ୍ରୀ ପର୍ବତ ମହାନଦୀକୁ ଠେଲି ଠିଆ ହୋଇଥାଏ। ମହାନଦୀର ପ୍ରଶସ୍ତ ଶଯ୍ୟା ଉପରେ ଅରଣ୍ୟର ମନୋହର ଶୀତଳ ପବନ ମଧୁର ଲାଗେ। ଦର୍ଶନରେ ମହାନଦୀ ଶୋଭା ସନ୍ଧ୍ୟାର ବେଳୁଁବେଳ ଚମତ୍କାର ହୋଇଉଠେ। ପ୍ରାକୃତିକ ସୌନ୍ଦର୍ଯ୍ୟର ପ୍ରାଚୁର୍ଯ୍ୟ ମଧ୍ୟରେ ଶବର ରାଜା ବିଶ୍ୱାବସୁ ବ୍ରହ୍ମାଦ୍ରୀ କନ୍ଦରର ବ୍ୟାଘ୍ର ଗୁମ୍ଫାରେ ନୀଳମାଧବଙ୍କୁ ପୂଜା କରୁଥିଲେ। ଏହାହିଁ ବହୁକାଳରୁ ଲୋକକାହାଣୀ। ନୀଳମାଧବ ମହାପ୍ରଭୁଙ୍କ ସହିତ ପୌରାଣିକ କଥା ସଂପୂର୍ଣ୍ଣ ଯୋଡ଼ି ହୋଇ ଲୋକମୁଖରେ ଇତିହାସ ଆଡ଼କୁ ଟାଣିହୋଇ ଆସେ। ସାରଳା ମହାଭାରତରେ ଜାରା ଶବର ଦ୍ୱାରା ଶରାଘାତ ହୋଇ ଭଗବାନ ଶ୍ରୀକୃଷ୍ଣଆହତ ହେଲେ। ଅର୍ଜୁନ ଗାଣ୍ଡିବ ଧନୁରେ ଶ୍ରୀକୃଷ୍ଣଙ୍କୁ ସ୍ପର୍ଶ କରିବାରେ ତାଙ୍କଠାରୁ ବିଷ୍ଣୁକଳା ହରଣ ହୋଇଗଲା। ତା'ପରେ ଶ୍ରୀକୃଷ୍ଣ ଦେହତ୍ୟାଗ କଲେ। ଶୂନ୍ୟବାଣୀ ହୋଇଥିଲା "ହେ ଅର୍ଜୁନ ନୀଳସୁନ୍ଦର ପର୍ବତରେ ସେହି ଶରୀରକୁ ଦାହ କର। ଅର୍ଜୁନ ଅଗୁର କାଷ୍ଠରେ ଭଗବାନଙ୍କର ପିଣ୍ଡଦାହ କଲେ। ମାତ୍ର ନାଭିପିଣ୍ଡ ଅପୋଡ଼ା ରହିଲା। ଅପୋଡ଼ା ନାଭିପିଣ୍ଡକୁ ସମୁଦ୍ରରେ ଭସାଇ ଦେବାକୁ ସ୍ୱପ୍ନାଦେଶ ହେଲା। ନାଭିପିଣ୍ଡକୁ ଅର୍ଜୁନ ସମୁଦ୍ରରେ ବିସର୍ଜନ କରି ହସ୍ତିନା ଫେରିଲେ। ଅର୍ଜୁନଙ୍କ ପ୍ରତ୍ୟାବର୍ତ୍ତନରେ ଜାରାଶବର ଅପୋଡ଼ା ନାଭିପିଣ୍ଡକୁ ଉଦ୍ଧାର କରି ନୀଳମାଧବ ରୂପରେ ପୂଜା କଲା। ପରବର୍ତ୍ତୀ କାଳରେ ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନାଦେଶ ପାଇ କୁଳଗୁରୁ ବିଦ୍ୟାପତିଙ୍କ ଦ୍ୱାରା ନୀଳମାଧବଙ୍କ ମୂର୍ତ୍ତି ଖୋଜି ପାଇଥିଲେ। ଯେତେବେଳେ କି ବିଶ୍ୱାବସୁ ବ୍ରହ୍ମାଦ୍ରୀ ପର୍ବତରେ ନୀଳମାଧବଙ୍କ ପୂଜା କରୁଥିଲେ। ବିଦ୍ୟାପତି ବିଶ୍ୱାବସୁଙ୍କ କନ୍ୟା ଲଳିତାକୁ ବିବାହ କରିଥିଲେ। ଭଗବାନ ନୀଳମାଧବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଭକ୍ତିରେ ବାନ୍ଧିହୋଇ ସ୍ୱପ୍ନାଦେଶ କଲେ ଦାରୁ ହୋଇ ବାଙ୍କି ମୁହାଣରେ ଲାଗିବେ। ତାହାହିଁ ହେଲା। ରାଜା ଭାସମାନ ଦାରୁକୁ ନେଇ ବିଶ୍ୱକର୍ମାଙ୍କୁ ଆରାଧନା କଲେ

ଚାରିମୂର୍ତ୍ତି ଗଢ଼ିବା ପାଇଁ। ବିଶ୍ୱକର୍ମା ଗଢୁ ଗଢୁ କାରଣବଶତଃ ଚାରିଦିଅଁ ଅଧାଗଢ଼ା ହୋଇ ରହିଗଲେ- ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ, ସୁଦର୍ଶନ। ବିଦ୍ୟାପତି ଲଳିତା ସଂପର୍କରେ ସୁନ୍ଦର ଲୋକକାହାଣୀ ଶୁଣିବାକୁ ମିଳେ। ବହୁକାଳରୁ ଭକ୍ତମାନଙ୍କ ଯୁକ୍ତିରେ ଜଗନ୍ନାଥ ବିଗ୍ରହରେ ଅଧିଷ୍ଠ ବ୍ରହ୍ମ ଭଗବାନ ଶ୍ରୀକୃଷ୍ଣଙ୍କର ଅପୋଡ଼ା ନାଭିପିଣ୍ଡ ଏବଂ ସେହି ବ୍ରହ୍ମାଦ୍ରି ବିଶ୍ୱାବସୁ ପୂଜିତ ନୀଳମାଧବ। ଜଗନ୍ନାଥ ନୀଳମାଧବ ଏକ ଅଭିନ୍ନ। ନୀଳମାଧବ ଜଗନ୍ନାଥ ଉପାସନାର ଉତ୍ସ। ଅଞ୍ଚଳରେ ଏ ପହଲି ଅଛି ପୁରୀ ଯାଇ ନପାରିଲେ ସାନ ପୁରୀ ଯା'। ସାନ ପୁରୀ ହେଉଛି କଣ୍ଟିଲୋ, ପୁରୀ କଣ୍ଟିଲୋର ଉପାସନା ନୀତି ଏକ। ମନ୍ଦିର, ବେଢ଼ା ଏକ ସଦୃଶ। ଜଗନ୍ନାଥ ମହୋଦଧି ତଟସ୍ଥ ନୀଳ କନ୍ଦରରେ। ନୀଳମାଧବ ମହାନଦୀ ତଟସ୍ଥ ବ୍ରହ୍ମାଦ୍ରୀ ପର୍ବତ ନୀଳ କନ୍ଦରରେ। ଦକ୍ଷିଣକୁ ନେତ୍ର ଖୋଲିଦେଲେ ଧାନଚାଙ୍ଗଡ଼ାର ଧାଙ୍ଗେଡ଼ି ପାହାଡ଼ ପଶ୍ଚିମ ପାଦଦେଶରେ କୁଆଁରିଆ, କୁସୁମୀ ସଂଯୋଜିତ ହୋଇ କ୍ଷୁଦ୍ର ଅପ୍ରଶସ୍ତ ଉପତ୍ୟକା ମଧ୍ୟଦେଇ କମେଇ ମୁହାଣକୁ ଦୌଡ଼ିବାର ମନୋରମ ଦୃଶ୍ୟ।

**କମେଇ ମୁହାଣ :** କମେଇ ମୁହାଣ ଦେଇ କୁସୁମୀ, ଡାହୁକା, କୁଆଁରିଆ ଏକତ୍ର ହୋଇ ମହାନଦୀକୁ ପ୍ରବେଶ କରିଛନ୍ତି। ଜନପ୍ରବାଦ ଯେ ଧାନଚାଙ୍ଗଡ଼ାର କ୍ଷୁଦ୍ର ଅପ୍ରଶସ୍ତ ଉପତ୍ୟକା ଗଙ୍ଗା, ଯମୁନା, ସରସ୍ୱତୀଙ୍କ ସଙ୍ଗମ ସ୍ଥଳ। ବାରବର୍ଷରେ ଶନିବାର ଦିବସରେ ସୂର୍ଯ୍ୟପରାଗ ପଡ଼ିଲେ ଏ କ୍ଷେତ୍ରରେ ମହାବାରୁଣୀ ଯୋଗ ପଡ଼େ। ହଜାର ହଜାର ଭକ୍ତ ଦୂରଦୂରାନ୍ତରୁ ଏହି କ୍ଷେତ୍ରରେ ବୁଡ଼ଦେଇ ଧନ୍ୟ ହୁଅନ୍ତି। କମେଇ ମୁହାଣର ପୂର୍ବ କୋଣରେ ମହାନଦୀ କୂଳରେ ନାରାୟଣୀଙ୍କର ପର୍ଯ୍ୟଟନ ପୀଠ। ଏ କ୍ଷେତ୍ରରେ ପର୍ଯ୍ୟଟକ ବିଭାଗ ତରଫରୁ ଯାତ୍ରୀ ମଣ୍ଡପ ନିର୍ମାଣ କରାଯାଇଛି। ଓଡ଼ଚାଷୀଙ୍କ ଦ୍ୱାରା ଏକ ଧର୍ମଶାଳା ନିର୍ମିତ ହୋଇଛି। ପାର୍ଶ୍ୱସ୍ଥ ଚେପେଟା ପାହାଡ଼ ଉପରୁ ମହାନଦୀର ଦୃଶ୍ୟ ଚିତ୍ତ ମୋହିନିଏ।

**ଲଳିତାମାଧବ ମନ୍ଦିର :** ଯେଉଁଠି କୁସୁମୀ, ଡାହାକୁାର ମିଳିତ ସ୍ରୋତରେ କୁଆଁରିଆର ଜଳଧାର ସଙ୍ଗମ ଘଟିଛି ସେଇଠି ଧାଙ୍ଗେଡ଼ି ପର୍ବତ ଶୀର୍ଷରେ ସୁନ୍ଦର ଲଳିତା ମାଧବ ମନ୍ଦିର। ଧାନଚାଙ୍ଗଡ଼ା ଗ୍ରାମର ଏ ପାହାଡ଼। ଜନ ପ୍ରବାଦ ଧାନଚାଙ୍ଗଡ଼ାର ଛାତୁରୀ ତଇଲା ଥିଲା ବିଶ୍ୱାବସୁ ଶବର ରାଜାର ଗାଁ। କଣ୍ଟିଲୋ ଖଲିସାହି, ଖଣ୍ଡପଡ଼ା ବନମାଳୀପୁର, ଭାପୁର ମଧ୍ୟସ୍ଥ ଏହା ଏକ ଦୁର୍ଗମ ବଣଜଙ୍ଗଲପୂର୍ଣ୍ଣ ଅଞ୍ଚଳ ପରି ଦୃଶ୍ୟ ହୁଏ। ଅରଣ୍ୟ ଭୂମିକୁ ସରୁ ଲମ୍ବା ରାସ୍ତା ପଡ଼ିଥାଏ। ଲଳିତ ମାଧବ ମନ୍ଦିରକୁ ସହଜରେ ଗଲାଭଳି ଧାଙ୍ଗେଡ଼ି ପାହାଡ଼ ଉପରେ ଚଲାରାସ୍ତା। ପାହାଡ଼ର ଶୀର୍ଷରେ ନାନା ଜାତି ବୃକ୍ଷର ସମାବେଶ ମଧ୍ୟରେ ଏକ ମନୋହର ସ୍ଥଳୀ। ଏଇଠି ସୁନ୍ଦର ଲଳିତ ମାଧବ ମନ୍ଦିର। ମନ୍ଦିରର ପ୍ରବେଶ ଗୃହରେ ତୃଷିତ ବିଦ୍ୟାପତି ଓ ଜଳକଳସୀ କାଖରେ ଧରି ସୁନ୍ଦରୀ ଲଳିତାଙ୍କ ମୂର୍ତ୍ତି

ପର୍ଯ୍ୟଟକର ପଥଶ୍ରମ ଦୂର କରିଦିଏ। ଅନ୍ୟ ପାଖରେ ବିଶ୍ୱାବସୁ ରାଜା ଅରଣ୍ୟର ଫଳ ନେଇ ନୀଳମାଧବଙ୍କର ପୂଜକ ବେଶ। ମନ୍ଦିର ଭିତରେମୁଗୁନି ପଥର ନୀଳମାଧବଙ୍କ ସୁନ୍ଦର ନୀଳ ବିଗ୍ରହ ଦର୍ଶନ ସବୁ ଦୁଃଖ ଦୂର କରିଦିଏ। ଆତ୍ମ ନିମଗ୍ନ ହୁଏ ପର୍ଯ୍ୟଟକ । ଲଳିତ ମାଧବ ମନ୍ଦିରର ତତ୍ତ୍ୱାବଧାନରେ ଥିବା ପ୍ରାଥମିକ ଶିକ୍ଷକ ଦେବରାଜ ଜେନା କୁହନ୍ତି- ଶବର ବଂଶରୁ ବ୍ରାହ୍ମଣ ବଂଶକୁ ଛାଡ଼ିଥିବାରୁ ଏ ସ୍ଥାନରେ ଛାତୁରୀ ତଇଲା ରହିଛି। ଏହା ବିଶ୍ୱାବସୁର ଗଡ଼ମାଳ ବୋଲି ଧରାଯାଏ। ଏ ଅଞ୍ଚଳର ମାଟି ଖୋଲିଲେ ପୂର୍ବ ସଭ୍ୟତା ମୂର୍ତ୍ତି, ତମ୍ବାପଟା ମିଳେ। ୨୦୦୩ ମସିହାରେ ୭ଟି ତମ୍ବାପଟା ଏ ଅଞ୍ଚଳରୁ ବାହାରିଥିଲା। ଏହା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ। ଏ କ୍ଷେତ୍ରରେ ପୌରାଣିକ କଥା ଇତିହାସ ପରି ଲାଗେ। ପର୍ଯ୍ୟଟନ ବିଭାଗ ୨୦୦୯ ଆକଳନରୁ ଏ କ୍ଷେତ୍ରରେ ପର୍ଯ୍ୟଟକ ସଂଖ୍ୟା- ୨୦୦୭ ମସିହାରେ ୯୨,୪୦. ୨୦୦୮ରେ ୯୪,୮୦୦, ୨୦୦୯ରେ ୯୬,୭୦୦ ପର୍ଯ୍ୟଟକ ପର୍ଯ୍ୟଟନରେ ଆସିଥିଲେ। ଏହା ଏକ ପ୍ରାଚୀନ ପର୍ଯ୍ୟଟନ ପୀଠ। ୨୦୦୭ରୁ ୨୦୦୯ ମଧ୍ୟରେ ବିଦେଶୀ ପର୍ଯ୍ୟଟକ ଏ କ୍ଷେତ୍ରରେ ଆସିନଥିବାରୁ ଗଣନାରୁ ଜଣାଯାଏ। କଣ୍ଟିଲୋ ନୀଳମାଧବଙ୍କର ମାଘମେଳା ରାଜ୍ୟର ଏକ ପ୍ରସିଦ୍ଧ ଯାତ୍ରା। ଏହି ଯାତ୍ରାରେ ବିପୁଳ ଜନସମାବେଶ ହୁଏ। ଏହି ଯାତ୍ରାକୁ ମହାନଦୀ ତଟଦେଶର ଏକ ପ୍ରାଚୀନ ବାଣିଜ୍ୟ କେନ୍ଦ୍ର ବୋଲି ଧରାଯାଏ।

**ଖଣ୍ଡପଡ଼ା :** ମହାମହୋପାଧ୍ୟାୟ ଶ୍ରୀ ଚନ୍ଦ୍ରଶେଖର ପଠାଣି ସାମନ୍ତ ଖଣ୍ଡପଡ଼ା ରାଜବଂଶରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ସାଧନା ପୀଠ ଖଣ୍ଡପଡ଼ାଗଡ଼। ତାଙ୍କ ବହୁବର୍ଷ ସାଧନାରୁ ପ୍ରସ୍ତୁତ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ବିଜ୍ଞାନ ଗବେଷଣା ଦିଗରେ ସୁଦୀର୍ଘ ଆଲୋକ ପଥ।

**ସିଧାମୂଳା ଗୋକୁଳାନନ୍ଦ ପୀଠ :** କଣ୍ଟିଲୋଠାରୁ କ୍ଷୁଦ୍ରପଥ ୧୫କି.ମି. ଦୂରରେ ମହାନଦୀର ଦକ୍ଷିଣ ତଟରେ ସିଧାମୂଳା ସେତୁର ବାମପାର୍ଶ୍ୱଦେଇ ପ୍ରକୃତି ରୂପ ବୈଭବ ମଧ୍ୟରେ ନଦୀ ଦାଢ଼େ ଦାଢ଼େ ଗଲେ ଗୋକୁଳାନନ୍ଦ ପୀଠ। ନଦୀ ଦାଢ଼ରେ ଏହି ମହିମାମୟ ପୀଠ ମଧୁକର୍ଣ୍ଣିକା ପାହାଡ଼ ପାଦଦେଶରେ ନିର୍ମିତ। କେଉଁ କାଳରୁ ଏ ସ୍ଥାନର ଏକ ଚୂତ ବୃକ୍ଷତଳେ ଦୁଇଟି ପଥରକୁ ଗୋକୁଳାନନ୍ଦ ନାମରେ ପୂଜା ହୋଇ ଆସୁଛି। ଶୁଣାଯାଉଛି ନିସନ୍ତାନ ଦମ୍ପତି ମାନସିକ କରି ଏହି ଗଛମୂଳରେ ପଥର ଖଣ୍ଡିଏ ପକାଇ ଦେଲେ ପୁଅ ଝିଅ ହେଉଥିଲା। ଏହା ବହୁ ପରୀକ୍ଷିତ ସତ୍ୟ ଅଟେ। ସାଧୁବାବା ରାମ ଲକ୍ଷ୍ମଣଜୀ ମହାରାଜଙ୍କ ପ୍ରଚେଷ୍ଟାରେ ରାଧାକୃଷ୍ଣ, ମହାବୀର, ମା' ମଙ୍ଗଳାଙ୍କ ମନ୍ଦିର ନିର୍ମାଣ କରାଯାଇଛି। ଚିତ୍ରୋତ୍ପଳା ତଟରେ ଏହା ଏକ ଆକର୍ଷଣୀୟ ବଣଭୋଜି ସ୍ଥାନ। ବର୍ଷରେ ବିଭିନ୍ନ ଜିଲ୍ଲାରୁ ହଜାର ହଜାର ପର୍ଯ୍ୟଟକ ବଣଭୋଜିରେ ଆସିଥାନ୍ତି। ଏ ପୀଠର ନିକଟରେ ଗଣିଆ କଣ୍ଟିଲୋ ସହର ଅବସ୍ଥିତ।

ଏ କ୍ଷେତ୍ରର ଆକୃଷ୍ଟ ପାଇଁ ପାହାଡ଼ ଉପରେ ମୃଗବିହାର କ୍ଷେତ୍ର ନିର୍ମାଣ କରାଯାଇଛି ।

<u>ବଡ଼ମୂଳ :</u> ନୟାଗଡ଼ ଜିଲ୍ଲାର କଣ୍ଟିଲୋଠାରୁ ଗଣିଆ ରାସ୍ତାରେ ମଣିଭଦ୍ରା ପାଦଦେଶରେ ମହାନଦୀ କୂଳେ କୂଳେ କଳାପାଟ, ଛାମୁଣ୍ଡିଆ ରାସ୍ତାରେ ମହାନଦୀ ତଟରେ ବଡ଼ମୂଳ ଏକ ଛୋଟ ଗ୍ରାମ । ଏକ ପ୍ରାଚୀନ ସଡ଼କ କଟକ ସୋନପୁର ସଡ଼କ ଦଶପଲ୍ଲା ଓ ଖଣ୍ଡପଡ଼ା ସୀମାରେ ପଶ୍ଚିମ ମୁଖକୁ ଗଣିଆ, ଛାମୁଣ୍ଡିଆ, ବଡ଼ମୂଳ, କୁତୁରୀ ଦେଇ ବଉଦ ସୋନପୁରକୁ ପଡ଼ିଥିଲା । ଏଠାରେ ଏକ ଘାଟ ଅଛି, ଏହି ଘାଟଦେଇ ଅନୁଗୁଳ, ସମ୍ବଲପୁରକୁ ଯିବାକୁ ହୁଏ । ଦେଶର ପଶ୍ଚିମା ଯାତ୍ରୀମାନେ ଏ ବାଟରେ ଚାଲି ଚାଲି ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ପୁରୀ ଯାଉଥିଲେ । ଏ ବିପଦସଂକୁଳ ରାସ୍ତାରେ ବଡ଼ମୂଳ ଅତିକ୍ରମ କରି ଗଣିଆଠାରେ କେତେ ମଲେ କେତେ ରହିଲେ ଗଣତି କରୁଥିବାରୁ ଏ ସ୍ଥାନର ନାମ ଗଣିଆ । ବଡ଼ମୂଳ ଗ୍ରାମ ବଡ଼ରାଉଳ ଠାକୁରାଣୀ ଅଛନ୍ତି । ଜଗନ୍ନାଥଙ୍କ ରଥକାଠ ନେବାକୁ ହେଲେ ବଡ଼ରାଉଳ ଠାକୁରାଣୀଙ୍କୁ ପ୍ରଥମେ ପୂଜା ଦିଆଯାଏ । ବଡ଼ମୂଳ ନିକଟବର୍ତ୍ତୀ ପଦ୍ମତୋଳା ଘାଟୀରେ ଇଂରେଜମାନେ ମରହଟ୍ଟାମାନଙ୍କୁ ହରାଇଥିଲେ । ସେହି ସମୟରେ ଦଶପଲ୍ଲାର ରାଜା ଗୌରଚନ୍ଦ୍ର ଦେଓ ଭଞ୍ଜ ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ । ଦଶପଲ୍ଲାର ସବୁଠାରୁ ଉଚ୍ଚ ପର୍ବତ ଗୋଆଲ ଦେଓ ମହାନଦୀର ସାତକୋଶିଆ ଗଣ୍ଡ ନିକଟବର୍ତ୍ତୀ ବଡ଼ମୂଳ ଠାରେ ଅବସ୍ଥିତ । ଏହିଠାରୁ କ୍ରମେ ପଶ୍ଚିମକୁ ମହାନଦୀର ସାତକୋଶିଆ ଗଣ୍ଡ ରହିଛି । ଏହି ଗଣ୍ଡକୂଳରେ ବାଇଗଣିଆ ପର୍ବତ ଓ ପଦ୍ମତୋଳା ଘାଟି ଅଛି । ଏହିଠାରେ ମହାନଦୀ ଓସାର କମ୍ । ସୁନାକନିଆ ପର୍ବତଠାରୁ ବଡ଼ମୂଳ ମଧ୍ୟରେ ସାତକୋଶିଆ ଗଣ୍ଡ ୨୨କି.ମି. ଦୈର୍ଘ୍ୟ ବ୍ୟାପୀ ସାତକୋଶିଆ ଜଳରାଶି । ମହାନଦୀର ସାତକୋଶିଆ ପ୍ରଶସ୍ତ ସ୍ଥିର ଜଳରାଶି । ଚତୁଃପାର୍ଶ୍ୱକୁ ଆବୋରି ରହିଥାଏ ପ୍ରକୃତିର ଚିର ସୁନ୍ଦର ରୂପ । ସେ ରୂପ ଦେଖି ଦର୍ଶକ ଭାବବିହ୍ୱଳ ଭିତରେ ବୁଡ଼ିଯାଏ । ଏ କ୍ଷେତ୍ରରେ ସୂର୍ଯ୍ୟସ୍ନାନ, ଚନ୍ଦ୍ର ବିହାର ଦୃଶ୍ୟ ଦର୍ଶନରେ ଅଭିଭୂତ ହୋଇଯାଏ ଦର୍ଶକଟିଏ । ଏଠାରେ ଏକ ସୁନ୍ଦର ବଙ୍ଗଳା ଅଛି । ପ୍ରକୃତିରାଣୀର ନୈସର୍ଗିକ ଶୋଭା ଭିତରେ ସତେକି ସ୍ୱର୍ଗର ବିଳାସ ମିଳେ । ନାନା ଜାତି ଉଦ୍ଭିଦ, ଜାତି ଜାତି ପକ୍ଷୀ ଓ ପଶୁଙ୍କର ସହୃଦର ଏକତା ଦେଖିଲେ ଦର୍ଶକଟିଏ ଦର୍ଶନ ଗଭୀରକୁ ପଶିଯାଏ । ପ୍ରକୃତି କୋଳରେ ବାସ କରୁଥିବା ଏଠାର ଲୋକଙ୍କଠାରୁ ଠୋଲା ପତରରେ ଦହି ଖାଇବା ମିଠା ସହଜରେ ଭୁଲିହେବ ନାହିଁ । ପର୍ଯ୍ୟଟନ ବିଭାଗର ୨୦୦୯ର ଆକଳନ- ୨୦୦୭ରେ ୩୮,୪୫୦, ୨୦୦୮ରେ ୩୯,୯୬୦, ୨୦୦୯ରେ ୪୦,୭୬୦ ଘରୋଇ ପର୍ଯ୍ୟଟକ ଏ ରମଣୀୟ ସ୍ଥାନକୁ ଭ୍ରମଣରେ ଆସିଥିଲେ । ଆକଳନରୁ ଜଣାଯାଏ ପ୍ରତିବର୍ଷ ଏଠାକୁ ଭ୍ରମଣକାରୀଙ୍କ ସଂଖ୍ୟା ବଢୁଛି ।

**କୁତୁରୀ :** ବଡ଼ମୂଳ ଓ କୁତୁରୀ ମହାନଦୀ କୂଳରେ ଏହି ଦୁଇଟି ସ୍ଥାନ ପ୍ରସିଦ୍ଧ ପିକ୍‌ନିକ୍ ସ୍ଥାନ । କୁତୁରୀଠାରେ ପୂର୍ତ୍ତ ବିଭାଗର ସୁନ୍ଦର ଡାକବଙ୍ଗଳା ଅଛି । ମହାନଦୀ ବନ୍ୟପ୍ରାଣୀ ଡିଭିଜନ ଅନ୍ତର୍ଗତ ବାଇଶପଲ୍ଲୀ ସଂରକ୍ଷିତ ଅଭୟାରଣ୍ୟର ଅପରୂପ ଶୋଭାରାଜି ବନାନୀ, ମହାନଦୀର ବିସ୍ତୀର୍ଣ୍ଣ ଜଳରାଶି ଅନେକ ପ୍ରଜାତୀୟ ପଶୁପକ୍ଷୀଙ୍କ ଖେଳ କୌତୂକ ପ୍ରାଣରେ ଅଫୁରନ୍ତ ଆନନ୍ଦ ଭରିଦିଏ । ବାଘ, ଭାଲୁ, ହରିଣ, ସମ୍ବର, ଗଧିଆ, କୋଟରା, ଗୁଣ୍ଡୁଚିମୂଷା, କୋଟିଲାଖାଇ, ଗୟଳ, ବରାହ, ଝିଙ୍କ, ହାତୀ, ମହୁଲୀ ମୂଷା, ପାଟିମାଙ୍କଡ଼, ହନୁମାଙ୍କଡ଼, ବଳିଆ କୁକୁର, ମୟୂର, ବଣକୁକୁଡ଼ା, ନାହାକ ଶୁଆ, ଶାରୀ, କପୋତ ପ୍ରଭୃତି ପଶୁପକ୍ଷୀଙ୍କର ଉନ୍ମୁକ୍ତ କ୍ରୀଡ଼ାସ୍ଥଳୀ । ସାତକୋଶିଆ କୁମ୍ଭୀରମାନଙ୍କର ବାସସ୍ଥଳୀ । ଦକ୍ଷିଣ ଭାରତ ଓ କେନ୍ଦ୍ରୀୟ ଭାରତ ଜଳବାୟୁରୁ ଅନେକ ପ୍ରଜାତିର ଉଦ୍ଭିଦମାନଙ୍କର ଏକ ମିଶ୍ର ଅରଣ୍ୟ । ଏ ଜଙ୍ଗଲ ଏତେଟା ଘଞ୍ଚ ଯେ, ସୂର୍ଯ୍ୟକିରଣ ଭୂଇଁ ଛୁଇଁପାରେନି । ଏଠାକାର ପ୍ରକୃତିକୁ ଉପଭୋଗ କରିବାପାଇଁ ବିଭିନ୍ନ ସ୍ଥାନରେ ଓ୍ୱାଚ୍‌ଟାଓ୍ୱାର ମଞ୍ଚ ସହ ଭିଡ଼ିଓ ପଏଣ୍ଟର ବ୍ୟବସ୍ଥା ରହିଛି । ଏଠାରେ ମୋଟର ଡଙ୍ଗାରେ ସାତକୋଶିଆରେ ନୌବିହାର ରୋମାଞ୍ଚକର । କୁତୁରୀ ଏମିତି ଏକ ଜାଗା ଯେଉଁଠି ପ୍ରକୃତି ହାତଧରି ନେଇଯାଏ ତା'ର କୋଳକୁ । ସୂର୍ଯ୍ୟ ପାହାଡ଼ ଝୋଲାରେ ଖସିଆସି ସାତକୋଶିଆରେ ଜଳକ୍ରୀଡ଼ା କରନ୍ତି । ଏ ପ୍ରାକୃତିକ ଶୋଭା ହୃଦୟରୁ ବିସ୍ମରି ହେବନି । ପର୍ଯ୍ୟଟନ ବିଭାଗର ୨୦୦୯ ଆକଳନ ଅନୁଯାୟୀ ୨୦୦୭ରେ ଘରୋଇ ପର୍ଯ୍ୟଟକ ସଂଖ୍ୟା ୩୩,୮୦୦, ୨୦୦୮ରେ ୩୬,୩୫୦, ୨୦୦୯ରେ ୩୭,୦୮୦ ଘରୋଇ ପର୍ଯ୍ୟଟକ ପର୍ଯ୍ୟଟନରେ ଆସିଥିଲେ । ଗଣନାରୁ ଜଣାପଡ଼େ ବର୍ଷରୁ ବର୍ଷ ଏଠାକୁ ପର୍ଯଟକ ସଂଖ୍ୟା ବୃଦ୍ଧି ପାଉଛି ।

**ମଣିନାଗେଶ୍ୱରୀ :** ନୟାଗଡ଼ର ପୂର୍ବକୁ ଜାତୀୟ ରାଜପଥର ୪କି.ମି. ଦୂରରେ ପ୍ରତାପପ୍ରସାଦ ଠାରୁ ଲାଠିପଡ଼ା ଦର୍ପନାରାୟଣପୁର ରାସ୍ତାରେ ୨୮କି.ମି. ଅତିକ୍ରମ କଲେ ମଣିନାଗ ପର୍ବତର ପୂର୍ବ ପାଦଦେଶରେ ରଣପୁର ଗଡ଼ । ମଣିନାଗ ପର୍ବତ ଶୀର୍ଷରେ ମଣିନାଗେଶ୍ୱରୀ ମନ୍ଦିର । ଏ ମନ୍ଦିର ରାଜ୍ୟର ବହୁ ଦୂରରୁ ପର୍ଯ୍ୟଟକମାନଙ୍କୁ ଆକର୍ଷଣ କରିଥାଏ । ମଣିନାଗେଶ୍ୱରୀ ଗଡ଼ର ଅଧିଷ୍ଠାତ୍ରୀ ଦେବୀ । ରଣପୁର ଗଡ଼ ସ୍ଥାପନରେ ପୌରାଣିକ କଥାବସ୍ତୁ-ରଣାସୁର ନାମାନୁସାରେ ରଣାସୁରପୁର ରଣପୁର ହୋଇଛି । ଦାନବ ରାଜା କଂସର ପରମବନ୍ଧୁ ରଣାସୁର ପ୍ରତିଦିନ ମହାନଦୀରେ ସ୍ନାନ କରି ଶରଣକୂଳସ୍ଥ ଭଣ୍ଡାର ପର୍ବତରେ ଅଧିଷ୍ଠିତ ପ୍ରଭୁ ଲଡୁକେଶ୍ୱରଙ୍କୁ ଦର୍ଶନ କରି ମଣିନାଗ ପର୍ବତ ଶିଖରରେ ବିଶ୍ରାମ କରୁଥିଲା । ଏ ଅଞ୍ଚଳରେ ରଣାସୁର ଉପଦ୍ରବ ସହି ନପାରି ଦେବୀ ଚର୍ଚ୍ଚିକା ତାକୁ ନିହତ କଲେ । ଅସୁର ରାଜୁତି ପରେ ବନଜାତିର ଦଳପତିମାନଙ୍କର ଶାସନ ଆରମ୍ଭ ହେଲା । ଏହିପରି ଗୋଟିଏ

ବନଜାତିର ଦଳପତି ଥିଲେ ବିଶ୍ୱାବାସବ ଯାହାଙ୍କୁ ରଣପୁରର ପ୍ରଥମ ରାଜା ଭାବେ ଗ୍ରହଣ କରାଯାଇଛି । ବିଶ୍ୱବାସବ ହେଉଛନ୍ତି ନୀଳମାଧବଙ୍କ ପରମଭକ୍ତ ଶବରରାଜା ବିଶ୍ୱାବସୁଙ୍କ କନିଷ୍ଠ ଭ୍ରାତା ଓ ହୃଷିକେଶ ଶବରଙ୍କ ପୁତ୍ର । କିମ୍ବଦନ୍ତୀ କହେ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ ଯେଉଁ ପ୍ରସ୍ତର ଉପରେ ପ୍ରଭୁ ନୀଳମାଧବ ବିରାଜମାନ କରୁଥିଲେ ଓ ଯାହାକୁ ଚକାଶିଳା କୁହାଯାଏ, ସ୍ୱପ୍ନାଦେଶ ପାଳନ କରି ବିଶ୍ୱବାସବ ସେହି ଶିଳାକୁ ରଣପୁର ମଣିନାଗ ପାହାଡ଼ ଶିଖରରେ ସ୍ଥାପନ କରି ପୂଜା ଆରାଧନା କଲେ । ଏହି ଚକାଶିଳାରେ ବିଶ୍ୱବାସବ ବିଷ୍ଣୁ ଶିବ ଓ ଶକ୍ତିଙ୍କର ବୀଜମନ୍ତ୍ର ଖୋଦନ କରିଥିଲେ । ପୂଜାରେ ପ୍ରୀତ ହୋଇ ସ୍ୱୟଂ ଶକ୍ତି ସ୍ୱରୂପିଣୀ ମା' ଦୁର୍ଗା ଆବିର୍ଭୂତା ହୋଇ ରଣପୁରରେ ଖାଲି ପଡ଼ିଥିବା ସିଂହାସନ ଆରୋହଣ ପୂର୍ବକ ମଣିନାଗ ପର୍ବତର ପୂର୍ବଦିଗରେ ରାଜଧାନୀ ସ୍ଥାପନ କରିବାକୁ ନିର୍ଦ୍ଦେଶ ଦେଲେ । ସେହି କାଳରୁ ମଣିନାଗେଶ୍ୱରୀ ପୂଜାପାଇ ଆସୁଛନ୍ତି ଚକାଶିଳା ଉପରେ । ମଣିନାଗେଶ୍ୱରୀ ଉପରକୁ ଯିବାପାଇଁ ଉତ୍ତମ ରାସ୍ତା ନିର୍ମାଣ କରାଯାଇଛି । ମଣିନାଗେଶ୍ୱରୀ ପୀଠରୁ ଭୂଖଣ୍ଡର ବହୁ ଦୂରକୁ ଦୃଷ୍ଟି ଲମ୍ୱିଯାଏ । ଏ ହେଉଛି ପର୍ଯ୍ୟଟନର ଚମତ୍କାରିତା । ରାଜ୍ୟ ପର୍ଯ୍ୟଟନ ବିଭାଗ ୨୦୦୯ର ଆକଳନରୁ ମୋଟ ପର୍ଯ୍ୟଟକଙ୍କ ସଂଖ୍ୟା ଜଣାପଡ଼େ । ୨୦୦୭ରେ ପର୍ଯ୍ୟଟନରେ ଆସିଥିବା ମୋଟ ଘରୋଇ ପର୍ଯ୍ୟଟକ ସଂଖ୍ୟା ୯୬,୩୦୦, ୨୦୦୮ରେ ମୋଟ ଘରୋଇ ପର୍ଯ୍ୟଟକ ସଂଖ୍ୟା ୯୭,୬୦୦, ୨୦୦୯ରେ ୯୯,୫୬୦ ପର୍ଯ୍ୟଟକ ପର୍ଯ୍ୟଟନରେ ଏ କ୍ଷେତ୍ରକୁ ଆସିଥିଲେ । ବର୍ଷରୁ ବର୍ଷକୁ ପର୍ଯ୍ୟଟକ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଛନ୍ତି ।

**ଅସୁରକୁମାରୀ :** ନୟାଗଡ଼ ଠାରୁ ଲାଠିପଡ଼ା ଦର୍ପନାରାୟଣପୁର ରାସ୍ତାରେ ୧୮କି.ମି. ଅତିକ୍ରମ କଲେ ମଣିନାଗ ପର୍ବତର ଅସୁରକୁମାରୀ ଏକ ଦର୍ଶନୀୟ ସ୍ଥାନ । ଅସୁରକୁମାରୀରେ ଝରୁଥିବା ଝରଣାଟି ଚିରନ୍ତନୀ । ବହୁ ଅଞ୍ଚଳରୁ ଭ୍ରମଣକାରୀମାନେ ବଣଭୋଜିରେ ଆସିଥାନ୍ତି ।

**ବୁଢ଼ାବୁଢ଼ିଆଣୀ :** ଓଡ଼ଗାଁ ଠାରୁ ୭କି.ମି. ଓଡ଼ଗାଁ ନୟାଗଡ଼ ରାଜପଥ କେନାଲ ଛକରୁ ଦକ୍ଷିଣକୁ ପଡ଼ିଥିବା ରାସ୍ତାରେ ଗଲେ ବୁଢ଼ାବୁଢ଼ିଆଣୀ ଜଳଭଣ୍ଡାର ପଡ଼େ । ରତ୍ନମାଳା ପର୍ବତ, ଲାଣ୍ଡିଗିରି ଓ ଗୟଳସିଂହ ପର୍ବତର ତ୍ରିକୋଣଭୂମିରେ ଏ ଜଳଭଣ୍ଡାର । ଏ ସ୍ଥାନରୁ ଯେ କେହି ଦର୍ଶକ ପ୍ରକୃତିରାଣୀର ଶୋଭା ସମ୍ଭାରରେ ମୁଗ୍ଧ ହୋଇ ଚାହିଁ ରହିଥିବ । ଏ ସ୍ଥାନ ଏକ ପ୍ରସିଦ୍ଧ ପିକ୍‌ନିକ୍ ସ୍ପଟ୍ ।

**ଶରଣକୁଳ ଲଡୁକେଶ୍ୱର ପୀଠ :** ନୟାଗଡ଼ ଠାରୁ ଦକ୍ଷିଣପଥରେ ୧୩କି.ମି. ପଥ ଅତିକ୍ରମ କଲେ ଶରଣକୁଳରେ ଶ୍ରୀ ଶ୍ରୀ ଲଡୁକେଶ ମହାଦେବଙ୍କ ବିଜେସ୍ଥଳୀ । ସିଂହଦ୍ୱାରରେ ସୁଢ଼ଳ ସୁନ୍ଦର ଗଢ଼ଣର ଅବିକଳ ସିଂହ ମୂର୍ତ୍ତି । ମନ୍ଦିରଟି ଭଣ୍ଡାର

ପାହାଡ଼ର ପାଦଦେଶରେ ଅବସ୍ଥିତ । ଲଡୁକେଶ ମହାଦେବଙ୍କର ସୁନ୍ଦର ମନ୍ଦିର ବେଢ଼ା । ବେଢ଼ା ମଧରେ ପାର୍ଶ୍ୱ ମନ୍ଦିରମାନଙ୍କରେ ଠାକୁର ଠାକୁରାଣୀମାନେ ସ୍ୱ ସ୍ୱ ମନ୍ଦିରରେ ପୂଜା ପାଆନ୍ତି । ଲଡୁବାବାଙ୍କର ଦକ୍ଷିଣ ଦ୍ୱାରକୁ ଲାଗି ଏକ ସୁନ୍ଦର ପୁଷ୍କରିଣୀ ବେଢ଼ାର ଦକ୍ଷିଣ ବାଡ଼ରେ ନବଗ୍ରହ ପଶ୍ଚିମ ବାଡ଼ରେ ଦେବୀମାନେ, ଉତ୍ତରବାଡ଼ରେ ଦଶ ଅବତାର, ଦେବୀମାନେ ପୂଜା ପାଉଛନ୍ତି । ପାର୍ବତୀ ମନ୍ଦିର, ଲକ୍ଷ୍ମୀ ମନ୍ଦିର, ମା' ସନ୍ତୋଷୀ ମନ୍ଦିର, ଜଗନ୍ନାଥ ମନ୍ଦିର, ଶ୍ରୀରାମ ମନ୍ଦିର, ମହାଦେବଙ୍କ ଅର୍ଦ୍ଧନାରୀଶ୍ୱର ମନ୍ଦିର ରହିଛି । ପାର୍ବତୀ ମନ୍ଦିର ସମ୍ମୁଖରେ କାମଧେନୁଙ୍କ ସୁନ୍ଦର ମୂର୍ତ୍ତି ରହିଛି । ମୁଖ୍ୟ ମନ୍ଦିରରେ ଲଡୁକେଶ୍ୱର ଦେବ ବିଜେ ହୋଇ ପୂଜା ପାଉଛନ୍ତି । ଏଠାରେ ଶିବରାତ୍ରୀ ଜାଗରଯାତ୍ରା ହୁଏ । ସାରା ରାଜ୍ୟରୁ ଭକ୍ତମାନଙ୍କର ଭିଡ଼ ହଜାର ହଜାର ସଂଖ୍ୟାରେ ଜମେ । ଶ୍ରାବଣ ମାସ ପ୍ରତି ସୋମବାରରେ ପୁରୁଷ, ନାରୀ ହଜାର ହଜାର ସଂଖ୍ୟାରେ କାଉଁରିଆ ଲଡୁବାବାଙ୍କ ମସ୍ତକରେ ମହାନଦୀ ଜଳ ଢାଳିଥାନ୍ତି । ମନ୍ଦିର ଭିତରେ ପ୍ରବେଶି ଯାହା ମାନସି ମାଗିବ ଲଡୁବାବା ମନସ୍କାମନା ପୂରଣ କରନ୍ତି । ଏ କ୍ଷେତ୍ର ଏକ ଧାର୍ମିକ ପର୍ଯ୍ୟଟନ କ୍ଷେତ୍ର । ଏହା ଏକ ସ୍ୱତନ୍ତ୍ର ଶୈବପୀଠ । ଏ ପୀଠରେ ଶ୍ରୀ ଶ୍ରୀ ଲଡୁକେଶ ହରିହର ଭାବରେ ଆବିର୍ଭୂତ । ଠାକୁରଙ୍କ ଠାରେ ତୁଳସୀ ସହିତ ବେଲପତ୍ର ଚଢ଼ାଯାଏ । ପର୍ଯ୍ୟଟନ ବିଭାଗର ୨୦୦୯ ଗଣନା ଅନୁଯାୟୀ ୨୦୦୭ରେ ୧,୦୬,୦୦୦, ୨୦୦୮ରେ ୧,୧୦,୮୨୦, ୨୦୦୯ରେ ୧,୧୪,୧୪୫ ଘରୋଇ ପର୍ଯ୍ୟଟକ ଏ କ୍ଷେତ୍ରକୁ ପର୍ଯ୍ୟଟନରେ ଆସିଥିଲେ ।

**ଦ୍ୱିତୀୟ ଶ୍ରୀକ୍ଷେତ୍ର ଓଡ଼ଗାଁ :** ନୟାଗଡ଼ରୁ ଦକ୍ଷିଣ ପଥରେ ନୟାଗଡ଼ ବ୍ରହ୍ମପୁର ରାସ୍ତାରେ ୨୬କି.ମି. ଅତିକ୍ରମ କଲାପରେ ଗୟଳସିଂ ପାଦଦେଶରେ ଶ୍ରୀ ଶ୍ରୀ ରଘୁନାଥ ଜୀଉଙ୍କ ମନ୍ଦିର ଦର୍ଶନ କରିବାକୁ ହୁଏ । ଶ୍ରୀ ଶ୍ରୀ ରଘୁନାଥ ଜୀଉ ମନ୍ଦିର ଓଡ଼ଗାଁ ଦ୍ୱିତୀୟ ଶ୍ରୀକ୍ଷେତ୍ର ଭାବରେ ଜଣାଶୁଣା । ପୁରୀ ଶ୍ରୀମନ୍ଦିରର ଅନେକ ବ୍ୟବସ୍ଥା ଓ ନକ୍ସା ଅନୁଯାୟୀ ଶ୍ରୀଜୀଉଙ୍କ ଚତୁଃପାର୍ଶ୍ୱରେ ବିଭିନ୍ନ ଦେବଦେବୀ ପୂଜା ପାଉଛନ୍ତି । ଏ କ୍ଷେତ୍ରରେ ଶ୍ରୀ ରଘୁନାଥ ଜୀଉ, ଶ୍ରୀ ଲକ୍ଷ୍ମଣ ଜୀଉ ଏବଂ ମା' ସୀତା ଠାକୁରାଣୀଙ୍କର ବିଗ୍ରହ ନିମ ଦାରୁରେ ନିର୍ମିତ । ପ୍ରତିଷ୍ଠା ସମୟରୁ ଏହି ତିନୋଟି କାଠ ବିଗ୍ରହ ପରିବର୍ତ୍ତନ କରାଯାଇ ନାହିଁ । ଏଯାବତ୍ ପ୍ରଭୁଙ୍କର ତିନୋଟି ବିଗ୍ରହ ଅକ୍ଷତ ଅଛନ୍ତି । ପ୍ରତିବର୍ଷ ରାମନବମୀ ଯାତ୍ରା ଉତ୍ସବ ବେଳକୁ ତିନି ବିଗ୍ରହଙ୍କୁ ନୂତନ ରଙ୍ଗ ଦିଆଯାଏ । ରଘୁନାଥ ଦାରୁ ଠାକୁର ତାଙ୍କ ଘଟ ପରିବର୍ତ୍ତନ ହୁଏ ନାହିଁ । ଏ କ୍ଷେତ୍ରରେ ଦାରୁ ଠାକୁର ରଘୁନାଥ ଜୀଉ ବିଜେ ହୋଇଥିବାରୁ ଏ କ୍ଷେତ୍ର ଦ୍ୱିତୀୟ ଶ୍ରୀକ୍ଷେତ୍ର । ଠାକୁରଙ୍କ ମନ୍ଦିର ଶୀର୍ଷରେ ତିନୋଟି ସୁନାକଳସ ଭକ୍ତର ହୃଦୟକୁ ଆକୃଷ୍ଟ କରି ଆଣେ । ତୀର୍ଥଯାତ୍ରୀମାନେ ତୀର୍ଥସ୍ଥାନ ଭ୍ରମଣ କରି ଶ୍ରୀମନ୍ଦିରରେ ଜଗନ୍ନାଥଙ୍କୁ ଦର୍ଶନ

କଲାପରେ ରଘୁନାଥ ଜୀଉ ଦର୍ଶନ କଲେ ତାଙ୍କ ତୀର୍ଥଯାତ୍ରା ସଫଳ ହୁଏ। କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏ କ୍ଷେତ୍ରରେ ରାମତାରକା ମନ୍ତ୍ର ସିଦ୍ଧ କରି ପ୍ରଭୁଙ୍କର କରୁଣା ଲାଭ କରିବାର ଶୁଣାଯାଏ। ରାମନବମୀରେ ପ୍ରଭୁଙ୍କର ୭ଦିନ ବ୍ୟାପୀ ଯାତ୍ରା ହୁଏ। ସବୁଦିନ ଠାକୁର ବିଭିନ୍ନ ସମୟର ବେଶ ହୋଇଥାନ୍ତି। ଏ କ୍ଷେତ୍ରକୁ ଧାର୍ମିକ ପର୍ଯ୍ୟଟକଙ୍କର ବହୁଳ ସଂଖ୍ୟାରେ ଆଗମନ ହୁଏ। ପର୍ଯ୍ୟଟନ ବିଭାଗର ୨୦୦୯ ଆକଳନରୁ ଜଣାପଡ଼େ ୨୦୦୭ରେ ୨,୧୫,୪୦୦, ୨୦୦୮ରେ ୨,୨୦,୩୦. ୨୦୦୯ରେ ୨,୨୬,୯୦୦ ଘରୋଇ ପର୍ଯ୍ୟଟକ ପର୍ଯ୍ୟଟନରେ ଏ କ୍ଷେତ୍ରକୁ ଆସିଥିଲେ।

<u>ଦୁତୀକେଶ୍ୱର ମହାଦେବ ପୀଠ, ଜାମୁପାଟଣା :</u> ଓଡ଼ଗାଁ ଠାରୁ ବାହାଡ଼ାଝୋଲା ରାସ୍ତା ଉପରେ ପ୍ରାୟ ୫କି.ମି. ପଥ ଅତିକ୍ରମ କଲେ ଦୁତିକେଶ୍ୱର ମହାଦେବ ପୀଠ ପଡ଼େ। ଏ ପୀଠ ମନୋରମ ଆରଣ୍ୟକ ପୃଷ୍ଠଭୂମିରେ ଅବସ୍ଥିତ। ଏହା ଏକ ମହିମାମୟ ଶୈବପୀଠ। ଅପାର ମହିମା ଠାକୁରଙ୍କର ଏଠାରେ ପଡ଼ିଥିବା ଗୁହାରିଆମାନେ ବରପ୍ରାପ୍ତି ହୋଇ ଫେରିଥାନ୍ତି। ପ୍ରକୃତି କୋଳ ମଧ୍ୟରେ ମନ୍ଦିରର ପରିବେଶ ଖୁବ୍ ଆକର୍ଷଣୀୟ। ପର୍ଯ୍ୟଟନ ବିଭାଗର ୨୦୦୯ ଆକଳନ ଅନୁଯାୟୀ ଏ ଶୈବପୀଠରେ ସମବେତ ହେଉଥିବା ପର୍ଯ୍ୟଟକଙ୍କ ସଂଖ୍ୟା- ୨୦୦୭ରେ ୧,୪୮,୦୦୦, ୨୦୦୮ରେ ୧,୫୦,୩୧. ୨୦୦୯ରେ ୧,୫୩,୩୨୦ ଘରୋଇ ପର୍ଯ୍ୟଟକ ଏ ପୀଠକୁ ପର୍ଯ୍ୟଟନରେ ଆସିଥିଲେ। ବାର୍ଷିକ ଗଣନାରୁ ଜଣାପଡ଼େ ପ୍ରତିବର୍ଷ ପର୍ଯ୍ୟଟକଙ୍କର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି।

<u>ନୟାଗଡ଼ର ଅନ୍ୟାନ୍ୟ ପର୍ଯ୍ୟଟନ କ୍ଷେତ୍ର :</u> ନୟାଗଡ଼ ପଶ୍ଚିମ ଓଡ଼ିଶାକୁ ଯାତ୍ରା କରିବା ପଥ ନଂ.୫୭ ଜାତୀୟ ରାଜପଥ ଉପରେ ଫାଟକ ସଦୃଶ। ନୟାଗଡ଼ର ପ୍ରଧାନ ପର୍ଯ୍ୟଟନ କ୍ଷେତ୍ରଗୁଡ଼ିକ ନୟାଗଡ଼ ଠାରୁ ୪୦କି.ମି. ଦୂରତା ଭିତରେ। କେବଳ ବଡ଼ମୂଳ, କୁତୁରୀ, ସାତକୋଶିଆ, ବୌଦ୍ଧ, ଅନୁଗୁଳ ସୀମା ନିକଟବର୍ତ୍ତୀ ପ୍ରାକୃତିକ ରମଣୀୟ ସ୍ଥାନ। ଉଦୟପୁର ସଂଗ୍ରହାଳୟ ଓ ଉଷ୍ଣ ପ୍ରସ୍ରବଣ କ୍ଷେତ୍ର ତରବାଲୁକୁ ଛାଡ଼ିଦେଲେ ପ୍ରାୟତଃ ପ୍ରତ୍ୟେକ ପର୍ଯ୍ୟଟନ କ୍ଷେତ୍ର ସରଳ ସୁନ୍ଦର ରାସ୍ତା ଦ୍ୱାରା ସଂଯୋଜିତ। ନୟାଗଡ଼ରେ ମୁଖ୍ୟତଃ ଦୁଇ ଧାର୍ମିକ ପର୍ଯ୍ୟଟନ ପୀଠ ଅଛି। ଜଗନ୍ନାଥ ମନ୍ଦିର ଓ ଦକ୍ଷିଣକାଳୀ ମନ୍ଦିର। ପର୍ଯ୍ୟଟନ ବିଭାଗର ୨୦୦୯ ଆକଳନ ଅନୁଯାୟୀ ୨୦୦୭ ମସିହାରେ ୯୮,୬୦୦, ୨୦୦୮ରେ ୯୯,୪୦୦, ୨୦୦୯ରେ ୧୦୧,୩୯୦ ଘରୋଇ ପର୍ଯ୍ୟଟକ ପର୍ଯ୍ୟଟନରେ ଆସିଥିଲେ। ବାର୍ଷିକ ଗଣନାରୁ ପର୍ଯ୍ୟଟକ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଛି। କଳା, ସଂସ୍କୃତି, ପ୍ରାକୃତିକ ରୂପ ଭରା ନୟାଗଡ଼ ପାଇଁ କେନ୍ଦ୍ର ତଥା ରାଜ୍ୟ ପର୍ଯ୍ୟଟନ ବିଭାଗର ସ୍ୱତନ୍ତ୍ର ଦୃଷ୍ଟି ରହିବା ଅନୁଭବ ହୁଏ। ରକ୍ଷୀ ଓ ବଳରାମ ପାହାଡ଼ର ଗହ୍ୱର

ପଥରେ ନୟାଗଡ଼। ରକ୍ଷୀ ପର୍ବତ ଶୃଙ୍ଗ ଦେଶରେ ନୟାଗଡ଼ ରାଜାଙ୍କର ପ୍ରମୋଦ ଭବନ ଥିଲା। ଅଦ୍ୟାବଧି ସେ ସ୍ଥାନରେ ପ୍ରମୋଦ ନିବାସର ଭଗ୍ନାବଶେଷ ରହିଛି। ବନଦୁର୍ଗା ମନ୍ଦିର, ଭୀମ ଖନ୍ଦା ସ୍ଥାନ, ଜାଉଁଳୀ ଶାମୁକା, ଲକ୍ଷ୍ମୀପାଦ ପୌରାଣିକ ସ୍ମୃତି ଏ ସ୍ଥାନରେ ରହିଛି। ରକ୍ଷୀ ଶିଖରରୁ ନୟାଗଡ଼ର ଭୂମିଖଣ୍ଡର ସୁନ୍ଦର ରୂପ ଦର୍ଶନରେ ଦାର୍ଶନିକ ବିମୁଗ୍ଧ ଯଥା ମନୋରମ ରତ୍ନମାଳା ପର୍ବତ ଘେର, ମଣିନାଗ ପର୍ବତ, ଶୁକରମଲ୍ଲ ପର୍ବତ, ମହାନଦୀ ଶଯ୍ୟା, ଖଣ୍ଡପଡ଼ା ଅରଣ୍ୟ, ଦଶପଲ୍ଲା ପଞ୍ଚୁପାଣ୍ଡବ ପର୍ବତ, ଶୂଳିଆ, ରତାଦେଈ ପାହାଡ଼ ପର୍ଯ୍ୟନ୍ତ। ରକ୍ଷୀ ଟୀଖକୁ ଯିବାପାଇଁ ବର୍ତ୍ତମାନର ମହର୍ଷି ବିଦ୍ୟାମନ୍ଦିର ଠାରୁ କମ୍ ଉଚ୍ଚତା ବିଶିଷ୍ଟ ସମତଳ ରାସ୍ତା ପଡ଼ି ପାରିବ ଜିଲ୍ଲାର ଉଚ୍ଚ କର୍ତ୍ତୃପକ୍ଷ ଯଦି ଦୃଷ୍ଟିଦେବେ। ତାଙ୍କର ଦୃଷ୍ଟିରେ ପୁନଶ୍ଚ ଉଦ୍ଧାର ହୋଇଯାନ୍ତା ରୁକ୍ଷୀର ପ୍ରମୋଦ ନିବାସ ସେ ପରିବେଶରେ। ପ୍ରମୋଦ ନିବାସ ତିଆରି ହୁଅନ୍ତା, ବନଦୁର୍ଗା ମନ୍ଦିରକୁ ସୁନ୍ଦର କରାଯାଆନ୍ତା। ଭୀମ ଖନ୍ଦା ତିଆରି ହୁଅନ୍ତା। ଜାଉଁଳୀ ଶାମୁକା, ଲକ୍ଷ୍ମୀପାଦ ସ୍ଥାନକୁ ଆହୁରି ସୁନ୍ଦର କରାଯାଆନ୍ତା ଏ ପର୍ଯ୍ୟଟନ କ୍ଷେତ୍ରରୁ ଜିଲ୍ଲାର ସମସ୍ତ ପର୍ଯ୍ୟଟନ କ୍ଷେତ୍ର ଦୃଶ୍ୟମାନ ହେବ ପର୍ଯ୍ୟଟକ ସ୍ୱତଃ ଆକୃଷ୍ଟ ହେବ ସେ କ୍ଷେତ୍ରମାନଙ୍କୁ।

**କଳାପାଟ :** ପଞ୍ଚୁପଲ୍ଲୀ କଳାପାଟ ଠାକୁରାଣୀ ପୀଠ ମଣିଭଦ୍ରା ପର୍ବତ ପାଦାଦେଶରେ ମହାନ୍‌ଦୀ ଦକ୍ଷିଣ ତଟ ଦାଢ଼ରେ ଛାମୁଣ୍ଡିଆ ଘାଟରେ। ଦଶପଲ୍ଲା ରାଜା ଏହି ଘାଟରେ ମହାନଦୀକୁ ପାର ହୋଇ କଟକ ଯାତ୍ରା କରୁଥିଲେ। କଳାପାଟ ଠାକୁରାଣୀ ପୀଠରେ ଶୀତଦିନେ ବହୁତ ବଡ଼ ମେଳା ହୁଏ। ଏ ପୀଠରେ ଯଜ୍ଞ ହୁଏ। ମେଳାକୁ ହଜାର ହଜାର ଯାତ୍ରୀ ମହାନଦୀ ପାରିହୋଇ ସମାବେଶ ହୁଅନ୍ତି।

**ରତାଦେଈ ଗୁମ୍ଫା :** ବାହାଡ଼ାଝୋଲାଠାରୁ ଦୂର ପଶ୍ଚିମକୁ ଡାହୁକା ନଦୀ ପାର ହୋଇ କାବତାପଲ୍ଲୀ ବନପଥ ଦେଇ ଟିକେ ଦୂରକୁ ଗଲେ ରତାଦେଈ ପାହାଡ଼ ପଡ଼େ। ରତାଦେଈକୁ ଲାଗି ଘୁମୁସର ସରହଦ। ପାହାଡ଼ ପାଦଦେଶରେ ସରୁ ଝରଣା ଡାହୁକା ଆଡ଼କୁ ବହିଥାଏ। ରତାଦେଈ ପାହାଡ଼ର ମଧ୍ୟଭାଗରେ ଏକ ବିରାଟ ଗୁମ୍ଫା ରହିଛି। ଏହି ଗୁମ୍ଫାରେ ଏକକାଳୀନ ୩୦୦୦ ହଜାର ପର୍ଯ୍ୟଟକ ରହିପାରିବେ। ଏକ ବିଶାଳ, ପ୍ରଶସ୍ତ ଅତ୍ୟୁଚ ଶିଳା ଉପରକୁ ଅପର ପାର୍ଶ୍ୱରୁ ଆଉ ଏକ ବିଶାଳ ପ୍ରଶସ୍ତ ଅତ୍ୟୁଚ୍ଚ ଶିଳା, ଛାତ ପରିକା ମାଡ଼ି ଆସିଛି। ଗୁମ୍ଫାର ଗହ୍ୱର ପ୍ରଶସ୍ଥ ଓ ଦୀର୍ଘତର। ଗୁମ୍ଫାର ଶେଷଭାଗରେ ଭିତରକୁ ଭିତରକୁ ବହୁତ ଗୁମ୍ଫା ରହିଛି। ଏହି ଗୁମ୍ଫାରେ କିଏ କେତେବେଳେ ଜଗନ୍ନାଥଙ୍କର ପୂଜା କରନ୍ତି। ଗୁମ୍ଫାର ଗହ୍ୱର ଜଗନ୍ନାଥଙ୍କର ବଡ଼ଦାଣ୍ଡ ନାମରେ ନାମିତ। ଗୁମ୍ଫା ଭିତରେ ଶୀତଦିନେ ଶୀତ ହୁଏନି କି ଗ୍ରୀଷ୍ମକାଳରେ ଅଧିକ ଗ୍ରୀଷ୍ମ ଜଣାପଡ଼େ ନାହିଁ। ଏହା ଏକ ସୁରମ୍ୟ ସ୍ଥାନ। ଆଗରୁ ଏଠି ସନ୍ୟାସୀ ରହୁଥିବାର ଲୋକେ କୁହନ୍ତି। ଗୁମ୍ଫାର ତଳକୁ

ଲେମ୍ବୁ, କଦଳୀ, ପିଜୁଳି, କାନ୍ଥିଆ, ଆମ୍ବ ବଗିଚା ଥିଲା । ଏହା ଏକ ଲୋଭନୀୟ ପର୍ଯ୍ୟଟନ କ୍ଷେତ୍ର । ଏ ମହାନ ଗୁମ୍ଫା ନୟାଗଡ଼ ପାଇଁ ପ୍ରକୃତିର ଅତୁଳନୀୟ ଦାନ ।

<u>ନାରାୟଣୀ ପୀଠ :</u> ମହାନଦୀ ଦାଢ଼େ ଦାଢ଼େ ପଶ୍ଚିମା ରାଜ୍ୟମାନଙ୍କରୁ ଆସୁଥିବା ଯାତ୍ରୀମାନଙ୍କର ପ୍ରାଚୀନ ଜଗନ୍ନାଥ ରାସ୍ତାପଥ କଣ୍ଟିଲୋ ଦେଇ କମେଇ ମୁହାଣ ଅତିକ୍ରମ କରି ପଥର ଚକଡ଼ା ଗ୍ରାମ ମଧରେ ଜଗନ୍ନାଥ କ୍ଷେତ୍ର ଆଡ଼କୁ ପଡ଼ିଛି । କମେଇ ମୁହାଣର ପୂର୍ବପାର୍ଶ୍ୱରେ ଠିଆହୋଇଥିବା ପାହାଡ଼ର ଉତ୍ତର ପାର୍ଶ୍ୱକୁ ଘେରି ପଥରଚକଡ଼ା ଗ୍ରାମବସତି । ଏହି ପାହାଡ଼ର ପାଦଦେଶରେ ପଥରଗୁଡ଼ିକ ସମତଳ ଆକାରରେ ଚକଡ଼ା ଚକଡ଼ା ହୋଇ ପଡ଼ିଥିବାରୁ ଏ ଗାଁ'ର ନାଁ ପଥର ଚକଡ଼ା । ଏହି ଗ୍ରାମର ଉତ୍ତରକୁ ଲାଗି ଚିତ୍ରୋତ୍ପଳା ନଦୀ (ମହାନଦୀ) ଦାଢ଼ରେ ନେପେଟା ପାହାଡ଼ ପାଦଦେଶରେ ନାରାୟଣୀ ପୀଠ ପ୍ରାଚୀନ ଦେବୀପୀଠ । ଦେବୀ ପୀଠର ଉତ୍ତରକୁ ଲାଗି ଚିତ୍ରୋତ୍ପଳା ନଦୀବାଡ଼ । ଦେବୀଙ୍କ ପୀଠରେ ପୁରୁଣା ବଟଦ୍ରୁମମାନ ବିଶାଳ ବିଶାଳ ତେନ୍ତୁଳି ବୃକ୍ଷର ବଣ । ତେନ୍ତୁଳି ବଣରେ ସିଂହବାହିନୀ କୃଷ୍ଣନୀଳବର୍ଣ୍ଣା ଅଷ୍ଟଭୂଜା ମା' ନାରାୟଣୀ ବିଦ୍ୟମାନ । ଦେବୀଙ୍କର ପାର୍ଶ୍ୱଦେବୀମାନେ- କାଳିକା, ତାରା, ଷୋଡ଼ଶୀ, ଭୈରବୀ, ଛିନ୍ନମସ୍ତା, ଭୁବନେଶ୍ୱରୀ, ଧୂମାବତୀ, ବଗଳା, ମାତଙ୍ଗୀ, କମଳା ।

ନାରାୟଣୀଙ୍କ ସାମ୍ନାରେ ସମ ଚଉହଦୀର ଏକ ପୁଷ୍କରିଣୀ । ଜନ ପ୍ରବାଦରୁ ଜଣାପଡ଼େ ଏ ପୁଷ୍କରିଣୀ ସ୍ଥାନ ଥିଲା ଗୋସିଂହ ଦୈତ୍ୟର ଯଜ୍ଞକୁଣ୍ଡ । ଏ ଯଜ୍ଞକୁଣ୍ଡରେ ନର ପଶୁବଳୀ ଦିଆଯାଉଥିଲା । ଏଣୁ ଏ ପୁଷ୍କରିଣୀରୁ ଏଯାବତ୍ ଜଳପାନ କରିହୁଏନି ।

ଦେବୀ ନାରାୟଣୀଙ୍କ କ୍ଷେତ୍ରରେ ପଶ୍ଚିମ ମୁହାଁ ମହାଦେବ ସ୍ୱପ୍ନେଶ୍ୱର ଜୀଉଙ୍କ ମନ୍ଦିର ରହିଛି । ଏ ମନ୍ଦିର ପାର୍ଶ୍ୱରେ ବଉଳମାଳା ପଥରରେ ଗଢ଼ା ଅନେକ ଦେବାଦେବୀଙ୍କ ସୁନ୍ଦର ମୂର୍ତ୍ତି ଭଗ୍ନାବସ୍ଥାରେ ପଡ଼ିଛି ଏବଂ ଏକ ମନ୍ଦିରର କାରୁକାର୍ଯ୍ୟରେ ନିର୍ମିତ ଭଗ୍ନ ଦଧିନଉତି ପଡ଼ିଛି । ଏଗୁଡ଼ିକୁ ଦେଖିଲେ ନାରାୟଣୀ ପୀଠର ପ୍ରାଚୀନତା କଳିହୁଏନି । ଏ ପରିବେଶରେ ଠିଆ ହେଲେ ବହୁ କାଳର ବାସ୍ନା ଅନୁଭୂତ ହୁଏ ।

ନୟାଗଡ଼ ଜିଲ୍ଲାର ପୁରୁଣା ଦେବୀପୀଠ ନାରାୟଣୀ ପୀଠ । ପର୍ଯ୍ୟଟକଙ୍କ ମନମୋହିଲା ଭଳି ଦେବୀ କ୍ଷେତ୍ର । ଡୁବୁରୀ ପାହାଡ଼ ଉପରୁ ଠିଆହେଲେ ନୀଳମାଧବଙ୍କ ଘାଟରୁ ଚିତ୍ରପ୍ରୋଳାର କ୍ରୀଡ଼ାରତ ରୂପ ବିମୋହିତ କରେ । ନାରାୟଣୀ ପୀଠରେ ପର୍ଯ୍ୟଟକଙ୍କର ଆମୋଦ ପାଇଁ ପାନ୍ଥନିବାସ ମୁକ୍ତମଣ୍ଡପର ବ୍ୟବସ୍ଥା କରାଯାଇଛି । ବର୍ଷର ସବୁ ସମୟରେ ପର୍ଯ୍ୟଟକଙ୍କର ଭିଡ଼ ଏଠି ଦେଖାଯାଏ ।

ନୟାଗଡ଼ ଜିଲ୍ଲା ପର୍ଯ୍ୟଟନପୀଠଗୁଡ଼ିକ ମୁଖ୍ୟତଃ ଧାର୍ମିକ ପର୍ଯ୍ୟଟନସ୍ଥଳୀ,

ପ୍ରାକୃତିକ ପରିବେଶକୁ ଭିତ୍ତିକରି ପର୍ଯ୍ୟଟନ ସ୍ଥଳୀ, ବିଜ୍ଞାନ ଗବେଷଣାଗାର ପର୍ଯ୍ୟଟନ ସ୍ଥଳୀ ଅନ୍ତର୍ଭୁକ୍ତ । ଆଲୋଚ୍ୟ ପର୍ଯ୍ୟଟନ କ୍ଷେତ୍ରମାନଙ୍କରେ ଯାତ୍ରୀମାନଙ୍କ ପାଇଁ ଅଧିକ ଯାତ୍ରୀନିବାସ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧା ସୁଯୋଗର ବ୍ୟବସ୍ଥା ପାଇଁ କର୍ତ୍ତୃପକ୍ଷଙ୍କୁ ଅନୁରୋଧ ।



<u>ପଞ୍ଚଦଶ ଅଧ୍ୟାୟ</u>

# ନୟାଗଡ଼ ମନ୍ଦିର ନିର୍ମାଣ ପରମ୍ପରା

ଓଡ଼ିଶାର କେନ୍ଦ୍ରସ୍ଥଳରେ ଏକ ଆରଣ୍ୟକ ପୃଷ୍ଠଭୂମି ଉପରେ ନୟାଗଡ଼ ଜିଲ୍ଲା ଅବସ୍ଥିତ। ଶାକ୍ତ, ଶୈବ, ବୈଷ୍ଣବ ଅଲେଖ ଧର୍ମର ଆଧାତ୍ମିକ ଚେତନାରେ ଏହାର ଜନଜୀବନ ପ୍ରଭାବିତ। ଧର୍ମଧାରାକୁ ଭିତ୍ତିକରି ନୟାଗଡ଼ର ଗଡ଼େ ଗଡ଼େ ଗ୍ରାମେ ଗ୍ରାମେ, ପଥପ୍ରାନ୍ତମାନଙ୍କରେ ଦେବୀ ମନ୍ଦିର, ଶିବ ମନ୍ଦିର, ରାଧାକୃଷ୍ଣ ମନ୍ଦିର, ରଘୁନାଥ ମନ୍ଦିର, ଜଗନ୍ନାଥ ମନ୍ଦିର, ଅଲେଖ ଟୁଙ୍ଗୀମାନ ନିର୍ମାଣ କରାଯାଇଥିବାର ଲକ୍ଷ୍ୟ କରାଯାଏ। ଏହି ମନ୍ଦିରଗୁଡ଼ିକର କାରୁକଳା ପ୍ରାୟତଃ ନୟାଗଡ଼ର ଭାସ୍କରମାନଙ୍କ ଦ୍ୱାରା ନିର୍ମିତ, ଖୋଦିତ। କୁଶଳୀ କାରିଗରମାନଙ୍କର ସ୍ଥାପତ୍ୟ କଳା ଭାସ୍କର୍ଯ୍ୟ ନୟାଗଡ଼ ସରହଦ ମଧ୍ୟରେ ଆବଦ୍ଧ ନରହି, ସମଗ୍ର ଓଡ଼ିଶା ରାଜ୍ୟରେ ତଥା ଓଡ଼ିଶା ବାହାର ରାଜ୍ୟମାନଙ୍କରେ ଉଚ୍ଚ ପ୍ରଶଂସା ଅର୍ଜନ କରିଅଛି। ନୟାଗଡ଼ ମନ୍ଦିର ନିର୍ମାଣ ପରମ୍ପରା ଅନ୍ୱେଷଣ କଲାବେଳେ ପୁରାତନରୁ ଏଯାବତ୍ ଭାରତବର୍ଷର କେତେକ ରାଜ୍ୟରେ ସୁନ୍ଦର ମନ୍ଦିରମାନ ଗଢ଼ା ହୋଇଥିବାର ଓ ଗଢ଼ା ହେଉଥିବାର ଦେଖିଲେ ଗର୍ବରେ ହୃଦୟ ପୁଲକିତ ହୁଏ- ନିଜର ନିଜର ଲାଗେ- ଏ ମନ୍ଦିରକଳା ଆମ ନୟାଗଡ଼ର।

ନୟାଗଡ଼ ଜିଲ୍ଲାର କଣ୍ଟିଲୋସ୍ଥ ବ୍ରହ୍ମାଦ୍ରୀରେ ନୀଳମାଧବ ମନ୍ଦିର, ଓଡ଼ଗାଁ ରଘୁନାଥ ମନ୍ଦିର, ରଣପୁର ଗଡ଼ ଜଗନ୍ନାଥ ମନ୍ଦିର, ମଣିନାଗ ମନ୍ଦିର, ଖଣ୍ଡପଡ଼ା ଗଡ଼ ଜଗନ୍ନାଥ ମନ୍ଦିର, ଦଶପଲ୍ଲା ଗଡ଼ ଜଗନ୍ନାଥ ମନ୍ଦିର, ମହାବୀର ଜୀଉଙ୍କ ମନ୍ଦିର, ନୟାଗଡ଼ ଜଗନ୍ନାଥ ମନ୍ଦିର ଓ ଦକ୍ଷିଣକାଳୀ ମନ୍ଦିର ଜିଲ୍ଲାର ଏକ ତୀର୍ଥକ୍ଷେତ୍ର। ନୟାଗଡ଼ ଶିଳ୍ପୀଙ୍କର ସୂକ୍ଷ୍ମ ଦୃଷ୍ଟିରେ ଏ ମନ୍ଦିରଗୁଡ଼ିକ ନିର୍ମିତ। ନୟାଗଡ଼ର ମନ୍ଦିର ଶିଳ୍ପୀ କହିଲେ ମୁଖ୍ୟତଃ ଓଡ଼ଗାଁର ଶିଳ୍ପୀକୁଳଙ୍କୁ ନେଇହୁଏ। ଓଡ଼ଗାଁର ପୁରୁଖା ମନ୍ଦିର ଶିଳ୍ପୀ ପଦ୍ମଚରଣ ମହାପାତ୍ର ବୟସ ୭୬ବର୍ଷ କୁହନ୍ତି "ବୃନ୍ଦାବନ ମହାରଣା, ଲଡୁ ଦାସ ମହାରଣା ନୟାଗଡ଼ର ପୁରୁଣା ଶିଳ୍ପୀଗୁରୁ। ମଧୁସୂଦନ ମହାରଣା, ରଙ୍ଗନାଥ ମହାରଣା, ସୀତାରାମ ମହାରଣା ସହଯୋଗୀ ଶିଳ୍ପୀଭାବେ ଏମାନଙ୍କ ପାଖରେ କାମ କରୁଥିଲେ। ଏହି ଶିଳ୍ପୀମାନେ ଗଞ୍ଜାମ ଜିଲ୍ଲାର ବୁଗୁଡ଼ା ନିକଟସ୍ଥ ମଥୁରା ଗ୍ରାମରୁ ଆସି ଓଡ଼ଗାଁର ସ୍ଥାୟୀ ବାସିନ୍ଦା ହୋଇଗଲେ। ଏହି ଶିଳ୍ପୀମାନେ ରଘୁନାଥ ଜୀଉଙ୍କର ଦକ୍ଷିଣ ଦ୍ୱାରସ୍ଥ ବ୍ୟାଘ୍ର ଦ୍ୱାର ସାମ୍ନା ସାହିରେ ବସବାସ କରୁଛନ୍ତି।" ବ୍ୟାଘ୍ରଦ୍ୱାର ନିକଟରେ ବାସକରୁଥିବା ଖଳେଶ୍ୱର ଦାସ କୁହନ୍ତି "ତାଙ୍କର ପିତା କୁଞ୍ଜବିହାରୀ ଦାସ, ବୃନ୍ଦାବନ ମହାରଣାଙ୍କ ସମସାମୟିକ ଶିଳ୍ପୀ ଓ ଓଡ଼ିଶା ଭିତରେ ଅନେକ ଶିବ ମନ୍ଦିର ରାଧାନାଥ

ମନ୍ଦିର, ଜଗନ୍ନାଥ ମନ୍ଦିର ନିର୍ମାଣ କରିଛନ୍ତି।" ସମୟ ଅନୁକ୍ରମରେ ବୃନ୍ଦାବନ ମହାରଣାଙ୍କର ଶିଷ୍ୟମାନେ କୃଷ୍ଣଚନ୍ଦ୍ର ବରାଡ଼ ଓଡ଼ଗାଁ, କୁଳମଣି ପ୍ରଧାନ ଆନନ୍ଦପୁର, ରବି ସେନାପତି ବିଲମାନପୁର, ବସ୍ତ ମହାରଣା ଭାଡ଼ିକିଲା- ମାଗୁଣି ମହାରଣା ମଶାବାରୀ, କାର୍ତ୍ତିକ ଦାସ ଓଡ଼ଗାଁ, ଗଙ୍ଗାଧର ଜେନା ବିଲମାନପୁର, ସନ୍ତୋଷ ପ୍ରଧାନ ଓଡ଼ଗାଁ, ସୁରେଶ ଚନ୍ଦ୍ର ସାହୁ ଓଡ଼ଗାଁ, ଓଡ଼ିଶା ତଥା ଓଡ଼ିଶା ବାହାର ରାଜ୍ୟମାନଙ୍କରେ ଭିନ୍ନ ଭିନ୍ନ ଶୈଳୀରେ ମନ୍ଦିର ନିର୍ମାଣ କରି ନୟାଗଡ଼ ଜିଲ୍ଲାର ଗୌରବ ଆଣିବାରେ ସଫଳତା ଅର୍ଜନ କରିଛନ୍ତି।

୧୯୪୭ ମସିହା ବେଳକୁ ବୃନ୍ଦାବନ ମହାରଣା ରଘୁନାଥ ଜୀଉଙ୍କର ବ୍ୟାଘ୍ରଦ୍ୱାର ନିକଟସ୍ଥ ସାହିରେ ଅବସ୍ଥାନ କରି ପ୍ରଧାନ ଭାସ୍କର ଭାବେ ଖ୍ୟାତି ଅର୍ଜନ କରିଥାନ୍ତି। ଭାସ୍କର କୃଷ୍ଣଚନ୍ଦ୍ର ବରାଡ଼ କୁହନ୍ତି "ବୃନ୍ଦାବନ ମହାରଣାଙ୍କର ଜେଜେବାପା, ବାପା ଓଡ଼ଗାଁର ରଘୁନାଥଜୀଉଙ୍କ ମନ୍ଦିର ନିର୍ମାଣ କରି ନୟାଗଡ଼ ରାଜାଙ୍କଠାରୁ ଭାସ୍କର ବିଶାରଦ ଉପାଧି ଲାଭ କରିଥିଲେ। ବୃନ୍ଦାବନ ମହାରଣା ରାଜକନିକା ରାଜାଙ୍କ ମାର୍ଫତରେ ଗୁଜୁରାଟ ରାଜାଙ୍କର ଜଗନ୍ନାଥ ମନ୍ଦିର ନିର୍ମାଣ କରି ଭୂୟସୀ ପ୍ରଶଂସାର ଅଧିକାରୀ ହୋଇଥିଲେ।" ବୃନ୍ଦାବନ ମହାରଣା, ଶିଳ୍ପୀ ମଧୁସୂଦନ ମହାରଣା, ସୀତାରାମ ମହାରଣା, ରଙ୍ଗନାଥ ମହାରଣାଙ୍କ ସହଯୋଗରେ ଗଞ୍ଜାମ ଜିଲ୍ଲାର କାଦୁଆ କମସର, ଜିରାବାଡ଼ି, ରକ୍ତଭୂଇଁ, ନୟାଗଡ଼ର ଶରଣକୂଳ କଟକ ଜିଲ୍ଲାର ନରସିଂହପୁର ଗ୍ରାମ, ପଦାମାଳ, ବାଣେଶ୍ୱର ପାହାଡ଼ରେ ପଞ୍ଚଲିଙ୍ଗ ମନ୍ଦିର ନର୍ମାଣ କରି ସୂକ୍ଷ୍ମ କାରୁକଳାର ଚମକ ସୃଷ୍ଟି କରିଛନ୍ତି। ପଦ୍ମଚରଣ ମହାପାତ୍ର କୁହନ୍ତି "ସେତେବେଳକୁ ମୁଁ ବୃନ୍ଦାବନ ମହାରଣାଙ୍କ ପଟ୍ଟଶିଷ୍ୟ ହୋଇସାରିଲିଣି। ତାଙ୍କ ସାଥୀରେ ମୁଁ ମଧ୍ୟପ୍ରଦେଶ, ଉତ୍ତରପ୍ରଦେଶ, ରାଞ୍ଚିରେ ରାଧାନାଥ ମନ୍ଦିର ଜଗନ୍ନାଥ ମନ୍ଦିର ଶିବ ମନ୍ଦିର କରିଅଛି। ରାଞ୍ଚିରେ ମୁଁ ବୃନ୍ଦାବନ ମହାରଣାଙ୍କ ସାଥୀରେ ୧୬ଦିନ ରହି ଜଗନ୍ନାଥ ମନ୍ଦିର ନକ୍ସା କରିଥିଲି। ଜଗନ୍ନାଥ ମନ୍ଦିର ଅର୍ଦ୍ଧନିର୍ମିତ ଅବସ୍ଥାରେ ବୃନ୍ଦାବନ ମହାରଣାଙ୍କର କାଳ ହୋଇଗଲା। ମୁଁ ଅଧାଗଢ଼ା ଜଗନ୍ନାଥ ମନ୍ଦିରକୁ ପୂର୍ଣ୍ଣାଙ୍ଗ କରିଥିଲି। ମୋର ପୁତ୍ର ଗଙ୍ଗାଧର ମହାପାତ୍ର ଏହାର ଶେଷାଂଶକୁ ପୂରଣ କରିଥିଲା।" ବୃନ୍ଦାବନ ମହାରଣା ସାକ୍ଷୀଗୋପାଳ ନିକଟସ୍ଥ ବିଶ୍ୱନାଥପୁର, ନାରଙ୍ଗପାଟଣା, ରାମଚନ୍ଦ୍ରପୁରରେ ମନ୍ଦିର ନିର୍ମାଣ କରି ଯଶସ୍ୱୀ ହୋଇଛନ୍ତି। ତାଙ୍କଦ୍ୱାରା ନିର୍ମିତ ତିରୁବାଲିରେ ଲକ୍ଷ୍ମୀନାରାୟଣ ମନ୍ଦିର, ଶିବ ମନ୍ଦିର, ଦୁର୍ଗାମନ୍ଦିର ମଧ୍ୟପ୍ରଦେଶର କୋକଲାଠାରେ ଲକ୍ଷ୍ମୀନାରାୟଣ ମନ୍ଦିରର କାରୁକଳା ନୟାଗଡ଼ କୁଶଳୀ ଶିଳ୍ପୀର ଚମକ ନିଷାଣ।

ପଦ୍ମଚରଣ ମହାପାତ୍ର ଉତ୍ତରପ୍ରଦେଶରେ ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡ ମଧ୍ୟରେ କୃଷ୍ଣ ମନ୍ଦିର ନିର୍ମାଣ କରିଛନ୍ତି। ସେଠାକାର ରାଧା ମନ୍ଦିରକୁ ଅନ୍ୟ କିଏ ଭାସ୍କର

ନିର୍ମାଣ କରିଥିବାର ଜଣାପଡ଼େ। ସେଠାର ଚୈତନ୍ୟ ଜୀଉଙ୍କ ମନ୍ଦିର ପଦ୍ମଚରଣ ମହାପାତ୍ର ନିର୍ମାଣ କରିଛନ୍ତି। ପଦ୍ମଚରଣ ମହାପାତ୍ର କହନ୍ତି ଯେ ସାକ୍ଷୀଗୋପାଳର ବିଶ୍ୱନାଥପୁର ନାରଙ୍ଗପୁରଠାରେ ତାଙ୍କଦ୍ୱାରା ନିର୍ମିତ ରାଧାକୃଷ୍ଣ ମନ୍ଦିର ସବୁଠୁଁ ସୁନ୍ଦର ଅଟେ।

କୁଞ୍ଜବିହାରୀ ଦାସ ଓଡ଼ଗାଁ ରଘୁନାଥ ଜୀଉଙ୍କ ବ୍ୟାଘ୍ର ଦ୍ୱାର ନିକଟରେ ଅନ୍ୟ ଏକ ସିଦ୍ଧ ଭାସ୍କର। ତାଙ୍କର ପୁତ୍ର ଖଲେଶ୍ୱର ଦାସ ପିତାଙ୍କ ସାଥିରେ ୧୮ବର୍ଷ ବୟସରୁ କାମ କରିଆସୁଛନ୍ତି ବୋଲି କୁହନ୍ତି। ସେତେବେଳକୁ ଶିଳ୍ପୀଙ୍କ ପାଉଣା ଥିଲା ଏକଅଣା ଦୁଇପଇସା। ଖଲେଶ୍ୱର ଦାସ କୁହନ୍ତି, "ତାଙ୍କ ବାପା କୁଞ୍ଜବିହାରୀ ଦାସ ଗଞ୍ଜାମ ଜିଲ୍ଲାର କଣଛାଇ ଗ୍ରାମର ରାଧାକୃଷ୍ଣ ମନ୍ଦିର, ଭୁବନେଶ୍ୱରରେ ରଘୁନାଥଜୀଉଙ୍କ ମନ୍ଦିର, ଭୁବନେଶ୍ୱର ୮ନମ୍ବରରେ ଜୟଦୁର୍ଗା ମନ୍ଦିର, ୩ ନମ୍ବରରେ ଗିରିଦୁର୍ଗା ମନ୍ଦିର, ଖଣ୍ଡପଡ଼ାରେ ଶିବ ମନ୍ଦିର, ଦଶପଲ୍ଲା ଖମାରସାହିରେ ରାଧାକୃଷ୍ଣ ମନ୍ଦିର, ବାଘୁଆବାରେଣା, ଡମହାଣ୍ଡି, କଳସ, ବେଢ଼ସ, ମଧ୍ୟଖଣ୍ଡ, ପୁରୀ ଜିଲ୍ଲା ବିଶ୍ୱନାଥପୁର ଠାରେ ରାଧାକୃଷ୍ଣ ମନ୍ଦିର ନିର୍ମାଣ କରି ନୟାଗଡ଼ ସ୍ଥାପତ୍ୟ କଳାର ବିକାଶ କରିଛନ୍ତି।"

ଓଡ଼ଗାଁର ମନ୍ଦିର ଶିଳ୍ପୀମାନେ ଏଯାବତ୍ ଭାରତର କେତେକ ରାଜ୍ୟରେ ଭିନ୍ନ ଭିନ୍ନ ମନ୍ଦିର ନିର୍ମାଣ କରି ନୟାଗଡ଼ ସ୍ଥାପତ୍ୟ କଳାର କାରୁକାର୍ଯ୍ୟକୁ ପ୍ରସାର କରି ଯଶ ଅର୍ଜନ କରୁଛନ୍ତି। ଭାସ୍କର କୃଷ୍ଣଚନ୍ଦ୍ର ବରାଡ଼ ତାଙ୍କ ଦଳରେ ୭୦/୮୦ ମନ୍ଦିର ମିସ୍ତ୍ରୀ ଖଟାଇ ଭିନ୍ନ ଭିନ୍ନ ଜାଗାରେ ମନ୍ଦିର କାର୍ଯ୍ୟ ଚାଲୁ ରଖିଛନ୍ତି। ଅଧୁନା ସେ ପୁରୀରେ ଘନଶ୍ୟାମ ହେମଲତା Institute and Technology and Management ପରିସର ମଧ୍ୟରେ ମହା ସରସ୍ୱତୀ ମନ୍ଦିର ନିର୍ମାଣ କରି ଶଙ୍ଖ କ୍ଷେତ୍ରରେ ତାଙ୍କର କୁଶଳୀ କାରିଗରୀ ଗୁଣକୁ ପ୍ରକାଶ କରିବାରେ ସକ୍ଷମ ହୋଇଛନ୍ତି। ଓଡ଼ିଶା ଭିତରେ କୃଷ୍ଣଚନ୍ଦ୍ର ବରାଡ଼ ପୁରୀ ଲୋକନାଥ ରୋଡ଼ରେ ସିଙ୍ଗଡ଼ା ନୃସିଂହ ମନ୍ଦିର, ସାତପଡ଼ା ରୋଡ଼ ବ୍ରହ୍ମଗିରି ଶିଖରପୁର ଗ୍ରାମରେ ହିଙ୍ଗୁଳା ମନ୍ଦିର, ମୟୂରଭଞ୍ଜ ଜିଲ୍ଲାରେ ସୁବର୍ଣ୍ଣରେଖା ପ୍ରୋଜେକ୍ଟ ମାଧ୍ୟମରେ ଲକ୍ଷ୍ମୀନାରାୟଣ ମନ୍ଦିର, ଶିବ ମନ୍ଦିର, ଅନ୍ନପୂର୍ଣ୍ଣା ମନ୍ଦିର, ବାଲେଶ୍ୱର ଜିଲ୍ଲାରେ ହଳଦୀପଦା, ପଦ୍ମପୁର, ବୈଶୀଙ୍ଗା ଲକ୍ଷ୍ମୀନାରାୟଣ ମନ୍ଦିର, ହିଙ୍ଗୁଳା ମନ୍ଦିର, ବେତନଟୀ ଠାରେ ମହାବୀର ମନ୍ଦିର, କେଉଁଝର ଜିଲ୍ଲାର ଡିମ୍ବ ଓ ତେନ୍ତୁଳି ଲଣ୍ଡା ଜାଗାରେ ଲକ୍ଷ୍ମୀନାରାୟଣ ମନ୍ଦିର, ବଲାଙ୍ଗୀର ଜିଲ୍ଲାର ତୁଷାରଠାରେ ସମଲେଶ୍ୱରୀ ମନ୍ଦିର ନିର୍ମାଣ କରି ଉଚ୍ଚ ପ୍ରଶଂସିତ।

ଭୁବନେଶ୍ୱରରେ ଅଚ୍ୟୁତ ସାମନ୍ତଙ୍କ କିଟ୍‌ର କ୍ୟାମ୍ପସ୍ ଓ କିସ୍‌ରେ ସୁରେଶ ଚନ୍ଦ୍ର ସାହୁ ସୁନ୍ଦର ଜଗନ୍ନାଥ ମନ୍ଦିର ନିର୍ମାଣ କରିଛନ୍ତି। କିସ୍ କ୍ୟାମ୍ପସ୍‌ରେ ୧୦ହଜାର ଆଦିବାସୀ, ହରିଜନ ଛାତ୍ରଛାତ୍ରୀ କେଜି ଠାରୁ ପିଜି ପର୍ଯ୍ୟନ୍ତ ଅଧ୍ୟୟନରତ। କିସ୍

ଏସିଆ ମହାଦେଶରେ ବୃହତ୍ତମ ଟ୍ରାଇବାଲ୍ ସ୍କୁଲ୍। ଏହାକୁ ଦ୍ୱିତୀୟ ଶାନ୍ତିନିକେତନ କୁହାଯାଏ। ଅଚ୍ୟୁତ ସାମନ୍ତ ଏହି ଗିରିଜନ ହରିଜନ ପୁଅ ଝିଅଙ୍କର ଏପରି ଯତ୍ନ ନେଇଛନ୍ତି କିସ୍‌ର ପୁଅ ଝିଅମାନେ ତାଙ୍କୁ ପାଳିତ ପିତାର ମର୍ଯ୍ୟାଦା ଦେଇଥାନ୍ତି। କିସ୍ କ୍ୟାମ୍ପସ୍‌ର ଜଗନ୍ନାଥ ମନ୍ଦିର ମୂର୍ତ୍ତିଗୁଡ଼ିକ ଖାସ୍ ଚମତ୍କାର ଲାଗେ। ଏହି ପାଳିତ ପୁତ୍ରପୁତ୍ରୀମାନେ ମାଗଣା ପଞ୍ଜିକରଣ ହୋଇ ଶେଷରେ ନିଯୁକ୍ତିପତ୍ର ପାଇ ପିତାମାତା କୋଳକୁ ଫେରିଥାନ୍ତି। କିସ୍‌ରେ ଅଧ୍ୟୟନରତ ଓଡ଼ିଶାର ଓ ବାହାର ରାଜ୍ୟର ଆଦିବାସୀ ଛାତ୍ରଛାତ୍ରୀମାନେ ନୟାଗଡ଼ ସ୍ଥାପତ୍ୟ କଳା ସହିତ ପରିଚିତ ଦେଖିଲେ ନିଜକୁ ଗର୍ବ ଲାଗେ।

କୃଷ୍ଣଚନ୍ଦ୍ର ବରାଡ଼ ଭାରତବର୍ଷରେ କେତେକ ରାଜ୍ୟରେ ମନ୍ଦିର ନିର୍ମାଣ କଳା ଖୋଦେଇ କରି ବେଶ୍ ଖ୍ୟାତି ଅର୍ଜନ କରିଥିବାର ଲକ୍ଷ୍ୟ କରାଯାଏ। କୃଷ୍ଣଚନ୍ଦ୍ର ବରାଡ଼ ସନ୍ତୋଷ କୁମାର ପ୍ରଧାନ ଓ କବିରାଜ ପ୍ରଧାନଙ୍କ ନେତୃତ୍ୱରେ ଛତିଶଗଡ଼ ରାଜ୍ୟର କୋର୍ବାଠାରେ ଶ୍ୟାମବାବା ମନ୍ଦିର, ରାଇପୁରରେ ମା' ବନ୍‌ଜାରୀଙ୍କ ମନ୍ଦିର, ମହାନଦୀକୂଳ ଚନ୍ଦ୍ରପୁରଠାରେ ମା' ଚନ୍ଦ୍ରହାସିନୀ ମନ୍ଦିର ନୟାଗଡ଼ ଭାସ୍କରଙ୍କର କାରୁକଳାରେ ଗଢ଼ା। ଝାଡ଼ଖଣ୍ଡ ରାଜ୍ୟର ଟାଟାଠାରୁ ୩୦କି.ମି. ଦୂରରେ ସୁବର୍ଣ୍ଣରେଖା ନଦୀ ତଟରେ ଜୟଦାଠାରେ ଶିବ ମନ୍ଦିର, ନରସିଂହ ଗଡ଼ରେ ଜଗନ୍ନାଥ ମନ୍ଦିର, ସିଲିଠାରେ ସୁବର୍ଣ୍ଣରେଖା ତଟରେ ଶିବ ମନ୍ଦିର ଭକ୍ତଙ୍କର ଚିତ୍ତ ବିମୋହିତ କରେ। ପଶ୍ଚିମବଙ୍ଗ ରାଜ୍ୟର ମଛୁଆ ବଡ଼ ବଜାରରେ ୬୦ଫୁଟର ଶିବ ମନ୍ଦିର ନିର୍ମାଣ କରାଯାଇଛି। ଦିଲ୍ଲୀର ଫରିଦାବାଦରେ ୧୮ଇ.ରେ ୮୦ଫୁଟ ଜଗନ୍ନାଥ ମନ୍ଦିର, ରାଜସ୍ଥାନର ରିହାଡ଼ିଠାରେ ଜଗନ୍ନାଥ ମନ୍ଦିର ଅଧୁନା ନିର୍ମାଣ ଚାଲିଛି। ଉତ୍ତରପ୍ରଦେଶର ଗ୍ରେଟର ନୋଇଡ଼ାରେ ସିଦ୍ଧି ବିନାୟକ ମନ୍ଦିର ସେପଟ ସ୍ଥାପତ୍ୟ କଳାର ସମ୍ମିଶ୍ରଣରେ ନୟାଗଡ଼ ମନ୍ଦିର ନିର୍ମାଣ ଶିଳ୍ପୀ ସୁନ୍ଦର ରୂପ ପ୍ରଦାନ କରିବାରେ ସକ୍ଷମ ହୋଇଛନ୍ତି।

ପଦ୍ମଚରଣ ମହାପାତ୍ରଙ୍କୁ ସ୍ଥାପତ୍ୟ କଳା ବିଷୟରେ ପ୍ରଶ୍ନ କରାଗଲା- ମନ୍ଦିର ଗାତ୍ରରେ ଉଲଗ୍ନ ଚିତ୍ରର ଭୂମିକା କ'ଣ ? ସେ ଉତ୍ତର କରିଥିଲେ ମନ୍ଦିର ଦେହରେ ଉଲଗ୍ନ ଚିତ୍ର ଖୋଦେଇର ଗୁରୁତ୍ୱ ରହିଛି। ପାର୍ଶ୍ୱଦେବତାଙ୍କ ମୂର୍ତ୍ତି ସହିତ ଉଲଗ୍ନ ଚିତ୍ରଗୁଡ଼ିକ ନ ରହିଲେ ନିଶ୍ଚୟ ମନ୍ଦିର ଉପରେ ଚଡ଼ଚଡ଼ିର୍ ଆଘାତ ପଡ଼ିବ। ରଣପୁର ଖଣ୍ଡପଡ଼ା, ଦଶପଲ୍ଲା ଅଞ୍ଚଳରେ ମନ୍ଦିର ଶିଳ୍ପୀ ଅଛନ୍ତି କି ? ପଦ୍ମଚରଣ ମହାପାତ୍ର କହିଥିଲେ "ବର୍ତ୍ତମାନ ନୂତନ ଶିଳ୍ପୀ ବାହାରିଲେଣି। ଆମ ସମୟରେ ସେ ଜାଗାମାନଙ୍କରେ ମନ୍ଦିର ଶିଳ୍ପୀ ନଥିଲେ। ଖଲିସାହିରେ ପିତ୍ତଳ ଧାତୁରେ ମୂର୍ତ୍ତି କାରିଗର ଥିଲେ। ସେମାନେ ମଧୁସୂଦନ ମହାରଣା, ନିତ୍ୟାନନ୍ଦ ମହାରଣା ଓ ସୁବାସ ମହାରଣା। ରଣପୁର ବୈଷ୍ଣବ ମହାରଣା, ସୁମନ୍ତ ମହାରଣା, ବୈଦ୍ୟନାଥ

ମହାରଣା, ସୁନ୍ଦର ସିଂହ ମୂର୍ତ୍ତି ନିର୍ମାଣ କରୁଥିଲେ। ରଣପୁର ସିଂହ ଭଳି ସୁନ୍ଦର ସିଂହ କେଉଁଠାରେ ଦେଖିବାକୁ ମିଳେ ନାହିଁ। ନୀଳାମ୍ବର ଦାସ ସାଥୀ ତ୍ରିଲୋଚନ ଦାସ ବାଙ୍କୋଇ ପ୍ରସିଦ୍ଧ ବୃଷଭ ମୂର୍ତ୍ତି ନିର୍ମାଣ କରିଥିଲେ।

ଆଜିର ମନ୍ଦିରଗୁଡ଼ିକୁ ଭାସ୍କରମାନେ ସିମେଣ୍ଟ କଂକ୍ରିଟ ସ୍ତମ୍ଭ ମଧ୍ୟରେ ଇଟା ଯୋଡ଼େଇରେ କରୁଛନ୍ତି। ମନ୍ଦିର ଦେହରେ ଖୋଦେଇ ମୂର୍ତ୍ତି ନରଖି ଇଟା ଓ ସିମେଣ୍ଟ ଲେପ ଦେଇ ମୂର୍ତ୍ତିଗୁଡ଼ିକୁ ଅବିକଳ ରୂପ ପ୍ରଦାନ କରୁଛନ୍ତି। ସନ୍ତୋଷ ମହାରଣା ଓଡ଼ଗାଁ, ଶରତ ପ୍ରଧାନ ଗୋଟିସାହି, ଭାସ୍କର ମହାରଣା ମଶାବାରି, ତ୍ରିଲୋଚନ ମହାରଣା ମଶାବାରି, ଛତିଶ ଡାକୁଆ ଓଡ଼ଗାଁ, ମୁନା ଗୁରୁ ଓଡ଼ଗାଁ, ରାଘବ ପରିଡ଼ା ରବିଗାଡ଼ିଆ, ଶିଶିର ବିଶୋଇ ବିଲମାନପୁର, ନୀଳମଣି ପ୍ରଧାନଲ ଆନନ୍ଦପୁର, ଜିତୁ ଗୋଡ଼ିପାଟଣା, ମାଧବ ପ୍ରଧାନ ଆନନ୍ଦପୁର, ସହଦେବ ପ୍ରଧାନ ଆନନ୍ଦପୁର, ନୟାଗଡ଼ ଜିଲ୍ଲାର ଓଡ଼ଗାଁ ବ୍ଲକର ପାଖାପାଖି ଗ୍ରାମମାନଙ୍କର କୁଶଳୀ ମୂର୍ତ୍ତି କାରିଗର ଅଟନ୍ତି।

କାବ୍ୟକଳା, ସଂଗୀତ କଳା, ସ୍ଥାପତ୍ୟକଳା ଦିଗରେ ନୟାଗଡ଼ ଏକ ଅଗ୍ରଣୀ ଜିଲ୍ଲା। ହେଲେ ଏହାର ଜନଜୀବନ ଯାତ୍ରାକୁ ଅନୁଭବ କଲେ ମନରେ ବିଷାଦ ଆସେ। ସବୁ ଥାଇ କିଛି ନଥିଲା ପରି ଲାଗେ। ଯାତ୍ରୀ ଭାସ୍କରର ମୂକ ଚିତ୍ରକୁ ଅନୁଭବ କରନ୍ତି ।



## ଷୋଡଶ ଅଧ୍ୟାୟ

# ନୟାଗଡ଼ ଜିଲ୍ଲାର ଅନନ୍ୟ ତନ୍ତଶିଳ୍ପ

ନୟାଗଡ଼ ଜିଲ୍ଲା କୁସୁମୀ ନଦୀ ସଭ୍ୟତାର ଜନବସତି। ଲାଠିପଡ଼ା, ଇଟାମାଟି, କୁରାଳ, ବାଉଁଶିଆପଡ଼ା, ସୁନାଖଳା, ସାତପାଟଣା, ଖଳିସାହି ପରି ବହୁତ ବଡ଼ ବଡ଼ ବ୍ୟବସାୟିକ ଗାଁ ଏହି ଜନବସତିରେ ଅବସ୍ଥିତ। ଏହି ଗାଁ'ମାନଙ୍କରେ ବିଭିନ୍ନ ଜାତିର ବସତି ରହିଛି ତଥା ଖରୁଡ଼ା (କଂସା ପିତ୍ତଳ ବାସନ କାରୀଗର), ବୁଣାକାର, ବଣିଆ, କମାର, ବଢ଼େଇ। ଏହି ଶିଳ୍ପକାର ଜାତି ବେଉସା ଯୋଗୁଁ ସଭ୍ୟତା ପ୍ରଗତିଶୀଳ। ନୟାଗଡ଼ ଜନବସତିର ଦୁଇ ତୃତୀୟାଂଶ ବାସିନ୍ଦା କୃଷିଜୀବୀ। ଏ ବିଶାଳ ଜନବସତିକୁ ବୟନଶିଳ୍ପର ଅବଦାନ ଗୁରୁତ୍ୱପୂର୍ଣ୍ଣ। ନୟାଗଡ଼ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବହୁ ପୁରାତନ କାଳରୁ ଏହି ଶିଳ୍ପସମୂହର ବିକାଶ ଘଟିଥିଲା।

ଖାଦ୍ୟ, ବସ୍ତ୍ର, ବାସଗୃହ ମନୁଷ୍ୟର ପ୍ରଥମ ଆବଶ୍ୟକତା। ଆବଶ୍ୟକତା ପୂରଣ ପାଇଁ ବୁଣାକାର, ବଢ଼େଇ, କମାରଙ୍କର ଚାହିଦା ସଭ୍ୟତା ମଧ୍ୟରେ ରହିଛି। ଏମାନଙ୍କ ସଂଖ୍ୟା ଜନବସତିରେ କମ୍ ଯେତେବେଳେ କୃଷକ ସଂଖ୍ୟା ସର୍ବାଧିକ। ବୁଣାକାର, କମାର, ବଢ଼େଇ, ବଣିଆ, ଖରୁଡ଼ା (ଧାତୁରେ ବାସନକୁସନ ତିଆରି କରିଥିବା ଜାତି) ସବୁ ଗାଁ'ରେ ଦେଖାଯାଆନ୍ତି ନାହିଁ। କିନ୍ତୁ ନୟାଗଡ଼ ଜନବସତିରେ ଏହି କୁଶଳୀ କାରୀଗର ଜାତିର ବସତି ଠାଏ ଠାଏ ରହିଛି। ନୟାଗଡ଼ର ବୁଣାକାର ଶ୍ରେଣୀର କାରିଗରମାନେ ନୟାଗଡ଼ ଅଞ୍ଚଳକୁ ଯୋଗାଇବା ସଙ୍ଗେ ସଙ୍ଗେ ବାହାର ଅଞ୍ଚଳକୁ ବିକ୍ରୟ ପାଇଁ ନିଜର ଉତ୍ପାଦିତ ବସ୍ତ୍ର ପଠାଇଥାନ୍ତି।

ଏହାର ଏକ ନମୂନା ନିଆଯାଏ କି ନୟାଗଡ଼ ଗୋଡିସାହି ପଞ୍ଚାୟତ ଅନ୍ତର୍ଗତ କଣ୍ଟାବଣିଆ ଗ୍ରାମରେ କେତେଗୁଡ଼ିଏ ବୁଣାକାର ପରିବାର ରହିଛନ୍ତି। ଏମାନଙ୍କ ମଧ୍ୟରୁ ଗୋଟିଏ ପରିବାର ମୁଖ୍ୟ ହରିହର ମାଟି, ବୟସ ୮୨ ତାଙ୍କର ଭାଇ ଉଦୟନାଥ ମାଟି ଜଣେ ଦକ୍ଷ ବୁଣାକାର ତଥା ଅବସରପ୍ରାପ୍ତ କୁଶଳୀ ଶିକ୍ଷକ, ବୟସ ୬୮ କହନ୍ତି, "ଲୁଗା ବୁଣିବା ଆମର କୌଳିକ ଜୀବିକା ଛଅ ପୁରୁଷର। ହାତବୁଣା ତନ୍ତଠାରୁ ପାୱାରଲୁମ୍‌ରେ ଆଧୁନିକ ଧରଣର ଲୁଗାବୁଣା ପର୍ଯ୍ୟନ୍ତ ଆମେ ବୁଣାକାର ଜୀବିକା କରି ଆସିଛୁ। ଦୁଃଖଦ ଏହି ଯେ ପାୱାରଲୁମ୍‌ର ପ୍ରସାର ବେଳକୁ ନୟାଗଡ଼ରେ ତନ୍ତଶିଳ୍ପର ଅବନତି ଘଟିବାରୁ ଲୋକଙ୍କର କୌଳିକ ଜୀବିକା ହାତଛଡ଼ା ହେଲା।" ନୟାଗଡ଼ ତନ୍ତୁବାୟ ସହଯୋଗ ସମିତି ଲିଃ ଗୋବିନ୍ଦପୁରର ଜନୈକ ବୁଣାକାର ହାଲୁରି ନାୟକ କହନ୍ତି, "ଦେଶ ସ୍ୱାଧୀନତା ବହୁ ପୂର୍ବରୁ ତନ୍ତଶିଳ୍ପର

ପ୍ରସାର ଥିଲା– ଆମ ବାପ ଗୋସେଇଁ ବାପ ଅମଳରୁ ଆମର କୌଳିକ ଜୀବିକା ଲୁଗାବୁଣା ।"

ଦେଶ ସ୍ୱାଧୀନତାର ବହୁ ପୂର୍ବରୁ ନୟାଗଡ଼ ଅଞ୍ଚଳରେ ହାତତନ୍ତର ପ୍ରସାର ଥିଲା । ଲାଠିପଡ଼ା, ଇଟାମାଟି, ସୋଲପଟା, କଣ୍ଟାବଣିଆ, ଡିମିସର ବଢ଼ିଆସାହି, ଅଶ୍ୱସ୍ଥପଡ଼ା, ରାଜପାଟଣା, ରଙ୍ଗଣୀପାଟଣା, ଓଡ଼ଗାଁ ପଞ୍ଚରିଡ଼ା, ଅଭିମାନପୁର, ଦଶପଲ୍ଲା ସାତପାଟଣା, ଖଣ୍ଡପଡ଼ା ବାଇଗୁଣିଆ, ଖଳିସାହି, କଣ୍ଟିଲୋ, ଗଣିଆ, ବେଲପଡ଼ା, ଡକାରୀ, ଶୁକଳଗାଡ଼ିଆ, ଶରଧାପୁର, ଆଙ୍କୁଲିପାଟଣା, ରଣପୁର, ସୁନାଖଳା, ମୟୂରଝାଲିଆ, ଦର୍ପନାରାୟଣପୁର, ପଥରପୁଞ୍ଜି, କଇଁଫୁଲିଆ, ବଧିପାଟଣା, ଉଆସପାଟଣା, ମଣିଭଦ୍ରା, ଢୋଲମରା, ଆଡ଼ଚେର, ଭାଲିଆଡ଼ିହି ଗାଁ'ମାନଙ୍କରେ ହସ୍ତତନ୍ତର ବୁଣାକାରମାନେ ଧୋତି, ଗାମୁଛା, ଚଦର, ଶାଢ଼ୀ, ପୋଷାକ କପଡ଼ାମାନ ବୁଣୁଥିଲେ ।

ନୟାଗଡ଼ର ବୁଣାକାରମାନେ ପ୍ରଥମ ଅବସ୍ଥାରେ ବ୍ୟବହାର କରୁଥିବା ତନ୍ତକୁ 'ପାଲେଟା ତନ୍ତ' କହୁଥିଲେ। ପାଲେଟା ତନ୍ତ ଶିଶୁକାଠ ପଟା, ତାଳକାଠ ସୁନ୍ଦର କଣିଆ ବାଉଁଶରେ ତିଆରି ହେଉଥିଲା ସ୍ଥାନୀୟ ବଢ଼େଇଙ୍କ ସହାୟତାରେ । ନଳୀ, ବତା, ଖାଡ଼ି, ନଟେଇ, ଅରଟ ସାହାଯ୍ୟରେ ସୁତାକାଟି ଲୁଗା ବୁଣୁଥିଲେ । ବୁଣାକାର୍ଯ୍ୟ ଶୁଭ ସଫଳ ହେବା ପାଇଁ ତନ୍ତ କାଠରେ ଗଦାପଦ୍ମ ଶଙ୍ଖ ଚକ୍ର ଚିହ୍ନ କାରିଗରମାନେ ଖୋଦେଇ କରୁଥିଲେ । ହାତ ତନ୍ତରେ କୁସୁମୀ ମୁଣ୍ଡଶାଢ଼ୀ ଭଳି ଉନ୍ନତମାନର ପସନ୍ଦ ଶାଢ଼ୀ ବୁଣାଯାଉଥିଲା । ଶାଢ଼ୀ ଧଡ଼ିରେ ଶୁଆ, ଗୁଆ, ହାତୀଘୋଡ଼ା, ଚକ୍ର, ମୟୂର ଚିତ୍ର ଥାଇ ଫେରାକୁମ୍ଭ ପଡ଼ିଥାଏ । ଶାଢ଼ୀ ଅଞ୍ଚଳରେ ରଥ, ମନ୍ଦିର ଚିତ୍ର ରହିଥିଲା । ଶାଢ଼ୀକୁ ବସନ୍ତ ରଙ୍ଗ, ଲାଲରଙ୍ଗ, ହଳଦୀ ଓ ଶୁଆରଙ୍ଗ କରି ଆକର୍ଷଣ କରିପାରୁଥିଲେ ।

ପାଲେଟା ତନ୍ତରେ କାରିଗର ତନ୍ତର ଫାନ୍ଦ ଭିତରେ ହାତରେ ମାକୁକୁ ବାମରୁ ଡାହାଣକୁ ଡାହାଣରୁ ବାମକୁ ଠେଲି ଲୁଗା ବୁଣୁଥିଲେ । ଏଥିରେ ସ୍ତ୍ରୀ ପୁରୁଷଙ୍କ ପାଇଁ କସ୍ତା (ଶାଢ଼ୀ) ଲୁଗା କରିଆ ବୁଣାଯାଉଥିଲା । ଲୁଗାଗୁଡ଼ିକ ଆଣ୍ଠୁ ଲୁଚୁନଥିଲା, ଅଧିକ ଲମ୍ବ ଥିଲା । ଲୁଗାଟା ସେତେଟା ସଫା ରହୁନଥିଲା । ବୁଣାକାରମାନେ ଛଣଗିରି, ଓଲସିଂ, ରଣପୁର ଅଞ୍ଚଳରୁ କପା ଆଣି ତୁଳାଭିଣା ଯନ୍ତରେ ତାକୁ ସଫାକରି ଅରଟି ସାହାଯ୍ୟରେ ସୂତା କାଟନ୍ତି । ସୂତା ଟାଣ ହେବା ପାଇଁ ଭାତମଣ୍ଡ କଇଁଆ ମଞ୍ଜି ମଣ୍ଡରେ ସୂତାକୁ ବୁଡ଼ାଇ ଶୁଖାଇଥାନ୍ତି । ବୁଣାକାରମାନେ ପ୍ରାକୃତିକ ଉପଚାରରୁ ରଙ୍ଗ ତିଆରି କରି ଶାଢ଼ୀ ଗାମୁଛା ରଙ୍ଗ କରନ୍ତି । ଲୁଗା ରଙ୍ଗ ପ୍ରସ୍ତୁତ ପ୍ରଣାଳୀ ଥିଲା– ସୁନାରିପତ୍ର, ବାଉଁଶପତ୍ର, ପିପଳି ଗଛର ପତ୍ର, ନାହାକ୍ଷ ବେଲି ଗଛ ଚେର, କରଡ଼ା କାଠ ଛାଲି ମାଇ ଗୋବରରେ ଶିଝାଇ ରଙ୍ଗ ବାହାର କରାଯାଏ ।

ବିଂଶ ଶତକର ପ୍ରଥମ ପାଦ ଯାଏ ବୁଣାକାରମାନେ ଏ ପ୍ରକାର ହସ୍ତତନ୍ତରେ ଲୁଗା, କରିଆ, ଚଦର, କସ୍ତା ବୁଣି ଅଞ୍ଚଳର ଚାହିଦା ପୂରଣ କରୁଥିଲେ। ସେତେବେଳେ ଲୁଗା, କରିଆ, କସ୍ତାର ଦାମ୍ ପଇସା ଅଣା ଭିତରେ ବିକ୍ରିବଟା ହେଉଥିଲା। ତିନିହାତି ଗାମୁଛାର ଦାମ୍ ଚାରିଅଣା ଥିଲା। କାରିଗରମାନେ ଉତ୍ପାଦିତ ବସ୍ତ୍ରକୁ ନିଜେ ଗାଁ ଗାଁ ବୁଲି ବିକ୍ରୟ କରୁଥିଲେ ଏବଂ ସ୍ଥାନୀୟ ଦୋକାନ ଶରଣକୁଳ, ଓଡ଼ଗାଁ, କୋମଣ୍ଡ, ବାହାଡ଼ାଝୋଲା, ଗୋଡ଼ିପଡ଼ା, ରଣପୁର, ନୟାଗଡ଼, ଇଟାମାଟି, ଖଣ୍ଡପଡ଼ା, ଖଳିସାହି, ସାତପାଟଣା, ବାଉଁଶିଆପଡ଼ା ଆଦି ସ୍ଥାନର ଛୋଟ ଦୋକାନଗୁଡ଼ିକରେ ବିକ୍ରୟ କରୁଥିଲେ।

ଖଣ୍ଡପଡ଼ା ନିକଟସ୍ଥ ବାଇଗୁଣିଆ ହସ୍ତତନ୍ତ ବୁଣା ଲୁଗା ସବୁଠୁ ସଫେଦ୍। ବାଇଗୁଣିଆ ଧୋତି ଚଦର ଉତ୍କଳ ଗୌରବ ମଧୁସୂଦନ ଦାଶ ପରିଧାନ କରି ଉତ୍କଳ ସମ୍ମିଳନୀକୁ ଯାଉଥିଲେ। ବାଇଗୁଣିଆ ଧୋତି ଚଦର ପ୍ରସିଦ୍ଧି ଲାଭ କରିଥିଲା। ଏହାର ବୁଣାକାରମାନେ ଉଚ୍ଚକୋଟିର ବସ୍ତ୍ରଶିଳ୍ପୀ। ଏମାନଙ୍କ ବୁଣା ବସ୍ତ୍ର ବାହାରେ ବେଶ୍ ଆଦର ପାଇଥିଲା।

ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନରେ ବିଦେଶୀ ଦ୍ରବ୍ୟ ବର୍ଜନ ଆହ୍ୱାନରେ ସମଗ୍ର ଦେଶରେ ଖଦୀ ଆନ୍ଦୋଳନ ଦେଖାଦେଲା। ଲୋକମାନେ ଖଦୀବସ୍ତ୍ର ପାଇଁ ସୂତା କାଟିଲେ ଚରଖା ଆନ୍ଦୋଳନ ବ୍ୟାପିଲା। ନୟାଗଡ଼ ବଡ଼ପଣ୍ଡୁସରଠାରେ ଖଦୀ କେନ୍ଦ୍ର ଖୋଲିଲା। ଲୋକମାନେ ସୂତାକାଟିବାର ତାଲିମ ପାଇଲେ। ଚରଖା, ତକଡି, ତୁଳାଭିଣା ଯନ୍ତ୍ର ସାହାଯ୍ୟରେ କପାକୁ ସଫା କରି ବଳଣା ତିଆରି କରିବା ଅମ୍ବର ଚରଖା ତାଲିମ କେନ୍ଦ୍ରଗୁଡ଼ିକରୁ କାରିଗରମାନଙ୍କୁ ଯୋଗାଇ ଦିଆଗଲା। ଏହି ସମୟରେ ସୁତା ମୋଟା, ଖଦଡ଼ ଓ ବିଶେଷ ସଫା ନଥିଲା। ଏହା ସ୍ୱାଧୀନତାର ପୂର୍ବ ଅବସ୍ଥାରୁ ୧୯୬୨-୬୪ ପର୍ଯ୍ୟନ୍ତ ଚାଲିଥିଲା। ସ୍ୱାଧୀନତାର ପରବର୍ତ୍ତୀ କାଳରେ ଖଦୀବସ୍ତ୍ର, ଚିକ୍କଣ ସଫେଦ ହୋଇ ଆସିଲାଣି। ସୁତା କାଟିବା ପାଇଁ ଖଦୀବସ୍ତ୍ର ବୁଣିବାର ତାଲିମକେନ୍ଦ୍ରମାନ ବଡ଼ପଣ୍ଡୁସର, ଗୋଟିସାହି, ଗୋଡ଼ିପଡ଼ା, ରଙ୍ଗଣୀପାଟଣା, ରଣପୁର, ବାଉଁଶିଆପଡ଼ା, ଲାଠିପଡ଼ାଠାରେ ଖୋଲାଯାଇଥିଲା। ଚରଖା ଆନ୍ଦୋଳନରେ ଭଲ ପାଉଣା ପାଉଥିଲେ। ଖଦୀବସ୍ତ୍ର ବେଶ୍ ମଜ୍‌ଭୁତ୍ ରହିଲା। ଖଦୀବସ୍ତ୍ର ଭାରତର ଜାତୀୟ ବସ୍ତ୍ର। ୧୯୫୫ ମସିହାରେ ନୂତନ ଧରଣର ଟେକପ୍ ତନ୍ତ ଆସିବାରୁ କାରୀଗରମାନେ ଲୁଗା ସହଜରେ ବୁଣିଲେ। ଖଦୀ ବସ୍ତ୍ର ପାଇଁ ସୁତାକଟା କ୍ରମଶଃ କମି କମି ଆସିଲା।

ଟେକାପ ତନ୍ତର ବ୍ୟବହାର ଠାରୁ ହସ୍ତତନ୍ତର ବ୍ୟବହାର କମିଗଲା। ଟେକାପ୍ ତନ୍ତରେ ବସ୍ତ୍ର କମ୍ ସମୟରେ କମ୍ କାରିଗରରେ ଅଧିକ ଉତ୍ପାଦନ ହେଲା। ଧୋତି ସଫେଦ୍ ଚିକ୍କଣ ରହିଲା। ରଙ୍ଗିନ୍ ଗାମୁଛା ରଙ୍ଗିନ୍ ଶାଢ଼ୀ ବୁଣାଗଲା। ୧୯୫୮

ମସିହା ବେଳରେ ସବୁଠୁ ଦାମୀ ଧୋତି ୩ଟଙ୍କା ଓ ଶାଢ଼ିର ଦାମ୍ ୩ଟଙ୍କା, ୪ଟଙ୍କା, ୫ଟଙ୍କା ଥିଲା । ଚଦରର ଦାମ୍ ୫ଟଙ୍କା ଥିଲା । ୧୯୬୪ ମସିହାରେ ବଜାରକୁ ମସରାଇଜ ସିଙ୍ଗଲ ସୁତା ଡବଲ ସୁତା ବଜାରକୁ ଆସିଲା । ତନ୍ତରୁ ବହୁସଂଖ୍ୟାରେ ମସ୍‌ରାଇଜ୍ ଲୁଙ୍ଗି ଶାଢ଼ୀ ବାହାରିଲା । ମସରାଇଜ ପିନ୍ଧିବାର ଚାହିଦା ଲୋକଙ୍କ ଭିତରେ ବଢ଼ିଲା । ଶାଢ଼ୀ ଧଡ଼ିରେ ମୟୂର, ହାତୀ, ଘୋଡ଼ା ଗୋଲାପ ଫୁଲର ଚିତ୍ର ରହିବାରୁ ଏହା ଅଧିକ ମାତ୍ରାରେ ବିକ୍ରି ହେଲା । ସେ ସମୟରେ ଧୋତିର ସର୍ବାଧିକ ଦାମ୍ ୨୫ଟଙ୍କା ଓ ମସ୍‌ରାଇଜ୍ ଶାଢ଼ିର ଦାମ୍ ୩୦ଟଙ୍କା ଏହି ସମୟର କାରୀଗରମାନଙ୍କର ଲୁଗା, ଲୁଙ୍ଗି, ଗାମୁଛାର ଆଦର ବଢ଼ିଲା । ତନ୍ତଶିଳ୍ପୀମାନଙ୍କର ରୋଜଗାର ବଢ଼ିବାରେ ଲାଗିଲା । ନୟାଗଡ଼ ମସ୍‌ରାଇଜ୍ ବସ୍ତ୍ର ମୟୂରଭଞ୍ଜ, ବାରିପଦା, ନବରଙ୍ଗପୁରରେ ବିକ୍ରୟ ପ୍ରସାର ହେଲା । ଟେକାପ ତନ୍ତ ସମୟରେ ଇଟାମାଟି, ଜଟଣୀ, କଟକ, କଲିକତାରୁ ସୁତା ଅଣାଯାଉଥିଲା । ଟେକାପ ତନ୍ତ ବ୍ୟବହାରରେ କାରିଗରମାନଙ୍କର ରୋଜଗାର ବହୁଗୁଣରେ ବଢ଼ିଯାଇଥିଲା ।

୧୯୭୮ ମସିହା ବେଳକୁ ନୟାଗଡ଼ ତନ୍ତଶିଳ୍ପର ପ୍ରସାର ଘଟିସାରିଥିଲା । ଏଣୁ ବୁଣାକାରମାନେ ନିଜ ନିଜ ଅଞ୍ଚଳରେ ତନ୍ତୁବାୟ ସମିତିମାନ ଗଢ଼ିଲେ । ଏହି ସମିତି ମାଧ୍ୟମରେ ସୁତା, ତନ୍ତ ସରଞ୍ଜାମ ସହଜରେ ପାଇଲାରୁ ତନ୍ତ ଉତ୍ପାଦନ ଦ୍ରବ୍ୟ ବଢ଼ିଲା । ନୟାଗଡ଼ ଜିଲ୍ଲାରେ ଅନେକ ତନ୍ତ ସମବାୟ ଗଢ଼ି ଉଠିବାରୁ ନୟାଗଡ଼ ଜିଲ୍ଲାରେ ସ୍ୱତନ୍ତ୍ର ଏକ ସରକାରୀ ବୟନଶିଳ୍ପ ନିର୍ଦ୍ଦେଶକ କାର୍ଯ୍ୟାଳୟ ସ୍ଥାପିତ ହେଲା ୧୯୮୨ ମସିହାରେ । ଏହି କାର୍ଯ୍ୟାଳୟରୁ ମିଳିଥିବା ତଥ୍ୟ ଅନୁଯାୟୀ ନୂଆଗାଁ ବ୍ଲକ୍‌କୁ ଛାଡ଼ିଦେଲେ ଅନ୍ୟ ୭ଟି ବ୍ଲକ୍‌ରେ ନିମ୍ନମତେ ତନ୍ତ ସମବାୟ ସହଯୋଗ ସମିତିମାନ ସରକାରୀ ବୟନଶିଳ୍ପ ନିର୍ଦ୍ଦେଶକ କାର୍ଯ୍ୟାଳୟ ନୟାଗଡ଼ରେ ପଞ୍ଜୀକୃତ ହେଲେ, ସେହି ଗ୍ରାମଗୁଡ଼ିକ ହେଉଛି- ନୟାଗଡ଼, ଗୋବିନ୍ଦପୁର ସମିତି; ସୋଲପଟା, ଡିମିସର, ଲାଠିପଡ଼ା, ପଞ୍ଚରିଡ଼ା ମାନପୁର, ଭାଲିଆଡ଼ିହି, ଆଡ଼ବେର, ହରିଡ଼ାବନ୍ଧ, ରାଜପାଟଣା, ଗୋଡ଼ିପଡ଼ା ନିକଟସ୍ଥ କଇଁଫୁଲିଆ, କୁରୁଡଙ୍ଗ, ଇଟାମାଟି, ବଡ଼ପଣ୍ଡୁସର, କଣ୍ଟାବଣିଆ, ଶରଧାପୁର, ବାଲୁଗାଁ ସମିତି- ରଣପୁର ବ୍ଲକ୍- ମଣିନାଗ ତନ୍ତୁବାୟ ସହଯୋଗ ସମିତି, ମୟୂରଝାଲିଆ, ରାଜସୁନାଖଳା, ବଧୂପାଟଣା, ଉଆସପାଟଣା, ଦର୍ପନାରାୟଣପୁର- ଭାପୁର ବ୍ଲକ୍ କଇଁଫୁଲିଆ, ବାଇଗୁଣିଆ ଖଣ୍ଡପଡ଼ା ବ୍ଲକ୍- ଖଣ୍ଡପଡ଼ା, ଖଳିସାହି, ଗଣିଆ ବ୍ଲକ୍- ମଣିଭଦ୍ରା, ଢୋଲମରା-ଓଡ଼ଗାଁ ବ୍ଲକ୍- ଓଡ଼ଗାଁ ।

ନୟାଗଡ଼ ସରକାରୀ ବୟନଶିଳ୍ପ ନିର୍ଦ୍ଦେଶକ କାର୍ଯ୍ୟାଳୟ ମାର୍ଫତରେ ସରକାରଙ୍କର ବିଭିନ୍ନ ଯୋଜନା ମାଧ୍ୟମରେ ବୁଣାକାରମାନଙ୍କୁ ତନ୍ତଶାଳା ଓ ସରଞ୍ଜାମ ବୁଣାକାରମାନଙ୍କର ମୃତ୍ୟୁବୀମା ଓ ସ୍ୱାସ୍ଥ୍ୟସେବା କରାଗଲା । ସୁତା ରଙ୍ଗ କରିବା ପାଇଁ ପ୍ରଶିକ୍ଷଣ ଦିଆଗଲା । ବୁଣାକାର କାରୀଗରମାନେ ଉଚ୍ଚମାନର ଗାମୁଛା, ଲୁଙ୍ଗି,

ଚଦର, ବିଛଣା ଚଦର, ମହିଳାମାନଙ୍କ ଶାଢ଼ୀ, ପୋଷାକ କପଡ଼ା ବୁଣି ଜାତୀୟସ୍ତରରେ ପ୍ରଶଂସାଭାଜନ ହୋଇଛନ୍ତି। ଏହି ଜିଲ୍ଲାର ରାଜକିଶୋର ମହାନାୟକ ଗୋବିନ୍ଦପୁର ସହଯୋଗ ସମିତି ଅଧୀନସ୍ଥ ଗଦାଧର ପ୍ରସାଦ ଗ୍ରାମର ଏକ ବୁଣାକାର ୧୯୯୨ ମସିହାରେ କୁସୁମୀ ଶାଢ଼ୀ ଉତ୍ପାଦନ କରି ଜାତୀୟ ପୁରସ୍କାର ପାଇ ଏ ଜିଲ୍ଲାକୁ ଗୌରବାନ୍ୱିତ କରିଥିଲେ।

ନୟାଗଡ଼ ଜିଲ୍ଲାର ତନ୍ତଶୀଳ୍ପ ଉତ୍ପାଦିତ ଦ୍ରବ୍ୟମାନ ଯଥା- ଲୁଙ୍ଗି, ଗାମୁଛା, ଶାଢ଼ୀ, ଚଦର, ବିଛଣା ଚଦର ଓ ପୋଷାକ କପଡ଼ା ଜାତୀୟସ୍ତରରେ ବେଶ୍ ଖ୍ୟାତି ଅର୍ଜନ କରିଥିଲା। ଏସବୁ ତନ୍ତ ଉତ୍ପାଦକ ବସ୍ତ୍ର ଓ ପୋଷାକ କପଡ଼ା ସବୁ ତନ୍ତୁବାୟ ସମିତିମାନେ ନୟାଗଡ଼ ବୟନଶିଳ୍ପ ନିର୍ଦ୍ଦେଶକ କାର୍ଯ୍ୟାଳୟରେ ପୈଠଜମା କରୁଥିଲେ। ଏଠାରୁ ଏହାର ଉତ୍ତମ ବିକ୍ରୟ ପାଇଁ ବୟନିକାକୁ ଦିଆଯାଉଥିଲା। ବୁଣାକାରମାନେ ସହଯୋଗ ସମିତି ଜରିଆରେ ନିଜ ଉତ୍ପାଦନ ଦ୍ରବ୍ୟର ସୁଲଭ ମୂଲ୍ୟ ପାଇ ଉତ୍ସାହିତ ହେଉଥିଲେ। ତନ୍ତଶିଳ୍ପର ଅଗ୍ରଗତିରେ ବୁଣାକାରମାନଙ୍କର ଆର୍ଥିକ ସ୍ଥିତି ଉଜ୍ଜ୍ୱଳ ହେଲା। ନୟାଗଡ଼ ଜିଲ୍ଲା ତନ୍ତଶିଳ୍ପ ଉତ୍ପାଦିତ ଦ୍ରବ୍ୟମାନ ରାଜ୍ୟର ସମସ୍ତ ମେଳାରେ ବିକ୍ରୟ କରାଯାଉଥିଲା ।

ନୟାଗଡ଼ର ତନ୍ତଶିଳ୍ପ ବିକାଶର ପ୍ରସିଦ୍ଧି ରହିଛି। ନୟାଗଡ଼ ତନ୍ତୁବାୟ ସହଯୋଗ ସମିତି ଲିଃ ଗୋବିନ୍ଦପୁରର ସମ୍ପାଦକ ମନମୋହନ ସ୍ୱାଇଁଙ୍କ ପ୍ରକାଶରେ ଏଠାକାର ବୁଣା ଧୋତି, ଶାଢ଼ୀ, ଗାମୁଛା, ଲୁଙ୍ଗି ଉଚ୍ଚମାନର। ଆମ ସମିତିର କୁସୁମୀ ଶାଢ଼ୀ ଜାତୀୟସ୍ତରରେ ପ୍ରଶଂସିତ। ୧୯୭୮ ମସିହାରେ ଏ ତନ୍ତୁବାୟ ସହଯୋଗ ସମିତି ପ୍ରତିଷ୍ଠିତ। ଆମ ସମିତି ସୁପରଫାଇନ୍ ଧୋତି ଦାମ୍ ୧୦୦ଟଙ୍କା, ବିଧବା ଶାଢ଼ୀ ୪୬ଟଙ୍କା, ଭଲ ବାନ୍ଧ ଅଞ୍ଚଳରଙ୍ଗା ଶାଢ଼ୀର ଦାମ୍ ୧୨୫ଟଙ୍କାରୁ ୧୮୫ ଟଙ୍କା ପର୍ଯ୍ୟନ୍ତ ଥିଲା। ୧୯୯୮ରୁ ୧୯୯୦ ମସିହା ମଧ୍ୟରେ ବମ୍‌କେଇ ପାଟ, ଧୋତି ୧୦୦୦ ଟଙ୍କାରୁ ଊର୍ଦ୍ଧ୍ୱ ଥିଲାବେଳେ ବମ୍‌କେଇ ଶାଢ଼ୀ ୧୪୦୦ ଟଙ୍କା ୧୫୦୦ଟଙ୍କାରେ ବିକ୍ରୟ ହେଉଥିଲା। ଏହି ସମିତିର ବୁଣାବସ୍ତ୍ର ସବୁ ଷ୍ଟେଟ ହାଣ୍ଡଲୁମ୍‌କୁ ଯୋଗାଇ ଦିଆଯାଉଥିଲା ଏବଂ ବାର୍ଷିକ ୧୨ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଟଙ୍କାର କାରବାର କରାଯାଉଥିଲା।

ନୟାଗଡ଼ ତନ୍ତଶିଳ୍ପରେ ଏତେ ବଡ଼ ପ୍ରସାର ସତ୍ତ୍ୱେ ଅଧୁନା ଏହା ରୁଗ୍ଣ ଅବସ୍ଥାକୁ ଖସିଗଲାଣି। ବୁଣାକାରମାନଙ୍କର ଜୀବିକା ଦିନକୁ ଦିନ ଦୁର୍ବଳ ହେବାରେ ଲାଗିଛି। ତନ୍ତ ସହଯୋଗ ସମିତିମାନ ଧିମେଇ ଗଲେଣି, କେତେକ ସୁପ୍ତ ଅବସ୍ଥାରେ। ନୟାଗଡ଼ ସରକାରୀ ବୟନଶିଳ୍ପ ନିର୍ଦ୍ଦେଶକ ଦପ୍ତରରୁ ପ୍ରକାଶ ଥାଏକି- "ସମୟ ଅନୁଯାୟୀ ବୁଣାକାରମାନଙ୍କର ଉତ୍ସାହ କମିଯିବାରୁ ସମବାୟ ସମିତିମାନଙ୍କର ମୂଳ ଅଂଶ (ମୂଳ ଧନ) ନ ପାଇବାରୁ ଏହି ଶିଳ୍ପ ରୁଗ୍ଣ ଅବସ୍ଥାରେ ଥିଲା। ବର୍ତ୍ତମାନ ଏହି ଶିଳ୍ପକୁ ପୁନରୁଦ୍ଧାର କରାଗଲେ ଏହାର ବିକାଶ ତଥା ପ୍ରସାର ହେବ।"

ତନ୍ତଶିଳ୍ପ ନୟାଗଡ଼ର ଏକ ପ୍ରମୁଖ ଶିଳ୍ପ । ବୁଣାକାରମାନେ ବିଂଶ ଶତାବ୍ଦୀରେ ଦ୍ୱିତୀୟାର୍ଦ୍ଧ ଦ୍ୱିତୀୟ ଦଶକରୁ ଏକବିଂଶ ଶତାବ୍ଦୀର ପ୍ରଥମ ପାଦ ଛୁଇଁବାଯାଏ ବୟନଶିଳ୍ପକୁ ନୟାଗଡ଼ରେ ପ୍ରଗତିଶୀଳ କରାଇ ସ୍ୱାବଲମ୍ବୀ ହୋଇପାରିଥିଲେ । ତନ୍ତଶିଳ୍ପରୁ ବୁଣାକାରମାନେ ପ୍ରଚୁର ପାରିଶ୍ରମିକ ଉପାର୍ଜନ କରି ପାରିବାରିକ ସୁଖଶାନ୍ତି ପାଉଥିଲେ । ବର୍ତ୍ତମାନ ବୁଣାକାରମାନଙ୍କର ଆର୍ଥିକ ଅବସ୍ଥା ବେଳୁଁବେଳ ଭୁଷୁଡ଼ି ପଡୁଛି । ସରକାର ଏମାନଙ୍କ ଉପରେ ଟିକେ ନିରୁତା ଦୃଷ୍ଟି ପକାଇଦେଲେ ପୁନଶ୍ଚ ନୟାଗଡ଼ରେ ବ୍ୟବସାୟିକ ତନ୍ତଶିଳ୍ପ କଳା ଉଦ୍ଧାର ହୁଅନ୍ତା । ହାତଯୋଡ଼ି ବସି ରହିଥିବା ବୁଣାକାରମାନଙ୍କ ହାତଖୋଲି ଯାଆନ୍ତା ।

<u>ନୟାଗଡ଼ର ଆଶ୍ଚର୍ଯ୍ୟ କ୍ଷେତ୍ର :</u> ନୟାଗଡ଼ରେ ପରିକ୍ରମା ସମୟରେ ଚାରୋଟି ଆଶ୍ଚର୍ଯ୍ୟ କ୍ଷେତ୍ର ଦୃଷ୍ଟିରେ ପଡ଼ିଛି । ଉଦୟପୁର ପାଠାଗାର ସଂଗ୍ରହଳାୟ ସମ୍ଭବ ରୋଇବାଙ୍କ, ସେବା ନୟାଗଡ଼, ଆଶ୍ରୟ ଦିବ୍ୟାଙ୍ଗ ସେବାଶ୍ରମ ଶରଣକୁଳ । ତିନୋଟି କ୍ଷେତ୍ରର ମାନବ ସେବାର ବୃତ୍ତି ଦେଖିଲେ ଖୁସି ଲାଗେ । ଉଦୟପୁର ଏକ ଆନ୍ତର୍ଜାତିକ ପାଠାଗର କ୍ଷେତ୍ର ସମ୍ଭବରେ ଆନ୍ତର୍ଜାତୀୟ ଉଦ୍ଭିଦକୁ ନୟାଗଡ଼ ଜଳବାୟୁରେ ବଢ଼ାଇବା ଚମତ୍କାର । ସେବାରେ ମାନସିକ ବିଭ୍ରମ ରୋଗୀଙ୍କର ଯତ୍ନ ଏବଂ ବିକାଶ । ଆଶ୍ରୟରେ ଦିବ୍ୟାଙ୍ଗ, ଭିନ୍ନକ୍ଷମ, ଅନାଥ, ଦୁଃଖୀ, ଅବହେଳିତ, ଦୀନଦରିଦ୍ର, ଦୁଃସ୍ଥ ବୃଦ୍ଧ ବୃଦ୍ଧା, ଗରିବ, ନିରାଶ୍ରୟ, ଜରା ଓ ରୋଗଗ୍ରସ୍ତ, କୁଷ୍ଠରୋଗୀ, କିଡ୍‌ନୀ କ୍ୟାନସର ରୋଗୀଙ୍କ ଜୀବନ ସେବା ।

<u>ନୟାଗଡ଼ର ଦୁଃଖ :</u> ନୟାଗଡ଼ ଆରଣ୍ୟକ ପରିବେଷ୍ଟନୀ ମଧ୍ୟରେ କୃଷି ଉପଯୋଗୀ ଉଚ୍ଚ ସମତଳ ଫସଲ ମରୁଡ଼ିରେ ଉଜୁଡ଼େ । ନୟାଗଡ଼ ସମତଳଭୂମିକୁ ଜଳସେଚନର ସୁବିଧା ଏପର୍ଯ୍ୟନ୍ତ ହେଲା ନାହିଁ । ନୟାଗଡ଼ ଉତ୍ତର ଦାଢ଼ରେ ମହାନଦୀ ବିପୁଳ ଜଳଧାରା ନେଇ ଚାଲିଥାଏ । କିନ୍ତୁ ବୃତ୍ତଙ୍ଗଠାରୁ ମହାନଦୀ ଜଳକୁ ନୟାଗଡ଼ ଜିଲ୍ଲାର ଉପଯୋଗ ନିମିତ୍ତ ସରକାରଙ୍କ ଦ୍ୱାରା ତା'ର ନକ୍ସା ସରିଥିଲେ ହେଁ ବୃତ୍ତଙ୍ଗ ଜଳସେଚନ ଯୋଜନା କାଏମ ହେଲା ନାହିଁ । ଆଉ ଏକ ଦୁର୍ଭାଗ୍ୟ ନୟାଗଡ଼ ଚିନିକଳ ଚାଲିଲା ନାହିଁ । ନୟାଗଡ଼ବାସୀଙ୍କର ପ୍ରଥମ ଅର୍ଥକାରୀ ଫସଲ ଆଖୁ ଫସଲ । ନୟାଗଡ଼ ଜିଲ୍ଲା ବିସ୍ତୃତ ଭୂମି ଆଖୁଚାଷ ହୁଏ । ଚିନି କାରଖାନା ଯୋଗୁଁ ନୟାଗଡ଼ ଆଖୁଚାଷ କ୍ଷେତ୍ର ବଢ଼ିଯାଇଥିଲା । ବର୍ତ୍ତମାନ ଆଖୁଚାଷ ବହୁ ପରିମାଣରେ କମିଯାଇଛି । ବେଳୁଁବେଳ ଆଖୁଚାଷୀ ଋଣଗ୍ରସ୍ତ ହେଉଛି । ଆଖୁଚାଷ ନୟାଗଡ଼ରୁ ବୁଡ଼ିଯିବ ନା କ'ଣ ? ନୟାଗଡ଼ର ତନ୍ତଶିଳ୍ପ ଓଡ଼ିଶା ଓ ଓଡ଼ିଶା ବାହାରେ ଖ୍ୟାତି ଅର୍ଜନ କରିଥିଲା । ନୟାଗଡ଼ ତନ୍ତଶିଳ୍ପଗୁଡ଼ିକ ଅଚଳ ହୋଇପଡ଼ିଲାଣି । କୃଷିଭୂମି ନୟାଗଡ଼ରେ ଶିଳ୍ପ କ୍ଷେତ୍ରରେ ଆଉ ବିକାଶ ନାହିଁ । ଏଇତ ଦୁଃଖ ।



## ପୃଷ୍ଠା ଶେଷରେ...

# ନୟାଗଡ଼ର ବିଶ୍ୱପ୍ରସିଦ୍ଧ ଛେନାପୋଡ଼

**ନୟାଗଡ଼ ଛେନାପୋଡ଼:** ଛେନାପୋଡ଼ ପାଇଁ ନୟାଗଡ଼ ପ୍ରସିଦ୍ଧ । ଏହାର ଆରମ୍ଭ ସମୟ ୧୯୪୦ ମସିହା ପରର । ଛେନାପୋଡ଼ ତିଆରି ଉପରେ କ୍ଷୁଦ୍ର ଉପକଥା ପଦେ- ସୋଲଟା ଗ୍ରାମର ନରସିଂହ ଦାଶ ନୟାଗଡ଼ ଶେଷ ରାଜା କୃଷ୍ଣଚନ୍ଦ୍ର ସିଂ ମାନଧାତାଙ୍କର ରାଜ ରୋଷେୟା ଥିଲେ । ରାଜାଙ୍କର ବ୍ୟଞ୍ଜନ ସେବା ସୁପକାର । ୧୯୭୫ରେ ସୋଲଟା, ମାଛିପଡ଼ାରୁ କୁଇଣ୍ଟାଲ କୁଇଣ୍ଟାଲ ଛେନାପୋଡ଼ ବାହାର ଅଞ୍ଚଳକୁ ଯୋଗାଣ ଦେଖି ହସିଦେଇ ଆମ୍ଭମାନଙ୍କୁ କହିଲେ- ଛେନାପୋଡ଼ ଚାହିଦା ଆଜି ବଜାରରେ ବଢ଼ିଗଲା ଠାକୁରଙ୍କ ପାଇଁ, ଗୌଡ଼ମାନଙ୍କର ଯେପରି ଛେନା ଖଞ୍ଜା ରହିଛି ରାଜାଙ୍କ ପାଇଁ ସେମାନଙ୍କର ଛେନା ଖଞ୍ଜା ଥିଲା । କଞ୍ଚାଛେନାରେ ଖଣ୍ଡ ମିଶାଇ ରାଜାଙ୍କ ଭୋଜନରେ ପରିବେଷଣ ହୁଏ । ଥରେ ଭୋଜନରେ ଛେନା ପରଶିବାରେ ଭୁଲିଯାଇଥିଲି । ଡରରେ ରହିଯାଇଥିବା ଖଣ୍ଡମିଶା ଛେନାକୁ ପୋଡ଼ିଯିବା ପାଇଁ ଚୁଲିରେ ପୋତିଦେଲି । ପରଦିନ ଚୁଲି ସଫା କଲା ବେଳକୁ ପୁଡ଼ିଆଟି ଦେଖିଲି । ତାକୁ ଝାଡ଼ି ରଖିଲି । ବାସ୍ନାଯୁକ୍ତ ପୋଡ଼ା ଛେନା ଖାଇବାକୁ ରୁଚିକର ହେଲା । ରାଜାଙ୍କ ଭୋଜନରେ ତାକୁ ପରଶିଲି । ରାଜା ଖାଇ ଖୁସି ହେଲେ । ସେବେଠୁ ପୋଡ଼ା ଛେନା ରାଜାଙ୍କୁ ଦିଏ । ଏ ଛେନାପୋଡ଼ ମୋରି ହାତର ରାଜାଘର ଚୁଲିରୁ ଜନ୍ମ ନେଇଛି । ଆଜିର ଏ ଛେନାପୋଡ଼ ବେପାରକୁ ଦେଖି ହସ ଲାଗୁଛି, ଏ କଥାକୁ ହୃଦୟଙ୍ଗମ କରି ସୋଲପଟା ସନ୍ତୋଷ ବରାଡ଼ ୨୫-୩୧ ମାର୍ଚ୍ଚ ୨୦୧୮ ସଂଖ୍ୟା ଦୁର୍ମୁଖ ସଂପାଦକୀୟ ସ୍ତମ୍ଭରେ ଏ ଉପାଖ୍ୟାନକୁ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି । ଏହାକୁ ଅଧିକ ବାସ୍ନାଯୁକ୍ତ ସ୍ୱାଦିଷ୍ଟ ରୁଚିକର କରିଛନ୍ତି ଦଶପଲ୍ଲା ସାତପାଟଣା ନିବାସୀ ସୁଦର୍ଶନ ସାହୁ ମହୋଦୟ । ସେ ମହୋଦୟ ୧୯୪୭ ମସିହାରେ ନୟାଗଡ଼ ସହରକୁ ଆସି ୧୯୬୪ ମସିହା ପର୍ଯ୍ୟନ୍ତ ଦଶପଲ୍ଲା ହୋଟେଲ ନାମରେ ଏକ ଭୋଜନାଳୟ କଚେରି ସାମ୍ନାରେ ଆରମ୍ଭ କରିଥିଲେ । ଏବେ ସେ ଜାଗା ତାଙ୍କର ରହିବା ଘର । ଛେନାପୋଡ଼ ତିଆରିରେ ସୁଦର୍ଶନ ସାହୁଙ୍କର ଉଚ୍ଚପ୍ରଶଂସା ରହିଛି । ଛେନାପୋଡ଼ କହିଲେ ସୁଦର୍ଶନ ସାହୁଙ୍କର ପରିଚୟ ଦିଏ । ସେ କଦଳୀ ପତ୍ରରେ ଘିଅ ଦେଇ ପିତଳ ଥାଳିରେ

ଛେନାରେ ଆବଶ୍ୟକ ଚଉଳ ଚୂନା ଗୋଳି କାଦୁଆ ଛେନାକୁ ଉଡ଼ ନିଆଁରେ ପୋଡୁଥିଲେ । ତାଙ୍କ ଛେନାପୋଡ଼ର ନିଆରା ଆଦର ରହିଛି । ୧୯୮୦ ମସିହା 'ଅକ୍ଷିତୃତୀୟା' ଚଳଚ୍ଚିତ୍ରରେ ତାନ୍‌ସେନ ସିଂ ନୟାଗଡ଼ର ଗୌରବ ଗୁବେନ୍ ସିଂଙ୍କ ସୁପୁତ୍ର ଗାଇଥିଲେ 'ଆସ କିଏ ଖାଇବ ହୋ ଆମ ରାଜାବାବୁ ଖାନା । ନୟାଗଡ଼ର ଛେନାପୋଡ଼... ଏହାର ଗୀତିକାର ବୈକୁଣ୍ଠନାଥ ମହାନ୍ତି ଛେନାପୋଡ଼ କହିଲେ ନୟାଗଡ଼ର ପ୍ରଶସ୍ତି ଆସିଯାଏ । ନୟାଗଡ଼ ଅଞ୍ଚଳରୁ ବହୁ ପରିମାଣରେ ଛେନା ଉତ୍ପାଦନ ହେଉଛି । ୧୯୬୨ ମସିହାରେ ଅରିଆ ବେହେରା ସୋଲପଟା ନୟାଗଡ଼ ବଜାରରେ ବଡ଼ଧରଣର ଛେନାପୋଡ଼ ବେପାର ଆରମ୍ଭ କରିଥିଲେ । ସେବେଠୁ ଏଯାବତ ନୟାଗଡ଼ରେ ଛେନାପୋଡ଼ ବ୍ୟବସାୟ ବଢ଼ିବାରେ ଲାଗିଛି । ପୋଡ଼ ବ୍ୟବସାୟୀମାନେ ସୁରକ୍ଷିତ ଭାବରେ ବାହାର ରାଜ୍ୟକୁ ଛେନାପୋଡ଼ ପଠାଉଛନ୍ତି, ଛେନାପୋଡ଼ର ବଡ଼ ବେପାରୀ ଶିପ୍ରସାଦ ନାୟକ, ରାଉଳ ଭୁଜବଳ ସୋଲପଟା, ଧନେଶ୍ୱର ବେହେରା ଜଗତି, ମାଟିଆ ବେହେରା ଗୁରେଇ ବେହେରା ମାଛିପଡ଼ା, ଶ୍ୟାମ ବେହେରା ଗୋଡିସାହି ।



## ସହାୟକ ଗ୍ରନ୍ଥ ସୂଚୀ


- ଓଡ଼ିଶା ଇତିହାସ - ଡା. ପୂର୍ଣ୍ଣଚନ୍ଦ୍ର ଦାଶ
- ଓଡ଼ିଆ ନାଟକର ଦୃଷ୍ଟି ଓ ଦିଗନ୍ତ - ସଂକଳକ ଗଣେଶରାମ ନାହାକ
- ନୟାଗଡ଼ ପୁରାଣ - ହରିଶ ଗୀତିକଜ୍ଞ
- ଆରଣ୍ୟକ ପତ୍ରିକା - ନୟାଗଡ଼ ଜିଲ୍ଲା ମହୋତ୍ସବରେ ପ୍ରକାଶିତ
- ରଣଭୂଇଁ - ପତ୍ରିକା


❖❖❖





## ପାଣ୍ଡବ ନାୟକ (ଶିଶୁ), ଏମ୍.ଏ (ଓଡ଼ିଆ)



ନୟାଗଡ଼ ଜିଲ୍ଲାର ନଦୀ, ପାହାଡ଼, ପର୍ବତ, ଇତିହାସ, କଳା, ସାହିତ୍ୟ, ସଂସ୍କୃତି, ପରମ୍ପରା, ଐତିହ୍ୟ, ଲୋକଜୀବନୀ, କୃଷି, ଶିକ୍ଷା, ଖାଦ୍ୟ ଓ ଚଳିଚଳଣି ଉପରେ ଗବେଷଣା କରି 'ନୟାଗଡ଼ ପରିକ୍ରମା' ପୁସ୍ତକକୁ ରଚନା କରିବା କ୍ଷେତ୍ରରେ ପାଣ୍ଡବ ନାୟକଙ୍କ କୃତିତ୍ୱ ଅନସ୍ୱୀକାର୍ଯ୍ୟ। ନୟାଗଡ଼ ଜିଲ୍ଲାର ସଂପୂର୍ଣ୍ଣ ତଥ୍ୟକୁ ନେଇ ପ୍ରକାଶିତ 'ନୟାଗଡ଼ ପରିକ୍ରମା' ସଂକଳନଟି ଓଡ଼ିଶାର ପାଠକ-ପାଠିକାଙ୍କୁ ବେଶ୍ ଆକୃଷ୍ଟ କରିପାରିବ ବୋଲି ଆମର ଦୃଢ଼ ବିଶ୍ୱାସ ।



ନୟାଗଡ଼ ଅନ୍ତର୍ଗତ ଗୋଡିସାହି ଗ୍ରାମରେ ୧୯୫୦ ମସିହା ଜୁନ୍ ମାସ ୧୪ ତାରିଖରେ ପାଣ୍ଡବ ନାୟକଙ୍କ ଜନ୍ମ । ପିତା ସୁଦାମ ନାୟକ ଏବଂ ମାତା ବେଲ ଦେବୀଙ୍କ କୋଳମଣ୍ଡନ କରିଥିଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ୍.ଏ. କରିବା ପରେ ବି.ଇଡ୍. କରି ଶିକ୍ଷକତାରୁ ଅବସର ଗ୍ରହଣ କରିଛନ୍ତି। ଦୀର୍ଘ ପଚାଶ ବର୍ଷର ଶିକ୍ଷାଦାନ ପରେ ଜଣେ ଛାତ୍ରବତ୍ସଳ ଶିକ୍ଷକ ଓ ସଫଳ ସାହିତ୍ୟିକ ଭାବେ ଓଡ଼ିଶାର କଳା, ସାହିତ୍ୟ, ସଂସ୍କୃତି ଓ ପରମ୍ପରା ଉପରେ ପାଣ୍ଡବ ନାୟକ ଅନେକ କବିତା, ଗଳ୍ପ, ନାଟକ, ଯାତ୍ରା ନାଟକ ଏବଂ ଗବେଷଣାତ୍ମକ ତଥ୍ୟକୁ ନେଇ ପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି । ଭିନ୍ନ ସମୟରେ ବିଭିନ୍ନ ସମସ୍ୟାକୁ ନେଇ ସାହିତ୍ୟ ରଚନା କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ । ତାଙ୍କର ଏହି ସାହିତ୍ୟ ସାଧନା ପାଇଁ ଜିଲ୍ଲା ଓ ଜିଲ୍ଲା ବାହାରୁ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସେ ପୁରସ୍କୃତ ଓ ସମ୍ବର୍ଦ୍ଧିତ ମଧ୍ୟ ହୋଇଛନ୍ତି । ସାହିତ୍ୟ ରଚନା ବ୍ୟତୀତ ଶିକ୍ଷାଦାନ ଓ ସମାଜସେବା ପାଇଁ ସେ ପାଣ୍ଡବ ସାର୍ ନାମରେ ବେଶ୍ ପରିଚିତ। ନିଜର ଅକ୍ଲାନ୍ତ ପରିଶ୍ରମକୁ ସାର୍ଥକ କରିବା ପାଇଁ ପାଠକଙ୍କ ଉଦ୍ଦେଶ୍ୟରେ ଲେଖିଥିବା 'ନୟାଗଡ଼ ପରିକ୍ରମା' ପୁସ୍ତକଟି ବେଶ୍ ପାଠକୀୟ ଆଦୃତି ଲାଭ କରିବ ।



- ପ୍ରକାଶକ



**ଆଶ୍ରୟ**

ପ୍ରକାଶକ: ଆଶ୍ରୟ ପ୍ରକାଶନ, ଶରଣକୁଳ, ଜି- ନୟାଗଡ଼
ଫୋନ୍: ୦୬୭୫୩-୨୫୭୩୨୧, ୯୩୩୮୦୦୪୩୨୧
Email : ashraya.sarankul@gmail.com